# ମୋ ମନ ପସନ୍ଦର କବି
# ଓ ଅନ୍ୟାନ୍ୟ ନିବନ୍ଧ

ଲେଖକ :
**ଡକ୍ଟର ଆଦିକନ୍ଦ ସାହୁ**
ଏମ୍.ଏ. (ଓଡ଼ିଆ), ଏମ୍.ଏ. (ଇଂରାଜୀ), ପିଏଚ୍.ଡି., ଡି.ଲିଟ୍
ପ୍ରଫେସର ଓ ବିଭାଗୀୟ ମୁଖ୍ୟ,
ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ,
ସମ୍ବଲପୁର ବିଶ୍ୱବିଦ୍ୟାଳୟ ।

ସ୍ୱତ୍ୱାଧିକାରିଣୀ :
**ସୁଶ୍ରୀ ସାଗରିକା ସାହୁ**

ପ୍ରକାଶକ :
**ଗଙ୍ଗାଧର ତ୍ରିପାଠୀ**
**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**
ବିନୋଦ ବିହାରୀ, କଟକ-୨
ଦୂରଭାଷ-୨୬୧୯୦୩୭

ପ୍ରଥମ ସଂସ୍କରଣ : ୨୦୦୪

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ.୧୬୦.୦୦.

ମୋ ସାରସ୍ୱତ ଇଚ୍ଛାର ଶୁଭଚିନ୍ତକ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ଛାତ୍ରଛାତ୍ରୀ ସଂପ୍ରତି ସୁଦୂର ଆମେରିକାରେ ଅବସ୍ଥାନ କରୁଥିବା ମୋ ବଡ଼ପୁଅ ଆଲୋକ ଓ ବଡ଼ବୋହୂ ଅସୀମାଙ୍କୁ ......

# ଉପୋଦ୍‌ଘାତ

କବି ହେଉ ବା କବିତା ହେଉ ଯାହା ମୋତେ ଗଭୀର ଭାବେ ସ୍ପର୍ଶ କରିଛି ମୁଁ ତା'କୁ ସାଧମତେ ମୋ ମନରେ ଧରି ରଖିବାକୁ ଚେଷ୍ଟା କରିଛି । କବିର ପରିତ୍ୟକ୍ତ ଜୀର୍ଣ୍ଣ ସମାଧିଟିଏ ବି ମୋତେ ଭାବ ପ୍ରବଣ କରିଛି ।

ବଞ୍ଚନା ଓ ନିଃସଙ୍ଗତା ଭିତରେ କବିର ଜୀବନ ବଞ୍ଚିବା ପ୍ରତି ମୋ ପ୍ରାଣର ଉତ୍ସୁକତା ଅସୀମ । ଯେ କୌଣସି କବିଙ୍କ ପୀଠରେ ପାଦଦେଲେ ବେଶ୍ କିଛି ସମୟ ମୁଁ ସ୍ୱପ୍ନାବିଷ୍ଟ ହୋଇ ରହେ ସେଇଥି ପାଇଁ ।

ଏ ସଂସାରର ଜଣେ ସଦ୍‌କବିଙ୍କୁ ମୁଁ ସର୍ବଦା ଚଳନ୍ତି ଈଶ୍ୱର ବୋଲି ଜ୍ଞାନକରେ । କବିର ଶ୍ରଦ୍ଧା, କବିର ସଂସ୍କାର ମୋତେ ଭାରି ସ୍ୱର୍ଗୀୟ ଲାଗେ । ତାସହିତ କବିର ଦୁଃଖ ବି ମୋତେ, ପର୍ବତ ପ୍ରମାଣେ ଲାଗେ ।

କବିମାନେ, କଳାକାର ମାନେ ପୁଣି ମୋତେ ସ୍ୱର୍ଗଚ୍ୟୁତ ଗନ୍ଧର୍ବ ପରି ଲାଗନ୍ତି ।

ଯେଉଁଠି ଯେତେବେଳେ କବି ଓ କବିତାର କଥା ମୋତେ ଗଭୀର ଭାବେ ପ୍ରଭାବିତ କରିଛି ସେଇଠି ସେତେବେଳେ ମୋ ମନପ୍ରାଣ ବି ମୋତେ ଭାରି ନିବିଡ ଲାଗିଛି ।

ଏଇ ଗ୍ରନ୍ଥର ନିବନ୍ଧ ସବୁ ବରଂ ମୋର ଏକାନ୍ତ ବ୍ୟକ୍ତିଗତ ସେଇ ଅନୁଭବର ଶାବ୍ଦିକ ରୂପ ।

ସବୁକାଳର କବି ଆତ୍ମାକୁ ମୁଁ ମୋର ଶ୍ରଦ୍ଧା ଓ ସମ୍ମାନ ଜଣାଇଛି । ମଣିଷର ସ୍ୱପ୍ନ ଓ ନିତ୍ୟକାଳର ଆକାଂକ୍ଷା ସବୁକୁ ମୁଁ ସେମାନଙ୍କ ସାହିତ୍ୟରେ ଖୋଜିଛି । ସେମାନଙ୍କ ଅନୁଭବ ସହିତ ଏକାତ୍ମ ହେବାପାଇଁ ଯଥା ସମ୍ଭବ ମୁଁ ଚେଷ୍ଟା କରିଛି ।

ସବୁଯୁଗର କବିତା ହେଉଛି କବି ଆତ୍ମାର ପ୍ରକାଶ ତୀର୍ଥ । କବିତା ପଢୁ ପଢୁ କବି ଆତ୍ମା ନିକଟରେ ପହଞ୍ଚିହୋଇ ଯାଏ ।

ସେହି କବି ଆତ୍ମାର ବିଷାଦ, କାରୁଣ୍ୟ, ତା ସୃଜନଶୀଳ ରସିକତା, ତା ଶୃଙ୍ଗାର କେମିତି ସବୁ ଆପଣାକୁ, ଆପଣା ଅନ୍ତରକୁ ଉଖାରି ଦିଅନ୍ତି । ଟିକିଏକୁ ଆଷାଢ଼ର ମାଟିପରି ଚେତନାରେ ସବୁକିଛି ଭିଜିଯାଏ । କବି ବଞ୍ଚିଥିବା ଜୀବନପ୍ରତି, ତା ଜୀବନର ପ୍ରତିଟି ଉପଦଂଶନର ଜ୍ୱାଳା, ପ୍ରତିଟି ରକ୍ତ କ୍ଷରଣର ଦୁଃଖ ନିବିଡ ମୁହୂର୍ତ୍ତପ୍ରତି ଅନ୍ତରର ନିବିଡ଼ ସହାନୁଭୂତି ଜାତ ହୁଏ ।

ଭାରି ଉତ୍ସୁକ ଲାଗେ କବିତା ପରି କବିର ଜୀବନ ବୁଝିବାକୁ । କବିତାରେ କବି ଜୀବନ ଯେମିତି ପ୍ରଷ୍ଟ ପ୍ରଷ୍ଟ ହୋଇ ସାଇତାହୋଇ ରହିଥାଏ । କେତେ ବଘେଇ ପାଗ ଆଉ ମେଘ ରାତିର ଅନୁଭବ, ଅଳ୍ପ ସମୟରେ ହୁଏତ ବାପାଙ୍କୁ ହରାଇବାର ଦୁଃଖ, ବିଧବା ମାଆ ଆଖିର ଲୁହ, କ୍ଷେତ ଉଜୁଡ଼ି ଯିବାର ଅସହାୟତା, ପ୍ରେମିକାର ପ୍ରତାରଣା, ଫଗୁଣ କୋଇଲିର ଗୀତ, ତଥାପି ମଧୁର ଲାଗୁଥିବା ବିଷାଦ, ଅନ୍ତରଙ୍ଗ ଏକାକୀତ୍ୱ ସବୁ ଫେଣ୍ଟାଫେଣ୍ଟିହୋଇ କେମିତି କବିତାର ସୁର ହୋଇ ଯାଇଥାଏ ।

କବିତାର ଭାଷା ତେଣୁ କେମିତି ଗୋଟେ ଉଦାସ କରିଦିଏ ।

କବିଟିଏ ଆପଣା ଦୁଃଖକୁ ଲେଖିବା ପାଇଁ କେଉଁ ନିରୋଳା ଜାଗାଟିକୁ ହୁଏତ ବାଛି ନେଇଥିଲା । କେଉଁ ନଈକୁ ଭଲ ପାଇଥିଲା । କାହାକୁ ଆପଣା ପ୍ରାଣର ମିତଣୀ କରିଥିଲା । କେଉଁ ପଦ୍ମ ପୋଖରୀ ପାଖରେ ବସି ଆଖିରୁ ଲୁହ ଝରାଉଥିଲା । ସେ ସବୁ ଜାଗାରେ ନିଜେ ଛିଡ଼ାହୋଇ ତଦ୍‌ଗତ ହେବାକୁ ମୋର ଜୀବନସାରା ଭାରି ଅଭିଳାଷ ।

ମୋତେ ସବୁଠାରୁ ବେଶୀ ଭଲଲାଗେ କବିର ଛଳନାବିହୀନ ନିରୁତ୍ଥ ଆତ୍ମଜୀବନୀ ।

ଅଜସ୍ର ଦୁଃଖ ଭିତରେ ତଥାପି ଜୀବନ ଜଣକୁ ନିରବଧି ମଧୁର ଲାଗିଛି ଏତକ ମୋତେ ଭାରି ପ୍ରବୋଧିତ କରିଦିଏ । ଏକାନ୍ତ ଦୁର୍ଭାଗ୍ୟଜନକ ପରିସ୍ଥିତିରେବି ଜୀବନ ମୋତେ ଆଉ ଅତିଷ୍ଠ ଲାଗେନି ।

ଦୁଃଖର ପାହାଡ଼ ସବୁ ଚଢୁଥିବା ସତ୍ତ୍ୱେ, ଦୁଃଖର ନଈସବୁ ପହଁରୁଥିବା ସତ୍ତ୍ୱେ ତଥାପି ଜୀବନ ସୁନ୍ଦର । ସେଇ ସୁନ୍ଦର ଜୀବନ ପ୍ରତି ଆମର ସତ୍ୟଶୀଳତା ବଢ଼ିଲେ ଆମେ ପ୍ରାଣରେ ସର୍ବୋତ୍ତମ ସୃଜନଶୀଳତାକୁ ହିଁ ଅନୁଭବ କରି ପାରିବା ।

ଜୀବନପ୍ରିୟତାର ଭାରି ଗହୀରିଆ ନିବିଡ଼ ଉପଲବ୍ଧି ହେଉଛି ଯେ କୌଣସି କବିର ଅସଲ ଖାନଦାନି ।

କବିର ଜୀବନ ଚର୍ଯ୍ୟା ତା କାବ୍ୟ ଚେତନାକୁ ଭାରି ପ୍ରଭାବିତ କରିଥାଏ । ମୋତେ ଯେଉଁମାନେ ଏ ବିଷୟରେ କିଛି ପଚାରିଛନ୍ତି ଆଉ ମୁଁ ଯେଉଁ ମାନଙ୍କ ସହିତ ସ୍ୱଚ୍ଛନ୍ଦରେ ଘଣ୍ଟାଘଣ୍ଟାଧରି ଏ ବିଷୟରେ ଆଲୋଚନା କରିପାରିଛି ସେମାନଙ୍କ ସହିତ କଟାଇଥିବା ସମୟକୁ ମୁଁ ଆଜି ସାର୍ଥକ ମନେ କରୁଛି । ଏଠାରେ ଉଲ୍ଲେଖ କରିବାକୁ ପାଶୋରି ଯାଉନିଯେ ପୁସ୍ତକ ସନ୍ନିବେଶିତ କେତେକ ନିବନ୍ଧ ପୂର୍ବରୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ମାସିକ ସାହିତ୍ୟ ପତ୍ର "ସପ୍ତର୍ଷି"ର ସଂପାଦକୀୟ ଭାବେ ତଥା ଶ୍ରୀ ମନୋରଞ୍ଜନ ମେହେରଙ୍କ ଦ୍ୱାରା ସମ୍ପାଦିତ "ଅଙ୍କୁର" ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଗ୍ରନ୍ଥ ପ୍ରକାଶନ ଅବସରରେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ କୃତଜ୍ଞତା ଜ୍ଞାପନ କରିବା ସହିତ ମୁଁ ମୋର ପରମ ହିତୈଷି ବନ୍ଧୁ ଓ ସମଧର୍ମା ସାହିତ୍ୟିକଙ୍କୁ ସ୍ମରଣକୁ ଆଣୁଛି । ମୋତେ ନାନାଭାବରେ ଅନୁପ୍ରେରିତ କରିଥିବାରୁ ମୁଁ ଗାଳ୍ପିକା ସରୋଜିନୀ, ଛାତ୍ରୀ ସୁଷମା, ମାଳବିକା ଓ ରୀନାଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି । ତା ସହିତ ସେମାନଙ୍କୁ ଯେଉଁମାନେ ମୋତେ ଚିଠି ଲେଖି ମୋ ସୃଜନଶୀଳ ଆତ୍ମାର ପ୍ରେମିକତା କରିଛନ୍ତି ।

ବିଶେଷଭାବେ ପୁଣି ଶ୍ରଦ୍ଧେୟା ଶର୍ମିଷ୍ଠାଙ୍କୁ ଯେ ତା'ର କବିପ୍ରାଣର ଶ୍ରଦ୍ଧାଶୀଳତା ଦେଇ ମୋ ଭିତରର ସୃଜନକାମୀ ଏକଲା ମଣିଷକୁ ନାନାଭାବରେ ପ୍ରବୋଧିତ କରିଛି ଓ ଏହି ଗ୍ରନ୍ଥ ସହିତ ସଂଯୋଜିତ ଲେଖକ ପରିଚୟ ଲେଖିଦେଇ ମୋତେ କୃତଜ୍ଞ କରିଛି ।

ପରିଶେଷରେ ସ୍ୱତସ୍ଫୂର୍ତ୍ତହୋଇ ଗ୍ରନ୍ଥ ପ୍ରକାଶନର ଦାୟିତ୍ୱ 'ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ' ବହନ କରିଥିବାରୁ ତା'ର ମୁଖ୍ୟ ସଞ୍ଚାଳକ ଶ୍ରୀ ଗଙ୍ଗାଧର ତ୍ରିପାଠୀଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ତା ସହିତ ଶକ୍ତି ଓ ବିଭୁଙ୍କୁ ସେମାନଙ୍କ ଶ୍ରଦ୍ଧାଶୀଳ ସହଯୋଗ ପାଇଁ ପ୍ରଶଂସା କରୁଛି ।

ସରସ୍ୱତୀ ପୂଜା, ୨୦୦୪ — ଆଦିକନ୍ଦ ସାହୁ
ଚନ୍ଦ୍ରାଲୋକ, କୁପାରୀ ।

# ସୂଚୀପତ୍ର

## —ପ୍ରଥମ ଉଲ୍ଲାସ—



## —ଦ୍ୱିତୀୟ ଉଲ୍ଲାସ—



—o—

# ମହାକାବ୍ୟକ ତୁଙ୍ଗିମାରେ ମାଟିର ମହାକବି

ସାରଳା ତାଙ୍କ ମହାଭାରତରେ ବସ୍ତୁତଃ ଗୋଟିଏ ଜନପଦର ଜାନପଦିକ ସଂସ୍କୃତି ଓ ତା'ର ସାମାଜିକ ବୈଶିଷ୍ଟ୍ୟକୁ ବହୁ ଭାବରେ ଗୌରବାନ୍ୱିତ କରି ଯାଇଛନ୍ତି । ପୃଥିବୀର ଯେ କୌଣସି କାଳର ଜଣେ ସମର୍ଥ ମହାକବି ସର୍ବଦା ଏହାହିଁ କରିଥାନ୍ତି । ସେ ଦୃଷ୍ଟିରୁ ସାରଳାଙ୍କ ମହାଭାରତ ହେଉଛି ଗୋଟିଏ ବିରାଟ ଜାତିର ଗୌରବୋଜ୍ଜ୍ୱଳ ସଂସ୍କୃତି ତଥା ବୀରତ୍ୱ ବ୍ୟଞ୍ଜିତ ଇତିହାସର ଏକ ମନୋଜ୍ଞ ଏକ ରୂପକ ଚିତ୍ର ।

ସାରଳା ମହାଭାରତରେ ରୂପକାତ୍ମକତା ଆମ ଯୌଗିକ ସାମାଜିକ ତଥା ଧାର୍ମିକ ଜୀବନର ବହୁପ୍ରଶ୍ନଯୁକ୍ତ ଏକ ବିମ୍ବ ଯେପରି ।

ସାରଳାଙ୍କ ମହାକବିତ୍ୱର ଅନ୍ୟ ଏକ ବିଶିଷ୍ଟ ଦିଗ ହେଲା ତାଙ୍କର ଅତୁଳନୀୟ ଭାଷାଜ୍ଞାନ ଓ ଶିଳ୍ପ ଶକ୍ତି । ସାରଳା ଅତି ଅଦ୍ଭୁତ ଭାବରେ, ଗଭୀର ପ୍ରତ୍ୟୟର ସହିତ ଗୋଟିଏ ଭୂଖଣ୍ଡର ଭାଷାକୁ ଗରିମାମୟ କରି ଯାଇଛନ୍ତି । ସାରଳା ଓଡ଼ିଆ ଭାଷାର ଶକ୍ତି ଓ ତା'ର ସୃଜନଶୀଳତାକୁ ପରୀକ୍ଷା କରି ଦେଖିଛନ୍ତି । ଗୋଟିଏ ପ୍ରଦେଶର କଥିତ ଭାଷା କେତେ ଅଧିକ ଭାବସଂବାହକ ହୋଇପାରେ, କେତେ ଅଧିକ ଚିତ୍ତ ଉଲ୍ଲାସକ ହୋଇପାରେ ଓ ପ୍ରତିଟି ଚିତ୍ର ଆଙ୍କିବାରେ କେତେ ଚରମ ଭାବରେ ଅର୍ଥ ପୂର୍ଣ୍ଣ ହୋଇପାରେ ସାରଳା ମହାଭାରତ ତା'ର ସର୍ବୋତ୍ତମ ନିଦର୍ଶନ ।

ଉଡ୍ର ଓ ଶବର ମାନଙ୍କ ମୁଖ ନିଃସୃତ ଏହି ଉଡ୍ର ବିଭାଷାକୁ ସାରଳା, ମହାଭାରତ ରଚନାକରି ଗୋଟିଏ ଜାତୀୟ ଭାଷାରେ ପରିଣତ କରିଦେଲେ । ଗଦ୍ୟପଦ୍ୟ ନିର୍ବିଶେଷରେ ସବୁଠି ସବୁକାଳରେ ସାରଳାଙ୍କ ପରି ଶକ୍ତିଧରମାନେ ଭାଷାର ସୃଜ୍ୟମାନ ପ୍ରାଣଶକ୍ତିକୁ ଆବିଷ୍କାର କରିଯାଇଥାନ୍ତି । ଏଙ୍ଗ୍ଲୋସାକସନ ଯୁଗର ଭାଷା ଦିନେ ଏମିତି ଶକ୍ତି ଓ ସଂଭାବନାହୀନ ହୋଇଥିଲା ।

ଓଡ଼ିଆ ଭାଷାକୁ ବିପୁଳ ଭାବରେ ଆର୍ଯ୍ୟୀଭୂତ କରିବାରେ ସାରଳାଙ୍କ କୃତିତ୍ୱ ସତରେ ଅକଳନୀୟ ଓ ଅତୁଳନୀୟ । ଗୋଟିଏ ଚ଼ଷା ଜାତିର କଥିତଭାଷାକୁ ମାତ୍ର ଏତେ ଉଲ୍ଲେଖଯୋଗ୍ୟ ଭାବେ ସାହିତ୍ୟିକ ଓ ସର୍ବୋତ୍ତମ ଭାବେ ସୃଜନଶୀଳ କରିଦେବାରେ ସାରଳା ଏକ ଯାଦୁକରୀ ପ୍ରତିଭା ।

ଓଡ଼ିଶା ନାନାଭାବରେ ପୁଣି ତୀର୍ଥାନ୍ୱିତା ହେବା, ପୁଣ୍ୟଭୂମି ଭାବେ ଓ ଉତ୍କଳ ବ୍ରାହ୍ମ ଅଧ୍ୟୁଷିତ ପ୍ରଦେଶରେ ପରିଣତ ହେବା ସେଦିନ ବସ୍ତୁତଃ ଆମର କଥିତ ଓଡ଼ିଆ ଭାଷା ପ୍ରତି ଏକ ଆହ୍ୱାନର ବିଷୟ ଥିଲା । ସାଧୁ ସଂସ୍କୃତ ବା ସଂସ୍କୃତାୟିତ ଭାଷା କହୁଥିବା ବ୍ରାହ୍ମଣମାନେ ଓଡ଼ିଆ ଭାଷା ପ୍ରତି ବିଭିନ୍ନ କାରଣରୁ କେବଳ ଅଶ୍ରଦ୍ଧ ନଥିଲେ ଘୋର ବୈରତା ମଧ୍ୟ ପ୍ରଦର୍ଶନ କରୁଥିଲେ । ସେତିକି ବେଳେ ସିଦ୍ଧେଶ୍ୱର ପରିଡ଼ାଙ୍କ ମହାଭାରତ ରଚ଼ନା ଆକ୍ରମଣକାରୀ ସଂସ୍କୃତ ଓ ସଂସ୍କୃତ ପ୍ରେମୀ ଓ ପୃଷ୍ଟପୋଷକମାନଙ୍କ ବିପକ୍ଷରେ ଏକ ସ୍ପର୍ଦ୍ଧିତ

ଅଭିଯାନ ଯେପରି ଥିଲା । ଓଡ଼ିଆ ଭାଷାର ଶକ୍ତି ଓ ସୌନ୍ଦର୍ଯ୍ୟକୁ ସାରଳା ମହାଭାରତ ପରି ଗୋଟିଏ ବିଶାଳ ମହାକାବ୍ୟ ରଚ଼ନା କରି ପ୍ରଦର୍ଶନ କରିଗଲେ; ହୁଏତ ରାମାୟଣ ଓ ଭାଗବତ ରଚ଼ନା ପାଇଁ ବଳରାମ ଓ ଜଗନ୍ନାଥ ପରବର୍ତ୍ତୀ ସମୟରେ ପ୍ରୋତ୍ସାହିତ ହୋଇଛନ୍ତି । ନହେଲେ ସଂସ୍କୃତ ପଣ୍ଡିତ ଓ ଧାର୍ମିକ ପୃଷ୍ଠପୋଷକମାନଙ୍କର ଯାବତୀୟ ଅନୁତ୍ସାହମୂଳକ ଅବଜ୍ଞା ଓଡ଼ିଆ ସାହିତ୍ୟ ବିକାଶର ଅନିବାର୍ଯ୍ୟ ବାଧକ ହୋଇଥାନ୍ତା ।

ସେହି ଓଡ଼ିଆ ଭାଷା ଜରିଆରେ ସାରଳା ପ୍ରଚ଼ଳିତ ବହୁ ଲୋକ ମିଥ୍ ଓ କିମ୍ବଦନ୍ତୀ ଜନଶ୍ରୁତି ଗୁଡ଼ିକୁ ଅଧିକ ଇଙ୍ଗିତ ଧର୍ମୀ କରି ପ୍ରକାଶ କରିଛନ୍ତି । ସାରଳାଙ୍କ ଏହି ମିଥ୍ ପ୍ରୟୋଗକୁ ଏ ପ୍ରସଙ୍ଗରେ ଏକ ଅଭିନବ ପୁର୍ନସଂସ୍ଥାପନ (Re-Projection) ବୋଲି କୁହାଯାଇପାରେ; କଳା ଓ ଭାବଜଗତରେ ଯାହା ସର୍ବତ୍ର ଓ ସର୍ବଦା ଏକ ଶେଷହୀନ ବିଷୟ । ଗୋଟିଏ ମିଥ୍‌ର ପ୍ରଭାବ କୌଣସି ସମୟ ଖଣ୍ଡରେ ତେଣୁ ସୁପ୍ତ (ଡରମେଣ୍ଟ) ହୋଇ ଯାଏନି ।

ସାରଳା ମହାଭାରତର ଅନ୍ୟ ଦୁଇଟି ବିଶିଷ୍ଟ ଉପାଦାନ ହେଲା ଗୋଟିଏ ଜାତିର ମାନସିକତା ପ୍ରତୀକିତ ହୋଇଥିବା ତା'ର ଅତିବଡ଼ ପୌରାଣିକତା ତଥା ଇତିହାସର ଇଙ୍ଗିତ ଉପାଦାନ । ଗୋଟିଏ ପ୍ରସଙ୍ଗରେ ଥରେ ଏଜରା ପାଉଣ୍ଡ କହିଥିଲେ, 'An epic is a Poem including history.' । ସାର୍ଥକ ମହାକାବ୍ୟମାନଙ୍କ ପରି ସାରଳା ମହାଭାରତରେ ଓଡ଼ିଶା ତଥା ଭାରତର ଇତିହାସ ନାନା ଭାବରେ ପ୍ରତୀକିତ ହୋଇଛି । ତା ସହିତ ଗୋଟିଏ ଜାତିର ବୃହତ୍ତର ସାମାଜିକ ପୃଷ୍ଠଭୂମି (broader national background) ଏବଂ ସାମାଜିକ ତଥା ସାଂସ୍କୃତିକ ଜୀବନବୋଧ ସାରଳା ମହାଭାରତରେ ଅତ୍ୟନ୍ତ ନିବିଡ଼ ଭାବେ ପୁଣି ରହିଛି ।

ସାରଳା ମହାଭାରତ ତା'ର ଅତି ଉଜ୍ଜ୍ୱଳ ପୌରାଣିକତା ଦୃଷ୍ଟିରୁ ଆଦୌ ଗୋଟିଏ 'Primitive Epic' ନୁହେଁ ; ପୁଣି ତା'ର କଳ୍ପନା ଓ କାବ୍ୟିକତା ଦୃଷ୍ଟିରୁ ଗୋଟିଏ କୋମଳ ସାହିତ୍ୟିକ ମହାକାବ୍ୟ (Tender Literary Epic) ମଧ୍ୟ ନୁହେଁ । କିଛି ଅଧିକ ଐତିହାସିକ ତଥା ରାଜନୀତିକ ସଂଙ୍କେତ ସାରଳା ମହାଭାରତରେ ଥିବାରୁ ତା'ର ପ୍ରଭାବ ଅନ୍ୟପ୍ରକାରର ହୋଇଛି । ମହାଭାରତ ସହିତ ରାମାୟଣ ପରି ଶୁଦ୍ଧ ସାହିତ୍ୟିକ ମହାକାବ୍ୟର ତୁଳନା କଲେ ସାରଳା ମହାଭାରତର ସେହି ପ୍ରଭାବଟିକୁ ସଠିକ୍ ଭାବେ ଚ଼ିହ୍ନଟ କରିହେବ ।

ସ୍ଥାନେ ସ୍ଥାନେ ସାରଳା ମହାଭାରତର ଚ଼ିତ୍ର ଚ଼ରିତ୍ର ସବୁ ଲୋକ ମହାକାବ୍ୟ (Folk-Epic) ତଥା ଦୀର୍ଘ ବୀରଗାଥା (long heroic poem) ପରି ମନେହେବ । ସାରଳା ମହାଭାରତରେ ଏହି ବିପୁଳ ଲୋକ ଜୀବନର ଚ଼ିତ୍ର ତଥା ଯାବତୀୟ ଲୌକିକ ଔପଚାରିକତା ପରିଦୃଷ୍ଟ ହେଉଥିବା ସତ୍ତ୍ୱେ ସାରଳା ମହାଭାରତର ସାମଗ୍ରିକ ଆବେଦନ ଅଧିକ ବିଶାଳ ଓ ଗରିମାମୟ ମନେହୁଏ । ସାରଳା ମହାଭାପତର ବିଷୟପିଣ୍ଡ ଓ ଚ଼ିତ୍ରଣ ପରିପାଟୀ, ଶିଳ୍ପାୟନ ଗୋଟିଏ ମହାପୁରାଣର ଗୁଣ ଓ ଲକ୍ଷଣଠାରୁ ଅଲଗା । ଗୋଟିଏ ଶୁଦ୍ଧ ମହାକାବ୍ୟ (Pure epic)ର ଦୀପ୍ତି ଓ ପ୍ରଭାବ ସାରଳା ମହାଭାରତରେ ରହିଛି । ମାତ୍ର ତାହାକୁ କେତେ ଅଧିକ ଶାସ୍ତ୍ରୀୟ (Cognitive) ବା କେତେ ଅଧିକ ସାହିତ୍ୟିକ କୁହାଯିବ ସେ ବିଷୟ ନିଶ୍ଚିତ ଭାବରେ ଜଟିଳ । କାରଣ ଯାହା ଯେତେବେଳେ ଏକ ଉଚ୍ଚମାନର

ସଫଳ ସାହିତ୍ୟ କୃତି ହୋଇଛି ସେଥିରେ ଶାସ୍ତ୍ରୀୟ ଦିଗଟି ସ୍ୱତଃ ପ୍ରତ୍ୟକ୍ଷ ହୋଇ ଉଠିଛି । ଶାସ୍ତ୍ରୀୟତା କହିଲେ ଏଠାରେ ଧର୍ମ, ସଂସ୍କୃତି, ଦର୍ଶନ ଆଧ୍ୟାତ୍ମିକତା ପଣ୍ଡିତ ଏକ ଉଚ୍ଚମାନର ବୌଦ୍ଧିକତା କୁହିଁ ବୁଝିବା ଉଚିତ; ସାହିତ୍ୟ ଯାହାକୁ ଯଥାର୍ଥରେ ଅଧିକ ଅର୍ଥପୂର୍ଣ୍ଣ ଭାବେ ସୂଚିତ କରେ ।

ସାରଳା ଏହି ମାଟିର ମଣିଷ ଓ ମାଟିର କବି । ଗୋଟିଏ ଜାତି ତା'ର ଭାଷା ତା'ର ଐତିହ୍ୟ ତା'ର ସଂସ୍କୃତିକୁ ବର୍ଣ୍ଣାଢ୍ୟ କରି ଚିତ୍ରଣ କରିବାପାଇଁ ଯେଉଁ ଶକ୍ତି ଓ ପ୍ରତିଭାର ଅପେକ୍ଷା ରଖେ ତାହା ସାରଳାଙ୍କ ନିକଟରେ ଥିଲା ।

ସେ ସ୍ୱର୍ଗଚ୍ୟୁତ ଗନ୍ଧର୍ବ ପରି ଏ ମହାନ ଗାଥାକୁ ଲେଖଯାଇନାହାନ୍ତି କିମ୍ବା ଦେବୀ କୃପାର ଅଦ୍ଭୁତ ପରିଣତି ଏ ମହାଭାରତ ଗ୍ରନ୍ଥ ରଚନାନୁହେଁ । ପଣ୍ଡିତ ନୀଳକଣ୍ଠ କହନ୍ତି— ସାରଳା ଓଡ଼ିଶାର ଦର୍ଶନବନ୍ତ ମହାପୁରୁଷ । ଆଜି ଓଡ଼ିଆ ସଭ୍ୟତା, ଓଡ଼ିଆ ଭାଷା ଓଡ଼ିଆ ସାହିତ୍ୟରେ ସେ ପିତା ଓ ପ୍ରତିଷ୍ଠାତା ।

ଇତିହାସ ବା ପ୍ରାଗ୍‌ଇତିହାସ ଯୁଗର କିଛୁତ ଘଟଣା ଓ ଅଧିକ କଳ୍ପନା ସଂମିଶ୍ରିତ ଜଟିଳ ରୂପକ ହେଉଛି ମିଥ୍ । ମଣିଷ ସଭ୍ୟତାର ବିବର୍ତ୍ତନ ତଥା ଏ ବିଶ୍ୱ ବ୍ରହ୍ମାଣ୍ଡର ପରିବର୍ତ୍ତନ ଯେଉଁ ରୂପକ ଗୁଡ଼ିକରେ ପ୍ରତୀକିତ ହୋଇଥାଏ । ବ୍ୟାସଙ୍କ ମହାଭାରତ ହେଉ ବା ସାରଳାଙ୍କ ମହାଭାରତ ହେଉ ଏହି ପ୍ରତୀକ ରୂପ ଓ ତାର ଜଟିଳ ଭଗ୍ନାଂଶ ସବୁକୁ ଯଥାଯଥ ଭାବେ ଉପଲବ୍ଧି କରିପାରିଲେ ଜଣେ ସେ ସବୁର ଅନ୍ତର୍ନିହିତ କାବ୍ୟିକ ମହିମାକୁ ଚିହ୍ନଟ କରିପାରିବ ।

ବିକାଶ ପ୍ରବଣତା ତଥା ଆତ୍ମ ସଂଶୋଧନର ଅବସର ମିଥ୍‌କୁ ଯୁଗ ଯୁଗଧରି ବଢାଇ ଚାଲିଥାଏ । ବାଇବେଲ ବିଶେଷତଃ 'Old Testament'ର ଅଜସ୍ର ମିଥ୍ ଆହୁରି ଉଦ୍ଦେଶ୍ୟ ନିର୍ଦ୍ଦିଷ୍ଟ ଅର୍ଥପୂର୍ଣ୍ଣ ଓ ସୂକ୍ଷ୍ମତର ଭାବେ ପରବର୍ତ୍ତୀ ୟୁରୋପୀୟ ସାହିତ୍ୟରେ ସଂଯୋଜିତ ହୋଇଛି । ସାରଳା ମହାଭାରତରେ ସେହିପରି କେତେକ ଲୋକ ମିଥ୍ ଘଟଂଣା ପ୍ରବାହ (Sequence) ଭିତରେ ଅଧିକ ଅର୍ଥପୂର୍ଣ୍ଣ ଓ ମାର୍ମିକ ହୋଇଛି ।

ସାରଳା ସେ କାଳର ଯୌନଉଚ୍ଛୃଙ୍ଖଳା, ସନ୍ଦିଗ୍ଧ ଧାର୍ମିକତାକୁ ସଂଶୋଧନ କରିବା ପାଇଁ ତାଙ୍କ ମହାଭାରତରେ ଯେଉଁ ପ୍ରସ୍ତାବନା ସବୁବାଢ଼ିଛନ୍ତି ସେ ଦୃଷ୍ଟିରୁ ଆମେ ସାରଳାଙ୍କ ଧର୍ମଯାଜକୀୟ ଭୂମିକା (Prophetic Role)କୁ ପ୍ରତ୍ୟକ୍ଷ କରିଥାଉଁ । ଜଣେ ମହାକବି ସର୍ବମାନ୍ୟ ରାଷ୍ଟ୍ର ନେତା ପରି ଗୋଟିଏ ମହାଭାବନାରେ ଦୀକ୍ଷିତ କରିବା ପାଇଁ ଉଦ୍‌ବୋଧନ ଦେଇଥାଆନ୍ତି । ମହାଭାରତ, ରାମାୟଣ ତଥା ଭାଗବତପରି ଏପିକ ସାହିତ୍ୟରେ କବିଙ୍କ ବାଣୀ (Prophecy) ବା ଉଦ୍‌ବୋଧନକୁ ତେଣୁ ଆମେ ଲକ୍ଷ୍ୟ କରିଥାଉଁ ।

ଜଣେ ମହାକବି ସର୍ବଦା ଜଣେ ଜାତୀୟ କବି ହିଁ ହୋଇଥାନ୍ତି । ଗୋଟିଏ ଜାତିର ଧାର୍ମିକ ଇଚ୍ଛା, ରାଜନୀତିକ ଅଭିଳାଷ, ତା'ର ସାମାଜିକ ଦୁଃଖ ଦୁଃସ୍ଥିତି, ତା'ର ଆଶା ଓ ଆନନ୍ଦବୋଧ ସବୁକୁ ଗୋଟେ ଉଚାଙ୍ଗ କାଳର ସର୍ତ୍ତ ଭିତରେ ଜାତୀୟ କବି ପ୍ରକଟନ କରିଥାନ୍ତି । ସାରଳାଙ୍କ ମହାଭାରତ ନିର୍ବିବାଦରେ ଏକ ଜାତୀୟ ସାହିତ୍ୟ ।

ଗୋଟିଏ ବୃହତ୍ତର ଜାତୀୟ ଜୀବନର ଭାବନାକୁ ସାରଳାଙ୍କ ମହାଭାରତରୁ ଅନୁମାନ କରି ହେଉଛି କାଳ୍ପନିକ ଗଳ୍ପ ଗଳ୍ପାଂଶ ଭିତରେ ଜଣେ ଜାତୀୟ କବିର ସାମୂହିକ ସଦ୍‌ଭାବନା ତଥାପି ମିଶାମିଶି ହୋଇ ଥାଏ । ଚସରଙ୍କ 'କେଣ୍ଟର ବରୀ ଟେଲସ୍' ପରି ଏକ କାଳ୍ପନିକ କାହାଣୀ ଭିତରେ ଯେମିତି କିଛି ଜାତିଗତ ଓ ଧର୍ମଗତ ସୂଚନା ରହିଛି ସେମିତି ସୂଚନା ସାରଳା ମହାଭାରତରେ ଲକ୍ଷଣୀୟ ।

ଭାଷାଭିତ୍ତିକ ଜାତୀୟତା ବୋଧେ ସାରଳାଙ୍କ ଓଡ଼ିଆ ମହାଭାରତ ସୃଷ୍ଟି ପରି କଳ୍ପନାର ମୂଳ ପ୍ରୋତ୍ସାହନ । ଉଇକ୍ଲିଫ (Wycliffe) ଯେପରି ଲାଟିନ ଭାଷାଭିଜ୍ଞ ପାଦ୍ରୀ ମାନଙ୍କ ପ୍ରଭୁତ୍ୱ ଓ ଅସପତ୍ନ ପ୍ରତିଷ୍ଠାକୁ ଖର୍ବ କରିବା ପାଇଁ ଅଙ୍ଗୀକାର ବଦ୍ଧ ହୋଇ ଇଂରାଜୀ ଭାଷାରେ ବାଇବେଲ ଲେଖି ବାଇବେଲକୁ ସର୍ବସାଧାରଣଙ୍କ ଅଧିକ ନିକଟବର୍ତ୍ତୀ କରି ପାରିଲେ ସାରଳା ସେହିପରି ସଂସ୍କୃତ ବିଶାରଦ ମାନଙ୍କର ଘୃଣା ଓ ଅବଜ୍ଞାକୁ ଖାତିର ନକରି ଶୁଦ୍ରଭାଷା ପ୍ରାକୃତରେ ବିଶାଳ ମହାଭାରତ ରଚନାର ପ୍ରୟାସ କରିଥିଲେ ।

ଯଦି ଗୋଟିଏ ଚିତ୍ତରଞ୍ଜକ ସାହିତ୍ୟକୃତି ଗୋଟିଏ ଜାତିର ମୁକ୍ତି କାମୀ ହୁଏ ତା'ହେଲେ ସେହି ସାଧୁ ଓ କଲ୍ୟାଣକର ଅଭିଳାଷକୁ ବାଦଦେଇ ସାହିତ୍ୟର କଳାଗତ ଚୁଙ୍ଗିମାକୁ କଳନା କରି ହେବ ନାହିଁ ।

ଓଡ଼ିଶାର ଧାର୍ମିକ ତଥା ସାଂସ୍କୃତିକ ଉଦ୍‌ବର୍ତ୍ତନର ଇତସ୍ତତଃ ସୂଚନା, ତା'ର ଭୂମିସଂଲଗ୍ନ ବିପୁଳ ଲୋକ ଜୀବନ ତାର ଆର୍ତ୍ତିଅଶ୍ରୁ, ପ୍ରେମ ପୁଲକ, ତାର ଗୌରବବାହକ ବୀରତ୍ୱ ବ୍ୟଂଜିତ ଇତିହାସ, ସବୁକିଛିର ଅର୍ଥପୂର୍ଣ୍ଣ ସୂଚନା ସାରଳା ମହାଭାରତରେ ଅବଶ୍ୟ ରହିଛି । ମାତ୍ର ଏସବୁ କେବଳ ଅଛି ବୋଲି ସାରଳା ମହାଭାରତକୁ ଉଚ୍ଚାଙ୍ଗ ସାହିତ୍ୟ ବୋଲି କୁହାଯାଇ ପାରିବନି । ତାହା କେତେ କଳାତ୍ମକ ହୋଇ ପାରିଛି, ତାହା କେତେ ଅଧିକ ପ୍ରଭାବ ବା ଆବେଦନ ସୃଷ୍ଟି କରି ପାରିଛ ତାରି ଉପରେ ନିର୍ଭର କରେ ସାହିତ୍ୟର ଉଚ୍ଚମାନତା ।

ସାରଳାଙ୍କ ମହାଭାରତ, ଚଣ୍ଡିପୁରାଣ ଆଦି ରଚନାବଳୀ ଭାରତୀୟ ପୁରାଣ ସାହିତ୍ୟର କିଛି ଦାର୍ଶନିକ ଇଙ୍ଗିତ ଗ୍ରହଣ କରିଛି । ବ୍ୟାସଙ୍କ କୃତ ମୂଳମହାଭାରତର ମୂଳ ଗଳ୍ପ ପିଣ୍ଡକୁ ପୁଣି ସାରଳା ମହାଭାରତରେ ଗ୍ରହଣ କରାଯାଇଛି । ମାତ୍ର ସର୍ବତ୍ର ପ୍ରତିଟି ଉପାଦାନରେ ସାରଳାଙ୍କ ନୂତନତା କୁ ସ୍ପଷ୍ଟଭାବେ ଲକ୍ଷ୍ୟ କରାଯାଇ ପାରେ ।

ବାରବାର ଗୋଟିଏ ବିଷୟକୁ ଲେଖା ଯାଉଥିଲେ ମଧ ପ୍ରତ୍ୟେକଟି ପ୍ରତ୍ୟେକଠାରୁ ଅଲଗା ହୋଇଥାଏ । ପୁନଃସଂସ୍ଥାପନର ପ୍ରକ୍ରିୟା ବିଶ୍ୱ ସାହିତ୍ୟରେ ନିରନ୍ତର ଚାଲିଛି । ସବୁକିଛି ସମାନହେବା ସତ୍ତ୍ୱେ କିଛିନା କିଛି ବୈଶିଷ୍ଟ୍ୟ ଅବଶ୍ୟ ବାରି ହୋଇପଡ଼େ ।

ସେ ଦୃଷ୍ଟିରୁ ସାରଳା ବ୍ୟାସଙ୍କ ଠାରୁ ଅନେକ କ୍ଷେତ୍ରରେ ନିଜପାଇଁ ଅଲଗା ବାଟ ବାଛି ନେଇଛନ୍ତି । ବ୍ୟାସଙ୍କ ମୂଳ ସଂସ୍କୃତ ମହା ଭାରତ ତଥା ସାରଳା ମହାଭାରତ ମଧ୍ୟରେ ପର୍ବ ଅନୁକ୍ରମଣିକା ସମାନ ନୁହେଁ । ବ୍ୟାସଙ୍କ ମହାଭାରତର ଲକ୍ଷେ ଶ୍ଳୋକ ରହିଛି । ସାରଳାଙ୍କ

ମହାଭାରତରେ ଲକ୍ଷେ ଚାଳିଶ ହଜାର ଶ୍ଳୋକ ରହିଛି । ସାରଳା ମହାଭାରତରେ ସଂଯୋଜିତ ଏହି ଅଧିକ ଚାଳିଶ ହଜାର ଶ୍ଳୋକ ହୋଇଛି ଓଡ଼ିଶାରେ ବିଛୁଡ଼ି ହୋଇ ପଡ଼ିଥିବା ବହୁ ଲୋକ ବଶ୍ୱାସ, ପ୍ରବାଦ, ଜନଶ୍ରୁତି ଓ ନୂତନ ପ୍ରକ୍ଷେପର ବର୍ଣ୍ଣନା ।

ସାରଳା ମହାଭାରତ ମୂଳ ସଂସ୍କୃତ ମହାଭାରତର ଅନୁକୃତି ମାତ୍ର ନୁହେଁ । ସାରଳା ମହାଭାରତର ତୁଳନାତ୍ମକ ଅଧ୍ୟୟନ କରିଥିବା ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ତାଙ୍କର ଶ୍ରୀଭାରତ ଦର୍ପଣ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

'x x ଏହି କବି ମୂଳଗ୍ରନ୍ଥର ଅନୁବାଦ କରି ନାହାନ୍ତି' କିମ୍ବା ଅବିକଳାନୁକରଣରେ ଲେଖିନାହାନ୍ତି । ମୂଳଗ୍ରନ୍ଥର ପ୍ରଗାଢ଼ ଶୁଶ୍ରୁଷାରେ ଏକାନ୍ତ ଅନୁରକ୍ତ ଥାଇ ସମଗ୍ର ଭାରତର ସ୍ଥୂଳ ସ୍ଥୂଳ ବିଷୟ ଓ ଆମୂଳାନ୍ତ ଘଟଣାଂଶ ମାନ ମାତ୍ର ସ୍ୱୀୟ ଅବ୍ୟାହତ ସ୍ମୃତିକୋଷରେ ପ୍ରଦୀପ୍ତରଖି ଅସାମାନ୍ୟ କଳ୍ପନା ଶକ୍ତି ଓ ବିଷୟ ସଂବିଧାନ ପ୍ରବୀଣତାର ବଳରେ ବଳୀୟାନ ହୋଇ, ଅଙ୍ଗୀକରଣ, ବିସ୍ତୃତୀକରଣ, ଅନୁକ୍ତ ପ୍ରକ୍ଷେପ ଓ ଉକ୍ତନିକ୍ଷେପାଦି କ୍ରମରେ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଲେଖି ଯାଇଅଛନ୍ତି ।

ସାରଳାଙ୍କ ଚଣ୍ଡିପୁରାଣ ମଧ ସେହିପରି ସଂସ୍କୃତମାର୍କଣ୍ଡେୟ ଚଣ୍ଡୀର୍ ଓଡ଼ିଆ ଅନୁବାଦ କେବଳ ନୁହେଁ । ସାରଳାଙ୍କ ମହାଭାରତ, ଚଣ୍ଡୀପୁରାଣ, ବିଲଙ୍କାରାମାୟଣ ଆଦି ମହାପୁରାଣ ତଥା ସାହିତ୍ୟିକ ମହାକାବ୍ୟର ଏକ ବିଚିତ୍ର ସମନ୍ୱୟ । ମହାପୁରାଣର ଲକ୍ଷଣ ସବୁହେଲା- ସର୍ଗ, ବିସର୍ଗ, ବୃତ୍ତି, ରକ୍ଷା, ମନ୍ୱନ୍ତର, ବଂଶ, ବଂଶାନୁଚରିତ, ସଂସ୍ଥା, ହେତୁ, ଆପ୍ରାଶୟ ଇତ୍ୟାଦି । ବାୟୁପୁରାଣରେ ଉଲ୍ଲେଖଅଛି— 'ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶ ମନ୍ୱନ୍ତରାଣିଚ/ ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚ ଲକ୍ଷଣଂ' । ସେହିପରି ପୁରାଣର ଦଶଗୋଟି ଲକ୍ଷଣ ସଂପର୍କରେ 'ଶ୍ରୀମହାଭାଗବତ ଗୀତା'ରେ କୁହାଯାଇଛି :

'ପୁରାଣ ଲକ୍ଷଣଃ ବ୍ରହ୍ମନ ବ୍ରହ୍ମର୍ଷି ବିର୍ନି-ରୂପିତମ
ଶୁଶ୍ରୁଷ୍ୱ ବୁଦ୍ଧି ମାଶ୍ରିତ୍ୟ ବେଦ ଶାସ୍ତ୍ରାନୁସାରତଃ
ସର୍ଗୋସ୍ୟର୍ଥ ସବର୍ଗଶ୍ଚ ବୃତ୍ତୀ ରକ୍ଷାନ୍ତ ରାଣିଚ୍
ବଂଶୋବଂଶାନୁ ଚରିତଂ ସଂସ୍ଥା ହେତୁର ପ୍ରାଣୟଃ
ଦଶଭିର୍ଲକ୍ଷଣୈ ଯୁକ୍ତଂ ପୁରାଣଂ ତତ୍ ବିଦୋବିଜୁଃ
କେଚିତ୍ ପଞ୍ଚବିଧଂ ବ୍ରହ୍ମନ ମହକଲ୍ପ ବ୍ୟବସ୍ଥାୟ ।'

ସାରଳାଙ୍କ ମହାଭାରତ ଏଦୃଷ୍ଟିରୁ ଏମିତିଖାସ ମହାପୁରାଣ ଧର୍ମୀ ନୁହେଁ । ବ୍ୟାସଙ୍କ ମୂଳ ସଂସ୍କୃତ ମହାଭାରତର ଗୋଟେସାମଗ୍ରିକ ଦିର୍ଶନାୟିତ ଆଟୋପ ଆମେ ସାରଳା ମହାଭାରତରେ ଦେଖିବାନି; ଯଦିଓ ସ୍ଥାନେ ସ୍ଥାନେ କିଛି ଅଲୌକିକତାର ବର୍ଣ୍ଣନା ରହିଛି ।

ସାରଳା ମହାଭାରତର ଚରିତ୍ର ସବୁକୁ ଯଥା ସମ୍ଭବ ପାର୍ଥିବ କରି ପକାଇଛନ୍ତି । ଏ ମାଟିର ଚଳଣୀ, ଆମର ସାମାଜିକ ଅଭ୍ୟାସ ଓ ବ୍ୟବହାରର କିଛି ଲୌକିକ ପ୍ରକାଶ ସାରଳା

ମହାଭାରତକୁ ଅଧିକ ଆତ୍ମୀୟ ଓ ଜୀବନ୍ତ କରିଛି । ତତ୍ତ୍ୱ ଦର୍ଶନ ଉପଦେଶକୁ ଗୌଣ କରି ବଞ୍ଚିବାର ସ୍ୱପ୍ନ ଓ ସମ୍ମୋହନ ସବୁ ସାରଳାଙ୍କ ଚରିତ୍ର ଗୁଡ଼ିକୁ ଅଧିକ ଜାନପଠିକ ବାସ୍ତବତା ଆଣି ଦେଇଛି ।

ସବୁକାଳର ସବୁଠି ମହାକାବ୍ୟ ଗୋଟେ ସ୍ୱପ୍ନାୟିତ କାଳ୍ପନିକ କାହାଣୀ ମାତ୍ର ନୁହେଁ; ନହେବା ବି ଉଚିତ । ମାଟି ଉପରେ ମଣିଷଙ୍କ ଭିତରେ ତାହା ଯେତେ ଅଧିକ ବିଶ୍ୱାସନୀୟ ହେବ ସାହିତ୍ୟର ଯାବତୀୟ ଆଙ୍ଗିକ ପରିବର୍ତ୍ତନ ସତ୍ତ୍ୱେ କାଳକାଳକୁ ତାହା ବଞ୍ଚିପାରିବ । କଳା ଓ କଳ୍ପନାର ସାହିତ୍ୟ ତା'ର ବିଶ୍ୱାସନୀୟତା (Credibility) ଯୋଗୁଁ ତା'ର ସଂଭାବ୍ୟ ବାସ୍ତବତା ଓ ଜୀବନ ପ୍ରତି ସତ୍ୟଶୀଳତା ଯୋଗୁଁ କାଳଗର୍ଭରେ ବଞ୍ଚିଥାଏ ।

ମହାକାବ୍ୟର ନୃତାତ୍ତ୍ୱିକ ଭାବାବେଗ ସର୍ବଦା ଏକ ଅତି ଉଜ୍ଜ୍ୱଳ ପକ୍ଷ । ତାହା କେବଳ ସମସ୍ୟାଧର୍ମୀ ଓ ସେହିକାରଣରୁ ଚଳମାନ ନୁହେଁ । ସାଟାୟାର୍ ଓ ଏପିକ ମଧ୍ୟରେ ପାର୍ଥକ୍ୟ ଏଇଠି । ଏପିକ୍ ନିସର୍ତ୍ତ ଭାବରେ ଏକ ଚିରନ୍ତନ ଜୀବନଛବି ଅଙ୍କନ କରେ । ଏପିକ୍‌ର ଦୀପ୍ତି ଏହି ଅତି ମାର୍ମିକ ଓ ଏକାନ୍ତ ମାନବୀୟ ଜୀବନ ଛବି ଆଙ୍କିବାରେ ।

ସାରଳା ମହାଭାରତରେ ଏହି ମାନବୀୟ ଜୀବନ ଛବିଟି ସତରେ ଭାରି ପ୍ରାଣପୂର୍ଣ୍ଣ ଓ ଅତି ମାତ୍ରାରେ ଲୌକିକ; ଯେଉଁଥି ପାଇଁ କୁନ୍ତୀ, ଗାନ୍ଧାରୀ, ଦ୍ରୌପଦୀ, ଭୀମ, ହିଡମ୍ବାକ୍ଷୀ, ଅର୍ଜ୍ଜୁନ, ଅଭିମନ୍ୟୁ, ବେଲାଳସେନ, ବିଦୂର ଆଦି ଚରିତ୍ର ଉଷ୍ମ ମାନବୀୟ ସମ୍ବେଗ ଯୋଗୁଁ ଅଧିକ ଆପଣାର ଲାଗନ୍ତି ।

ଏହି ସବୁ ଏକାନ୍ତ ଜୀବନ ଛବିକୁ ଆଙ୍କିବା ପାଇଁ ସାରଳା ସେହିପରି ଲୋକମୁଖରେ ବଞ୍ଚିଥିବା ଜୀବନ୍ତ ଭାଷାବି ବ୍ୟବହାର କରିଛନ୍ତି । ତାଙ୍କ ଭାଷା ତେଣୁ ଏକଶୁଦ୍ଧ, ଆଳଙ୍କାରିକ ବକ୍ର ସାହିତ୍ୟିକ (highly polished for literary purpose) ଭାଷା ନୁହେଁ ।

ସଂସ୍କୃତ କାବ୍ୟତତ୍ତ୍ୱ ନିୟମ ଅନୁଯାୟୀ ମହାକାବ୍ୟର ଭାଷା ସାଧୁ ଓ ସଂସ୍କୃତ ହେବାହିଁ ଉଚିତ । ରୀତିଯୁଗୀୟ କବିମାନେ ଓଡ଼ିଆ ପରି ପ୍ରାକୃତ ଭାଷାରେ ସଂସ୍କୃତ ସାହିତ୍ୟକୁ ଅନୁସରଣ କରି ଯେଉଁ ଦୁର୍ବହ ଅଳଙ୍କାରମାନ ଖଞ୍ଜିଛନ୍ତି ଏପରିକି ଜଗନ୍ନାଥ ଦାସଙ୍କ ପରି ଭାଗବତକାର ତାଙ୍କ ଭାଗବତରେ ଯେଉଁ କାବ୍ୟତର୍କଣା ଓ ଦାର୍ଶନିକତର ଦୁର୍ଗମ ବଳୟ ସବୁ ସୃଷ୍ଟି କରିଛନ୍ତି ମହାଭାରତ ପରି ବହୁପ୍ରସଙ୍ଗଯୁକ୍ତ ଆଖ୍ୟାନକୁ ନେଇ ବିଶାଳକାୟ ଗ୍ରନ୍ଥ ରଚନା କରିଥିବା ଶକ୍ତିମାନ ସାରଳା କିନ୍ତୁ ସେପରି ଆଦୌ କରି ନାହାନ୍ତି । ଏକାନ୍ତ ଶୂନ୍ୟଗର୍ଭ ତଥା ନିରର୍ଥକ ଆଳଙ୍କାରିକ କୃତ୍ରିମତା ପ୍ରତିନୁହେଁ ଅନ୍ତରୀଣ ମାନବୀୟ (Human Passion) ପ୍ରତି ଅଧିକ ବିଶ୍ୱସ୍ତ ଓ ସତ୍ୟଶୀଳ ଥିଲେ ।

ମାନବୀୟ ସମ୍ବେଗ ଓ ତା'ର ପ୍ରତୀକାତ୍ମକ ଅଭିବ୍ୟକ୍ତି ସାହିତ୍ୟର ସବୁଠାରୁ ବଡ଼ ସୌନ୍ଦର୍ଯ୍ୟ; ଯେଉଁଥି ପାଇଁ ପାଶ୍ଚାତ୍ୟ କାବ୍ୟଧାରାର ବହୁ ପ୍ରମୁଖ ବ୍ୟକ୍ତି ମାନବୀୟ ସମ୍ବେଗ ବ୍ୟତିରେକ ସବୁକିଛି ଅବାସ୍ତବ 'Without human passion every thing is unereal' ବୋଲି କହିଛନ୍ତି ।

ଆମ ସଂସ୍କୃତ କାବ୍ୟ ସାହିତ୍ୟ ପରମ୍ପରାରେ ମହାକାବ୍ୟର ଗୁଣ ଓ ଲକ୍ଷଣ ଯାହା ସେ ଦୃଷ୍ଟିରୁ ସାରଳା ମହାଭାରତ କେତେ ମହାକାବ୍ୟ ଗୁଣ ବିମଣ୍ଡିତ ଓ ତାର କାବ୍ୟ ଗୌରବ କେତେ କମ୍ ବା ବେଶୀ ସେମିତି ବିଚାର କରିବା ଠାରୁ ସର୍ବକାଳୀନ ଉଚ୍ଚାଙ୍ଗ ସାହିତ୍ୟର ଗୁଣ ଓ ଲକ୍ଷଣ ଦୃଷ୍ଟିରୁ ସାରଳା ମହାଭାରତର ସାହିତ୍ୟିକ ମୂଲ୍ୟ ନିର୍ଣ୍ଣିତ ହେବା ଅଧିକ ଅର୍ଥପୂର୍ଣ୍ଣ ହୋଇ ପାରିବ ।

ଏଠାରେ କେବଳ ସାରଳାଙ୍କ ମହାଭାରତଟି ଗୋଟିଏ ଉଚ୍ଚାଙ୍ଗ ସାହିତ୍ୟର ଗୁଣ ଓ ଗୌରବ ଦୃଷ୍ଟିରୁ ଅନୁଶୀଳିତ ହୋଇଛି । ତାଙ୍କର ଅନ୍ୟାନ୍ୟ ରଚନା ଆଲୋଚନା ପରିସରଭୁକ୍ତ ହୋଇନି ।

ସବୁଠାରୁ ବଡ଼କଥା ହେଲା ସାରଳା ଯେଉଁ ସମୟରେ ଓ ଯେଉଁ ପରିବେଶରେ ଏପରି ବିଶାଳ କାବ୍ୟସୌଧ ନିର୍ମାଣ କରିଗଲେ ତାହା ସମସ୍ତଙ୍କୁ ବିସ୍ମିତ କରିଦିଏ । ସାରଳାଙ୍କ ଏପରି ବିଶାଳକାୟ କାବ୍ୟ ସୃଷ୍ଟିର ପରିଯୋଜନାକୁ ଅନନ୍ୟ ପ୍ରତିରୋଧର ସାରସ୍ୱତ ପୁରୁଷଙ୍କ ଅନୁପମ ସୃଜନ ଅଭିଳାଷର ଆଗ୍ନେୟ ସଙ୍କଳ୍ପ ବୋଲି କୁହାଯାଇ ପାରେ ।

ଜଣେ ମହାକବିଙ୍କ ଗୁଣ ହେଉଛି ଚରମ ବିଡ଼ମ୍ବନା ଓ ଇତିହାସର ଚରମ ଦୁଷ୍କାଳରେବି ସମସ୍ତଙ୍କ ପାଇଁ ଗୋଟେ ଶୁଭଙ୍କର ସୁନ୍ଦର ସ୍ୱପ୍ନ ଦେଖିବା । ସହଜ ତାନ୍ତ୍ରିକ ମାନଙ୍କର ଯୌନବ୍ୟଭିଚାର ସାରଳାଙ୍କୁ ବ୍ୟଥିତ କରିଥିଲା ନିଶ୍ଚୟ । ସାରଳାଙ୍କ ମହାଭାରତରେ ସଂଯୋଜିତ କୃଷ୍ଣ କର୍ତ୍ତୃକ ଉଲଙ୍ଗ ଶୃଙ୍ଗାରର ବର୍ଣ୍ଣନା ସବୁ କାବ୍ୟର ମୌଳ ପ୍ରତିପାଦନ ସମକ୍ଷରେ ଏକ ଏକ ନେଗେଟିଭ ଚିତ୍ର । ସଂସ୍କୃତ ମହାଭାରତରେ ଶ୍ରୀକୃଷ୍ଣ ସହଜ ସୁନ୍ଦରୀ ଓ ଖନିକାରର ଏହି ଉପାଖ୍ୟାନ ନାହିଁ । ଏହିପରି ଅନେକ କଥା ଯାହା ସାରଳା ଦାସ ଅବତାରଣା କରିଛନ୍ତି ଓ ଅଧିକତର କାବ୍ୟ ସୌନ୍ଦର୍ଯ୍ୟ ସୃଷ୍ଟିର ସହାୟକ ହୋଇଛନ୍ତି ତାହା ମୂଳ ସଂସ୍କୃତ ମହାଭାରତରେ ନାହିଁ ।

ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ ଉପାଖ୍ୟାନଟି ସାରଳା ମହାଭାରତରେ ଯେପରି ସଂଯୋଜିତ ହୋଇଛି ତାହା ବରଂ ଏକ ଗମ୍ଭୀର ଟ୍ରାଜେଡ଼ି ପ୍ରଭାବ ସୃଷ୍ଟି କରି ପାରିଛି ଓ ମହାକାବ୍ୟର ପରିସମାପ୍ତିକୁ ଅଧିକ ପ୍ରଭାବଦୀପ୍ତ କରି ପାରିଛି ।

ପରିଶେଷରେ ଏତିକି କୁହାଯାଇପାରେ ଯେ ମନୁଷ୍ୟ ଜୀବନ ଓ ତାର ପାରିପାର୍ଶ୍ୱିକତାର ବିପୁଳ ଓ ବିଶାଳ ଛବି ଅଙ୍କନ କରିବାରେ ସାରଳା ଦାସଙ୍କ ପ୍ରତିଭା ଅନନ୍ୟ । ତାଙ୍କର କାବ୍ୟ ପରିଯୋଜନାଗତ ଢଙ୍ଗିମା ଅନ୍ୟତ୍ର, ଅନ୍ୟମାନଙ୍କରଠାରେ ଏକାନ୍ତ ଦୁର୍ମିଳ ।



# ଗଲେଣି ତୋ ସଙ୍ଗତୁ ଯେତେକ ଜନ

ଏ ସଂସାର ସତରେ କାଳକାଳ ଧରି ଏକ ମାୟାର ପୃଥିବୀ । ଯେତେ ଆସକ୍ତ ହେଲେ ବି ଏ ସଂସାରରୁ କେହି ମଲାବେଳେ ଗଣ୍ଠିରେ କିଛି ବାନ୍ଧିନେଇ ଯାଇ ପାରିବନି । ନିଃସ୍ୱହାତରେ ତାକୁ ଏ ପୃଥିବୀରୁ ଯିବାକୁ ପଡ଼ିବ ।

ଗଲାବେଳେ ପଛରେ ରହିଯିବ ପୁରୁଣା ଏ ପାର୍ଥିବ ସଂସାର । ଆତ୍ମୀୟ ପରିଜନ ଆଉ ସ୍ମୃତି ହୋଇ କିଛି ଅମୂର୍ତ୍ତ ବିଷୟ ।

କବିଟିଏ ବୋଧେ ସେଇଠି ବେଶୀ ଆଶ୍ଚର୍ଯ୍ୟ ହୋଇଛି ଏ ପୃଥିବୀ ଯେଉଁଠି ନିତ୍ୟକାଳ ପାଇଁ ମରଣଶୀଳ ହେଲେ ବି ମଣିଷ ମୃତ୍ୟୁଞ୍ଜୟୀ ଭଳି ବଞ୍ଚେ ଆଉ ସେମିତି ଆଚରଣ କରେ ।

ମଣିଷର ଏ ଭବମାୟା, ଏ ଆସକ୍ତି କେଡ଼େ ଅସାର ସତରେ । କବିଟିଏ କାଳକାଳ ଧରି ମୌନ ହୋଇ ସବୁଦେଖେ । ମଣିଷର ଏ ଅସାର ପୃଥିବୀରେ ପ୍ରମତ୍ତ ହେବା ଜନିତ ନିର୍ବୋଧତାକୁ ସେ ଉପହାସ କରିପାରେ ନାହିଁ, ବରଂ କେବଳ ଦୁଃଖ ପ୍ରକାଶ କରେ ।

ଚଉତ୍ରିଶଟି ବର୍ଣ୍ଣ ଅକ୍ଷର ନିୟମ କ୍ରମରେ କବି ଭକ୍ତ ଚରଣ ଦାସ ମନବୋଧ ଚଉତିଶା ରଚନା କରି ପାଠକ ଅନ୍ତରରେ କାଳ କାଳ ଧରି ଅଭିଷିକ୍ତ ହୋଇ ରହିଛନ୍ତି ।

ଯେବେ ଓଡ଼ିଶାର ପୁରପଲ୍ଲୀରେ ସନ୍ଧ୍ୟା ନଇଁ ଆସେ, ଚଢ଼େଇମାନେ ବସାକୁ ବାହୁଡ଼ି ଆସନ୍ତି ସେତିକି ବେଳେ ଅନେକତ୍ର ଭକ୍ତ ଚରଣଙ୍କ ଏଇ ବୈରାଗ୍ୟ ସଙ୍ଗୀତ ଗୀତ ହୁଏ :

"ଗଲେଣି ତୋ ସଙ୍ଗତୁ ଯେତେକ ଜନ
ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନ
ଘରବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟଛୁଟିଲେ ତୋତେ ବୋଲିବେ ଭୂତରେ
ଘର ଘରଣୀ ଦେହ କିଳାଉ ଥିବେ
ଘେନି ବନ୍ଧୁ ବାନ୍ଧବ ଶୁଧ ହୋଇବେ ।"

ମଣିଷର ହୃଦୟ ବୈରାଗ୍ୟ ଭାବନାରେ କରୁଣାର୍ଦ୍ର ନହେଲେ ତା ଅନ୍ତରର କୌଣସି ବିଷୟ ସିଦ୍ଧ ହୁଏ ନାହିଁ ।

ବୈରାଗ୍ୟର ଉପଲବଧି ମନୁଷ୍ୟ ହୃଦୟର ଯେପରି ଏକ ବଡ଼ କବିତ୍ୱ ସେହିପରି ଶୁଦ୍ଧ ସାଧୁତା ମଧ । ବୈରାଗ୍ୟ ଆଉ ଅନାସକ୍ତି ଜନିତ କାରୁଣ୍ୟ ମଣିଷ ଅନ୍ତରର ଶୃଙ୍ଗାର ଭାବନାକୁ ମଧ ଶୁଦ୍ଧସୁବର୍ଣ୍ଣଦୀପ୍ତ କରିଦିଏ ।

ବୈରାଗ୍ୟ ଓ ଅନାସକ୍ତି ମନୁଷ୍ୟ ହୃଦୟର ବଡ଼ ଧନ । ଶଙ୍କରାଚାର୍ଯ୍ୟଙ୍କ ଭଳି ଯୋଗୀ, ଯାଜ୍ଞବଲ୍‌କ୍ୟଙ୍କ ପରି ଋଷି ସେହି ଧନରେ ପ୍ରକୃତରେ ଧନୀ ହୋଇଛନ୍ତି ।

ମରଣ ଆଗରେ ଅଛି ଜାଣିଲେ ଜୀବନ ସୁନ୍ଦର ଲାଗେ । ହଜାରେ ଗହଳ ଚହଳ ଭିତରେ ଜଣେ ପ୍ରାଣରେ ନିର୍ଜ୍ଜନତା ଅନୁଭବ କରୁ ଏହା ହିଁ ତ ଚିର କାଳର ପ୍ରାର୍ଥନା । ଏ

ଆସକ୍ତ ସଂସାରରେ ଜଣେ ନିରବଧି ଯୋଗୀଟିଏ ପରି ଅନାସକ୍ତ ହୋଇ ରହୁ ଏହାହିଁ ତ ଅସଲ କବିତ୍ୱ ।

ମଥୁରା ମଙ୍ଗଳର କବି ଭକ୍ତ ଚରଣ ଏହି କବିତ୍ୱ ଏହି ବୈରାଗ୍ୟ ଭାବନାର ଜୟଗାନ କରିଛନ୍ତି ।

ସେଦିନ ସୁନାଖଳା ମଠରେ ଭକ୍ତଚରଣ ହୁଏତ ଅସଂଖ୍ୟ ଝଡ଼ରାତି ବିତାଇଥିବେ, ଅସଂଖ୍ୟ ଫଗୁଣବି ହୁଏତ ତାଙ୍କୁ ପ୍ରବୋଧିତ କରିଥିବ । କେତେବେଳେ ଉଦ୍‌ଫୁଲ୍ଲିତ ହୋଇ ପୁଣି କେତେବେଳେ ଥକାମନ ହୋଇ ବସି ରହିଥିବେ ।

ଭକ୍ତଚରଣ ମୌନ ହୋଇ ମନବୋଧ ଚଉତିଶାର ପଦ ଯୋଡ଼ିଥିବେ । ଭବମାୟା ତାଙ୍କୁ ହୁଏତ ବ୍ୟଥିତ କରି ଦେଇଥିବ । ସେ ବିଷାଦଗ୍ରସ୍ତ ହୋଇଥିବେ । ଜୀବନକୁ ନେଇ ଭାରି ମତୁଆଲା ହେଉଥିବା ଲୋକଙ୍କୁ ସେ କଦାପି ତାରିଫ୍ କରି ପାରୁନଥିବେ ।

ତାଙ୍କର ଏଇ ଅନାସକ୍ତ କବି ଆତ୍ମାକୁ କିଏ ବୁଝୁଥିବ ବା କିଏ ବୁଝୁନଥିବ । ଚିତ୍ର ପ୍ରତିମାପରି ଦିଶୁଥିବା ସୁନ୍ଦର ସୁନ୍ଦରୀ ମାନଙ୍କ ଅନ୍ତସ୍ଥଳ ଯେପରି ଭାରି କର୍ଦ୍ଦମ ଦିଶୁଥିବ । ସେମାନେ ସଭିଏଁ ଯେପରି କାଳ କବଳିତ ହେଉଥିବେ ।

ମଥୁରା ମଙ୍ଗଳର କବି ଦୂର ଗାଁର ବାଜାଗୀତ, ମହୋତ୍ସବର ନୃତ୍ୟ ଓ ଗୀତ ଶୁଣି ପ୍ରବୋଧିତ ହୋଇ ଯାଇଥିବେ । ଜନପଦର ଗୀତସବୁ ତାଙ୍କୁ ଅପୂର୍ବ ଶିହରଣ ଦେଉଥିବ ।

ଭକ୍ତଚରଣ ଅନାସକ୍ତ ଯୋଗୀଟିଏ ପରି ହୁଏତ ସୁନାଖଳାରେ ଚଙ୍କ ପ୍ରଚଙ୍କ କରୁଥିବେ । ବିଷୟାସକ୍ତି ତାଙ୍କୁ ଅଳିକ ଲାଗୁଥିବ । ସେ ଯୋଗୀ ପରି ମୌନ ହୋଇ ଯାଉଥିବେ । ଜାନପଦିକ ମାୟା ତାଙ୍କୁ କବଳିତ କରି ପାରୁ ନଥିବ ।

ସାହିତ୍ୟ, ସଙ୍ଗୀତ ତାଙ୍କ ପ୍ରାଣକୁ ହୁଏତ ଏକାନ୍ତ ଅନୁରାଗମୟ କରି ରଖିଥିବ । ଲୋକଗୀତର ସ୍ୱର ହୁଏତ ତାଙ୍କୁ ଭାବପ୍ରବଣ କରି ଦେଇଥିବ ।

ମଥୁରା ମଙ୍ଗଳର ସାଙ୍ଗୀତିକତା ସେପାଇଁ ଅପୂର୍ବ ହୋଇଛି । ସେଥିରୁ ଦିପଦ କେହି ଗାଇଲେ ସ୍ୱତଃ ଭକ୍ତ ଚରଣ ଦାସ ମନେ ପଡ଼ିଯାଆନ୍ତି ।

ଓଡ଼ିଶାର ପ୍ରତିଟି ଜନପଦରେ ଭକ୍ତଚରଣଙ୍କ ମଥୁରାମଙ୍ଗଳର ଏ ଗୀତ ସମସ୍ତଙ୍କ ପ୍ରାଣରେ ଶିହରଣ ସୃଷ୍ଟିକରେ ।

"ଆରେ ବାବୁ ଶ୍ୟାମଘନ
ତୁ ଗଲେ ମଧୁଭୁବନ
କାହା ମୁଖ ଅନାଇ ବଞ୍ଚିବି"

ପରମ ବୈଷ୍ଣବ କବି ଭକ୍ତଚରଣ ବାଳକୃଷ୍ଣ ଭିତରେ ମାଧୁର୍ଯ୍ୟର ପରମ ରୂପ ଦେଖିଛନ୍ତି । ଭାବରେ ବିଚଳିତ ହୋଇ ନଥିଲେ ତାଙ୍କ କଣ୍ଠରୁ ଏ ଅପୂର୍ବଗୀତ ଆଦୌ ଝରିନଥାନ୍ତା ।

ମନବୋଧ ଚ଼ଉତିଶାର କବି ଭକ୍ତଚ଼ରଣ ଓଡ଼ିଶାର ଆବାଳ ବୃଦ୍ଧ ବନିତା ସମସ୍ତଙ୍କ ସମୀପକୁ ଯେପରି ଯାଇ ପାରିଛନ୍ତି । ତାଙ୍କ ମନବୋଧ ଚ଼ଉତିଶାରୁ ପଦେ ଯେ ଶୁଣିବ କିମ୍ବା ଗାଇବ, ବୈରାଗ୍ୟର ଭାବନା ତାକୁ ଅବଶ୍ୟ ଉଦାସ କରିଦେବ ।

ରାତି ପହରେ ଆହୁରି ଥିବ, ଗାଁର ବୁଢ଼ାଟିଏ ମନବୋଧ ଚ଼ଉତିଶାରୁ ପଦ ମେଲିଥିବ ।

"କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଟ<br>
କି ଘେନି ଯିବୁ ତୋର ଛୁଟିଲେ ଘଟରେ ।<br>
ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି,<br>
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟିରେ ।<br>
ଖଟ ପଲଙ୍କେ ମନ ଶେଯାଇ ଶୋଉ<br>
ଖଳଦୁର୍ଗନ୍ଧ ହେବ ଏ ତୋର ଦେହୁରେ ।"

ବୁଢ଼ୀଟିଏ କତରା ଯାକି ଶୋଇଥିବ ମରଣକୁ ଅପେକ୍ଷାକରି । ଦୂର ଗାଁର ମଉଛବ ରାତିର ବାଜାଗୀତ ଉଛୁଳୁଥିବ । ଗାଁର ନିଶବ୍ଦ ପାହାନ୍ତି ପହର । ପଥୁରିଆ ସମୟ । ଜନ୍ମ ମରଣର ଖେଳ ଯେମିତି ସବୁଠି ।

କେତେ କାରୁଣ୍ୟର ଜୁଆର । କେତେ ଜମାଟ ବନ୍ଧା ଉଦାସୀନତା । ସେଇଠି ଋତୁ ବଦଳେ । ସେଇଠି ସଞ୍ଜ ସକାଳକୁ ମନବୋଧ ଚ଼ଉତିଶା ଗୀତହୁଏ ।

ଏ ସଂସାର ଅନିତ୍ୟ । ଏଠି ସବୁ କିଛି ଅସ୍ଥିର । ଯୌବନ କ୍ଷଣସ୍ଥାୟୀ । କାହାର ମରଣ ତାରିଖ କେବେ କେହିବି ଜାଣେନି ।

"ଭକ୍ତ ଚ଼ରଣ ଲେଖିଛନ୍ତି :<br>
ଚିତ୍ରପ୍ରତିମା ପ୍ରାୟେ ଦିଶୁ ସୁନ୍ଦର<br>
ଚିରି ଭିତରେ ଦେଖ କି ନାରଖାର ରେ<br>
ଟଳି ପଡ଼ିଲେ କେହି ନୋହେ କାହାରି<br>
ଟେରା ଭିତରେ ଯେହ୍ନେ ଅପୂର୍ବ ନାରୀରେ ।"

ଅମର କବି ଭକ୍ତ ଚ଼ରଣ ଓଡ଼ିଶାର ଜନପଦକୁ ଆଉ ଏକ ଅତି ଲୋକପ୍ରିୟ ଗୀତିମଧୁର ଚ଼ଉତିଶା ଦାନ କରି ଯାଇଛନ୍ତି । ତାହା ହେଉଛି 'କଳା କଳେବର ଚ଼ଉତିଶା' ।

"କଳାକଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ<br>
କରନ୍ତି ମଥୁରା ବିଜୟ ଚାହିଁ ଦେଖ ସଙ୍ଘାତ<br>
ଖସି ପଡୁଛି କି ଆକାଶୁ କେଉଁ ଗଙ୍ଗାଯମୁନା<br>
କ୍ଷୀର ସଙ୍ଗେ ପ୍ରାଣ ଶୋଷିଲେ ନାଶ ଗଲା ପୁତନା ।"



# ସାରସ୍ୱତ ମହିମାର ତୀର୍ଥ : ନିଭୃତ ନିଳୟ

ସାରସ୍ୱତ ଇତିହାସରେ ସାରସ୍ୱତ ପୁରୁଷମାନଙ୍କ ଜୀବନ ବଞ୍ଚିବା ବିଷୟରେ ବହୁ ବିଚିତ୍ର କଥା ଶୁଣାଯାଏ । ବେଳେ ସେ ସବୁକୁ ଅବିଶ୍ୱାସ କରି ହେବନି କି ବାସ୍ତବ ବୋଲି ଗ୍ରହଣ ବି କରି ହେବନି ।

ଏଇ ଘଟଣାଟି ଗୋଟେ ପୌରାଣିକ କାହାଣୀର ରସମୟ କଥାଭାଗ ଭଳି ଲାଗେ । ବୁଢ଼ା ବାପର ମନୋରଂଜନ ପାଇଁ ଗୋଟେ ନିର୍ଜନ ନଈଚଢ଼ାରେ ପୁଅଟିଏ ଘର କରି ଦେଇଛି । ସେ ଘରଟା ସରିଲାପରେ ପୁଅ ଯାଇ ବାପକୁ ଡାକି ଆଣିଛି । ସେ ଘରେ ରହିବା ପାଇଁ । ବିଭୋର ପଣିଆରେ ପାରଙ୍ଗମ ବାପ ପୁଅକୁ କାବୁଡି ଧରି ଅନ୍ତରର କୃତଜ୍ଞତା ଜ୍ଞାପନ କରିଛି ।

ଏ ସଂସାରରେ ଅନେକ ପୁଅ ଅଛନ୍ତି । ମାତ୍ର ବୁଢାବାପର ମନ ବୁଝିଲାଭଳି ପୁଅ କେତେଜଣ ଅଛନ୍ତି ସେମାନଙ୍କ ଭିତରୁ ?

ପ୍ରେମିକ ବାପ ତା'ର ପୁଅ କରି ଦେଇଯିବା ଘରଟିକୁ ଏତେ ପସନ୍ଦ କରିଛି ଯେ, ଅତିକ୍ରାନ୍ତ ବୟସରେ ତା ପ୍ରେମିକାକୁ ଆଣି ସେ ଘରେ ରଖିଛି । ଥରେ ନୁହେଁ ଦୁଇଥର ପ୍ରେମିକାକୁ ଦୂରତମ ପ୍ରଦେଶରୁ ଡାକିଆଣି ପ୍ରେମିକ ବାପ ନିଭୃତ ନିଳୟରେ ରସ ଭୋଗରେ ସହଯୋଗୀ ହୋଇଛନ୍ତି ।

ଆମ ସାରସ୍ୱତ ଇତିହାସରେ ସତରେ ଏ ଏକ ଅପୂର୍ବ ଘଟଣା । ଏ ଜଗତରେ ବୁଢ଼ା ବାପର ମନନେବା ଅନେକ ପୁଅଙ୍କ ପକ୍ଷେ ହୁଏତ ସମ୍ଭବ ହୁଏନି । ସଂପତ୍ତିର ଉତ୍ତରାଧିକାରୀ ହେବା ପାଇଁ କାଳ କାଳ ଧରି ଏ ସଂସାରରେ ବାପ ସହିତ ପୁଅହୁଏତ ବୈରତା କରେ । ମାତ୍ର ବୁଢାବାପର ଅତି ବିଶ୍ୱାସନୀୟ ବନ୍ଧୁ ହେବାପରି ପୁଅ ମାନଙ୍କ ସଂଖ୍ୟା ଏ ପୃଥିବୀରେ ଆଶାତୀତ ଭାବେ କମ ।

ସତ କହିଲେ ସେ ପୁଅଟା ବରଂ ବାପର ପରମ ବନ୍ଧୁଥିଲା । ବାପ ପୁଅର ମନ ତୋଷୁଥିଲାତ ପୁଅ ବାପର ମନ ତୋଷୁଥିଲା । କେତେବେଳେ ହାତୀ ପିଠିରେ ବସିତ କେତେବେଳେ ବଳଦଗାଡ଼ିରେ ବସି, କେତେବେଳେ ସବାରିରେ ବସିତ କେତେବେଳେ ଟମ୍‌ଟମ୍ ଗାଡ଼ିରେ ବସି ଅବା କେତେବେଳେ ଖାଲିପାଦରେ ଚାଲିଚାଲି ବାପପୁଅ ଦି'ଜଣ ଦି'ବନ୍ଧୁଙ୍କ ଭଳି ଛବିଳ ଉତ୍କଳର ପ୍ରାକୃତିକ ଶୋଭା ଅବଲୋକନ କରିଛନ୍ତି ।

ବାପ ପୁଅର ନିବିଡ଼ ବନ୍ଧୁତା ପରସ୍ପରକୁ ଆଶ୍ୱାସନା ଦେଇଥିଲା । ଦି'ଜଣ ପରସ୍ପରର ବନ୍ଧୁକେବଳ ନଥିଲେ ସାରସ୍ୱତ ଶୁଭେଚ୍ଛୁ ମଧ୍ୟ ଥିଲେ । ପିତାଙ୍କ କ୍ଲେଶ ଓ ପରିଶ୍ରାନ୍ତି ଦୂରକରିବା ପାଇଁ ପୁଅ ସବୁବେଳେ ସଚେଷ୍ଟ ଥିଲାତ ଅନ୍ୟପକ୍ଷରେ ବାପବି ପୁଅ ପ୍ରତି ଅତ୍ୟନ୍ତ ସ୍ନେହଶୀଳ ଓ ଶୁଭାନୁଧ୍ୟାୟୀ ଥିଲା ।

ଧବଳେଶ୍ୱରରେ ନିଭୃତ ନିଳୟ ନିର୍ମାଣ ଥିଲା ଗୋଟେ ବାପର ମନ ଓ ହୃଦୟକୁ ଭରିଦେବାପାଇଁ ହୁଏତ ଗୋଟେ ପୁଅର ଅନନ୍ୟ ସଙ୍କଳ୍ପ । ପିତାଥିଲେ ସାରା ଜୀବନ

ପ୍ରକୃତିପ୍ରେମୀ । ପ୍ରକୃତି ତାଙ୍କୁ ଆବିଷ୍ଟ କରି ରଖିଥିଲା । ସେଇ ପ୍ରକୃତି କୋଳରେ ସମୟ କାଟିବା ଠାରୁ ଆଉ ସରସ କାର୍ଯ୍ୟକ୍ରମ ହୁଏତ ପିତାଙ୍କ ଜୀବନରେ କିଛି ନଥିଲା ।

ବାପାଙ୍କ ଅଜ୍ଞାତସାରରେ ତାଙ୍କ ପାଇଁ ଏକ କଳାପୂର୍ଣ୍ଣ ବଙ୍ଗଳା ନିର୍ମାଣ କରିଦେଇ ପୁଅ ବାପକୁ ସେଠିକୁ ନିମନ୍ତ୍ରଣ କରି ଆଣିଥିଲେ । କଟକର ଅଦୂରବର୍ତ୍ତୀ ମହାନଦୀ ମଧ୍ୟସ୍ଥିତ ଧବଳେଶ୍ୱରର ସେହି ନିଭୃତନିଳୟକୁ ତିଆରି କରିଥିଲେ ଯୋଗ୍ୟ ପିତାର ଯୋଗ୍ୟ ପୁତ୍ର ଶଶିଭୂଷଣ । ଆଉ ତାଙ୍କର କଙ୍କାଳସାର ଆଜନ୍ମ ରୁଗ୍ଣ ସ୍ୱାସ୍ଥ୍ୟର ବୃଦ୍ଧପିତା ହେଉଛନ୍ତି ଅନ୍ୟ କେହି ନୁହେଁ, ଆମର ଚିର ନମସ୍ୟ କବିବର ରାଧାନାଥ ରାୟ ।

ଶଶିଭୂଷଣ ହୁଏତ ସେଦିନ ଆତଙ୍କିତ ହୋଇଥିଲେ ଯେ, ତାଙ୍କର ଏ ପ୍ରକାର ବ୍ୟୟ ବହୁଳ କାର୍ଯ୍ୟରେ ପିତା ହୁଏତ କ୍ଷୁବ୍‌ଧ ହେବେ ବୋଲି ।

ସେଦିନ ଧବଳେଶ୍ୱର ପରିଦର୍ଶନରେ ଯିବା ସମୟରେ ହଠାତ୍ ରାଧାନାଥ ସଉଖୀନ ବଙ୍ଗଳାଟିକୁ ଦେଖି ସେଠାକୁ ଯାଇ ପଚାରିଲେ, ଏ ସ୍ୱପ୍ନାତୀତ ରାଜ୍ୟରେ ଏ ଘର କିଏ ତିଆରି କଲା ? ତାହାର ପ୍ରକୃତ ପସନ୍ଦ ଅଛି । ଶଶିଭୂଷଣ କ୍ଷଣକାଳ ନୀରବ ରହି କହିଲେ, ମୁଁ କରିଅଛି । ଏହାଶୁଣି ସେ ହଠାତ୍ କହି ଉଠିଲେ । ଏତେ ଦିନରେ ତୁ ମୋହର ମନ ଅନୁସାରେ ଅପୂର୍ବ ପସନ୍ଦର କାର୍ଯ୍ୟ କରିଅଛୁ । ମୁଁ ପେନ୍‌ସନ୍ ନେଲେ ଏହିଠାରେ ଅବଶିଷ୍ଟ ଜୀବନ କଟାଇବି ।

ରାଧାନାଥ କିନ୍ତୁ ପୁଅଙ୍କ ନିର୍ମିତ 'ନିଭୃତ ନିଳୟ'ରେ ମାତ୍ର ପନ୍ଦର କୋଡ଼ିଏ ଦିନରୁ ଅଧିକ କାଳ ରହି ପାରି ନାହାନ୍ତି । ହେଲେ ଶଶିଭୂଷଣଙ୍କ ନିଭୃତ ନିଳୟ ରଚନା ଥିଲା ପିତାଙ୍କ ରୁଚି ଓ ଆଗ୍ରହକୁ ସମ୍ମାନ ଜଣାଇବାର ଏକ ବିରଳ ନିଦର୍ଶନ ।

ଏ ସଂସାରରେ ସବୁଠି କେବଳ ଏମିତି ହୋଇଛି ଯେ, ବାପର ରୁଚିକୁ ପୁଅ ପୁରୁଣା ଅଭ୍ୟାସ, ଅର୍ଥହୀନ ବୋଲି କହି ଏଡ଼ି ଦେଇଛି । ସଂପତ୍ତି ଲୋଭରେ ବାପକୁ କେହି ପୁଅ ଅସହ୍ୟ ପୀଡ଼ା ଦେଇଛି ତାକୁ ଘରୁ ବିତାଡ଼ିତ ବି କରିଛି ।

ଏ ସଂସାରରେ ମାତ୍ର ଯୋଗ୍ୟ ପୁତ୍ର ପିତାର ମନବୁଝେ । ଶଶିଭୁଷଣବି ପିତାଙ୍କ ପରି ଆଜନ୍ମ ମୂର୍ଚ୍ଛାରୋଗୀ ଥିଲେ । ନାନା ଶାରିରିକ ପୀଡ଼ାରେ ଦିନ କାଟୁଥିଲେ ବାପପୁଅ ଦି'ଜଣ । ଅଥଚ ଛବିଳ ବ୍ରହ୍ମାଣ୍ଡକୁ ଦେଖି ତାକୁ ସରସ ଶବ୍ଦ ଭିତରେ ବର୍ଣ୍ଣନା କରିବାର ପାରଦର୍ଶିତା ବାପପୁଅ ଉଭୟ ପ୍ରଦର୍ଶନ କରି ଯାଇଛନ୍ତି ।

କେତେ କବି କଳାକାର ଶଶିଭୁଷଣଙ୍କ ନିର୍ମିତ ଏ ନିଭୃତ ନିଳୟ ପରିଦର୍ଶନରେ ଆସିଛନ୍ତି ଓ ପ୍ରାଣରେ ଅପୂର୍ବ ପୁଲକ ଲାଭ କରିଛନ୍ତି । ଦିନେ ବାଣୀଭୂଷଣ ମୃତ୍ୟୁଞ୍ଜୟ ରଥ ତ ଶଶିଭୂଷଣଙ୍କୁ ପ୍ରଶଂସା କରି ଲେଖିଥିଲେ ।

"ଧନ୍ୟଜନ୍ମ ତବ ହେ ଶଶିଭୂଷଣ
ପରହିତ ବ୍ରତେ ଯାପିଲ ଜୀବନ
ଯାବତ ଥିବ ଏ ନିଭୃତ ନିଳୟ
ଘୋଷୁଥିବ ତବ କୀରତି ଅକ୍ଷୟ ।"

କେତେ ଜହ୍ନରାତି ଝଡ଼ପବନର ଦିନ ହୁଏତ ଆସିଥିବ ସେ ନିଭୃତ ନିଳୟର ଅଗଣାକୁ । କେତେ ଚଢ଼େଇଙ୍କ କିଚ଼ିର ମିଚ଼ିରି ଡାକରେ ସେଠି ସକାଳ ହୋଇଥିବ । ବାପ ବାପ ଦୁଃଖରେ ଥିବତ ପୁଅ ପୁଅ ଦୁଃଖରେ ଥିବ । କବିଙ୍କୁ ଆହୁରି ବିଷାଦ ଘାରି ଦେଉଥିବ ଅଥବା ମନଶ୍ଚକ୍ଷୁରେ କେଉଁ ପ୍ରପାତମୟ ନୀଳପର୍ବତର ଶୋଭା ସେ ହୁଏତ ଦେଖୁଥିବେ । ଶଶିଭୂଷଣ ହୁଏତ ବାପାଙ୍କ ଖଣ୍ଡ ଖଣ୍ଡ ସ୍ୱପ୍ନ ସବୁକୁ ସ୍ମୃତିକୁ ଆଣୁଥିବେ । ଆଣୁଥିବେ କଟକର କାଳିଗଳିକୁ, କେଦାର ପୁରକୁ, ଛବିଳ ବାମଣ୍ଡାକୁ । ହୁଏତ ବାପାଙ୍କ ପୁରୁଣା ଚିଠିପତ୍ର ସବୁକୁ ସାଇତି ରଖୁଥିବେ ଅବା ପିତାଙ୍କ କେଉଁ ସାହିତ୍ୟିକ ବଂଧୁଙ୍କୁ ଆତିଥ୍ୟ ପ୍ରଦର୍ଶନ କରିଥିବେ ।

ନିଭୃତ ନିଳୟ ଦେଇ ସୁଖରେ ହେଉ ବା ଦୁଃଖରେ ହେଉ ସବୁଦିନେ ମହାନଦୀର ପାଣି ସମୁଦ୍ରକୁ ବହି ଯାଉଥିବ । ଏକାନ୍ତ ସ୍ନେହଶୀଳ, ଶୁଭାନୁଧ୍ୟାୟୀ ପିତାଙ୍କ ପ୍ରତି ପୁତ୍ରର ପ୍ରାଣ ହୁଏତ କୃତଜ୍ଞତାରେ ଭରିଯାଉଥିବତ ପିତା ପୁତ୍ର ପ୍ରତି ହୁଏତ ଆହୁରି ବନ୍ଧୁଭାବାପନ୍ନ ହୋଇପଡୁଥିବେ ।

ନିରବଧିକାଳ ମହାନଦୀର ପାଣିପରି ବହି ଯାଉଥିବାଁ କାଠଚଂପା ଫୁଲର ବାସ୍ନାରେ ହୁଏତ ନିଭୃତ ନିଳୟର ଚତୁର୍ଦ୍ଦିଗ ସୁରଭିତ ହୋଇ ଯାଉଥିବ । ଖରାବେଳେ ଆହୁରି ଉଦାସ ଲାଗୁଥିବ ସେ ପରିବେଶ ।

ନିଭୃତ ନିଳୟ ଯଦି କାହା ପ୍ରାଣକୁ ନିମିଷକେ ହେଉପଛେ ସୃଜନଶୀଳତାରେ ଭରିଦେଇଥିବ ଶଶିଭୂଷଣଙ୍କ ସ୍ୱପ୍ନର ଏ ସଦନ ପୁଣ୍ୟର ତୀର୍ଥ ହୋଇ ଯାଇଥିବ ନିଶ୍ଚୟ ।

ଏ ପୃଥିବୀରେ ଯେଉଁଠି ମଠ, ଆଶ୍ରମ ପରି ସ୍ୱପ୍ନର ସଦନ ସବୁ ଗଢ଼ିଉଠିଛି ସାଧନ କ୍ଷେତ୍ର ଭାବେ ତାହା ଅନେକଙ୍କୁ ପ୍ରବୋଧିତ କରିଛି । ରବୀନ୍ଦ୍ର ନାଥଙ୍କ ଶାନ୍ତି ନିକେତନ, ରାମକୃଷ୍ଣଙ୍କ ଦକ୍ଷିଣେଶ୍ୱର ବିବେକାନନ୍ଦଙ୍କ ବେଲୁର ମଠ, ଶ୍ରୀ ଅରବିନ୍ଦଙ୍କ ପଣ୍ଡିଚେରୀ ଆଶ୍ରମ, ସେହିପରି ସୃଜନଶୀଳ ସ୍ୱପ୍ନର ଏକ ଏକ ସଦନ; ଯାହା କାଳ କାଳ ଧରି ଭାବବାଦୀ ମଣିଷମାନଙ୍କୁ ହୁଏତ ଆଲୋକର ପଥ ଦେଖାଉଥିବ । ବିକ୍ରମଙ୍କ ବତ୍ରିଶ ସିଂହାସନ କାଳଗର୍ଭରେ ବିଧ୍ୱସ୍ତ ହୋଇଯାଇଛି ସତ; ମାତ୍ର ଜନ ମାନସରେ ସେ ସିଂହାସନର ମହିମା ସବୁକାଳ ପାଇଁ ମୂର୍ତ୍ତ ହୋଇ ରହିଥିବ ।

ନିଭୃତ ନିଳୟ ପରି ଆଶ୍ରମମାନଙ୍କ ସହିତ ତପସ୍ୟାପାଇଁ ଅଲଗା ଶ୍ରଦ୍ଧା ଅଲଗା ସଙ୍କଳ୍ପ ସଂଯୋଜିତ ହୋଇଥାଏ । ଯାଜ୍ଞବଲ୍କ୍ୟ ଋଷିଙ୍କ ଆଶ୍ରମ ରାଜାଙ୍କ ପ୍ରାସାଦ୍ ପରି ଆଡ଼ମ୍ବର ପୂର୍ଣ୍ଣ ନହେଲେବି ତାର ଶୁଚିତା ସେପାଇଁ ଅଲଗା ପ୍ରକାରର ।

ଏ ପୃଥିବୀରେ ପ୍ରତ୍ୟେକ ମଣିଷର ଘର ସୁନ୍ଦର ଜୀବନ ଭୋଗ କରିବା ପାଇଁ ଈଶ୍ୱରୀୟ ସ୍ୱପ୍ନର ଏକ ଏକ ସଦନ ପାଲଟି ଯାଉ । ସବୁ ମଣିଷ କବି ହୋଇ ଯାଆନ୍ତୁ । ସବୁ ପୁଅମାନେ ପୈତୃକ ସଂପତ୍ତିର ଉତ୍ତରାଧିକାରୀ ହୁଅନ୍ତୁ ବା ନହୁଅନ୍ତୁ ପିତୃପ୍ରାଣର ପ୍ରେମିକତା କରନ୍ତୁ । ବୃଦ୍ଧ ପିତାର ମନ ବୁଝନ୍ତୁ । ତାହେଲେ ଯାଇ ଏ ସଂସାରର ଅନେକ ଘୃଣା ଓ ବୈରତା ହୁଏତ ସ୍ୱତଃ ଦୂର ହୋଇଯିବ ।



# ଦିବ୍ୟଯୁଗର ଦ୍ରଷ୍ଟା ଋଷି ଓ ପରିବ୍ରାଜକ

ଭୀମ ଭୋଇ ଥିଲେ ଆପଣା ଦୁଃଖକୁ ଆତ୍ମାର ବିଳାସ ପାଇଁ ବାଛିନେବାର ଜଣେ ମହିମ୍ନପୁରୁଷ । ଭୀମ ଭୋଇ ଯେଉଁ ଗୀତ ଗାଇଛନ୍ତି ସେଥିରେ ଅମରାବତୀର ଜୟଗାନ ନାହିଁ । ପ୍ରତିମାର ପୂଜାନାହିଁ, ମୂର୍ତ୍ତିମାନ ଦେବତାର ବନ୍ଦନା ନାହିଁ । ଅଛି ଆତ୍ମ ବିଦାରଣର ପ୍ରତିଟି ସ୍ୱର ।

ଭୀମଙ୍କ କବି ଆତ୍ମା ଥିଲା କେତେ ଅଧିକ ଜୀବନନିଷ୍ଠ । କେତେ ମାନବ କୈନ୍ଦ୍ରିକ । ମଣିଷର ଦୁଃଖ ସବୁକୁ ସେ ଗୋଟି ଗୋଟି କରି ଗାଇଛନ୍ତି । ଦୁଃଖର କାରଣ ଖୋଜିଛନ୍ତି । ପ୍ରାଣୀଙ୍କ ଆରତ ଦୂର କରିବା ପାଇଁ ପ୍ରାର୍ଥନା କରିଛନ୍ତି ।

ଭୀମଙ୍କ 'ସ୍ତୁତି ଚିନ୍ତାମଣି' ତାଙ୍କ ବିକ୍ଷତ ଜୀବନର ଗୀତିମାଳା । ତୁଚ୍ଛ ପ୍ରତିମାପୂଜା, ଜାତି ନାମରେ ଘୃଣା, ଯାବତୀୟ ବିଭେଦ, ଅଶିକ୍ଷିତ ଅଶିଷ୍ଟ ମାନଙ୍କର ଅହଙ୍କାର, ପୂଜା ପାର୍ବଣ ନାମରେ କୁସଂସ୍କାର ଭୀମଙ୍କୁ ନିରନ୍ତର ବ୍ୟଥିତ କରିଥିଲା ।

ଭୀମ ଭୋଇ ବରଂ ଗୋଟେ ସତ୍ୟନିଷ୍ଠ ଜୀବନର ସ୍ୱପ୍ନ ଦେଖିଥିଲେ । ସମସ୍ତଙ୍କ ଚିତ୍ତଶୁଦ୍ଧି ହେଉ ବୋଲି ଅଭିଳାଷ ପୋଷଣ କରିଥିଲେ ।

ମଣିଷ ଜୀବନର ବୁନିଆଦି ହେଉଛି ଶ୍ରଦ୍ଧାରେ ବଞ୍ଚିବା । ଏ ପବିତ୍ର ବସୁଧାମଣ୍ଡଳରେ ସମ୍ମାନଜନକ ଭାବେ ଜୀବନ ବଞ୍ଚିବା । ଭୀମଙ୍କ ବାଣୀରେ ମୁକ୍ତିର ଆକାଂକ୍ଷା ପ୍ରବଳ ଥିଲା । 'ସ୍ତୁତି ଚିନ୍ତାମଣି'ର ବୋଲିସବୁ ସେହି ମୁକ୍ତିକାମନାର ଏକ ଏକ ଝଲକ ।

ଭୀମ ବହୁ ସାଂସାରିକ ଇଚ୍ଛାର ତର୍ଜମା କରିଛନ୍ତି । ସନ୍ୟାସର ସ୍ୱରୂପ ବିଶ୍ଳେଷଣ କରିଛନ୍ତି । ଜଗତର କଲ୍ୟାଣ ଇଚ୍ଛା କରିଛନ୍ତି । ପୀଡ଼ିତ ମଣିଷମାନଙ୍କୁ ଆତ୍ମାର ସମର୍ଥନ ଯୋଗାଇ ଦେଇଛନ୍ତି ।

କବି ପ୍ରାକ୍ତନ ତଥା ସମସାମୟିକ ଅନ୍ୟମାନଙ୍କ ପରି ନିରର୍ଥକ ଅଳଙ୍କାର ପରିଯୋଜନାରେ କେବଳ ନିଜକୁ ନିୟୋଜିତ କରି ନାହାନ୍ତି । ସେ ଅଳଙ୍କାରର ମଣ୍ଡଳ ଭିତରୁ ନିଜକୁ ମୁକ୍ତ କରି ଆଣିଛନ୍ତି । ଛବିଳ ବ୍ରହ୍ମାଣ୍ଡକୁ ମୁଗ୍‌ଧ ଚକିତ ହୋଇ ଦେଖିଛନ୍ତି । ଅନନ୍ତଶୂନ୍ୟର ମହିମା କୀର୍ତ୍ତନ କରିଛନ୍ତି । ଭୀମ ଅହଙ୍କାରକୁ ତୁଚ୍ଛ ଜ୍ଞାନ କରିଛନ୍ତି ।

ଅହଙ୍କାର କେତେ ଘୃଣା ବଢ଼ାଉଛି, ମଣିଷକୁ ଅନୁଦିନ କେତେ ପୀଡ଼ା ଦେଉଛି ଭୀମ ତା'ର ନିକ୍ଷକ କଳନା କରିଛନ୍ତି । ଭୀମ ଭୋଇ ପୁଣି ଗୁରୁଶିଷ୍ୟ ସଂପର୍କର ଏକ ଶୁଦ୍ଧ ପ୍ରେମୀୟ ଅଧ୍ୟାୟକୁ ଆମ ଆଗରେ ଖୋଲି ଦେଇଛନ୍ତି । ଶିଷ୍ୟର ପ୍ରାଣ ଯେତେ ଅଧିକ ଶ୍ରଦ୍ଧାଶୀଳ ହେବ ବିଦ୍ୟାପ୍ରତି ତା' ପ୍ରାଣର ଅନୁରାଗ ବଢ଼ିବ, ଶ୍ରଦ୍ଧା ଓ ସଙ୍କଳ୍ପ ବଢ଼ିବ । ଗ୍ରହଣଶୀଳତା ବଢ଼ିବ । ଭୀମଙ୍କ ଉପଲବ୍‌ଧିର ଏ ଗୋଟେ ବିଶିଷ୍ଟ ଦିଗ ।

ଭୀମ ଜଗତର ହିତ ପାଇଁ ଗୀତ ବାନ୍ଧିଛନ୍ତି । ଭୀମ ଲେଖିଛନ୍ତି : 'ଜଗତର ହିତେ ବାନ୍ଧିଲଇଁ ଗୀତେ ମୋ ମନକୁ କରି ସତ' (ସ୍ତୁତି ଚିନ୍ତାମଣି-ବିଂଶ ବୋଲି) । କବିଚିତ୍ତର ତୃତୀୟ ଗ୍ରନ୍ଥ ହେଉଛି ଉନ୍ନତ ଜନମଙ୍ଗଳକର ଭାବନା (Sense of Social good) ।

ଗୁରୁଶିଷ୍ୟର ଉତ୍ତମ ଯୋଡ଼ି ସଂସାରର ହିତ ସାଧନ କରେ ବୋଲି ଭୀମ ଉପଲବ୍ଧି କରିଥିଲେ । ଗୁରୁ ଶିଷ୍ୟ ସହିତ ସର୍ବୋତ୍ତମ ଭାବେ ବିଶ୍ୱାସନୀୟ ସଂପର୍କ ପ୍ରତିଷ୍ଠା କରିଥାଏ । ଗୁରୁଙ୍କୁ ଆଶ୍ରା କଲେ ମଣିଷ ସଂଶୟମୁକ୍ତ ହୋଇଯାଏ । ତା ଅନ୍ତରର ଶୁଚିତା ବଢ଼େ; ମନର ସଙ୍କଳ୍ପ ବଢ଼େ ।

ଭୀମ ଉତ୍ତମ ଗୁରୁବାଦ ସପକ୍ଷରେ ନିଜର ସମର୍ଥନ ଦେଇଛନ୍ତି । ଭୀମ ଥିଲେ ଜଣେ ପରାର୍ଥ ପଥିକ । କବି, ସଂସ୍କାରକ ଆଉ ଉତ୍ତମ ପରିବ୍ରାଜକ । ମନୁଷ୍ୟ ଅନ୍ତର ପ୍ରେମରେ ଭରିଯାଉ ବୋଲି ସେ ଆଶାପୋଷଣ କରିଛନ୍ତି ।

ମଣିଷ ପ୍ରତି ମଣିଷର ଅପ୍ରେମ ଓ ଅଶ୍ରଦ୍ଧା ଭୀମଙ୍କୁ ସର୍ବଦା ବ୍ୟଥିତ କରିଛି । କପୋଳକଳ୍ପିତ ପ୍ରତିମାର ନୁହେଁ, ଦୁଃଖ ପୀଡ଼ିତ ନିରୀହ ମଣିଷର ସନ୍ନିକଟ ହେବା ପାଇଁ ଭୀମ ଇଚ୍ଛା ପ୍ରକାଶ କରିଛନ୍ତି ।

ଭୀମ ଥିଲେ ସଂସ୍କାରକ ଓ ସଂଗ୍ରାମୀ । ଭୀମ ଥିଲେ ଋଷିସମ ତେଜସ୍ୱୀ ପୁରୁଷ । ଅନେକ ସେପାଇଁ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଭୀମ ଅଧର୍ମ ଓ ସକଳ ଅର୍ଥହୀନ ଔପଚାରିକତାକୁ ଅପସନ୍ଦ କରିଛନ୍ତି ।

ଭୀମ ପ୍ରଚଣ୍ଡ କ୍ରୋଧରେ ଲେଖିଛନ୍ତି :

"ଶ୍ରୀ ପୁରୁଷୋତ୍ତମ କପିଳାସ ଧାମ, ତହୁଁ ଉଠିଲାଣି ଧର୍ମ
ତୀର୍ଥମାନେ ସର୍ବେ ଭ୍ରଷ୍ଟ ହୋଇଲେଣି ତହିଁରେ ନାହିଁନା ବ୍ରହ୍ମ ।
ମେଢ଼ ମଣ୍ଡପ ଦେଉଳ ଦେବାଳୟ ଜଗତ ଅଟ୍ଟାଳି ମାନ
ଯହିଁରେ ଦେଖିଲେ ସତ୍ୟ ଧର୍ମ ନାହିଁ ସକଳ ହେଲେଣି ଶୂନ୍ୟ ।"

ଭୀମ ମହିମା ଗୋସେଇଁଙ୍କ ନିକଟରେ ସଂପୂର୍ଣ୍ଣ ଆଶ୍ରିତ । ତାଙ୍କ ଏହି ସମ୍ପର୍ପିତ ପ୍ରାଣର ବିନୟ ଓ ତଦ୍‌ଜନିତ ନିରୀହତା ତାଙ୍କ ରଚନାର ଭାବ ଭାଷାରେ ଫୁଟି ଉଠିଛି ।

ଅସମ୍ମାନ, ତ୍ରୁଟିଯୁକ୍ତ ସମାଜ ବିରୋଧରେ ତାଙ୍କର ଅସନ୍ତୋଷ ଓ କ୍ରୋଧକୁ ସେ ପ୍ରକାଶ କରିଛନ୍ତି । ଓଡ଼ିଶାର ଦୀର୍ଘ ସାରସ୍ୱତ ଧାର୍ମିକ ପରମ୍ପରାରେ ଏପରି ଅଭିମାନଭରା କ୍ରୋଧ ବହୁଦୃଷ୍ଟିରୁ ଅଭିନବ ।

ଭୀମ ପୁଣି ଜଣେ ଅଙ୍ଗୀକାରବଦ୍ଧ ପ୍ରଚାରକ । ତାଙ୍କ ଭାଷା ତେଣୁ ପ୍ରାକ୍ତନ ଆଳଙ୍କାରିକ କାବ୍ୟର ଭାଷା ଠାରୁ ସଂପୂର୍ଣ୍ଣ ବଦଳି ଯାଇଛି । ଗୋଟେ ଉଦାର ମାନବତାବାଦୀ ସ୍ୱର ଯୋଗୁଁ ତାଙ୍କ ପଦାବଳୀର ଭାଷା ଓ ରଚନାଶୈଳୀ ଏତେ ଅଲଗା ହୋଇଛି । କବିଙ୍କ ମାନବସଂପର୍କ ଅତ୍ୟନ୍ତ ନିବିଡ଼ ଓ ନିବିଡ଼ ।

ଭୀମ ଗାଇଛନ୍ତି :

"ଜଣାଇଲି ଯେତେ ତୁମ୍ଭ ପାଦଗତେ ବୋଇଲେ ମୋତେ ବୁଝିବା,
ମହିମା ମହିମା ବୋଲିବାକୁ ସ୍ୱାମୀ ଭାଙ୍ଗୁଛ ମୋର ଗାରିମା ।
କିରସ୍ତାନ ବୋଲି ଦେଉଛନ୍ତି ଗାଳି ନିନ୍ଦା କରୁଛନ୍ତି ଲୋକ,
ଅଲେଖ ଅଲେଖ ବୋଲିବାକୁ ସ୍ୱାମୀ ଦେଉଛ ଦୁର୍ଦ୍ଦଣ୍ଡ ଦୁଃଖ ।
ବସନ ପରାଏ ଘୋଡ଼ାଇଛି କାଏ କଳଙ୍କ ପାପ ବକଳ,
ସତ୍ୟ ଧର୍ମ ସତ୍ୟଧର୍ମ ବୋଲିବାକୁ ନିନ୍ଦୁ ଅଛନ୍ତି ସକଳ ।"

ଯେ ଜନ୍ମଭୂମି ପାଖରେ ଚିରକାଳ କୃତଜ୍ଞ ହୋଇ ରହେ ତାର ଜୀବନ ଧନ୍ୟ ହୋଇଯାଏ । ଶୂନ୍ୟବ୍ରହ୍ମ ସଂପର୍କିତ ଆପଣାର ଉପଲବଧିକୁ ଯେ ଓଡ଼ିଶାର ହଜାର ହଜାର ଜନପଦରେ ବାଣ୍ଟିଥିଲେ ସେ ହେଉଛନ୍ତି ମହାନ ପରିବ୍ରାଜକ, ମହିମା ଧର୍ମର ଅନନ୍ୟ ପ୍ରଚାରକ ମଧୁପୁର ଗାଁର ଭୂମିପୁତ୍ର ଓ ଋଷି ଭୀମସେନ ଭୋଇ ।

ସକାଳରୁ ସଞ୍ଜ ଯାଏ ସେ ଆଦ୍ୟ ଯୌବନରେ ବଣ ଭୂମିରେ ଗୋରୁ ଜଗନ୍ତି । କ୍ଷୁଧା ହେଲେ ବଣ ଭୂମିରୁ ବୃନ୍ତଚ୍ୟୁତ ଫଳ ଆହାର କରନ୍ତି ତ ତୃଷା ହେଲେ ଝରଣାର ପାଣି ପିଅନ୍ତି ।

ଭୀମ ଘର ଘର ବୁଲି ଧାନ କୁଟନ୍ତି ।
ଗୁଜୁରାଣ ମେଣ୍ଟାଇବା ପାଇଁ ଦଉଡି ବଳନ୍ତି ।
ପଦବ୍ରଜରେ ସହସ୍ର କୋଶ ବୁଲନ୍ତି ।
ପଦ ଯୋଡ଼ନ୍ତି ।
ଭଜନ ଗାଆନ୍ତି ।
ନିଜକୁ ପୁଣି ଶୂନ୍ୟବ୍ରହ୍ମଙ୍କୁ ସମର୍ପି ଦିଅନ୍ତି ।

ଭୀମସେନ ଭୋଇ ଥିଲେ ଯଥାର୍ଥରେ ପରାର୍ଥ ପଥିକ । ନିଜ ହିତ ପାଇଁ ତାଙ୍କର କୌଣସି ବାସନା ନଥିଲା । ନିଜ ସ୍ୱାର୍ଥର ସେ ୱିଡ଼ି ତିଆରି କରୁନଥିଲେ । ଶୂନ୍ୟ ଦେହୀଙ୍କ ବିଷୟରେ ଭଜନ ଗାଇ ସେ ଜୀବନ ବିତାଇଥିଲେ ।

କାହାପାଇଁ ଆଜି ସହଜ ହୋଇନାହିଁ କହିବାକୁ ଭୀମ ପ୍ରକୃତରେ କେଉଁଠି ଜନ୍ମ ହୋଇଥିଲେ, ରେଢ଼ାଖୋଲର ମଧୁପୁରରେ ନାଁ ସୁବର୍ଣ୍ଣପୁର ଖଲିଆ ପାଲିରେ । ସେ ପଶ୍ଚିମ ଓଡ଼ିଶାର କେଉଁଠି ନାଁ କେଉଁଠି କେଉଁ ଏକ ନିଗୃହୀତ କନ୍ଧ ପରିବାରରେ ଜନ୍ମ ହୋଇଥିଲେ । ପଦ ବ୍ରଜରେ ସମଗ୍ର ଓଡ଼ିଶା ବୁଲିଥିଲେ । ବାଲେଶ୍ୱର ଯାଇଥିଲେ ତ ପୁରୁଷୋତ୍ତମ ଯାଇଥିଲେ ।

ଅନେକ ଜାଗାରେ ସାଧନାର କ୍ଷେତ୍ର କରିଥିଲେ ।

ଯେମିତି ଢେଙ୍କାନାଳର ଯୋରନ୍ଦା ମଠ ।

ଭୀମ ଥିଲେ ଋଷି ପରି, ସନ୍ୟାସୀଙ୍କ ପରି ଜୀବନ ବଞ୍ଚୁଥିବା ଜଣେ ଅନାଳଙ୍କାରିକ କବି ।

ସେ ଅନ୍ୟର ଚିତ୍ତ ଶୁଦ୍ଧି ହେଉ ବୋଲି ଚାହିଁଥିଲେ । ସମସ୍ତେ ଦୟାବନ୍ତ ଓ ବିବେକବାନ ହୁଅନ୍ତୁ ବୋଲି ଅଭିଳାଷ ପୋଷଣ କରିଥିଲେ । ସବୁ ମଣିଷ ସମାନ । ସମସ୍ତେ ଭାଇ ଭାଇ । ଜାତି ନାମରେ, ଧାର୍ମିକଗୋଷ୍ଠୀ ନାମରେ ଘୃଣା ସୃଷ୍ଟି କରିବା, କନ୍ଦଳ କରିବା ଈଶ୍ୱରଙ୍କୁ ଦ୍ରୋହ କଲାଭଳି । ଏହାଠାରୁ ଅଧିକ ବର୍ବରତା ଓ ଅଧିକ ଅର୍ଥହୀନ ବିଷୟ କିଛି ନାହିଁ ବୋଲି ଭୀମ ବିଚାରୁ ଥିଲେ ।

ଭୀମ ଥିଲେ ପୌତ୍ତଳିକତା ବିରୋଧୀ ଜନଗଣର କବି । ଅଧିକ ଗଣତନ୍ତ୍ରବାଦୀ । ଭୀମଙ୍କ କଣ୍ଠରୁ ଫୁଟି ଉଠିଛି :

"ଅଚେତାରେ ସିନା ଜନପ୍ରାଣୀ ମାନେ କରୁଛନ୍ତି ଦେବପୂଜା
ପାଦେପଡ଼ି ରକ୍ଷା କର ବୋଲୁଛନ୍ତି ଦେବୁକହି ପୁରି ଖଜା
ମୂର୍ତ୍ତିସିନା ସେହି ଜୀବ ଆତ୍ମା ନାହିଁ କାହୁଁ ଯାଚି ଦେବେ ବର
ବିଷ୍ଣୁ ନଟକୂଟ ମାୟାକୁ ନଜାଣି ଅଜ୍ଞାନରେ ମୂଢ଼ନର
ମନୁଷ୍ୟ ହୋଇ ନିର୍ଜୀବ ସଙ୍ଗେ ଭାବ ଦେଖଟି କେଡ଼େ ଅଜ୍ଞାନ
ଶୂନ୍ୟରୁ ଯେହୁ ପିଣ୍ଡପ୍ରାଣ ଗଢ଼ିଲା ନାହିଁ ତାକୁ ଅନୁମାନ ।"

ଭୀମଙ୍କ ସ୍ତୁତି ଚିନ୍ତାମଣି ଅନେକାଂଶରେ ଆପଣା ଜୀବନର ଆଲେଖ୍ୟ । ସୁଦୀର୍ଘ ମଧ୍ୟଯୁଗୀୟ କାବ୍ୟଧାରାରେ ଭୀମଭୋଇଙ୍କ ସ୍ତୁତି ଚିନ୍ତାମଣି ଏକ ଅଭିନବ କାବ୍ୟ ଆଙ୍ଗିକ । ନିଜ ଦାର୍ଶନିକ ଦୃଷ୍ଟିଭଙ୍ଗୀକୁ ଅତି ସହଜଭାବରେ ସରଳ ଭାଷାରେ ଭୀମ ପ୍ରକାଶ କରିଛନ୍ତି ।

ଆପଣା ନିପୀଡ଼ିତ ଜୀବନ ସଂପର୍କରେ ଭୀମ ଗାଇଛନ୍ତି :

"କ୍ଷୁଧା ତୃଷା କାଳେ ଭାଳଇ ବିକଳେ ଦଗଧି ହୁଅଇ କାଏ
ଅତି ଦୁଃଖେ ମୁହିଁ ଦିନ ବଞ୍ଚୁଅଛି କସ୍ତୁରୀ ଜୀବନ ପ୍ରାଏ ।
ସପ୍ତ ବରଷରୁ ଅଷ୍ଟମ ନବମ ଦଶମ ଏଗାର ହେଲା
ବାର ବରଷରୁ ବଚ୍ଛାଙ୍କ ସଙ୍ଗତେ ବନେ ବୁଲି ଦିନ ଗଲା ।
ଆଗପଛ କଥା ହୃଦୟରେ ଚିନ୍ତା ପଡ଼ି ପୁଣି ପୁଣି ଆସି
ଶୋକ ସନ୍ତାପରେ ରୋଦନ କରଇ ବୃକ୍ଷଛାୟା ମୂଳେ ବସି ।
ଏ ଚରିତ୍ର ମାନ ଶୁଣ ସାଧୁଜନ ବୋଲୁଥିବ ଅବା ବୃଥା
ମିଥ୍ୟା କହୁଥିଲେ ଶ୍ରୀଗୁରୁ ଦଣ୍ଡିବେ ନିତ୍ୟ ସତ୍ୟବ୍ରତ କଥା ।
ବଚ୍ଛାଗଲେ ଚରି ପଛେ ଅନୁସରି ବୁଲୁଥାଇ ସଙ୍ଗେ ସଙ୍ଗେ
କହେ ଭୀମ ଭୋଇ ପୂର୍ବକାଳ କଥା କଚାଡି ହେଉଛି ଅଙ୍ଗେ ।"

କବି ଭୀମ ଭୋଇ ଥିଲେ ସମୁଚ୍ଚ ମାନବତାବାଦୀ ସ୍ୱର୍ଗୀୟ ଜୀବନବୋଧର ଦ୍ରଷ୍ଟା, ଭକ୍ତ, ମାନବପ୍ରେମୀ ଓ ବିପ୍ଳବୀ । କବିର ଅକୁତୋଭୟତା ଓ ସର୍ବକାଳୀନ ବୃହତ୍ତର ମାନବିକ ମୂଲ୍ୟବୋଧ ତାଙ୍କୁ ଦିବ୍ୟଯୁଗ ଓ ଜୀବନର ପ୍ରବକ୍ତା କରିଥାଏ ।

ଭୀମ ଥିଲେ ସଂକଳ୍ପବଦ୍ଧ ଭାବେ ଏକ ଦିବ୍ୟ ଜୀବନବୋଧର ଭାଷ୍ୟକାର । ତାଙ୍କ ଗ୍ରନ୍ଥାବାଳୀର ଅଜସ୍ର ଧାଡ଼ି ତେଣୁ ସେହି ଭାଷ୍ୟର ସ୍ୱାକ୍ଷର । ସେ ଏପରି ଜଣେ ସନ୍ଥକବି ଥିଲେ ଯେ ଆତ୍ମାର ବୌଦ୍ଧିକ ମୁକ୍ତି ପାଇଁ ନିଜ ଅନ୍ତରକୁ ସର୍ବଦା ଉନ୍ମୁଖ କରି ରଖୁଥିଲେ । ଆତ୍ମା ଓ ଅନ୍ତରର ଏହି ବୌଦ୍ଧିକ ଉନ୍ମୁଖତା କୋଟି ଜନତାର ହେଉ—ଏହାହିଁ ଥିଲା ତାଙ୍କର କାମନା ।

ମଣିଷ ପ୍ରାଣରେ ଆତ୍ମାର ଏହି ବୌଦ୍ଧିକ ମୁକ୍ତି ପାଇଁ ସମର୍ଥନ ନଥିଲେ ସେ ଏହି ବିପୁଳ ବ୍ୟାବହାରିକ ପୃଥିବୀରେ ସମୁନ୍ନତ ଜୀବନଯାପନ କରିପାରିବ ନାହିଁ । ସ୍ୱାର୍ଥସଂଘର୍ଷ ସର୍ବସ୍ୱ ଜୀବନସଂଗ୍ରାମ ଯେଉଁ ଜାଗତିକ ଜୀବନର ଆବର୍ତ୍ତନ ସୃଷ୍ଟିକରେ ମଣିଷ କେବଳ ତା'ରି ଭିତରେ ବଞ୍ଚିରହିଲେ ସେ ଇତର ପଶୁ ସ୍ତରରେ ହିଁ ରହିଯିବ । ମଣିଷର ଏକ ସ୍ୱଚ୍ଛ ଓ ବଳଶାଳୀ ନୈତିକ ଓ ଆଧ୍ୟାତ୍ମିକ ଅଭିଲିପ୍ସା ରହିବା ଆବଶ୍ୟକ ।

ଭୀମଭୋଇଙ୍କର କବିତାର ଅଧିକାଂଶ ଧାଡ଼ି କୋଟି ଜନଗଣର ଭାବାତ୍ମାକୁହିଁ ଯଥାର୍ଥରେ ପ୍ରକଟିତ କରିଛି । କବିର କବିତା କବି କଳ୍ପନାର ବିଦଗ୍ଧ ବଚନ କେବଳ ନୁହେଁ । ତାହା କୋଟି ଜନତାର ଆତ୍ମାକୁ ସରସ ସୁନ୍ଦର କରିବାରେ କବିଚିତ୍ତର ଏକ ଉଦ୍‌ବୋଧନ ।

କବି ଭୀମ ଯେଉଁ ସମୟରେ ଉପାନ୍ତ ବଣଭୂମିରେ ଶିଷ୍ୟ ପ୍ରିଶିଷ୍ୟଙ୍କ ଗହଣରେ ବସି କବିତା ଲେଖୁଥିଲେ ସେତେବେଳେ ଏହି ଓଡ଼ିଶାରେ ଦେବଦେବୀ ଓ ଗନ୍ଧର୍ବ ଉପାଖ୍ୟାନଗୁଡ଼ିକ ଆମ କାବ୍ୟ ସାହିତ୍ୟର ଅତ୍ୟନ୍ତ ସାଙ୍ଗୀତିକ, ପଦ୍ୟବଦ୍ଧ ତଥା ଆଳଙ୍କାରିକ ରୀତିରେ ବର୍ଣ୍ଣିତ ହୋଇଥିବାର ଦେଖିବାକୁ ମିଳେ । କବି ଭୀମଙ୍କ ସାହିତ୍ୟର ଅନ୍ୟତମ ମୌଳିକ ବିଶେଷତ୍ୱ ହେଲା ଯେ ମଣିଷ ଜାତିର ଆତ୍ମାକୁ ଦିବ୍ୟଜୀବନବୋଧ ଆଡ଼େ ଉତ୍ତୋଳିତ କରିନେବା ପାଇଁ ସଂକଳ୍ପବଦ୍ଧ ହେବା । ଏପରି ସଂକଳ୍ପ ତାଙ୍କ ସମୟର ଅନ୍ୟ କବିଙ୍କର ପ୍ରାୟ ନଥିଲା ।

କବି ଭୀମଙ୍କର ଆରାଧଦେବତା ଶୂନ୍ୟପୁରୁଷ ହେଲେ ହେଁ କେତେ ମହତ୍ତର ମାନବୀୟ ସଦ୍‌ଗୁଣାବଳୀ ଓ ତଦ୍‌ଜନିତ ମୂଲ୍ୟବୋଧକୁ ସେ ସେହି ଶୂନ୍ୟ ଦେହୀଙ୍କଠାରେ ଆରୋପ କରିଛନ୍ତି । ଜାନ୍ତବ ଓ ଜାଗତିକ ଜୀବନ ନିର୍ବାହ କରୁଥିବା ଏ ଜଗତର କୋଟି ପ୍ରାଣୀ କିପରି ଏକ ମହାଜାଗତିକ ଜୀବନ ଆଡ଼କୁ ଆସିପାରିବେ ଓ ସେମାନଙ୍କର ଦୃଷ୍ଟିପଥ ମହାଦିଗନ୍ତକୁ ଭେଦକରି ପାରିବ ତାହା ଥିଲା କବି ଭୀମଙ୍କର ଆତ୍ମାର ଅଭିଳାଷ ଓ ତାଙ୍କ ସାହିତ୍ୟ ହେଉଛି ସେହି ଅଭିଳାଷର ପ୍ରତିବଦ୍ଧ ରୂପ ।

ଯେଉଁସବୁ ଅନ୍ୟାୟ ଅନୀତି କ୍ରମଶଃ ସମାଜକୁ ପଂଗୁ କରିଦେଲା ଓ ମଣିଷ ତା'ର କଣ୍ଠରୁଦ୍ଧ କଲା ଯେଉଁସବୁ ସାମାଜିକ ଉପଚାର ମାନବାତ୍ମାର ପ୍ରସାରଣଶୀଳତାକୁ ଅବରୁଦ୍ଧ କରିଦେଲା । କବି ଭୀମ ସେ ସବୁକୁ ଜୀବନରେ ଆଦୌ ଗ୍ରହଣ କରିପାରି ନାହାନ୍ତି । ତାଙ୍କ ବ୍ୟଥିତ ଚିତ୍ତ ଉଦ୍‌ବେଳିତ ହୋଇ ଉଠିଛି ତାଙ୍କ ଭଜନର ଅନେକ ଧାଡ଼ିରେ ।

ସଂଘ ହେଉ ବା ସମାଜ ହେଉ ତାହା ତୁଚ୍ଛ ଜାତିପ୍ରଥା ଦ୍ୱାରା ଯେ କଳୁଷିତ ହେଉଛି ଭୀମ ଏହା ଜାଣି ଜାତିପ୍ରଥା ବିରୋଧରେ ନିଜର ସ୍ପଷ୍ଟ ମତବ୍ୟକ୍ତ କରିଛନ୍ତି । ଜଣକର ଦ୍ୱିଜତ୍ୱ ଉପବୀତ ଧାରଣ କରିବାରେ ନଥାଏ ନିଜସ୍ୱ ଆଚରଣ, ମାର୍ଜ୍ଜିତ ରୁଚି ତଥା ଗଭୀର ଆଧ୍ୟାତ୍ମିକ ବିଶ୍ୱାସଜନିତ ବ୍ରହ୍ମଜ୍ଞାନରେ ହିଁ ପ୍ରକୃତ ଭାବେ ଜଣକର ଦ୍ୱିଜତ୍ୱ ପ୍ରକଟିତ ହୋଇଥାଏ ।

ମହିମା ଗାଦିର ସଂଘୀୟ ଜୀବନବୋଧ ଭୀମଙ୍କୁ ଭାରି ପ୍ରଲୁବ୍ଧ କରିଥିଲା । ସଂଘର ଶୃଙ୍ଖଳା ପରସ୍ପର ପ୍ରତି ଭ୍ରାତୃଭାବରେ ତଥା ପରସ୍ପର ପ୍ରତି ସ୍ନେହ ଓ ସଦିଚ୍ଛାରେ ନିହିତ ।

ଆତ୍ମାର ଅନ୍ତର୍ଗତ ନିୟନ୍ତ୍ରଣକୁ ମାନବର ସମଗ୍ରାନୁଭୂତିର ସମୁଚିତ ଅନୁଶାସନ ବୋଲି କବି ଭୀମ ଉପଲବ୍ଧି କରୁଥିଲେ; ଯାହା ସଂଘୀୟ ସଙ୍ଗଠନକୁ ବ୍ୟକ୍ତିଗତ ସଂଘର୍ଷ, ଆଦର୍ଶଗତ ବ୍ୟବଧାନ ଓ ବ୍ୟକ୍ତିବାଦ କବଳରୁ ରକ୍ଷା କରିଛି । ଧର୍ମପାଳନରେ ନୁହେଁ ନୀତି ଅନୀତିର ଅନୁଶାସନ ବଳରେ ସେ ତାଙ୍କ ପ୍ରିୟ ଜଗତର ଲୋକଙ୍କୁ ସମଦର୍ଶୀ ହେବାପାଇଁ ଆହ୍ୱାନ କରିଛନ୍ତି । ଆତ୍ମସୁଖ ନୁହେଁ ପରସମ୍ପର୍କବୋଧ ହିଁ ଜଗତର ଅକଲ୍ୟାଣ ଦୂର କରିପାରିବ ବୋଲି ଭୀମ ଉପଲବ୍ଧି କରିପାରିଛନ୍ତି । ଅନ୍ୟପ୍ରତି ପ୍ରେମଭାବ ଅବା ତା'ଠାରୁ ଉତ୍କୃଷ୍ଟ ସହନଶୀଳତା ହିଁ ଏ ପୃଥିବୀରୁ ଅନେକ ଅବାଞ୍ଛିତ ବୈରତା ଦୂର କରିପାରିବ ବୋଲି ସେ ମନେ କରିଛନ୍ତି । ଏ ବିଚାରରେ ଭୀମ ଥିଲେ ଅଧିକାଂଶରେ ଜଣେ ହେତୁବାଦୀ ।

ଏକ ବୃହତ୍ତର ତଥା ମହତ୍ତର ସାମାଜିକ ଜୀବନବୋଧର ଲକ୍ଷ୍ୟ ନେଇ କବି ଭୀମ ମହିମାଗାଦି ପରି ଯେଉଁ ସଂଘର ପ୍ରତିଷ୍ଠା କରିଥିଲେ ତାହା ମଣିଷଜାତିର ଇତିହାସରେ ଏକ ସୃଷ୍ଟିଶୀଳ ଅନୁଷ୍ଠାନ ନିଶ୍ଚୟ । ତାହା କ୍ଷୁଦ୍ର ହେଲେହେଁ ସେଥିପ୍ରତି ଭୀମଙ୍କ ପ୍ରାଣର ସତ୍ୟଶୀଳତା ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନକୁ ମହତ କରିପାରିଛି । ବୌଦ୍ଧସଂଘର ଉଦ୍ଦେଶ୍ୟ ଯାହାଥିଲା କବି ଭୀମଙ୍କ ମହିମାଗାଦିର ଉଦ୍ଦେଶ୍ୟ ଥିଲା ସେହିପରି ପୀଡ଼ିତ ମାନବାତ୍ମାର ମୁକ୍ତି । ଏହି ମୁକ୍ତି ଇଚ୍ଛା ତାଙ୍କ ଅଲେଖ ଭଜନାବଳୀକୁ ମାନବୀୟ ଐଶ୍ୱର୍ଯ୍ୟ ଦୃଷ୍ଟିରୁ ପ୍ରଗାଢ଼ ଆଭିଜାତ୍ୟ ଆଣି ଦେଇଛି ।

କବି ଭୀମ କେବଳ ନିଜ ପ୍ରାଣର ବୌଦ୍ଧିକ ଓ ଆଧ୍ୟାତ୍ମିକ ମୁକ୍ତି କାମନା କରିନାହାନ୍ତି ବରଂ ସେ କୋଟି ଜନତାର ଆତ୍ମାକୁ ଉତ୍ତୋଳିତ କରିବା ପାଇଁ ସ୍ୱପ୍ନ ଦେଖିଛନ୍ତି । ସେଦିନର ରକ୍ଷଣଶୀଳ ଗଡ଼ଜାତି ସମାଜର ଜଣେ ନିଗୃହୀତ, ନିପୀଡ଼ିତ କନ୍ଧ ଯୁବକ ପକ୍ଷେ ଏହା କମ ବଡ଼ ସ୍ପର୍ଦ୍ଧା ଓ ପୌରୁଷର ବିଷୟ ନୁହେଁ । ଜଣେ ଅତି ବଡ଼ ସମାଜ ସଚେତନ କବି, ପୁଣ୍ୟାତ୍ମା ତଥା ସଂସ୍କାରକ ଭାବେ କବି ଯେଉଁ ଦିବ୍ୟଯୁଗ ପରିକଳ୍ପନାର ସ୍ୱପ୍ନ ଦେଖିଛନ୍ତି ତାହା ସେ ଦିନ ତାଙ୍କ ପରି ସାଧାରଣ ଅକ୍ଷର ପରିଚୟ ନଥିବା ଗ୍ରାମେ ଗ୍ରାମେ ଗୋରୁଜଗି, ଦଉଡ଼ି ବଳି ପେଟ ପୋଷୁଥିବା, ବଣର ଫଳ ଓ ଝରଣାରୁ ଜଳପାନ କରି କ୍ଷୁଧା ତୃଷ୍ଣା ନିବାରଣ କରୁଥିବା ଏପରି ଜଣେ ଅନ୍ଧ ଓ କନ୍ଧ ଯୁବକ ପକ୍ଷେ କମ ବଡ଼ ଭୀଷ୍ମ ପ୍ରତିଜ୍ଞାର ବିଷୟ ନୁହେଁ ।

ତାଙ୍କ ପୂର୍ବରୁ ଓ ତାଙ୍କ ସମସାମୟିକ ଓଡ଼ିଆ କବିମାନେ ଯେତେବେଳେ ରାଧାକୃଷ୍ଣ ଲୀଳା, ରାମବିବାହ, କିଚ଼କ ବଧ ଓ ବିଭିନ୍ନ ହରଣ ଓ ସ୍ୱୟମ୍ବରର କଥାମାନଙ୍କୁ ସରସ ସଦ୍ୟ କରିବାରେ କେବଳ ମନପ୍ରାଣ ଢାଳି ଦେଇଥିଲେ ସେତେବେଳେ ଭୀମ ସାହିତ୍ୟକୁ ନବଯୁଗ ନିର୍ମାଣର ମାଧ୍ୟମ ଭାବେ ଗ୍ରହଣ କରିଥିଲେ । ସାହିତ୍ୟର ଏହି ମୂଲ୍ୟବୋଧଗତ ବା ଆଭିମୁଖ୍ୟଗତ ନୂତନତା ଓଡ଼ିଆ ସାହିତ୍ୟର ଗତିଧାରାରେ ଭୀମଙ୍କୁ ଏକ ବ୍ୟକ୍ତିକ୍ରାନ୍ତ ବ୍ୟକ୍ତିତ୍ୱର ଯୁଗପୁରୁଷ ଭାବେ ଚିହ୍ନିତ କରେ ।

ଯୁଗେ ଯୁଗେ କବି, ଲେଖକ, ଦାର୍ଶନିକ, ମହାପୁରୁଷ ସମସ୍ତେ ସାଧାରଣ ମଣିଷକୁ କ୍ରମଶଃ ଦିବ୍ୟଜୀବନ ଆଡ଼େ ଗତିକରିବା ପାଇଁ ଉଦ୍‌ବୋଧନ ଦେଇ ଆସିଛନ୍ତି । କାରଣ ଏହି ଜାଗତିକ ପୃଥିବୀରେ ଏକାନ୍ତ ସ୍ଥୂଳ ଜୀବନ ପରିଚ଼ର୍ଯ୍ୟା ଭିତରେ ଜଣେ ଜୀବନ ଯେ ଏକ ତପସ୍ୟାର ଫଳ—ଏହି ମହତ୍ତର ଉପଲବ୍‌ଧି କରିପାରେ ନାହିଁ । ବଣ ପାହାଡ଼, ଗିରିଝରଣା, ନଦୀ ଆକାଶର ନିର୍ମଳ ଶୋଭା ଦେଖି କେବଳ ତେଣୁ କେତେକ ପରିବୋଧନୀୟ ବିରଳ ମୁହୂର୍ତ୍ତରେ ତନ୍ମୟ ଚିତ୍ତ ହୋଇପଡ଼େ ।

ଯେ ଯେତେ ବଡ଼ ଆଧ୍ୟାତ୍ମିକବାଦୀ ସେ ସେତିକି ଭାବରେ ବେଶି ପ୍ରକୃତିପ୍ରାଣ । ବନ ଗହନରେ ଘୋର ନିକାଞ୍ଚନରେ ଭ୍ରମଣ କରିଥିବା ଭୀମ ପ୍ରକୃତି ଭିତରେ ମୂହ୍ୟମାନ ହୋଇ ଯାଉଥିଲେ । ଜନପଦର ତୁଚ୍ଛ ଦୈନନ୍ଦିନତା ପ୍ରତିଟି ଜାନପଦିକ ସଂଘର୍ଷ ଓ ଅତ୍ୟଧିକ ଲୋଭ ପାପ ମଣିଷର ଆତ୍ମାର ମୁକ୍ତି ମାର୍ଗକୁ ଯେ ରୁଦ୍ଧକରେ ଭୀମ ଏହା ଜାଣି ପାରିଥିଲେ ।

ଏକ ମିଶନାରୀ ଦାୟିତ୍ୱ ତୁଲାଇବା ପାଇଁ ସତେ ଯେପରି ସେ ତାଙ୍କ କବିତ୍ୱକୁ ଏକ ମାଧ୍ୟମ କରିଥିଲେ । ନୂତନ ଅଳଙ୍କାର ଚାତୁରୀ ନୂତନ ବ୍ୟଞ୍ଜନା ପ୍ରସ୍ଥ ବା ସୁମଧୁର ସଙ୍ଗୀତାବଳୀ ସୃଷ୍ଟି କରିବାର ଲକ୍ଷ୍ୟ ଅପେକ୍ଷା ଦିବ୍ୟଯୁଗ ଚ଼େତନା ସୃଷ୍ଟି କରିବାର ଇଚ୍ଛା ତାଙ୍କୁ ବାରବାର ପ୍ରୋତ୍ସାହିତ କରିଛି ।

ନିଜ ଦୁଃଖ ଓ ଦାରିଦ୍ର୍ୟରେ ସେ କଦାପି ବ୍ୟଥିତ ହୋଇନାହାନ୍ତି । ସେ ବ୍ୟଥିତ ହୋଇଛନ୍ତି ସମାଜର ଆଧୋଗତି ଦେଖି । ସମାଜ ରେ ଅନେକଙ୍କ ଅନ୍ଧ ଆସ୍ତିକତା, ପୌତ୍ତଳିକତା, ଅନ୍ୟପ୍ରତି ଅପ୍ରେମ, ଅଶ୍ରଦ୍ଧା, ଜଘନ୍ୟ ଜାତିପ୍ରଥା ଆଦି ବହୁ ବିଷୟରେ ତାଙ୍କ ଚିତ୍ତ କ୍ଷୁବ୍‌ଧ ହୋଇଛି । ଯେ ସମାଜକୁ ସବୁମତେ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ସ୍ୱପ୍ନ ଦେଖିଛନ୍ତି ଓ ଏହି ସ୍ୱପ୍ନ ତାଙ୍କ କବିତାର ବହୁ ପଦ ପଂକ୍ତି ଭିତରେ ପ୍ରତୀକିତ ହୋଇଛି ।

ଯେଉଁ ଶିଳ୍ପୀ ମାନବାତ୍ମାର କଲ୍ୟାଣ କାମନା କରେ ଓ କବିର ଏହି କଲ୍ୟାଣକର ଉପଲବ୍‌ଧିକୁ ଯେ ପ୍ରକାଶ କରେ ତା ଆତ୍ମାକୁ ଅନାଦର କରି ସେ ହିଁ ସର୍ବକାଳର କବି । ବାହ୍ୟ ଆଳଙ୍କାରିକତା ନୁହେଁ ବରଂ କବିର ସେହି ମାନବ କଲ୍ୟାଣକାରକ ବିଗଳିତ ଚିତ୍ତ କବିତାକୁ ଅନନ୍ତ କାଳ ପାଇଁ ପ୍ରାଣସ୍ପର୍ଶୀ କରି ରଖିଥାଏ । କବି ଚିତ୍ତର ଏହି ଭାବ ପରିଚର୍ଯ୍ୟା ତାଙ୍କୁ ଏକ ସୁସ୍ଥ ସମାଜ ପ୍ରତିଷ୍ଠାର ପ୍ରସ୍ତାବକ କରିଥାଏ । ନିଜର ଚିତ୍ତଭୂମି ପରର ମଙ୍ଗଳକାମନା ସ୍ୱପ୍ନର ଅଭିସିଞ୍ଚିତ ନହେଲେ ଜଣେ ପ୍ରାଣ ଦେଇ ଆତ୍ମାର ସଶ୍ରଦ୍ଧ ଉଚ୍ଚାରଣ କରିପାରିବ ନାହିଁ । କାରଣ ଚୈତନ୍ୟ ହିଁ ସବୁକଥା "The poet draws his inspiration from his soul and heart" (Croce).

ଅଳଙ୍କାର ଯୋଡ଼ିବା ସତ ଓ ଶକ୍ତିଶାଳୀ କବିଙ୍କର ଲକ୍ଷ୍ୟ ନୁହେଁ । ଏକ ବୃହତ୍ତର ଜାତୀୟ ଜୀବନର ଭାବ ପରିଧିରେ ବଡ଼କବି ମାତ୍ରେହିଁ ବିଷୟ ବିନ୍ୟାସ କରିଥାଏ ଓ ତା'ର ବାର୍ତ୍ତା ସେହି ଭାବରେ ଉଦ୍‌ବୋଧନ ମୂଳକ ହୋଇଥାଏ । ଭୀମଭୋଇ ସମାଜକୁ ନାନାମତେ ସୁସ୍ଥ ସୁନ୍ଦର କରିବାର ଯେଉଁ ପରିକଳ୍ପନା କରିଛନ୍ତି ତାଙ୍କର ଅନେକ କବିତା ତା'ର ଏକ ପଦ୍ୟବଦ୍ଧ ଇସ୍ତାହାର ।

କବି ଭୀମ ବଣଭୂମିରେ ବାସକରୁଥିଲେ ହେଁ ଆର୍ତ୍ତି ଅଶ୍ରୁ, ଦାବ ଦହନ ବିଦଗ୍ଧ ଜାନପଦିକ ଜୀବନର ଦୁଃଖ ମୋଚନ କରିବା ପାଇଁ ଶୂନ୍ୟଦେହୀଙ୍କୁ ନିରନ୍ତର ପ୍ରାର୍ଥନା କରିଛନ୍ତି । କବି କୋଟି ଜନଗଣ ପ୍ରାଣକୁ ବ୍ୟଥା ବେଦନାରୁ ରକ୍ଷା କରିବା ପାଇଁ ନିଜର ଗଭୀର ଆନ୍ତରିକତା ପ୍ରକାଶ କରିଛନ୍ତି ।

କବିଙ୍କର କେତେ ଧାଡ଼ି ରଚନା ସେହି "ସର୍ବେସନ୍ତୁ ନିରାମୟା" ଶ୍ଳୋକ ଉଚ୍ଚାରଣ କରିଥିବା ବୈଦିକ ଋଷିର ବାଣୀପରି ନିଜସ୍ୱ ପ୍ରାର୍ଥନା, ନିଜ ସଂକଳ୍ପର ସଶ୍ରଦ୍ଧ ପ୍ରକାଶ; ଅଥଚ୍ କେତେ ଉଦାର ଓ ଗମ୍ଭୀର ସେ ବାଣୀ ।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।"

ହିଂସା ନୁହେଁ ଅହିଂସା ହିଁ ମଣିଷ ଜୀବନର ସର୍ବଶ୍ରେଷ୍ଠ ଚ଼ର୍ଯ୍ୟା ହେବା ଉଚିତ । କବିଙ୍କ ନବଜୀବନବୋଧ ତାଙ୍କ ସମୟର ସମାଜ ଦ୍ୱାରା ସେତେ ବେଶୀ ଗୃହୀତ ହୋଇ ନଥିଲା । ସେ ଦିନର ଧର୍ମାନ୍ଧ, ଓ ଜାତିପ୍ରଥା ଦ୍ୱାରା କଳୁଷିତ ସମାଜକୁ ମାର୍ଜ୍ଜିତ କରିବା ପାଇଁ ମଣିଷର ଦୈନନ୍ଦିନ ଜୀବନ ପରିଚର୍ଯ୍ୟା ସଂପର୍କରେ କବି ଭୀମ ନାନା ହେତୁ ବାଦୀ ପ୍ରଶ୍ନ ଉତ୍‌ଥାପନ କରି ଯାଇଛନ୍ତି । ଧର୍ମ, ବିଚାର, ଆତିଥ୍ୟ ଆଚ଼ରଣ ସମାଜସେବା, ଗୁରୁପୂଜା, ଈଶ୍ୱର ବିଶ୍ୱାସ ଏପରି କି ଦାମ୍ପତ୍ୟ ଜୀବନର ପ୍ରେମ ପ୍ରଣୟ, ପୁରୁଷର ସ୍ତ୍ରୀ ସହବାସ ଓ ନାରୀର ଋତୁପାଳନା ସଂପର୍କରେ ନବଯୁଗ ଦ୍ରଷ୍ଟା କବି ଭୀମ ବାସ୍ତବ ପ୍ରବଚନ ଦେଇ ଯାଇଛନ୍ତି । ଆତ୍ମା ଓ ଶରୀର ଉଭୟର ସ୍ୱାସ୍ଥ୍ୟ ବିଧାନ ଥିଲା ଭୀମଙ୍କ ନୂତନ ସମାଜ ପରିକଳ୍ପନାର ଅନ୍ୟତମ ଲକ୍ଷ୍ୟ । ବ୍ୟକ୍ତିର ଶରୀର ରୁଗ୍‌ଣ ହୋଇପଡ଼ିଲେ ତା'ର ସମାଜ ଧର୍ମ ମଧ୍ୟ ବିପନ୍ନ ହୋଇ ପଡ଼ିବ ବୋଲି ସେ ମନେ କରୁଥିଲେ ।

ଉଭୟ ରାଜା, ପ୍ରଜା, ଧନୀ, ଦରିଦ୍ର ସମସ୍ତଙ୍କ ଆଗରେ ସେ ତାଙ୍କର ଧର୍ମ ଦର୍ଶନ ଓ ଆଦର୍ଶକୁ ସୁନ୍ଦର ପଦାବଳୀରେ ଉପସ୍ଥାପନ କରିଯାଇଛନ୍ତି । ସେତେବେଳେ ସମଗ୍ର ଭାରତବର୍ଷରେ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଏକ ଶୁଦ୍ଧ ଉଦାର ମାନବଧର୍ମ ସମ୍ବଳିତ ବ୍ରାହ୍ମ ଧର୍ମର ପ୍ରଭାବ ଇତସ୍ତତଃ ପରିଲକ୍ଷିତ ହୋଇଥିଲା । କେତେକ ମିଶନାରୀ ମଧ୍ୟ ଭାରତବର୍ଷ ସମାଜରୁ ଅନ୍ଧ ପୌତ୍ତଳିକତା, ନାନା ପକାର ଅନ୍ଧ ବିଶ୍ୱାସ ଦୂର କରିବା ପାଇଁ

ସକ୍ରିୟ ଉଦ୍ୟମ ଆରମ୍ଭ କରି ଦେଇଥିଲେ । ହୁଏତ ଭୀମଙ୍କ ଗୁରୁ ଅଲେଖ ଗୋସାଇଁ ଜଣେ ବ୍ରାହ୍ମଧର୍ମାବଲମ୍ବୀ ହୋଇ ପାରିଥାନ୍ତି ।

ଭୀମ ଯେଉଁ ସମାଜରେ ଜନ୍ମଗ୍ରହଣ କରିଥିଲେ ସେହି କନ୍ଧ ସମାଜ ଥିଲା ନାନା କୁସଂସ୍କାରଗ୍ରସ୍ତ ରକ୍ଷଣଶୀଳ ସମାଜ । ପ୍ରାଚୀନ ବିଶ୍ୱାସର ବଶବର୍ତ୍ତୀ ହୋଇ ଏହି କନ୍ଧମାନେ ହଳଦୀର ରଙ୍ଗ ହେବା ପାଇ ହଳଦୀ କିଆରୀରେ ନରବଳି ଦେଉଥିଲେ । ହେତୁବାଦୀ ତଥା ମାନବବାଦୀ ଭୀମଙ୍କୁ ଏହି ନରବଳି ପ୍ରଥା ହୁଏତ କମ୍ ବ୍ୟଥିତ କରି ନଥିବ ।

ପୁରୀର ପଣ୍ଡା ଓ ମଠାଧୀଶମାନେ ୟୁରୋପୀୟ ଧର୍ମଯାଯକଙ୍କ ପରି ସାଧାରଣ ଲୋକଙ୍କ ଉପରେ ଧର୍ମ ନାମରେ ଶୋଷଣ ଆରମ୍ଭ କରିଥିଲେ । ପୁରୀର ଅନୀତି ଅନାଚାରକୁ ଲକ୍ଷ୍ୟ କରି ମିଶନାରୀମାନେ ପୁରୀକୁ ସଇତାନର ନିବାସସ୍ଥଳୀ (Devil's head quarters) ବୋଲି ବର୍ଣ୍ଣନା କରୁଥିଲେ । କବି ଭୀମ ତେଣୁ ଏହି ଧର୍ମ ଯାହା ପିତ୍ତୁଳାପୂଜା ସର୍ବସ୍ୱ ଥିଲା ତାହା ବିରୋଧରେ ଜଣେ ବିପ୍ଳବୀ ସଂସ୍କାରକର ମନୋଭାବ ନେଇ ପ୍ରତିବାଦ କରିଛନ୍ତି । ଜଗନ୍ନାଥ କେବଳ ହିନ୍ଦୁମାନଙ୍କର ଦେବତା ହୋଇ ରହିଛନ୍ତି । ଜଗନ୍ନାଥଙ୍କ ପୂଜାରୀମାନେ ହିନ୍ଦୁମାନଙ୍କବ୍ୟତୀତ ଅନ୍ୟମାନଙ୍କୁ ବିଜାତୀୟ, ବିଧର୍ମୀ ଜ୍ଞାନ କରୁଥିଲେ । ଭୀମ ତାଙ୍କ ଶିଷ୍ୟ ପ୍ରଶିଷ୍ୟଙ୍କ ଗହଣରେ ପୁରୀ ମନ୍ଦିର ଆକ୍ରମଣ କରିବା କମ୍ ବଡ଼ ସ୍ପର୍ଦ୍ଧିତ ଘଟଣା ନୁହେଁ । ଏହା ଭୀମଙ୍କ ସାହସ ଓ ଆଧ୍ୟାତ୍ମିକ ଶକ୍ତିର ପରିଚୟ ଦିଏ ।

ଅତିବଡ଼ ଏକ ଆଧ୍ୟାତ୍ମିକ ଜୀବନ ପ୍ରତି କବିଙ୍କ ପ୍ରାଣରେ ଉନ୍‌ଖତା କବିଙ୍କୁ ନିର୍ଭୀକ କରିବା ସଙ୍ଗେ ସଙ୍ଗେ ଏକ ସୁନ୍ଦର ପ୍ରେମମୟ ନବଜୀବନ ପ୍ରତି ଆକୃଷ୍ଟ କରିଥିଲା । ଯେଉଁ ଜୀବନ ସତତ ପାପ ତାପରେ ପୀଡ଼ିତ, ଶଙ୍କାକୁଳ ଅସ୍ଥିର ଓ ଅସଂଯତ ସେ ଜୀବନ ଦେଇ ଜଣେ ନବ ଜୀବନର ସ୍ୱାଦ ଲାଭ କରିପାରିବ ନାହିଁ । ଅନ୍ତରକୁ ନିର୍ଭୀକ ଓ ନିର୍ମଳ କଲେ ଯାଇ ଜଣେ ପ୍ରକୃତରେ ଦେବତ୍ୱ ଉପଲବ୍ଧି କରିପାରିବ ।

ଏକାନ୍ତ ଗୃହସ୍ଥର ଜୀବନ ଭିତରେ ହିଁ ନିଜର କୌଳିକ ବୃତ୍ତି କରି ଜଣେ ଈଶ୍ୱରମୟ ଜୀବନଯାପନ କରିପାରେ । ନିର୍ମଳ ମନ ସଦାଚ୍ଚାର ଗ୍ରହଣ ଓ ଉଦାର ମାନବ ପ୍ରେମ ହିଁ ଜଣକୁ ଦିବ୍ୟ ଜୀବନ ଲାଭର ମାର୍ଗ ଉନ୍ମୁକ୍ତ କରିଦିଏ । ଭୀମଙ୍କର ଏହି ଦିବ୍ୟଜୀବନବୋଧ ଓ ତାର ପୁଲକାନୁଭୂତି ସେଦିନ ସମାଜରେ ଏକାନ୍ତ ଅଭିନବ ଥିଲା । ଆଗାମୀ ଦିନର ସାମାଜିକ ସଂସର୍ଗ, ସଂସ୍କୃତି, ଧର୍ମଧାରଣା ତଥା ଜାତିବୋଧର ବାସ୍ତବ ରୂପରେଖ କ'ଣ ହେବ ତାହା ଭୀମ ଜଣେ ଭବିଷ୍ୟ ଦ୍ରଷ୍ଟା ଭାବେ ଯେପରି ଜାଣି ପାରୁଥିଲେ ।

ସେ ଲେଖିଛନ୍ତି—

'ପୂର୍ବର ଲୋକ ପଶ୍ଚିମେ ପଳାଇବେ
ପଶ୍ଚିମର ଲୋକ ପୂର୍ବେ
ଚାରିଦିଗ ଲୋକେ ଏକାତ୍ମ ହୋଇବେ
ମିଶାମିଶି ହୋଇ ସର୍ବେ । '

ଭୀମ ଯେଉଁ ଦିବ୍ୟ ଯୁଗ ଓ ଜୀବନର ସ୍ୱପ୍ନ ଦେଖିଥିଲେ ପ୍ରତିମାପୂଜା ସେହି ଦିବ୍ୟ ଜୀବନବୋଧର ବାଧକ ବୋଲି ସ୍ପଷ୍ଟ ଉପଲବ୍ଧି କରୁଥିଲେ । ଗୋଟିଏ ପ୍ରତିମା ଗୋଟିଏ ଭୂଖଣ୍ଡର ଜନପୁଞ୍ଜକୁ ଗୋଟିଏ ଶ୍ରେଣୀରେ ପରିଣତ କରେ । ସେହିପରି ଆଉ ଗୋଟିଏ ପ୍ରତିମା ଅନ୍ୟ ଏକ ଧର୍ମାବଲମ୍ବୀ ଶ୍ରେଣୀ ସୃଷ୍ଟି କରେ । କିଏ ଶୈବ, କିଏ ଶାକ୍ତ ତ ପୁଣି କିଏ ବୈଷ୍ଣବ ଅବା ପୁଣି କିଏ ଗାଣପତ୍ୟ । ଏହି ପ୍ରତିମାପୂଜା ଭେଦରେ ଗଢ଼ିଉଠିଥିବା ଧାର୍ମିକ ଶ୍ରେଣୀ ମଧ୍ୟରେ ସଂଘର୍ଷ ଏକାନ୍ତ ଦୁର୍ନିବାର ।

ଏହିପରି ଭାରତବର୍ଷ ତେତିଶ କୋଟି ଦେବତାର ନିବାସସ୍ଥଳ । ଏହି ମୂର୍ତ୍ତିପୂଜା ନାଁରେ ଆମର ସାମାଜିକ ସଂହତି, ମୈତ୍ରୀ ଓ ବୁଝାମଣା ଯେ କେତେ ବ୍ୟାହତ ନହୁଏ ? ଅଥଚ ଆମେ ସେହି ପ୍ରତିମାପୂଜା ନାଁରେ ବେଳେବେଳେ ସମାଜର ନିଷ୍ପାପ ମଣିଷର ମଣିଷତାକୁ ବି ବେଖାତିର କରିଯାଉ ।

ଭୀମଙ୍କ ମୃତ୍ୟୁର ଅନେକ ବର୍ଷ ପରେ ବି ଭାରତବର୍ଷରେ ଆଜି ଏହି ପ୍ରତିମା ପୂଜା ଓ ମେଢ଼ ଶୋଭାଯାତ୍ରା ସମୟରେ ଦଙ୍ଗାହୋଇ ଶହ ଶହ, ହଜାର ହଜାର ଲୋକ ମୃତ୍ୟୁବରଣ କରୁଛନ୍ତି । ଭାରତବର୍ଷର କୌଣସି ନା କୌଣସି ଭୂଖଣ୍ଡ ମଣିଷ ରକ୍ତରେ ରଞ୍ଜିତ ହୁଏ । କବି ଭୀମଙ୍କର ଦିବ୍ୟଜୀବନ ସଂପର୍କରେ ସ୍ୱପ୍ନ ଯଦି ସାର୍ଥକ ହୋଇଥାନ୍ତା ତାହେଲେ ଜାତି ଓ ପୌତ୍ତଳିକତା ନାମରେ ମଣିଷ ସମାଜରେ ଆଜି ନରସଂହାର ଚାଲି ନଥାନ୍ତା ।

ସମସାମୟିକ କଳୁଷିତ ବାତାବରଣ ଶୀଘ୍ର ଅପସାରିତ ହେବ ବୋଲି କବି ଭୀମ ଏ ବିଷୟରେ ହିବ୍ରୁ ଋଷିମାନଙ୍କ ପରି ଏକାନ୍ତ ଆଶାବାଦୀ ଥିଲେ । ତାଙ୍କ ମହିମା ଗାଦିକୁ ପ୍ରକୃତରେ ଏହି ନବଯୁଗର ବାର୍ତ୍ତା ପ୍ରଚାର ପ୍ରସାର ପାଇଁ ଏକ ସଂଘରେ ପରିଣତ କରିଥିଲେ ।

ଭୀମ ସେଦିନ ନିରକ୍ଷର ଥାଇ ଆପଣାର ଅତିବଡ଼ ହୃଦୟବତ୍ତା ଦେଇ ସେ ତାଙ୍କ ଗୁରୁ ମହିମା ଗୋସାଇଁଙ୍କ ଦ୍ୱାରା ଉଦ୍‌ବୋଧିତ ହୋଇଛନ୍ତି । ଏ ଦୃଷ୍ଟିରୁ କବି ଜୀବନ ଥିଲା ଗୁରୁପଦଧ୍ୟାୟୀ ଏକ ଉତ୍ସର୍ଗୀକୃତ ତଥା ଉଦ୍‌ବୋଧିତ ଜୀବନ ।

ଭୀମ ଥିଲେ ଭ୍ରାମ୍ୟମାଣ । ଭୀମଙ୍କର ଏହି ଭ୍ରାମ୍ୟମାଣ ଯାଯାବର ଜୀବନ ତାଙ୍କର ଜାନପଦିକ ମୋହ ଦୂର କରିଥିଲା ଓ ସେ ବିଶ୍ୱକୁ ଗୋଟିଏ ଜନପଦ ବୋଲି ମନେ କରୁଥିଲେ । ପୁରୁଣା ସମାଜକୁ ନୂଆକରି ଗଢ଼ିବାର ଉଦ୍ଦେଶ୍ୟ ପ୍ରତ୍ୟେକ ସମାଜ ସଚେତନ ସତ୍ ସାହିତ୍ୟିକଙ୍କର ଥାଏ । ଏହି ଗଢ଼ିବାର ସଦିଚ୍ଛା ପ୍ରତ୍ୟେକ ସତ୍ ସୃଜନଶୀଳତାର ସର୍ତ୍ତ ।

ସତେ ଯେପରି କବି ଭୀମଭୋଇ ଜଣେ ମହାନ ସନ୍ୟାସୀଙ୍କ ପରି ନିଜର ଆଧ୍ୟାତ୍ମ୍ୟ ଅଭିଲିପ୍‌ସାକୁ ସରସ ସଙ୍ଗୀତାବଳୀ ଭିତରେ ଗାଇ ଯାଇଛନ୍ତି । କବିତାକୁ ମଧ୍ୟଯୁଗୀୟ ଆଳଙ୍କାରିକ ଆଦର୍ଶରେ ଗଢ଼ି ତୋଳିବାର ଆଳଙ୍କାରିକ ଚେଷ୍ଟା ଅପେକ୍ଷା ନିଜ ଭାବ ଭାବନାକୁ ସରଳ ପଦ ପଦାର୍ଥ ଭିତରେ ବ୍ୟକ୍ତ କରିବାର ପ୍ରବଣତା ତାଙ୍କର ଅଧିକ ଥିଲା । କାରଣ ମଧ୍ୟଯୁଗୀୟ ଅନେକ ଓଡ଼ିଆ କାବ୍ୟକର୍ତ୍ତାଙ୍କ ପରି କାବ୍ୟସାଧନା ତାଙ୍କ ଉଦ୍ଦେଶ୍ୟର ବିଷୟ ନଥିଲା । କବିତା ଥିଲା ତାଙ୍କ ନବଯୁଗ ନିର୍ମାଣର ଏକ ମାଧ୍ୟମ ।

ଜଣେ କବି କେତେ ଚମତ୍କାର ଅଳଙ୍କାର ସୃଷ୍ଟି କରିଛି, କେତେଖଣ୍ଡ କାବ୍ୟ ରଚନା କରିଛି ତାରି ଉପରେ କବିର କବିତ୍ୱ ନିର୍ଣ୍ଣିତ ହୁଏନାହିଁ । ହୁଏ ବରଂ ଜଣେ କବିର ସତ୍‌ଇଚ୍ଛା ଓ ସତ୍ ସଂକଳ୍ପର ସ୍ୱକୀୟତାରୁ । ସତ୍ ଭାବନାରେ, କୋଟି ମଣିଷର ଦୁଃଖ ମୋଚନ କରିବାର କାମନାରେ ଜଣକର ଚିତ୍ତ ଆତ୍ମବିଭୋର ନହେଲେ ସେ କବି ହୋଇପାରିବନି । ଭୀମ ଭୋଇଙ୍କର ଆତ୍ମା ସତରେ ଭାବବିହ୍ୱଳ ଆଧ୍ୟାତ୍ମ୍ୟ ଭାବରେ ଉଦ୍‌ବୋଧିତ ଆତ୍ମା । ତେଣୁ ତାଙ୍କ କବିତାର ବ୍ୟଞ୍ଜନା ପ୍ରସ୍ଥର ଚମତ୍କାରିତା ନିର୍ଣ୍ଣୟ କରିବା ଅପେକ୍ଷା ତାଙ୍କ ଆତ୍ମାର ସେହି ମାନବକଲ୍ୟାଣକର ବର୍ଣ୍ଣାଢ୍ୟ ଭାବବିନ୍ଦୁଟିକୁ ହିଁ ସବୁମତେ ଚିହ୍ନଟ କରିବା ଆବଶ୍ୟକ ।

ସମାଜକୁ ନୂଆ କରି ଗଢ଼ିବାର ଅଭିଳାଷ ଭୀମଙ୍କୁ କ୍ରମଶଃ ଏକ ବୃହତ୍ତର ଆଧ୍ୟାତ୍ମିକ ସଂଗଠନ ଭିତରକୁ ନେଇ ଯାଇଥିଲା । ଏ ପାର୍ଥିବ ଜଗତରେ ଜଣେ ସଂସାର କର୍ମ ବ୍ୟସ୍ତ ଗୃହସ୍ଥ ନିଜକୁ ସମର୍ପି ଦେଇ କେବଳ ସଦାଚାରୀ ହୋଇ ପାରିବ ବୋଲି ଭୀମ ଉପଲବ୍‌ଧି କରିଛନ୍ତି । ଏ ବାସ୍ତବ-ବୋଧି ଚିତ୍ତର ତୁଳନା ନାହିଁ ।

ଭୀମ ଲେଖିଛନ୍ତି—

'ଆପଣା ପିଣ୍ଡ ପ୍ରାଣ ଦାନ କରିବା ସଦ୍‌ଗୁରୁଙ୍କ ପାଦେ
ଦାରାସୂତ ବିତ୍ତ ସକଳ ସମର୍ପି ରହିବା ମନ ଆନନ୍ଦେ
ଆପଣା ଭାଇ ଭଗ୍ନୀ ଜ୍ଞାତି ବାନ୍ଧବ ସକଳ ସମର୍ପି ଦେଇ
ପାଇଲ ବୋଲି ସତ୍ୟ ସତ୍ୟ କହିବ ମନରେ ଆନନ୍ଦ ହୋଇ ।'

ବିଷୟାସକ୍ତି ହିଁ ଅନନ୍ତ ଦୁଃଖର କାରଣ । ଜଣେ ବିଷୟୀ ମଣିଷ ଜଗତର ହୀରା, ନୀଳା, ମୋତିମାଣିକ୍ୟ ଠାରୁ ଆହୁରି ମନଲୋଭା ବଣର ଫୁଲ, ଆକାଶର ତାରା, ଭରାବାଦଲର ରାତି ପ୍ରତି କେବେ ବି ପ୍ରଲୁବ୍‌ଧ ହୋଇପାରେ ନାହିଁ । ଜୀବନ ସରିଯାଏ । କି ଅସାର ଜୀବନ ସେମାନଙ୍କର । ଭୀମ ସେମାନଙ୍କର ଜୀବନର ଆନନ୍ଦ ପାଇଁ, ମୁକ୍ତି ପାଇଁ ଗୀତ ଗାଇଛନ୍ତି ।

ଟଲଷ୍ଟୟ, ଗାନ୍ଧୀ ପ୍ରମୁଖ ଜନନାୟକମାନେ ସମାଜରେ ସମାଜବାଦୀ ଚେତନାକୁ ବ୍ୟକ୍ତି ଅନ୍ୟ ପ୍ରତି ତା ନିଜ ପବିତ୍ର ସାମାଜିକ କର୍ତ୍ତବ୍ୟବୋଧର ଅଂଶ ବୋଲି ତା ଅନ୍ତର ଦେଇ ମନେକରୁ ବୋଲି ଯାହା କହିଛନ୍ତି ଭୀମ ଭୋଇ ଅନୁରୂପ ଭାବେ ଅନ୍ୟପ୍ରତି ସମସ୍ତେ ଉତ୍ସର୍ଗୀକୃତ ମନୋଭାବ ପୋଷଣ କରନ୍ତୁ, ଅନ୍ୟପ୍ରତି ଦୟାର୍ଦ୍ର ହୁଅନ୍ତୁ ବୋଲି ଆଶା କରିଛନ୍ତି । କାରଣ ପୃଥିବୀର କୁତ୍ରାପି ମଣିଷ ପ୍ରତି ମଣିଷର ଦୟା ସମ୍ବେଦନଶୀଳତା ଏକ ରାଜନୀତିକ ସର୍ତ୍ତର ବିଷୟ ନୁହେଁ । ସେହିପରି ସମାଜବାଦ । ତାହା ସମାଜର ପ୍ରତ୍ୟେକ ଲୋକ ଅନ୍ତରର ସ୍ୱତଃ ଉତ୍ସାନ୍ତରିତ ହୋଇ ଆସିବା ଉଚିତ ।

ମଣିଷ ନିସର୍ଗ ଭାବେ ସମାଜବାଦୀ ହେଉ କବିଙ୍କ ଅନ୍ତରର ଏହା ଥିଲା ସବୁଠାରୁ ବଡ଼ ଆଶାବାଦୀ ଅଭିଳାଷ । ଦିବ୍ୟଯୁଗର ଦ୍ରଷ୍ଟା ଭୀମ ଖାସ ଏଇ ସ୍ୱପ୍ନ ହିଁ ଦେଖିଛନ୍ତି । ସଦ୍‌ଗୁରୁ ଚରଣରେ ମଥା ନତକଲେ ଜଣେ ନିଜକୁ ସ୍ୱାର୍ଥପରତା ଠାରୁ ରକ୍ଷା କରିପାରିବ ଓ ଜୀବନରେ ଦିବ୍ୟ ଆନନ୍ଦଲାଭ କରିପାରିବ ।

ଭୀମଙ୍କ ପରିକଳ୍ପିତ ଯୁଗ ଓ ସମାଜର ମଣିଷ ଆତ୍ମମୁଖୀ ନହୋଇ ବହୁମୁଖୀ ଓ ବିଶ୍ୱମୁଖୀ । ଭୀମ ପ୍ରତ୍ୟେକ ଜନପଦକୁ ଏକ ଏକ ଆଶ୍ରମ ଜ୍ଞାନ କରିଛନ୍ତି; ଯେଉଁଠି ବ୍ୟକ୍ତିର ବୃହତ୍ତର ଲୋକ ସଂପର୍କ ପରିବ୍ୟାପ୍ତ ହୁଏ ସିନା ସଙ୍କୁଚିତ ହୁଏନାହିଁ । ଲୋକର ଅତ୍ୟଧିକ ବିଷୟାସକ୍ତି ଓ ସଂସର୍ଗ ତା ଆତ୍ମସଙ୍କୋଚନର କାରଣ ହୋଇଥାଏ ।

କ୍ଷମା, କରୁଣା ରାଜଦଣ୍ଡକୁ ନିୟନ୍ତ୍ରଣ କରୁ । କୌଣସି ପ୍ରକାର ଅମାନବିକ କଠିନ ରାଜଦଣ୍ଡ ଶାସିତର ହୃଦୟ ବଦଳାଇ ଦେଇପାରେ ନାହିଁ ବୋଲି ଭୀମ କହୁଥିଲେ । ତଦାନୀନ୍ତନ ପ୍ରଜାପୀଡ଼କ ରାଜପୁରୁଷଙ୍କୁ ଆହ୍ୱାନ ଦେଇ କବି ଗାଇଛନ୍ତ—

'ରାଜାମାନେ ରାଜନୀତି କରୁଥାନ୍ତି ଦଣ୍ଡ ସିଂହାସନେ ବସି
ଦୋଷକୁ ଚାହିଁ ବୁଝାମଣା କରନ୍ତୁ ହୃଦରେ ମହିମା ଘୋଷି
ଦୋଷକୁ ଚାହିଁ ନଦେଲେ କି ରୂପେ ଚଳିବ ପୃଥି
ରଇତ ପରଜା କି ରୂପେ ମାନିବେ ବଣା ହୋଇଯିବ ମତି ।'

ଏ ପରିପ୍ରେକ୍ଷୀରେ ସେହି ଜଘନ୍ୟ ଜାତିପ୍ରଥା ବିରୋଧରେ ଗଣବିପ୍ଳବ ସୂଚନା ଦେଇଥିବା କବି ମତ୍ତ ବଳରାମ, ସମାଜର କୋଟି ଜନପ୍ରାଣୀଙ୍କୁ ନିଜସ୍ୱ ବୃତ୍ତି ବିବେକ ଓ ଜ୍ଞାନବଳେ ଜୀବନଚର୍ଯ୍ୟା କରିବା ପାଇଁ ପ୍ରବଚନ ଦେଇଥିବା ଭାବବିହ୍ୱଳ କବି ଦୀନକୃଷ୍ଣଙ୍କ ବ୍ୟକ୍ତିତ୍ୱ ସ୍ମରଣକୁ ଆସେ ।

କବି ଭୀମ ମନେକରୁଥିଲେ, ଅନ୍ତରର ଆବେଗ ବଳରେ ମଣିଷ ଏ ବିଶ୍ୱବ୍ରହ୍ମାଣ୍ଡକୁ ଅନୁଭବ କରେ । ବିଶ୍ୱପ୍ରାଣତାର ବିପୁଳ ପ୍ରବଣତା ନଥିବା ମଣିଷଟି ଇତରଙ୍କ ପରି ଆତ୍ମରତିରେ କେବଳ ଘାଣ୍ଟି ହେଉଥାଏ । ବିଶ୍ୱକୁ ଦେଖିବା ବିଶ୍ୱାତ୍ମାଙ୍କୁ ଅନୁଭବ କରିବାର ପ୍ରଶସ୍ତ ଗବାକ୍ଷ ହେଉଛି ବ୍ୟକ୍ତିର ଅନ୍ତରଙ୍ଗ ଆତ୍ମା । ତାହା ବିଶ୍ୱ ଭାବରେ ବିଗଳିତ ହେଲେ ବ୍ୟକ୍ତିର ଆତ୍ମା ଅନନ୍ତର ଉପଲବ୍ଧି କରେ । ପରମ ପୁରୁଷାର୍ଥ ବସ୍ତୁତଃ ସେହି ବିଶ୍ୱମନସ୍କତାରୁ ହିଁ ମିଳେ । ସମସ୍ତଙ୍କ ଠାରେ ସମଚିତ୍ତ ହେବା ପାଇଁ ସାର ଶାଶ୍ୱତର ଦାର୍ଶନିକ ଶଙ୍କର କହିଛନ୍ତି— ଭବ ସମଚିତ୍ତଃ ସର୍ବତ୍ର ତ୍ୱଂ । କବି ଭୀମଙ୍କ ଜଗତ ଉଦ୍ଧାର ହେଉ ଉପଲବ୍ଧିଟି ସେହି ସର୍ବେ ଭବନ୍ତୁ ସୁଖୀନଃ ଅନୁଭବର ଏକ ଭାବପୂର୍ଣ୍ଣ ହାର୍ଦ୍ଦିକ ପ୍ରକାଶ ।

କ୍ଷୁଦ୍ରତାରୁ ମୁକ୍ତି ନ ପାଇଲେ ଜୀବନର ପ୍ରକୃତ ମୁକ୍ତି ନାହିଁ । କ୍ଷୁଦ୍ରତା କବଳରୁ ରକ୍ଷା ପାଇବାର ଏକମାତ୍ର ପନ୍ଥା ହେଉଛି ନିଜର ଆତ୍ମା ଦେଇ କ୍ରମଶଃ ମୃତ୍ୟୁ ପର୍ଯ୍ୟନ୍ତ ଅଧିକରୁ ଅଧିକତର ବିଶ୍ୱମୁଖୀ ହେବା । ଜଣେ ଯେପରି ନିଜକୁ ନିଜଠାରୁ ଘୁଞ୍ଚାଇ ନେଇପାରେ ନାହିଁ ସେହିପରି ବ୍ୟକ୍ତି ନିଜକୁ ବିଶ୍ୱଠାରୁ ଅଲଗା କରି ନେଇପାରେ ନାହିଁ । ସେ ନିଜସ୍ୱ ଚେତନା ଦେଇ ବିଶ୍ୱଭାବରେ ବନ୍ଦନା କରେ; ବିଶ୍ୱ ଭ୍ରାତୃତ୍ୱର ଜୟଗାନ କରେ ।

ବିଶ୍ୱକୁ ନିଜ ଅନ୍ତରରେ ଅଭିଷିକ୍ତ କରିବାଠାରୁ ବଳି କବିତ୍ୱ ଆଉ କିଛି ନାହିଁ । ସେହି ବିଶ୍ୱଭାବ ପ୍ରବୋଧକ ହୃଦୟ ହିଁ ସତ୍ କବିତ୍ୱର ଉତ୍ସ । ଚର୍ଚ୍ଚ ଧର୍ମ ନାମରେ ଅନ୍ଧ ହୋଇ

ଅନ୍ୟଧର୍ମର ମଣିଷଙ୍କ ପ୍ରତି ଅଶ୍ରଦ୍ଧ ଓ ଅନୁଦାର ହେବାରୁ ସେ ପାଇଁ ଅନେକ ବିଶ୍ୱପ୍ରେମୀ ବାଛନ୍ଦ କରିଥଲେ ।

ମୁଁ ଅଛି, ଏହା ମୁଁ ଜାଣେ । ମୁଁ ଦ୍ରଷ୍ଟା, ଅନୁଜ୍ଞାତା । ମୁଁ ସକ୍ରିୟ, ମୁଁ ସ୍ରଷ୍ଟା—ଏମିତି ଅନୁଭବ ଜଣେ ବିଶ୍ୱ ଜୀବନଯାତ୍ରୀର କେବଳ ହୋଇଥାଏ । ତର୍କ ବୁଦ୍ଧିମୂଳକ ବିଜ୍ଞାନ (Rational Science) ଦ୍ୱାରା ମଣିଷ ଉଲ୍ଲିଖିତ ଉପଲବ୍ଧି କରିପାରେନା । ମଣିଷର ଏହି ଅନୁପମ ବିଶ୍ୱମନସ୍କତାର ଉପଲବ୍ଧି ସେହି ତର୍କ ବୁଦ୍ଧିର ଊର୍ଦ୍ଧ୍ୱତମ ବିଷୟ । ବୁଦ୍ଧି ବା ଜ୍ଞାନ ବଳରେ ଜଣେ ସାର୍ବିକତା (universality)କୁ ଉପଲବ୍ଧି କରିପାରେ ନାହିଁ; କରେ ଉଦ୍‌ବୋଧିତ ଚିତ୍ତର ଆବେଗ ବଳରେ; କେବଳ ଯାହା ଭୀମ କରି ପାରୁଥିଲେ । କବିଙ୍କର ଏହି ବିଶ୍ୱଜୀବନ ପ୍ରତି ଉନ୍ମୁଖତା ତାଙ୍କ ଗ୍ରନ୍ଥାବଳୀର ଅନେକ ଧାଡ଼ିରେ ସୂଚିତ ହୋଇଛି ।

ଭୀମଙ୍କ ନୂତନ ପରିକଳ୍ପନାକୁ ସେ ଦିନର ରାଜା ଓ ବ୍ରାହ୍ମଣମାନେ ଘୋର ବିରୋଧ କରିଛନ୍ତି । ଭୀମ ତେଣୁ ସମାଜର ପ୍ରଭାବଶାଳୀ ଲୋକଙ୍କ ସମର୍ଥନ ନପାଇ ବ୍ୟଥିତ ହୋଇଛନ୍ତି ।

"ପଞ୍ଚଭୂତ ଆତ୍ମା ଦଗଧି ହେଉଛି କାନ୍ଦୁଛି ନିତି
ଅନ୍ୟାୟ ସଂସାରେ ଅନୀତି ଆଚାର ଦେଖି କଳିଯୁଗ ରୀତି ।"

(ସ୍ତୁତି ଚିନ୍ତାମଣି)

ଦିବ୍ୟ ଯୁଗର ପ୍ରତିଟି ଯୁଗାଦର୍ଶ ଓ ଦିବ୍ୟଜୀବନ ସଂପର୍କରେ ସମାଜ ବିତାଡ଼ିତ କବି ଭୀମଭୋଇ ଯେଉଁ ସ୍ୱପ୍ନ ଦେଖିଥିଲେ ତାର ମହତ୍ତର ମାନବ ସଂପର୍କ ଦୃଷ୍ଟିରୁ ଏ ମାଟିର ବିପୁଳ ସାଂସ୍କୃତିକ, ସାମାଜିକ ତଥା ସାରସ୍ୱତ ଗତିଧାରାରେ ତାଙ୍କ କବିତା ଅନେକ ମାନବବାଦୀଙ୍କ ପାଇଁ ଉଭୟ ପ୍ରେମ ବିପ୍ଳବର ମହାନ ବାଣୀ ହୋଇ ରହିଯିବ ।



# ଆଉ ଜଣେ ରାଜକବି
# ଆଉ ଜଣେ ବିକ୍ରମାଦିତ୍ୟ

ଜଣେ ରାଜପୁରୁଷ ସରସ ଶ୍ଳୋକ ରଚନା କରି କିପରି ଅବିସ୍ମରଣୀୟ ସାରସ୍ୱତ ପୁରୁଷ ହୋଇ ପାରିଛନ୍ତି ସୁଢଳ ଦେବଙ୍କ ଜୀବନ ହେଉଛି ତା'ର ନିଦର୍ଶନ । ଏହି ସୁଧୀ, ସଜ୍ଜନ ରାଜପୁରୁଷଙ୍କ ଜୀବନ ସାଧକ ଓ ଶ୍ଳୋକକାର ମହିମ୍ନ ବିକ୍ରମାଦିତ୍ୟଙ୍କୁ ସ୍ମରଣକୁ ଆଣେ ।

ସଂସ୍କୃତଜ୍ଞ ଓ ସଂସ୍କୃତି ସଂପନ୍ନ ସୁଢଳ ଦେବ ଓଡ଼ିଶାର ସାରସ୍ୱତ ଆକାଶରେ ପ୍ରକୃତରେ ଉଜ୍ଜ୍ୱଳ ଜ୍ୟୋତିଷ୍କ ଥିଲେ ।

ସୁଢଳ ଦେବ ଓଡ଼ିଶାର ବାମଣ୍ଡା ପରି ଏକ ଗଡ଼ଜାତ ରାଜ୍ୟର ରାଜା ହୋଇଥିଲେ ହେଁ ତାଙ୍କ ଅନ୍ତର ସର୍ବଦା ସାର ଓ ଶାଶ୍ୱତ ପ୍ରତି ଉନ୍ମୁଖ ଥିଲା । ତାଙ୍କ ସଂସ୍କୃତ ଓ ସଂସ୍କୃତି ପ୍ରୀତି ସେହି ନିଷ୍କପଟ ସାରସ୍ୱତ ସଦିଚ୍ଛାର ନିଦର୍ଶନ ।

ବାସୁଦେବ ସୁଢଳ ଦେବ ସମଗ୍ର ଓଡ଼ିଶାର ସାରସ୍ୱତ ସଂଗଠନର ଜଣେ ଅଗ୍ରଣୀ ପୁରୁଷ; ତାଙ୍କୁ ସ୍ୱୀକାର କରି କବିବର ରାଧାନାଥ ଗାଇଛନ୍ତି :

'ପାହିଲାଣି ଘୋର ତାମସୀ ଯାମିନୀ
ଫୁଟିବ ଉତ୍କଳ ଭାଷା କମଳିନୀ,
ସେ ଘୋର ଯାମିନୀ ଅବସାନ ଶଂସୀ
କାବ୍ୟତାରାରୂପେ ବୀର ଗଙ୍ଗବଂଶୀ
ଉଦିଲେ ପ୍ରଥମେ ବାମଣ୍ଡା ରାଜନ
ବାସୁଦେବ ବିଶ୍ୱ କଲ୍ୟାଣ ଭାଜନ ।'

ରାଧାନାଥଙ୍କ ପରି ଓଡ଼ିଶାର ଆଉ ଜଣେ ସମର୍ଥ ସାରସ୍ୱତ ପୁରୁଷଙ୍କ ଏହା କେବଳ ସ୍ୱୀକାରୋକ୍ତି ନୁହେଁ ବରଂ ତାଙ୍କ ପ୍ରତି ଶ୍ରଦ୍ଧା ଓ ସଦିଚ୍ଛାରେ ନିଦର୍ଶନ ରୂପେ କବିବର ତାଙ୍କର 'ଚନ୍ଦ୍ରଭାଗା' ଓ 'ନନ୍ଦି କେଶରୀ' କାବ୍ୟ ବାସୁଦେବଙ୍କ ନାଁରେ ଉତ୍ସର୍ଗ କରିଛନ୍ତି ।

ବାସୁଦେବଙ୍କ ସାହିତ୍ୟର ଗ୍ରାହକତା ଓ ପୃଷ୍ଠପୋଷକତା ପ୍ରକୃତରେ ଅନନ୍ୟ ଓ ଉଲ୍ଲେଖଯୋଗ୍ୟ ।

ବାସୁଦେବ ଯେ ଜଣେ ସଂସ୍କୃତ ଶ୍ଳୋକକାର ଥିଲେ ତା ନୁହେଁ ସେ ଥିଲେ ଏକାଧାରରେ ଜଣେ ଶାସ୍ତ୍ରମାନ ପଣ୍ଡିତ, ରସଜ୍ଞ, ପ୍ରକୃତିପ୍ରାଣ ତଥା ଏକାନ୍ତ ଭାବରେ ସାହିତ୍ୟ ରସିକ । ତାହା ନ ହୋଇଥିଲେ ସେ କେବଳ ବାମଣ୍ଡା ରାଜ୍ୟରେ ନୁହେଁ ସମଗ୍ର ଓଡ଼ିଶାର ସାରସ୍ୱତ ଜୀବନକୁ ସମୃଦ୍ଧ କରିବା ପାଇଁ ସଚେଷ୍ଟ ନଥାନ୍ତେ ।

ସୁଢଳ ଦେବ ଥିଲେ ଜଣେ ଉଚ୍ଚାଭିଳାଷୀ ରାଜା, ସାହିତ୍ୟର ବିନୀତ ପୃଷ୍ଠ ପୋଷକ । ଅସଂଖ୍ୟ ତାଙ୍କର କୀର୍ତ୍ତିରାଜି ।

ଓଡ଼ିଶାର ମୁଦ୍ରଣାଳୟ ପ୍ରତିଷ୍ଠା ତଥା ପତ୍ର ପତ୍ରିକା ଆଲୋଚ଼ନାକୁ ମଧ ସେ ତ୍ୱରାନ୍ୱିତ କରିଛନ୍ତି । ତାଙ୍କର ୧୮୮୬ ଖ୍ରୀ.ରେ ଜଗନ୍ନାଥ ବଲ୍ଲଭ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ତଥା ୧୮୮୯ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର ହିତୈଷିଣୀ-ସାପ୍ତାହିକ ପତ୍ରିକାର ପ୍ରଚଳନ ଦୁଇଟି ଉଲ୍ଲେଖନୀୟ କୃତି; ଯାହାକୁ ଓଡ଼ିଶାର ସାରସ୍ୱତ ଇତିହାସ କେବେ ବିସ୍ମରି ଯାଇ ପାରିବ ନାହିଁ ।

ସୁଢଳ ଦେବ କେବଳ ସଂସ୍କୃତରେ ନୁହେଁ ମାତୃଭାଷା ଓଡ଼ିଆରେ ମଧ ଗ୍ରନ୍ଥ ରଚ଼ନା କରିଛନ୍ତି । ୧୮୯୩ ଖ୍ରୀ.ରେ ପ୍ରକାଶିତ ତାଙ୍କର 'ବୀରବାମା' ଏକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ । ଯେଉଁଥିରେ ସେ ସମଗ୍ର ଭାରତ ବର୍ଷର ମୁକ୍ତି ସଂଗ୍ରାମର ଅନ୍ୟତମ ପ୍ରମୁଖ ନାରୀନେତ୍ରୀ ଝାନ୍ସୀରାଣୀ ଲକ୍ଷ୍ମୀବାଇଙ୍କ ବୀରତ୍ୱ ବ୍ୟଞ୍ଜିତ ତଥା ଗୌରବୋଜ୍ଜ୍ୱଳ ଜୀବନ ଗାଥା ଲିପିବଦ୍ଧ କରିଛନ୍ତି ।

ତାଙ୍କର ଏହି ଗ୍ରନ୍ଥଟି ତାଙ୍କ ମୁକ୍ତି ପ୍ରବଣତାର ପରିଚାୟକ । ଈଶ୍ୱର ତାଙ୍କ ଭିତରେ ଯେଉଁ ସଂସ୍କୃତି ସଂପନ୍ନତା ତଥା ସାରସ୍ୱତ ସଂପ୍ରୀତି ଦେଇଥିଲେ ତା'ର ପ୍ରସାରିତ ରୂପ ହେଉଛି ତାଙ୍କର ସ୍ୱରଚିତ ଗ୍ରନ୍ଥ ସମୂହ ।

କାବ୍ୟଟି ସର୍ଗବଦ୍ଧ ତଥା ପଦ୍ୟବଦ୍ଧ । ମଧ୍ୟଯୁଗୀୟ କାବ୍ୟ ବନ୍ଧରେ ରଚିତ । ଗ୍ରନ୍ଥ ରଚନା ବ୍ୟତୀତ ସୁଢଳ ଦେବ କେତେକ ମୂଲ୍ୟବାନ ଗ୍ରନ୍ଥ ମଧ ସଂପାଦନା କରିଛନ୍ତି । ଦ୍ୱାଦଶ ପଦ ବିଶିଷ୍ଟ କବିତା ରଚନା କରି ସେ ଏଗାର ଜଣ ସାହିତ୍ୟିକଙ୍କ ବିଭିନ୍ନ ସଂଖ୍ୟକ ପାଦ ସମ୍ବଳିତ କବିତା ସ୍ଥାନିତ ହୋଇଥିବା 'ଜହ୍ନମାମୁଁ' ର ସଂପାଦନା କରିଥିଲେ । ସେ ମଧ ଅନ୍ୟ କେତେକଙ୍କ ଦ୍ୱାରା ସରସ ଗ୍ରନ୍ଥ ରଚନା କରାଇ ନିଜ ସାହିତ୍ୟ ରସିକତାର ପରିଚୟ ଦେଇଛନ୍ତି ।

'ହେ ନୃପ କବିତା ରଚି କବିତା ଭଣ୍ଡାରେ
ସେ ଭଣ୍ଡାରୁ ବାଛି ବାଛି ସ୍ୱଜାତି କୌଶଳେ
ଦେଖାଇଲ ନବଭୂଷା ଉତ୍କଳ ଭାବୁକେ ।
ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳେ
ଦେବଦୁର୍ଗ ଦେବ ଏବେ ତୀର୍ଥ ସାରସ୍ୱତ
ବୁଧ ହଂସ କେଳି-ସର ଅବିଦ୍ୟା ଉଷାରେ ।'

କବିବର ରାଧାନାଥ ତାଙ୍କ ପ୍ରସିଦ୍ଧ 'ମହାଯାତ୍ରା' ମହାକାବ୍ୟରେ ଉଚ୍ଛ୍ୱସିତ ଭାବେ ଦେବଗଡ଼ର ତୀର୍ଥତ୍ୱକୁ ଘୋଷଣା କରିଛନ୍ତି; ବାସୁଦେବଙ୍କ ପ୍ରଗାଢ଼ ସାରସ୍ୱତ ସଂପ୍ରୀତି ପାଇଁ ଯେଉଁ ତୀର୍ଥତ୍ୱ ହୁଏତ ସୃଷ୍ଟି ହୋଇଛି ।

ସେ ସମୟର ଆଉ ଜଣେ ଉତ୍କଳ ପ୍ରାଣ କବି ଗଙ୍ଗାଧର ଉଭୟ ବାସୁଦେବ ଓ ସମ୍ବଲପୁର ହିତୈଷିଣୀର ପ୍ରଧାନ ସଂପାଦକ ନୀଳମଣି ବିଦ୍ୟାରତ୍ନଙ୍କ ମହିମ୍ନ ସାରସ୍ୱତ କୃତିତ୍ୱକୁ ସ୍ୱୀକାର୍ କରି ଲେଖିଛନ୍ତି :

'ଧନ୍ୟ ଧନ୍ୟ ବାସୁଦେବ ମହୀପାଳ ମଣି
ଧନ୍ୟ ଧନ୍ୟ କ୍ଷଣଜନ୍ମା ବୁଧନୀଳମଣି ।
ଯାବତ୍ ଉତ୍କଳେ ଥିବ ବାଣୀ ନିକେତନ
ତାବତ୍ ଉଡ଼ିବ ତୁମ୍ଭ କିରତି କେତନ ।'

ସେ କାଳର ପୁଣି ଆଉ ଜଣେ ବିଶିଷ୍ଟ ସାରସ୍ୱତ ପୁରୁଷ, ଓଡ଼ିଆ ସାହିତ୍ୟର ବିଚକ୍ଷଣ କଥା ଶିଳ୍ପୀ ଫକୀର ମୋହନ ସେନାପତି ବାସୁଦେବଙ୍କ ବିକ୍ରମାଦିତ୍ୟ ପଣିଆକୁ ସ୍ୱୀକାର କରି ଲେଖିଛନ୍ତି -

'ହେ ରାଜନ ମାତୃଭାଷା ଉନ୍ନତି କାରଣେ
ଉତ୍ସାହିତ କରୁଅଛି ଗ୍ରନ୍ଥକର୍ତ୍ତାଗଣେ ।
ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ୍ଣ ଅକ୍ଷରେ
ଇତିହାସ ଲେଖା ରହିଯିବ ଜଗତରେ ।'

ଏଥିପାଇଁ ବାସୁଦେବ ସତରେ ବିକ୍ରମାଦିତ୍ୟଙ୍କ ସହିତ ତୁଳନୀୟ । ବିକ୍ରମାଦିତ୍ୟ ରାଜା ଓ ସଂସ୍କୃତକବି । ସୁଢଳ ଦେବ ସେହିପରି ଉତ୍ତମ ନରପତି ତଥା ସଂସ୍କୃତ ଭାଷାରେ ଶ୍ଳୋକ ରଚନା କରିଛନ୍ତି ।

ଇତିହାସରେ ଏମିତି କ୍ୱଚିତ ରାଜାଥିଲେ ଯେଉଁମାନେ କେବଳ ଶକ୍ତି ଆଉ ପ୍ରଶାସନରେ ନୁହନ୍ତି ସାରସ୍ୱତ କ୍ଷେତ୍ରରେ ମଧ୍ୟ ବିଚକ୍ଷଣତା ପ୍ରଦର୍ଶନ କରି ପାରିଛନ୍ତି । ରାଜା ଶାସ୍ତ୍ରଜ୍ଞ ଓ ସଂସ୍କୃତି ସଂପନ୍ନ ହେବା ଏକ ବିରଳ ଘଟଣା ନିଶ୍ଚୟ ।

ବାସୁଦେବ ରାଜାଥିଲେ, କବିଥିଲେ, ଶାସ୍ତ୍ରକାର ଥିଲେ କେବଳ ନୁହେଁ ସେ ଥିଲେ ରାଜ୍ୟବାସୀଙ୍କ ଶିକ୍ଷାଦୀକ୍ଷା ତଥା ସମାଜମଙ୍ଗଳ ଯୋଜନାର କର୍ଣ୍ଣଧାର । ରାଜା ହୋଇ ଥିଲେବି ସେ ଥିଲେ ଅଧିକ ଗଣତନ୍ତ୍ରବାଦୀ, ରାଜ୍ୟବାସୀଙ୍କ ସୁଖ ସୌଭାଗ୍ୟ ପାଇଁ ସେ ନିରନ୍ତର ସ୍ୱପ୍ନ ଦେଖୁଥିଲେ ।

ଭୀଷଣ ଅରଣ୍ୟାନୀ ଓ ସେକାଳର ପ୍ରମୁଖ ସଦର ମାନଙ୍କଠାରୁ ଦୂରପ୍ରାନ୍ତୀୟ ଦୁର୍ଗମ ପ୍ରଦେଶରେ ତଥାପି ଆଧୁନିକ ଶିକ୍ଷା, ଜ୍ଞାନବିଜ୍ଞାନର ନୂତନ ସଭ୍ୟତା ରାଜ୍ୟବାସୀଙ୍କୁ ଆଲୋକିତ କରୁ— ଏହାଥିଲା ତାଙ୍କ କାମନାର ବିଷୟ ।

ବାମଣ୍ଡାକୁ ଏକ ୟୁରୋପୀୟ ରାଜ୍ୟ ଢାଞ୍ଚାରେ ଗଠନ କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଶିକ୍ଷା ସଂସ୍କୃତିର ପ୍ରଚାର ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ । ସମସ୍ତେ ନବଜାଗରଣର ବାର୍ତ୍ତା ଶୁଣନ୍ତୁ ବୋଲି ସେ ଅଭିଳାଷ ପୋଷଣ କରିଥିଲେ ।

ବାମଣ୍ଡାର କୁଳୀନ ରାଜା ସାର ବାସୁଦେବ ସୁଢଳ ଦେବ ଶିକ୍ଷା, ସଭ୍ୟତା ତଥା ସାରସ୍ୱତ ସମୃଦ୍ଧି ପାଇଁ ଯେଉଁ ସବୁ କାର୍ଯ୍ୟକ୍ରମ ହାତକୁ ନେଇଥିଲେ ତାହାକୁ ସେ ରାଜବଂଶର ଉତ୍ତର ପୁରୁଷମାନେ ଆହୁରି ଉତ୍ତୋଳିତ ଓ ଆହୁରି ପରିବ୍ୟାପ୍ତ କରିଛନ୍ତି ।

ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଥିଲେ ବାସୁଦେବ ସୁଢଳ ଦେବଙ୍କ ସୁଯୋଗ୍ୟ ଉତ୍ତରାଧିକାରୀ । ବାମଣ୍ଡା ରାଜବଂଶର ତିନି ପୁରୁଷ କବିଥିଲେ ଓ ଓଡ଼ିଆ ସାହିତ୍ୟର ପ୍ରଧାନ ପୃଷ୍ଠପୋଷକ ମଧ୍ୟ ଥିଲେ ।

ବସନ୍ତ ନିବାସ ଓ ଲଳିତ ନିବାସ ଥିଲା ସେ ରାଜବଂଶର ଗରିମାମୟ କିର୍ତ୍ତୀ । ସେମାନଙ୍କର ସାରସ୍ୱତ ସଂପ୍ରୀତି ତଥା ସୃଜନଶୀଳ ଅଭିଳାଷର ସୁସ୍ପଷ୍ଟ ନିଦର୍ଶନ । ଉତ୍କଳ ପ୍ରଦେଶର ସାରସ୍ୱତ ପୁରୁଷମାନଙ୍କୁ ସେମାନଙ୍କର ଲୋଡ଼ିବାପଣର ନମୁନା । ତାହା ଥିଲା ସେମାନଙ୍କ ସାରସ୍ୱତ ସ୍ୱପ୍ନର ଏକ ଏକ ମହଲ । ସେମାନଙ୍କ ଅନନ୍ୟ ରୁଚି ଓ ସୌନ୍ଦର୍ଯ୍ୟ ଚେତନାର ସୁଖମୟ ସ୍ୱପ୍ନର ସଦନ ।

ବାମଣ୍ଡାଥିଲା ଯଥାର୍ଥରେ ଏକ ସୁବିସ୍ତୀର୍ଣ୍ଣ ସାରସ୍ୱତ ମଣ୍ଡଳ ।

ବାମଣ୍ଡାର ସାଂସ୍କୃତିକ ତଥା ସାରସ୍ୱତ କୌଳିନ୍ୟର ସୂତ୍ରଧର ଥିଲେ ସାର ବାସୁଦେବ ସୁଢଳ ଦେବ । ତାର ଶିକ୍ଷା ପ୍ରସାର, ଗ୍ରନ୍ଥ ପ୍ରକାଶନର ବଳିଷ୍ଠ ପରମ୍ପରା, ସାହିତ୍ୟ ଚର୍ଚ୍ଚା, ପତ୍ରପତ୍ରିକା ପ୍ରକାଶନ, ପ୍ରେସ ପ୍ରତିଷ୍ଠା, ବହୁଳ ଜନହିତକର କାର୍ଯ୍ୟକ୍ରମ, ଜଳସେଚନ, ଜଳବିଦ୍ୟୁତି ଶକ୍ତି ଉତ୍ପାଦନ ଆଦି ଅଗ୍ରଗାମୀ କାର୍ଯ୍ୟଧାରାରେ ତାହା ପ୍ରତିଫଳିତ । ସୁଢଳ ଦେବ ବାମଣ୍ଡାକୁ ସବୁମତେ ଏକ ଆଦର୍ଶ ରାଜ୍ୟରୂପେ ଗଢ଼ିବା ପାଇଁ ସ୍ୱପ୍ନ ଦେଖିଥିଲେ । ଉନ୍ନତ ୟୁରୋପୀୟ ରାଜ୍ୟ ତାଙ୍କର ଆଦର୍ଶ ଥିଲା ।

ଏତେ ଅଗ୍ରଗାମୀ ମନ ଓ ଚେତନାର ଅଧିକାରୀ ଆଉ କେଉଁ ରାଜା ସେତେବେଳେ ହୋଇ ପାରି ନଥିଲେ । ସୁଢଳ ଦେବ ସାହିତ୍ୟକୁ ଜନ ଜାଗରଣର ମୂଳ ପୁଞ୍ଜିରୂପେ ଗ୍ରହଣ କରିଥିଲେ ।

ସାର ବାସୁଦେବ ସୁଢଳ ଦେବ ଜଣେ ସମର୍ଥ ସାମନ୍ତ ରୂପେ ଯଦି ଅନ୍ତତଃ ସେଦିନ ଓଡ଼ିଶା ଇତିହାସର ଚରମ ଦୁଷ୍କାଳରେ ଓଡ଼ିଆ ଜାତିର ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି କଳ୍ପେ ଉଦ୍ୟମ କରି ନଥାନ୍ତେ ତାହେଲେ ଓଡ଼ିଶାର ସାମଗ୍ରିକ ସମୃଦ୍ଧି ହୁଏତ ଆହୁରି କିଛିକାଳ ବିଳମ୍ବିତ ହୋଇଥାନ୍ତା ।

ବାମଣ୍ଡା ତେଣୁ ଓଡ଼ିଶାର ସାରସ୍ୱତ ନେତୃତ୍ୱରେ ଏକ ସ୍ମରଣୀୟ ଜନପଦ । କଟକ ବାଲେଶ୍ୱର ପରି ଇଂରେଜ କର୍ତ୍ତୃପକ୍ଷଙ୍କ ଲୀଳା ସ୍ଥଳୀରୁ ନୁହେଁ । ସୁଦୂର ଏକ ଗଡ଼ଜାତ ରାଜ୍ୟ ବାମଣ୍ଡାରୁ ଯେଉଁ ସାରସ୍ୱତ ବିପ୍ଳବର ଧାରା ଆରମ୍ଭ ହୋଇଥିଲା ତାହା ବହୁ ଦୃଷ୍ଟିରୁ ତାତ୍ପର୍ଯ୍ୟ ପୂର୍ଣ୍ଣ ।

ସମ୍ବଲପୁର ହିତୈଷିଣୀର ପ୍ରକାଶନ ବାମଣ୍ଡାକୁ ଚିରସ୍ମରଣୀୟ କରି ରଖିଥିବ । ଓଡ଼ିଶାର ପୂର୍ବ ସୀମାନ୍ତରେ ସେତେବେଳେ ଓଡ଼ିଆ ଭାଷାକୁ ବିଲୋପ କରିଦେବା ପାଇଁ କେତେଜଣ ଅଶିକ୍ଷିତ ବଙ୍ଗାଳୀ ଗୋଟେ ପ୍ରକାର ଷଡ଼ଯନ୍ତ୍ର କରୁଥିଲେ । ତେଲୁଗୁ ଓ ହିନ୍ଦୀ ଭାଷା ଭାଷୀ ଅଞ୍ଚଳର ଚାପ ମଧ୍ୟ ସେତେବେଳେ କମ ଅନୁଭୂତ ହୋଇ ନଥିଲା ।

ଓଡ଼ିଶା ବିଖଣ୍ଡିତ ହୋଇ ରହିଥିଲା । ସମ୍ବଲପୁର ହିତୈଷିଣୀର ସକ୍ରିୟ ଭୂମିକାକୁ ସ୍ମରଣକୁ ଆଣି ଯେ କୌଣସି ଓଡ଼ିଆ ପ୍ରାଣ ବାମଣ୍ଡାର ସାଂସ୍କୃତିକ ନେତୃତ୍ୱକୁ ପ୍ରଶଂସା ନକରି ରହି ପାରିବ ନାହିଁ ।

ଓଡ଼ିଶାର ଅନେକ ରାଜା ସଉଖୀନ ପାରିଧିରେ ବ୍ୟସ୍ତ ରହୁଥିଲେ । ଶିକାର କରିବାକୁ ବୀରତ୍ୱ ବୋଲି ମନେ କରୁଥିଲେ । ଆଉ କେତେ ଜଣ ରାଜା ବିଳାସୀ ଥିଲେ ତ ଆଉ କେତେଜଣ ପ୍ରଜାପୀଡ଼କ ଓ ଅତ୍ୟାଚାରୀ ଥିଲେ । ନାରୀ ସହବାସ ପଶାଖେଳ ଓ ମଦ୍ୟପାନରେ ଆଉ କେତେ ଜଣ ବି ପ୍ରମତ୍ତ ହେଉଥିଲେ ।

ଅଥଚ୍ କବିକର୍ମ ଓ ସାହିତ୍ୟାନୁରାଗ ଯୋଗୁଁ ସୁଢଳ ଦେବ କାଳକାଳକୁ ଓଡ଼ିଶାର ବିକ୍ରମାଦିତ୍ୟ ଭାବେ ସମସ୍ତଙ୍କ ହୃଦୟରେ ଅଭିଷିକ୍ତ ହୋଇ ରହିଗଲେ । ଏହି ନବ ଯୁଗର ଉଦ୍‌ଗାତାଙ୍କ ସଂପର୍କରେ କବି ଗଙ୍ଗାଧର ଲେଖିଛନ୍ତି :

'ହେବାରୁ ସମ୍ବଲପୁର ନେତ୍ର ଉନ୍ମୀଳିତ
କଷ୍ଟକୁ ନଗଣି ହେଲା ଉତ୍କଳେ ମିଳିତ ।
ହିନ୍ଦୀର ଗ୍ରାସରୁ ହେଲା କି କଷ୍ଟେ ଉଦ୍ଧାର
ରାହୁ କବଳରୁ ସୁଧାକର ପରକାର ।
ଉତ୍କଳରେ ହେଲା ନବଯୁଗର ଆରମ୍ଭ
ଦିଗେ ଦିଗେ ବ୍ୟାପିଗଲା ସାହିତ୍ୟ ସୌରଭ ।'

'ସୁଢଳ ଦେବ ଥିଲେ ହେତୁବାଦୀ ଚିନ୍ତନର ପ୍ରବକ୍ତା ।
ସଂସ୍କୃତରେ ବିଦ୍ୱାନ, ଶ୍ଳୋକକାର,
ଅଥଚ ସେ କାୟମନୋବାକ୍ୟରେ ଆଧୁନିକ ଥିଲେ ।
ସେ ଥିଲେ ବିଜ୍ଞାନୀ, ପ୍ରଚାରକ, ସଂସ୍କାରକ
ପ୍ରଜାବତ୍ସଳ ଅଧିକ ଗଣତନ୍ତ୍ରବାଦୀ ମହୀପାଳ ।
ସେ ବାମଣ୍ଡାର ରାଜା ହୋଇଥିଲେ ନିଶ୍ଚୟ;
କିନ୍ତୁ ସେ ଥିଲେ ଯଥାର୍ଥରେ ବିରାଟ ଉତ୍କଳ ପ୍ରଦେଶର ସାଂସ୍କୃତିକ ନେତା ।'

ସୁଢଳ ଦେବ ଥିଲେ ବିଚାରବନ୍ତ ରାଜପୁରୁଷ । ଅଗ୍ରଗାମୀ ଶାସକ । ବୃହତ୍ତର ସାମାଜିକ ବିକାଶ ପାଇଁ ତାଙ୍କ ନିକଟରେ ଥିଲା ଅନେକ ଯୋଜନା ଶିକ୍ଷା ଆଉ କୃଷିର ଉନ୍ନତି ଥିଲା ତାଙ୍କର ଚରମ ଲକ୍ଷ୍ୟ ।

ଓଡ଼ିଆ ସାହିତ୍ୟର ସେ ଥିଲେ ଜଣେ ଅଗ୍ରଣୀ ପୃଷ୍ଠପୋଷକ । ଅଖଣ୍ଡ ଉତ୍କଳର ଅଖଣ୍ଡ ଅସାମାନ୍ୟ ଓ ଅପ୍ରତିଦ୍ୱନ୍ଦ୍ୱୀ ସାଂସ୍କୃତିକ ନେତା । ତାଙ୍କ ସ୍ୱପ୍ନ, ତାଙ୍କ ଯୋଜନାର ବହୁ

ସ୍ମାରକୀ ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ଦେଖିବାକୁ ମିଳେ । ଫକୀରମୋହନ ତେଣୁ ସୁଢଳଦେବଙ୍କୁ ତାଙ୍କ ଯଶପୌରୁଷ ପାଇଁ ନମସ୍କାର କରିଛନ୍ତି;

'ହେ ସୁଢଳ ମହାରାଜ କରେ ନମସ୍କାର
ହିତୈଷିଣୀ ତୁମ୍ଭ ଯଶ କରିଛି ପ୍ରଚାର ।'

ବାମଣ୍ଡା ରାଜ ଦରବାର ଥିଲା ଉତ୍କଳ ପ୍ରଦେଶର ବହୁ କବି ଓ ଲେଖକଙ୍କ ପାଇଁ ସାରସ୍ୱତ ପ୍ରୋତ୍ସାହନରେ ଉତ୍ସ । କେତେ ଶ୍ରଦ୍ଧାରେ, କେତେ ସମ୍ମାନ ବୋଧ ପ୍ରଦର୍ଶନ କରି ସୁଢଳ ଦେବ ସେମାନଙ୍କୁ ଲୋଡ଼ିଛନ୍ତି । ବାମଣ୍ଡା ରାଜଦରବାରରେ ସେମାନଙ୍କୁ ପୁରସ୍କୃତ ଓ ସମ୍ବର୍ଦ୍ଧିତ କରିଛନ୍ତି ।

ସଂସ୍କୃତ ସାହିତ୍ୟର ପ୍ରଚାର ପ୍ରସାର କରାଇଛନ୍ତି । ଜଗନ୍ନାଥ ଅଷ୍ଟକ, ସାହିତ୍ୟ ରତ୍ନାକର ଆଦି ବହୁ ସଂସ୍କୃତ ଗ୍ରନ୍ଥର ଓଡ଼ିଆ ଅନୁବାଦ କରାଇଛନ୍ତି । ୧୮୮୬ ରେ ସୁଢଳ ଦେବ ନିଜେ 'ମଣିରତ୍ନମାଳା' ଗ୍ରନ୍ଥ ଅନୁବାଦ କରିଛନ୍ତି । ୧୮୯୩ ରେ ସୁଢଳ ଦେବ ଦେବଗଡ଼ରୁ ବିଜୁଳି ପତ୍ରିକା ପ୍ରକାଶ କରି ଆଧୁନିକତାର ପକ୍ଷ ସମର୍ଥନ କରିଛନ୍ତି । ଅଥଚ ସମଭାବରେ ସେ ଥିଲେ ଜଣେ ପ୍ରାଚ୍ୟ ବିଦ୍ୟା ବିଶାରଦ ସଂସ୍କୃତ ପଣ୍ଡିତ ।

ସୁଢଳ ଦେବଙ୍କ ନେତୃତ୍ୱରେ ଦେବଗଡ଼ ଥିଲା ପ୍ରାଚ୍ୟ ପାଶ୍ଚାତ୍ୟ ଆଦର୍ଶର ସମନ୍ୱିତ କ୍ଷେତ୍ର; ଯାହା ସମଗ୍ର ଉତ୍କଳ ପ୍ରଦେଶରେ ଏକ ଗୁରୁତ୍ୱପୂର୍ଣ୍ଣ ସାଂସ୍କୃତିକ କେନ୍ଦ୍ରରେ ପରିଣତ ହୋଇ ଯାଇଥିଲା ।

୧୮୫୦ ଖ୍ରୀ. ମେ ମାସ ୧୬ ତାରିଖରେ ମହାପୁରୁଷ ସୁଢଳ ଦେବଙ୍କର ଜନ୍ମ । ଖ୍ରୀ ୧୮୬୮ରେ ସେ ବାମଣ୍ଡା ରାଜ ସିଂହାସନରେ ଅଭିଷିକ୍ତ ହୋଇଛନ୍ତି । ସିଂହାସନ ଆରୋହଣ କଲାପରେ ସୁଢଳ ଦେବ କୁସଂସ୍କାର ଦୂର କରିବାରେ ଅଧିକ ମନୋନିବେଶ କରିଛନ୍ତି ।

ସେ ବିଜ୍ଞାନମୁଖୀ ଶିକ୍ଷାର ପ୍ରଚାରକ ଥିଲେ । ପ୍ରାଥମିକ ଶିକ୍ଷା ଉପରେ ସୁଢଳ ଦେବ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ଶିକ୍ଷକ ନିର୍ବାଚନରେ ସେ ଆଦୌ ସାଲିସ କରୁନଥିଲେ । ସୃଜନଶୀଳ ତଥା ଚିନ୍ତାନିଷ୍ଠ ଲେଖା ଲେଖିବା ପାଇଁ ସେ ସମସ୍ତଙ୍କୁ ପ୍ରୋତ୍ସାହିତ କରୁଥିଲେ ।

ତାଙ୍କ ବହୁମୁଖୀ କାର୍ଯ୍ୟକ୍ରମ ଦେଖି ଜଣେ କେହି ବିଶ୍ୱାସ କରିପାରିବନି ସେ କାଳର ଜଣେ ଗଡ଼ଜାତ ରାଜା କେତେ ଅଧିକ ଅଗ୍ରଗାମୀ ମନର ଅଧିକାରୀ ଥିଲେ ।

ସାର ସୁଢଳ ଦେବ ଥିଲେ ପ୍ରକୃତରେ ପରଶମଣି; ଯାହାକୁ ଛୁଇଁ ଦେଉଥିଲେ ସେ ଗୁଣୀ ପାଲଟି ଯାଉଥିଲେ । ଦିବ୍ୟାନୁଭବରେ ତାଙ୍କ ପ୍ରାଣ ଭରି ଯାଉଥିଲା । ସାରା ଓଡ଼ିଶାର ସାହିତ୍ୟ ଓ ସାଂସ୍କୃତିକ ଦିଗ୍‌ବଳୟକୁ ଅତି ପ୍ରଭାବପୂର୍ଣ୍ଣ ନେତୃତ୍ୱ ଦେଉଥିଲେ ସୁଢଳ ଦେବ ଓ ତାଙ୍କ କର୍ତ୍ତୃକ ହିତୈଷିଣୀ ।

ଦେବଗଡ଼ ସୁଢଳ ଦେବଙ୍କ ଯୋଗୁ ବହୁବର୍ଷ ଧରି କେବଳ ଓଡ଼ିଶାର ନେତୃତ୍ୱର ପୀଠ ହୋଇନି ତା ସହିତ ହୋଇଛି ସାରସ୍ୱତ ତର୍କର ପୀଠ ।

ବିଶେଷ ତର୍କ ହୋଇଛି ରାଧାନାଥଙ୍କ ବିଦେଶାଗତ ଉପଧା ଉପରେ । ଭଞ୍ଜୀୟ ସାହିତ୍ୟାଦର୍ଶ ସେଠି ପ୍ରଶଂସିତ ହୋଇଛି ।

ସୁଢଳ ଦେବଙ୍କ ପ୍ରଭାବ ଓ ପ୍ରୋତ୍ସାହନ ଯୋଗୁ ବାମଣ୍ଡାରୁ ବହୁ ପତ୍ରପତ୍ରିକା ପ୍ରକାଶିତ ହୋଇଥିଲା ।

ସୁଢଳ ଦେବ ଚିତ୍ରୋତ୍ପଳା, ବୀରବାମା, ଅଳଙ୍କାର ବୋଧଦୟ, ନୀତିଶିକ୍ଷା, ଜଣାଣ, ବେଦବେଦାନ୍ତ, କିଷ୍କିନ୍ଧାକାବ୍ୟ ଆଦି ବହୁଗ୍ରନ୍ଥ ରଚନା କରି ଯାଇଛନ୍ତି । ଜଣେ ରାଜାର ସାରସ୍ୱତ ଅଭିଳାଷ କାଳଗର୍ଭରେ ଅନେକଙ୍କୁ ମୁକ୍ତି ଓ ଆଲୋକର ପଥ ଦେଖାଉଥିବ । ଏଇଥିପାଇଁ ଯେ ଜଣେ ରାଜା ଭୋଗ ଓ ଐଶ୍ୱର୍ଯ୍ୟ ଭିତରେ ଥିଲେ ହେଁ ସେ ଭୋଗବାଦୀ ନହୋଇ ସୃଜନଶୀଳ ଅନୁରାଗ ଭିତରେ କିପରି ଜୀବନ ବଞ୍ଚିଥିଲେ ତାହା ଅନେକଙ୍କ ପାଇଁ ଦୃଷ୍ଟାନ୍ତର ବିଷୟ ହେବ ।

ସୁଢଳ ଦେବ ଥିଲେ ପ୍ରକୃତରେ ଜ୍ଞାନତପସ୍ୱୀ । ମଣିଷର ଗୋଟେ ସୁନ୍ଦର ସଫଳ ଜୀବନ ପାଇଁ ସେ ସ୍ୱପ୍ନ ଦେଖିଥିଲେ । ସୁଢଳ ଦେବ ପ୍ରକୃତରେ ଜଣେ ତପସ୍ୱୀ ଭଳି ମଣିଷ ପାଇଁ ଉଚ୍ଚତର ଜୀବନର ଖସଡ଼ା ପ୍ରସ୍ତୁତ କରିଥିଲେ ।

ତାଙ୍କର ଦୃଷ୍ଟି ଭଙ୍ଗୀ ଆଦୌ ସଂକୀର୍ଣ୍ଣ ନଥିଲା । ତାଙ୍କଠାରେ ଏକ ମହାଭାରତୀୟ ଭାବନା ସହିତ ଉତ୍କଳୀୟ ଭାବନାବେଶ ଉଜ୍ଜ୍ୱଳ ଥିଲା । ରାଜପୁତ୍ର ମାନଙ୍କୁ ମଧ୍ୟ ଉପଯୁକ୍ତ ଶିକ୍ଷା ଦୀକ୍ଷା ଦେବାରେ ସେ ଆଦୌ ଅବହେଳା କରିନଥିଲେ । ଉଚ୍ଚଶିକ୍ଷା ପାଇଁ ତାଙ୍କର ଯଥେଷ୍ଟ ଉତ୍ସାହ ଥିଲା ।

ସଂସ୍କୃତ ଓ ପୁରାତନ ସାହିତ୍ୟ ପ୍ରତି ତାଙ୍କର ମାନ୍ୟତା ଯଥେଷ୍ଟ ଥିଲା; ଯଦିଓ ସେ ଆଧୁନିକ ସାହିତ୍ୟର ପୃଷ୍ଠପୋଷକତା କରୁଥିଲେ । ଓଡ଼ିଶାର ବୃହତ୍ତର ପାଠକ ସମାଜକୁ ସଂସ୍କୃତ ଅଳଙ୍କାର ଶାସ୍ତ୍ର ସହିତ ପରିଚିତ କରାଇବା ପାଇଁ ସେ ଅଳଙ୍କାର ଗ୍ରନ୍ଥ ରଚନା କରିବା ସହିତ ଅନ୍ୟାନ୍ୟ ଅନେକ ପ୍ରକାରର ଉଦ୍ୟମ କରିଥିଲେ ।

ସୁଢଳ ଦେବଙ୍କ ପରି ଏକ ବ୍ୟକ୍ତିତ୍ୱର ଆବିର୍ଭାବ ବସ୍ତୁତଃ ଓଡ଼ିଶାର ଐତିହାସିକ ଆବଶ୍ୟକତା ପୂରଣ କରିଥିଲା । ଆଧୁନିକ ଓଡ଼ିଶା ଇତିହାସ ତା'ର ବହୁବିଧ ପୂର୍ଣ୍ଣତା ପାଇଁ ସତେ ଯେପରି ବାସୁଦେବ ସୁଢଳ ଦେବଙ୍କ ଆବିର୍ଭାବକୁ ଅପେକ୍ଷା କରିଥିଲେ ।

ତାଙ୍କର ସୁଯୋଗ୍ୟ ପୁତ୍ର ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମଧ୍ୟ ପିତାଙ୍କର ସକଳ ଅସମ୍ପୂର୍ଣ୍ଣ ସାରସ୍ୱତ ସ୍ୱପ୍ନ ସବୁକୁ ପୂରଣ କରିଥିଲେ । ଗ୍ରାହକତା ଓ ସୃଜନଶୀଳତାରେ ସେ ତାଙ୍କ ପିତାଙ୍କୁ ବି ବେଳେ ବଳି ଯାଇଥିଲେ ।

ବିଜୁଳି ଇନ୍ଦ୍ରଧନୁର ବିବାଦକୁ ଜଣେ କେହି ସାହିତ୍ୟ ଛାତ୍ର ସ୍ମରଣକୁ ଆଣିବା କ୍ଷଣି ଜଣକର ଅବଶ୍ୟ ବାମଣ୍ଡା ସ୍ମରଣକୁ ଆସିବ । ଏହି ସାରସ୍ୱତ ବିବାଦର ଦୁଇ ପ୍ରତିସ୍ପର୍ଦ୍ଧୀ ସାହିତ୍ୟ ପତ୍ର ବିଜୁଳି ଇନ୍ଦ୍ରଧନୁ ଓଡ଼ିଶାର ଏକ ଚିତ୍ତ ବିକ୍ଷେପ ଜନିତ ଘଟଣା; ଯାହା ତଦାନିନ୍ତନ

ସାହିତ୍ୟିକ ରୁଚି ଓ ଆଦର୍ଶର ସଂଘର୍ଷକୁ ଚହ୍ନିତ କରିଛି । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପକ୍ଷ ସମର୍ଥନ କରୁଥିବା ଇନ୍ଦ୍ରଧନୁ ଓ ଅନ୍ୟ ପକ୍ଷରେ ରାଧାନାଥୀ କାବ୍ୟାଦର୍ଶ ସପକ୍ଷରେ ବିଜୁଳି ଆତ୍ମପ୍ରକାଶ କରିଥିଲା । ଯେଉଁ ବିଜୁଳିର ସଂପାଦକ ଥିଲେ ସୁଯୋଗ୍ୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଓ ଯାହା ବାମଣ୍ଡା ରାଜଦରବାରର ପୃଷ୍ଠପୋଷକତା ଲାଭ କରିଥିଲା ।

ପରବର୍ତ୍ତୀ ସମୟରେ ଆଲୋଚନା, ଉତ୍କଳ ମଧୁପ, ଶଙ୍ଖ, ଉପହାର ଆଦି ପତ୍ରିକା ବାମଣ୍ଡାରୁ ପ୍ରକାଶିତ ହୋଇଛି ।

ବାମଣ୍ଡା ରାଜ୍ୟର ସାଧାରଣ ବିଦ୍ୟାଳୟ ଠାରୁ ଆରମ୍ଭ କରି କ୍ଷୁଦ୍ର ବୃହତ୍ ସାହିତ୍ୟିକ ତଥା ସାଂସ୍କୃତିକ ସକଳ ଅନୁଷ୍ଠାନରେ ସାହିତ୍ୟଚର୍ଚ୍ଚାର ପରିବେଶ ସୃଷ୍ଟି କରିବା ପତ୍ରପତ୍ରିକା ପ୍ରକାଶ କରି ଜନଜାଗରଣ ସୃଷ୍ଟିକରିବା ସୁଢଳ ଦେବଙ୍କର ଅଭିଳାଷର ବିଷୟ ଥିଲା ।

ଓଡ଼ିଶା ଗଡ଼ଜାତର ପ୍ରମୁଖ ରାଜନ୍ୟବର୍ଗ ଯେତେବେଳେ ନୃଶଂସ ଭାବେ ପାରିଧି କରିଛନ୍ତି, ରତିବିଳାସ କରିଛନ୍ତି, କଲିକତାରୁ ନର୍ତ୍ତକୀ ଆଣି ବଂଧୁ କୁଟୁମ୍ବଙ୍କ ଗହଣରେ ପାରିଷଦ ବର୍ଗଙ୍କ ସହିତ ରାତି ରାତି ନଗ୍ନ ନଟୀର ଯୌବନଶ୍ରୀ ଉପଭୋଗ କରିଛନ୍ତି, ଅସଂଖ୍ୟ ପ୍ରଜାଙ୍କୁ ଆଣି ବେଠି ଖଟାଇ ବିଳାସ ନଗରୀ ନିର୍ମାଣ କରାଇଛନ୍ତି, ପରସ୍ୱ ଅପହରଣକାରୀ ଓ ପ୍ରଜାପୀଡ଼କ ହୋଇଛନ୍ତି । ସେତେବେଳେ ବାମଣ୍ଡାର ଅଧିପତି ସୁଢଳ ଦେବ ବାମଣ୍ଡାକୁ ଶାନ୍ତି ସୁଖର ସ୍ୱର୍ଗରାଜ୍ୟ କରିବା ପାଇଁ ସ୍ୱପ୍ନ ଦେଖିଛନ୍ତି ।

ଏହାହିଁ ବାସୁଦେବ ସୁଢଳ ଦେବଙ୍କ ବ୍ୟକ୍ତିତ୍ୱର ଏକାନ୍ତ ଗରିମାମୟ ଦିଗ ।

ସୁଢଳ ଦେବଙ୍କ ଜନ୍ମ ଆଜିକୁ ଦେଢଶହ ବର୍ଷରୁ ଅଧିକ ହେଲାଣି । ଓଡ଼ିଶାର ଶିକ୍ଷା ସାହିତ୍ୟର ଅବସ୍ଥା କେତେ ଆଜି ବଦଳି ଗଲାଣି ସେଦିନକୁ; ମାତ୍ର ସେ ଦିନ ସୁଢଳ ଦେବ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ଯେଉଁସବୁ ଉଦ୍ୟମ କରିଛନ୍ତି ତାହା କାହାରି ସ୍ମୃତିରେ କେତେବେଳେ ମ୍ଳାନ ହୋଇଯିବାର ନୁହେଁ । ତାହା ଓଡ଼ିଶାର ଗୌରବୋଜ୍ଜ୍ୱଳ ଐତିହ୍ୟ ଓ ଇତିହାସର ଅଂଶ ହୋଇଯାଇଛି ।

କୀର୍ତ୍ତିକୀଟ କାଳ ହୁଏତ ନଭଶ୍ଚୁମ୍ବୀ ଅଟ୍ଟାଳିକାକୁ ବିଧ୍ୱସ୍ତ କରି ଦେଇ ପାରେ; ମାତ୍ର କୌଣସି କାଳର ସାରସ୍ୱତ କୀର୍ତ୍ତିକୁ ନୁହେଁ । ବିକ୍ରମାଦିତ୍ୟଙ୍କ ରାଜ ପ୍ରାସାଦ ଆଜି ନାହିଁ । କାଳ ଗର୍ଭରେ ଲୀନ ହୋଇ ଯାଇଛି; ମାତ୍ର ଅଛି କାଳିଦାସୀ ଶ୍ଳୋକ; ଯାହା କୋଟି ଜନଗଣଙ୍କ ପ୍ରାଣରେ ଏଯାବତ୍ ଅଭିମନ୍ତ୍ରିତ ହୋଇ ରହିଛି ଓ ଅନନ୍ତ କାଳ ଧରି ରହିଥିବ ।

ବାମଣ୍ଡା ରାଜବଂଶର ଉତ୍ତର ପୁରୁଷମାନଙ୍କୁ କେବଳ ନୁହେଁ କି ବାମଣ୍ଡା ରାଜ୍ୟର ରାଜ୍ୟବାସୀଙ୍କୁ କେବଳ ନୁହେଁ ସମଗ୍ର ଓଡ଼ିଶାର ସାଂସ୍କୃତିକ ଓ ସାରସ୍ୱତ ଜୀବନକୁ ସେ ପ୍ରଭାବିତ କରି ଯାଇଛନ୍ତି ।

ରାଧାନାଥ, ମଧୁସୂଦନ, ଫକୀର ମୋହନ, ଗୌରୀଶଙ୍କର, ରାମଶଙ୍କର, ବିଶ୍ୱନାଥକର, ଗୋପାଳ ପ୍ରହରାଜ, ନନ୍ଦ କିଶୋର ବଳ, ସୁଦାମ ଚରଣ ବଙ୍ଗୀୟ ଭାଷାବିତ୍

ଅମୂଲ୍ୟ ବିଦ୍ୟାନିଧି, ଉମେଶ ଚନ୍ଦ୍ର ବିଦ୍ୟାରତ୍ନ ପ୍ରଭୃତି ବିଶିଷ୍ଟ ସାହିତ୍ୟିକ ମାନେ ବାମଣ୍ଡାକୁ ଆକୃଷ୍ଟ ହୋଇ ଆସିଛନ୍ତି ଓ ବାମଣ୍ଡାର ସାରସ୍ୱତ ପ୍ରବାହକୁ ତ୍ୱରାନ୍ୱିତ କରି ଯାଇଛନ୍ତି ।

ସୁଢଳ ଦେବଙ୍କ ନେତୃତ୍ୱ ଯୋଗୁଁ ବାମଣ୍ଡା ଗ୍ରୀକ୍ ରାଜ୍ୟପରି ସୁଗଠିତ, ସୁଶୃଙ୍ଖଳିତ ଥିଲା । ପ୍ରଜାମଙ୍ଗଳ ଥିଲା ରାଜନ୍ୟବର୍ଗଙ୍କ ଆଦର୍ଶ ।

କାଶୀର ମାନମନ୍ଦିର ଅନୁରୂପ ଏକ ବିଜ୍ଞାନାଗାର ସ୍ଥାପନ କରିଥିଲେ ସୁଢଳ ଦେବ । ବାମଣ୍ଡାକୁ ସବୁମତେ ଏକ ଆଦର୍ଶ ରାଜ୍ୟରେ ପରିଣତ କରିବାର ସଙ୍କଳ୍ପ ଓ ପ୍ରତିବଦ୍ଧତା ଥିଲା ରାଜପୁରୁଷ ମାନଙ୍କର । ଶିକ୍ଷାର ପ୍ରସାର ପାଇଁ ସୁଢଳ ଦେବ ଭର୍ଣ୍ଣାକୁଳାର ସ୍କୁଲ୍ ଇଂରାଜୀ ସ୍କୁଲ୍ ଓ ସଂସ୍କୃତ ବିଦ୍ୟାଳୟମାନ ପ୍ରତିଷ୍ଠା କରିଯାଇଛନ୍ତି ।

ସୁଢଳ ଦେବଙ୍କ ପରି ଜଣେ ମହାନ ଉତ୍କଳ ପ୍ରାଣ ସାରସ୍ୱତ ପୁରୁଷଙ୍କ ବିୟୋଗରେ ମଧୁସୂଦନ ଲେଖିଥିଲେ :-

'ଉତ୍କଳ ଗଗନ ରବି ଦେବଶ୍ରୀ ସୁଢଳ
ଅସ୍ତମିତ ଦିବାଦ୍ୱିପ୍ରହରେ
ଘୋର ଅନ୍ଧକାରେ ମଗ୍ନ କାତର ଉତ୍କଳ
ବିକଳେ କାନ୍ଦଇ ଆର୍ତ୍ତସ୍ୱରେ ।'

ମାତ୍ର ତେପନ ବର୍ଷ ବୟସରେ ୧୯୦୩ ରେ ସୁଢଳ ଦେବଙ୍କ ଦେହାବସାନ ହୋଇଥିଲା । ମାତ୍ର ଆଜି ଯେ କୌଣସି ଉତ୍କଳୀୟ ସୁଢଳ ଦେବଙ୍କୁ ବିକ୍ରମାଦିତ୍ୟଙ୍କର ମର୍ଯ୍ୟାଦା ଦେଇ ଆପଣା ହୃଦୟରେ ଅଭିଷିକ୍ତ କରି ରଖିଛନ୍ତି ।

ସେ ପ୍ରକୃତରେ ମୃତ୍ୟୁଞ୍ଜୟୀ ହୋଇ ଯାଇଛନ୍ତି । ତାଙ୍କର ସାରସ୍ୱତ ମହିମା କାଳ କବଳିତ ହୋଇ ପାରିନି ।



# ଅନନ୍ୟ ତୀର୍ଥଭୂମି

ଏଇଠିକି ଏଇ ଶାନ୍ତିନିକେତନ ଆସିଲେ କେମିତି ଗୋଟେ ଆବିଷ୍ଟ ହୋଇରହିଗଲା ପରି ଲାଗେ । ସତ କହିଲେ ଏ କବିତୀର୍ଥ ସ୍ୱପ୍ନର ଅମରାବତୀ ଭଳି ।

ରବୀନ୍ଦ୍ର ମୃତ୍ୟୁର ବହୁବର୍ଷ ପରେ ହୁଏତ ତାଙ୍କଆତ୍ମା ଏଇ ଆଖପାଖରେ ତଥାପି କେଉଁଠି ଚଳପ୍ରଚଳ କରୁଛି ବୋଲି ଲାଗେ ।

ଏ ଜାଗାରେ ପାଦଥାପିଲେ ଗୋଟେ ରସନିବିଡ଼ ଅନନ୍ୟ କାବ୍ୟ ପାଠରେ ମଜିଗଲା ଭଳି ଲାଗେ । ସେ ମହାନ କବିଙ୍କ ପ୍ରତି ପ୍ରାଣରେ ପ୍ରେମିକତା ଭରିଯାଏ ।

ଯୁଆଡ଼େ ଦେଖିଲେ ତାଙ୍କଆତ୍ମା ସବୁଠି ମୁଦ୍ରିତ ହେଲାଭଳି ଲାଗେ । ଫୁଲରେ, ପତ୍ରରେ, ନିବିଡ଼ ବନସ୍ପତିରେ, ବଉଳ ବିଥିରେ ତ ଆମ୍ରକୁଞ୍ଜରେ ଶୋଭାବନ୍ତ ଦିଗବଳୟରେ ତ ଚଢ଼େଇର ଗୀତରେ, ଏଠିକି ପାଠ ପଢ଼ି ଆସିଥିବା ଦେଶ ବିଦେଶର ସହସ୍ର ସହସ୍ର ନବ ତରୁଣ, ତରୁଣୀଙ୍କ ସ୍ୱପ୍ନରେ ତ ସେମାନଙ୍କ ରୋମାଞ୍ଚରେ ସବୁଠି ସେ ସ୍ୱର୍ଗତ ଆତ୍ମାର ସ୍ପର୍ଶ ।

ଶାନ୍ତି ନିକେତନର କୋଠାବାଡ଼ି, ରାସ୍ତାଘାଟ, ଫୁଲ ବଗିଚା, ସବୁଠି ସେ ସୁନେଲି ସ୍ପର୍ଶ ଯେପରି ଗୋଟାପଣେ ବୋଳାଯାଇଛି ।

ଯୁଆଡ଼େ ଚାହିଁଲେ ତାଙ୍କରି ଆତ୍ମା, ତାଙ୍କର ରୋମାଞ୍ଚକର ସ୍ପର୍ଶ । ବର୍ଷା ବସନ୍ତ, ଖରାଦିନ ଉଦୁଉଦିଆ ଦିପହର, ବିଳମ୍ବିତ ଶୁନଶାନ ରାତି ପହର ଭିତରେ ବି ସେ କବିଙ୍କର ଆତ୍ମା ଯେମିତି ଏଠି ସେଠି ଚଳପ୍ରଚଳ କରେ ।

ଏଇ ଆଖପାଖରେ ଆପଣାର ଛାଇ ପରି ସେଇ ବିଭୋର କବିଙ୍କର ଆତ୍ମା ଯେପରି ପ୍ରତିମା ହୋଇ ଦିଶି ଯାଉଥିବ । ତାଙ୍କର ସୁମଧୁର କବିତାର ପଦପଂକ୍ତି ସବୁ ଯେମିତି ହୁଏତ ଫୁଲ ହୋଇ ଫୁଟି ଯାଉଥିବ । ଶବ୍ଦ ସବୁ ଛନ୍ଦାୟିତ ହୋଇ ଯାଉଥିବ । ରାସ୍ତାଘାଟ, ଗଛପତ୍ର, ଶାନ୍ତିନିକେତନର ନୀରବିତ ସମୟ ସବୁକିଛି ସେ କବିଙ୍କ ହୃଦୟ ସହିତ ମିଶିକରି ଥିଲା । ଥୁଣ୍ଟା ଗଛଟିଏ ବି ସେଠି ଯେମିତି ଭିକ୍ଷା କରୁଥିବ ହେ କବି ! ତୁମେ ମୋତେ ମିଠା ଗୀତ ପଦେ କରି ଦିଅ । ମୁଁ କାଳ କାଳ ଧରି କୁସୁମିତ ହେବାକୁ ଚାହେଁ । ପଲ୍ଲବିତ ହେବାକୁ ଚାହେଁ । ଗଛର ଧର୍ମ ଆଉ କ'ଣ କି ? ମାଟିରୁ ରସଟାଣି ତାକୁ ସୁନ୍ଦର ଫୁଲଫଳ କରି ପ୍ରକଟିତ୍ କରିବାତ ।

ତୁମର ସେ ଶକ୍ତି ଅଛି କବି ।

ତୁମେ ଚାହିଁଲେ ସମସ୍ତଙ୍କୁ ଜୀବନ୍ୟାସ ଦେଇ ପାରିବ ।

ତୁମେ କବି ! ଚାହିଁଲେ, ଏ ଶୁଖିଲା ପରିବେଶକୁ ରଙ୍ଗୀନ ଚିତ୍ରଟିଏ କରି ଆଙ୍କିଦେଇପାରିବ ।

ଗୀତରେ ଗୀତରେ ସୁଖ ବାଣ୍ଟୁଥିବା ସେ କବିଙ୍କ ଭିତରେ ହୁଏତ ଦୁଃଖ ଲହଡ଼ା ଭାଙ୍ଗୁଥିବ । ତାଙ୍କର ସମଗ୍ର ଅନ୍ତସ୍ଥଳ ହୁଏତ କାରୁଣ୍ୟରେ ଭରି ଯାଉଥିବ ।

କାଠଚମ୍ପାର ବାସ୍ନାରେ ଚତୁର୍ଦ୍ଦିଗ ମହମହ ହୋଇ ବାସୁଥିବତ ଚଢ଼େଇମାନେ କିଚିର ମିଚିର କରୁଥିବେ । ହୁଏତ ବାସନ୍ତିକ ଲାଗୁଥିବା କେଉଁ ଏକ ବର୍ଷାଧୁଆ ସକାଳରେ ସାରା ନିକେତନଟିକୁ ଗୁରୁଦେବ ପ୍ରଦକ୍ଷିଣ କରୁଥିବେ ।

ଶାନ୍ତିନିକେତନର ଆକାଶ କେଡ଼େ ନିବିଡ଼ି ଲାଗୁଥିବତ ଦିଗବଳୟ ସବୁ କେତେ ଶୋଭାବନ୍ତ ଦିଶୁଥିବ କବିଗୁରୁଙ୍କୁ । କବିଗୁରୁ ନିରନ୍ତର ବିଶ୍ୱ ଭାରତୀର ସ୍ୱପ୍ନ ଦେଖୁଥିବେ ।

ବିଶ୍ୱପ୍ରେମ, ବିଶ୍ୱମୈତ୍ରୀର ଭାବନା ହୁଏତ ତାଙ୍କୁ ପ୍ରବୋଧିତ କରି ଦେଉଥିବ । ଧ୍ୟାନମଗ୍ନ ଋଷିପରି ସେ ହୁଏତ ଆହୁରି ମୌନ ହୋଇ ଯାଉଥିବେ ତାଙ୍କର ଆତ୍ମା ଆହୁରି ବିଷାଦଗ୍ରସ୍ତ ହୋଇ ଯାଉଥିବ ।

ଦୂର ଦିଗ୍‌ବଳୟରୁ ବେଦନାଭରା ବାଉଲର ଗୀତ ପଦେ ହୁଏତ ଭାଷି ଆସୁଥିବ । ନିମଜ୍ଜିତ ହୋଇ ହୁଏତ କବି ପ୍ରଦକ୍ଷିଣ କରୁଥିବେ ତାଙ୍କ ସ୍ୱପ୍ନର ପୃଥିବୀ ଏ ଶାନ୍ତି ନିକେତନକୁ ।

ତାଙ୍କ ଶୈଶବ ସ୍ମୃତିର ଯୋଡ଼ା ଶଙ୍ଖ ହୁଏତ କାହିଁ କେତେ ଦୂରରେ ରହି ଯାଇଥିବ । ତାଙ୍କ ସ୍ୱର୍ଗବାସିନୀ ମାଆଙ୍କ ମୁହଁକୁ ହୁଏତ କବି ମନେ ପକାଇ ପାରୁ ନଥିବେ ।

କଲିକତା ମହାନଗରୀର ଐଶ୍ୱର୍ଯ୍ୟମୟ ଜୀବନ ହୁଏତ ତାଙ୍କୁ ଦୂରସ୍ମୃତି ଭଳି ଲାଗୁଥିବ ।

ଆଶ୍ୱିନ୍ୟର ଟମ୍ର ସକାଳରେ ବଉଳ ଗଛ ମୂଳେ ବାଳକ ବାଳିକା ମାନେ ଗାଉଥିବା 'ଆନନ୍ଦ ଗାନ ଗାରେ ହୃଦୟ ଆନନ୍ଦଗାନ ଗାରେ' କବିଙ୍କୁ ହୁଏତ ପ୍ରବୋଧିତ କରି ଦେଉଥିବ ବସନ୍ତ ପିକର କୁହୁଧ୍ୱନି ପରି ।

କବି ଚାଲି ଯାଉଥିଲା ବେଳେ ହୁଏତ ମନେମନେ ଗୋଟେ ଅନନ୍ୟ କବିତାର ଶବ୍ଦ ଯୋଡୁଥିବେତ ଏକାନ୍ତ ଶ୍ରବଣ ସୁଖ ଦାୟକ ଆଉ ଭାବ ପ୍ରବୋଧକ ଗୋଟେ ଅପୂର୍ବ ସଙ୍ଗୀତର ଛନ୍ଦ ଯୋଜନା କରୁଥିବେ ।

ସୂର୍ଯ୍ୟ କ୍ରମଶଃ ଉପରକୁ ଉଠୁଥିବେତ ଶାନ୍ତି ନିକେତନ ମଧ୍ୟାହ୍ନରେ ଟିକିଏ ଅଧିକ ଗହଳ ଚହଳ ଲାଗୁଥିବ ।

କବିଗୁରୁଙ୍କ ପଢ଼ାଘର ଟେବୁଲ ଉପରେ ହୁଏତ ଦେଶ ବିଦେଶରୁ ଆସିଥିବା ଆତ୍ମୀୟତାର ଭାଷା ଲେଖାଥିବା ବହୁ ଚିଠିପତ୍ର ଗଦା ହୋଇ ଯାଇଥିବ । ସୁନ୍ଦର ଲାଗୁଥିବା ମିଠା କବିତାଟିଏ ଅଧା ଲେଖା ହୋଇ ହୁଏତ ତାଙ୍କ ଟେବୁଲ ଉପରେ ଥିବ ।

ତାଙ୍କ ରଚିତ ଗଦ୍ୟ ପଦ୍ୟର ବିପୁଳ ସୃଷ୍ଟି ସବୁ ହୁଏତ ସଜା ହୋଇଥିବ ତାଙ୍କ ଟେବୁଲ ଚାରିକଡ଼େ ।

କୃତ୍ରିମ ସରୋବର ଭିତରେ ମଧୁମାଳତୀ ଘେରା ବାୟା କୁଞ୍ଜଟିଏ ଦ୍ୱୀପପରି ହୁଏତ ନିକଟରୁ ଦିଶୁଥିବ ।

ଶବ୍ଦ ଯୋଡ଼ିବାର ଲୀଳାଖେଳା ଭିତରେ ହୁଏତ କବିଗୁରୁଙ୍କ ଆୟୁଷରୁ ଦିନ ଦିନ ସରି ଯାଉଥିବ ।

ଗ୍ରୀଷ୍ମ ସଞ୍ଜକୁ ବୋଲପୁର ଶବରପଲ୍ଲୀଆଡୁ ହୁଏତ ବହଳ ଅନ୍ଧାର ମାଡ଼ି ଆସୁଥିବ । ରାତିକୁ ଆସୁଥିବ ମେଘପବନ ମେଘର ଗୁରୁଗୁରୁ ଗର୍ଜନରେ ଆକାଶ ଫାଟି ପଡୁଥିବ ।

ଜୋରାଶଙ୍କରେ କଟିଥିବା ଦୁରନ୍ତ ଶୈଶବର ସ୍ମୃତି ହୁଏତ ତାଙ୍କୁ ଅଥୟ କରୁଥିବ । ଅଥୟ କରୁଥିବ ହୁଏତ ତାଙ୍କ ଭାଉଜଙ୍କ ଅତୁଳନୀୟ ସ୍ନେହ ଶୀଳତାର ଏକାନ୍ତ ଅବିସ୍ମରଣୀୟ ସ୍ମୃତି ।

ମଣିଷ ସଙ୍ଗେ ପ୍ରକୃତି ସଙ୍ଗେ ମିଳିତ ହେବା ପାଇଁ ଶାନ୍ତି ନିକେତନରେ ହୁଏତ କବି ବହୁ ଉତ୍ସବର ଆୟୋଜନ କରୁଥିବେ । କଳାଭବନ, ବିଦ୍ୟାଭବନ, ପାଠଭବନର ପରିବେଶ ହୁଏତ ରଙ୍ଗୀନ ହୋଇ ଉଠୁଥିବ । ଜ୍ଞାନ ପିପାସୁ ବିଦ୍ୟାର୍ଥୀମାନେ ହୁଏତ ଏହିସବୁ ବିଦ୍ୟାମନ୍ଦିର ଆଡୁ ଛାତ୍ରାବାସକୁ ଫେରି ଯାଉଥିବେ ।

ଭାରତୀୟ ମୁକ୍ତି ସଂଗ୍ରାମର ଯୋଗଦାନ, ଏଥିନେଇ ବହୁଦେଶୀ ବିଦେଶୀ ବନ୍ଧୁମାନଙ୍କ ସହିତ ଯୋଗାଯୋଗ, ଶାନ୍ତିନିକେତନ ପାଇଁ ସମ୍ବଳ ସଂଗ୍ରହ ତା'ର ସର୍ବୋତ୍ତମ ଆବାସିକ ପରିଚାଳନାରେ ବ୍ୟସ୍ତ କାର୍ଯ୍ୟକ୍ରମ ସତ୍ତ୍ୱେ ରବୀନ୍ଦ୍ର ନାଥ ଅବିଶ୍ରାନ୍ତ ଭାବେ ନିରବଛିନ୍ନ ଭାବେ ତପସ୍ୟା କଲା ଭଳି କେବଳ ଲେଖୁଥିଲେ ।

ଯେହି ଲେଖିବା ହିଁ ଥିଲା ଶାନ୍ତିନିକେତନରେ ତାଙ୍କର ଏକମାତ୍ର ଯୋଗ ସାଧନା ।

କସ୍ତୁରବାଙ୍କ ସହିତ ଥରେ ଗାନ୍ଧିଜୀ ଶାନ୍ତିନିକେତନ ପରିଦର୍ଶନରେ ଆସିଲେ । ପକାଘରେ ନୁହେଁ ମାଟିଘରେ ଅବସ୍ଥାନ କରିବେ ବୋଲି ଗାନ୍ଧିଜୀ କବିଗୁରୁଙ୍କୁ ଜଣାଇଲେ । କବିଗୁରୁ ଶ୍ୟାମଳୀ ତିଆରି କରିଥିଲେ ସେହି ଅବସରରେ ସେଇଥି ପାଇଁ ।

ଶ୍ୟାମଳୀ, ଆଣ୍ଡ୍ରୁଜପଲ୍ଲୀ, ଆଦି ଆଜି ଶାନ୍ତି ନିକେତନରେ କାଳଗର୍ଭରେ ଇତିହାସର ମୂକ ସାକ୍ଷୀ ହୋଇ ରହିଛି ।

ଶାନ୍ତି ନିକେତନ ପରିସର ଭିତରେ ଆଜି କେତେ ଆଡ଼ମ୍ବରରେ ପୌଷ ମେଳା ହେଉଛି; ହେଉଛି ମାଘମେଳା ପ୍ରତିବର୍ଷ ବସନ୍ତ ଆସୁଛି । ବିଥି ମାନଙ୍କରେ ବସି କୋଇଲି ଗାଉଛି । ଏ ଅନନ୍ୟ ସାରସ୍ୱତ ତୀର୍ଥକୁ ଆଜି ହଜାର ହଜାର ଲୋକ ପ୍ରତିଦିନ ଆସି ସେମାନଙ୍କ ସ୍ୱର୍ଗତ ପ୍ରିୟ କବିଙ୍କୁ ହୁଏତ ସ୍ମରଣକୁ ଆଣୁଛନ୍ତି ।

ମାତ୍ର କବି ଆଜି ନାହାନ୍ତି । କବିଙ୍କ ଅବର୍ତ୍ତମାନରେ ଅଜସ୍ର କୋଠାବାଡ଼ି ହେବାସତ୍ତ୍ୱେ ଶାନ୍ତି ନିକେତନ ଆଜି ପ୍ରକୃତରେ ଶୂନ୍ୟଗର୍ଭ ହୋଇ ଯାଇଛି । ଶ୍ରୀହୀନ ହୋଇ ଯାଇଛି ।

ଜଣେ ମହାନ ସାରସ୍ୱତ ପୁରୁଷର ସ୍ୱପ୍ନ, ପ୍ରକୃତିପ୍ରାଣ ହେବାର ଅନନ୍ୟ ସଙ୍କଳ୍ପ, ଆତ୍ମା ଓ ଅନ୍ତରକୁ ପ୍ରକଟନ କରିବାର ଦୁର୍ବାର ଅଭିଳାଷ .ଶାନ୍ତି ନିକେତନକୁ ପ୍ରକୃତରେ ଆଲୋକର ତୀର୍ଥଭୂମି କରି ଦେଇଥିଲା ।

କେତେ ବ୍ୟାକୁଳତା ନେଇ କବି ସତରେ ସାରା ପୃଥିବୀର ପ୍ରଜ୍ଞାପୁଷ୍ପ ଏଇଠି ଫୁଟୁବୋଲି ଅଭିଳାଷ ପୋଷଣ କରିଥିବେ । ସେଇଥି ପାଇଁ ବୋଧେ ସେ ତାଙ୍କ ସ୍ୱପ୍ନ ସଦନର ନକ୍ସା ଏମିତି କାଟିଥିଲେ ଓ ତାର ନାଁ ଦେଇଥିଲେ ବିଶ୍ୱ ଭାରତୀ ।

କବିଗୁରୁ ଜୀବନରେ ଧନୀ ସୌଦାଗର ହେବାପାଇଁ କଦାପି ଚାହିଁ ନାହାନ୍ତି । ମହାନଗରୀର ବାଦଶାହୀ ଜୀବନ, ଭୋଗ ଓ ଐଶ୍ୱର୍ଯ୍ୟ ଖୋଜିନାହାନ୍ତି । ବରଂ ସାମନ୍ତ ବାପର ସବା ସାନପୁଅ ହେଲେ ବି ସେ ଘନ ଘୋର ବର୍ଷାରେ ଦୂର ପ୍ରାନ୍ତୀୟ ବୀରଭୂମ୍ ଜିଲ୍ଲାରେ ଶବର ପଲ୍ଲୀ ଘେରା ନିର୍ଜ୍ଜନବାସକୁ ବରଣ କରି ନେଇଥିଲେ ।

ଆତ୍ମାର ଉପଲବଧିକୁ ପ୍ରକଟନ କରିବା ଠାରୁ ଆଉ ଅଧିକ ସ୍ୱର୍ଗୀୟ, ଆଉ ଅଧିକ ସୃଜନଶୀଳ ବିଷୟ କ'ଣ ଅଛି ଏ ସଂସାରରେ ?

ହେ କବିଗୁରୁ ରବୀନ୍ଦ୍ର ! କେତେ ଆକାଶମୁଖୀ ତମ କବିତା । ମାଟିରୁ ଆକାଶ ଯାଏ ପ୍ରସରି ଯାଇଥିଲା । ତମେ ଦୂରକୁ ନିକଟ ମନେ କରିଥିଲ ତ ପରକୁ ଆପଣାର ଭାଇ କରିଥିଲ ।

ତମେ ଈଶ୍ୱରଙ୍କ ନିକଟରେ ବାରମ୍ବାର କୃତଜ୍ଞ ହେଉଥିଲ ଯେ, ଈଶ୍ୱର ବିଶ୍ୱର କେତେ ଅଜଣା ଲୋକଙ୍କ ସହିତ ତମର ପରିଚୟ କରାଇ ଦେଇଛନ୍ତି ବୋଲି ।

'କେତେ ଅଜନାରେ ଜନାଇଲ ତୁମି
କତ ଦୂର ଦେଲ ଚାଏ
ଦୂରକେ କରଲ ନିକଟ ବଂଧୁ
ପରକେ କରେଲ ଭାଏ ।'

ଈଶ୍ୱରଙ୍କ ଇଚ୍ଛାକୁ ତୁମେ ତୁମର ଭାଗ୍ୟ ବୋଲି ସ୍ୱୀକାର କରି ନେଇଛ । ତମ ବିଭୁ ପ୍ରେମର ପଟାନ୍ତର ନାହିଁ ସତରେ ରବୀନ୍ଦ୍ର ! ତମେ ଗାଇଛ -

'ଆମାର ନାଯେନ କରି ପ୍ରଚାର
ଆମାର ଆପନ କାଜେ
ତୋମାର ଇଚ୍ଛା କରେ ହେ ପୂର୍ଣ୍ଣ
ଆମାର ଜୀବନ ମାଟେ ।'

ଚରମ ଦୁର୍ଭାଗ୍ୟକୁ ବି ତମେ ତମଉ ଭାଗ୍ୟ ଓ ଭବିତବ୍ୟ ବୋଲି ମାନି ନେଇଛ । ହଜାରେ ଦୁଃଖ ଓ ବଞ୍ଚନା ଭିତରେ ବି ତମେ ତମ ହୃଦୟକୁ ବିକଶିତ କରିବା ପାଇଁ, ସୁନ୍ଦରର ଆରାଧନା କରିବା ପାଇଁ ଅନ୍ତରତର ଈଶ୍ୱରଙ୍କୁ ପ୍ରାର୍ଥନା କରିଛ । ନିତ୍ୟକାଳର ପ୍ରକୃତିକୁ ତମେ ପ୍ରାଣଭରି ଭଲ ପାଇଛ ।

ନିଘଞ୍ଚ ବନସ୍ପତି ପରିବେଷ୍ଟିତ ଆପଣା ଆଶ୍ରମରେ ସାରା ଜୀବନ ମୌନ ହୋଇ ଅନନ୍ତ କୋଟି ମଣିଷଙ୍କ ସହିତ ଶ୍ରଦ୍ଧା ଯୋଡ଼ିବା ପାଇଁ ତମେ ଅପୂର୍ବ ଶ୍ଳୋକ ଲେଖିଛ ହେ ରବୀନ୍ଦ୍ର ।

ତମ ସାଧନାର ସ୍ୱୀକୃତି ସ୍ୱରୂପ ତମେ ୧୯୧୩ ମସିହାରେ ନୋବେଲ୍ ପୁରସ୍କାର ପାଇଲ । ଭାରତ ବର୍ଷର ଆବାଳବୃଦ୍ଧବନିତା ଶାନ୍ତିନିକେତନରେ ତମର କାବ୍ୟ ସାଧନାକୁ ଶ୍ରଦ୍ଧା ଓ ଆନନ୍ଦରେ ଚାହିଁ ରହିଲେ ।

ହେ ମୋର ଚିତ୍ତ, ପୁଣ୍ୟତୀର୍ଥ ଜାଗରେ ଧୀରେ ତମେ ସେମାନଙ୍କୁ ଶୁଣାଇଲ 'ଏଇ ଭାରତେର ମହା ମାନବେର ସାଗର ତୀରେ' ।

ମୁନିରଷି ମାନଙ୍କ ପରି ତପୋବନରେ ତୁମେ ତୁମର ନୀରବିତ ଜୀବନ କଟାଇଲ । ଭାରତବର୍ଷର କୋଟି ଅନ୍ତରକୁ ତମେ ଉଦ୍‌ବୋଧିତ କରିଦେଲ ।

ଭାରତ ବର୍ଷର ମହାନ ସ୍ୱାଧୀନତା ସଂଗ୍ରାମୀ ଓ ଜନ ନେତା ତମ ସହିତ ଯୋଗସୂତ୍ର ସ୍ଥାପନ କଲେ ।

ପୂର୍ବ ପଶ୍ଚିମର ନିବିଡ଼ ମିଳନ ହିଁ ଥିଲା ତମ ଆକାଂକ୍ଷାର ବିଷୟ । ତୁମ ସ୍ୱପ୍ନର ଶାନ୍ତି ନିକେତନ ବିଶ୍ୱ ସଂସ୍କୃତିର ଏକକ ନୀଡ଼୍ ହେଉ ବୋଲି ତମେ ଚାହୁଁ ଥିଲ ।

ବିଶ୍ୱ ମାନବର ପଥକୁ ତମେ ବାଛି ନେଇଥିଲ ହେ କବି !

ତମେ ଥିଲ ଯଥାର୍ଥରେ ବିଶ୍ୱ କବି ।

ତମେ ଥିଲ ବିଶ୍ୱଭାବ ଓ ବିଶ୍ୱ ସାହିତ୍ୟର ଧୀମାନ ପ୍ରବକ୍ତା ।

ଜାତି,ଧର୍ମ,ବର୍ଣ୍ଣର ବ୍ୟବଧାନ ଉର୍ଦ୍ଧ୍ୱରେ ସାରା ବିଶ୍ୱ ସହିତ ତମେ ନିବିଡ଼ ଆତ୍ମୀୟତା ସ୍ଥାପନ କରିଥିଲ ।

ତୁମର ପ୍ରାଜ୍ଞପିତା ଦେବେନ୍ଦ୍ର ତମ ମନ ଓ ଚେତନାକୁ ବେଦ ଓ ଉପନିଷଦ ଚିନ୍ତନରେ ଭରି ଦେଇଥିଲେ ।

ପ୍ରଜ୍ଞା ଓ ସୌନ୍ଦର୍ଯ୍ୟର ପ୍ରେମିକତା କରିବା ତମ ଠାକୁର ପରିବାରର କୌଳିନ୍ୟ ଥିଲା ।

ତମେ ମୋ ଦେଶର ବରପୁତ୍ର ଥିଲ ।

ତମେ ଥିଲ ହେ କବି, ନବ ଯୁଗର ନାଗର ।

ନବଚେତନାର ନାନ୍ଦୀକାର ।

କାବ୍ୟ, କବିତା, ଗଳ୍ପ ଉପନ୍ୟାସ ନାଟକ ପ୍ରବନ୍ଧ ନିବନ୍ଧ, ଜୀବନୀ, ଆତ୍ମଜୀବନୀ, ଆଦି ଗଦ୍ୟ ପଦ୍ୟର ବିପୁଳ ସାହିତ୍ୟ ଲେଖିଲା ପରେ ତମେ ପୁଣି ପ୍ରବୋଧିତ ହୋଇ ସଂଗୀତ୍ ଲେଖିଛ ।

ସେ ସବୁକୁ ପୁଣି ସ୍ୱର ଦେଇଛ ।

ଅଭିନୟ କରିଛ ।

ନାଟ୍ୟ ନର୍ଦ୍ଦେଶନା ଦେଇଛ ।

ତମ ବାଲ୍ମୀକି ଭୂମିକାର ଅଭିନୟ ସବୁଦିନ ପାଇଁ ଅବିସ୍ମରଣୀୟ ହୋଇ ରହିଥିବ ।

ମଣିଷ ଜୀବନରେ କଣ୍ଟକିତ ବ୍ୟଥା ବେଦନା ତା ଭିତରର କାରୁଣ୍ୟ ଓ ତାର ଯାବତୀୟ ଅସହାୟତାକୁ ନେଇ ତମେ ପୁଣି ତୂଳିଧରି ଚିତ୍ରକର ହୋଇଛ କବି ।

ତମେ ଥିଲ ଅକଳନ୍ତି ପ୍ରତିଭା ଓ ଅମାପ ଶକ୍ତିର ପ୍ରଜ୍ଞାପୁରୁଷ ।

ତୁମେ ପତ୍ନୀ ପୁତ୍ର କନ୍ୟାଙ୍କୁ ନେଇ ସଂସାର କରିଥିଲ ସତ, ହେଲେ ସାରାଜୀବନ ତମେ ଯେପରି ଚରମ ଏକାକୀତ୍ୱ ଭିତରେ ସନ୍ୟାସୀ ପରି ବଞ୍ଚିଥିଲ । ସାଧାରଣଙ୍କ ପରି ଅତିମାତ୍ରାରେ ସାଂସାରିକ ହୋଇ ଯାଇନଥିଲ ।

ଶାନ୍ତିନିକେତନର ପ୍ରତିଟି ବିଷୟ ତମ କବିତ୍ୱ ତମ ସଂସ୍କୃତି ସଂପନ୍ନତା, ତମ କଳାପ୍ରାଣତାର ମୁଦ୍ରା ଆଙ୍କି ଯାଇଛି । ଶାନ୍ତିନିକେତନର ଘର ମାନଙ୍କର ନାମକରଣ ତ ତା'ର ନମୁନା ।

ଯେଉଁ ଉତ୍ତରାୟଣରେ ତମେ ତମର ଉତ୍ତର ଜୀବନ କାଟିଥିଲ ସେ ଘର ଗୁଡ଼ିକର ନାଁ ତମେ ଏମିତି ଦେଇଥିଲ— ଉଦୟନ, କୋଣାର୍କ, ଶ୍ୟାମଳୀ, ପୁନଶ୍ଚ ଏବଂ ଉଦିଚୀ ।

ଭାରତ ବର୍ଷର କେତେ କବି, କଳାକାର ଶାନ୍ତିନିକେତନକୁ ଆସି ତୁମର ଗହଣରେ ହୁଏତ ରହିବାକୁ ସୁଖ ମଣୁଥିଲେ, ଏଇଥି ପାଇଁ ଯେ ତୁମେ ସେମାନଙ୍କର ଅନ୍ତରକୁ ଗୈରିକ କବିତ୍ୱରେ ଭରି ଦେଉଥିଲ ।

ତୁମର ସ୍ୱପ୍ନର ଶାନ୍ତି ନିକେତନ ବି ସେମାନଙ୍କର ପାଇଁ ପବିତ୍ର ତପୋବନ ଥିଲା ।

ସେଦିନ କେଡ଼େ ଶୂନ୍ୟଗର୍ଭ ହୋଇ ଯାଇଥିବ ବିଶ୍ୱ ବିଖ୍ୟାତ ସେ ଶାନ୍ତିନିକେତନ ସତରେ, ଯେଉଁ ଥର ତମେ ଶେଷଥର ପାଇଁ ଗୁରୁତର ଅସୁସ୍ଥ ହୋଇ ତୁମର ସ୍ୱପ୍ନ ସଦନକୁ ଛାଡ଼ି ଆସିଲ ।

ତୁମର ହୃଦୟ ବି କେତେ ଫାଟି ପଡ଼ିଥିବ ।

ସ୍ମୃତି ବିଜଡ଼ିତ ଶାନ୍ତି ନିକେତନକୁ ତମେ କଦାପି ଭୁଲି ପାରୁନଥିବ ।

ଅବଶେଷରେ ତମେ ଶାନ୍ତିନିକେତନ ଠାରୁ ଚିର ବିଦାୟ ନେଇ ଆସିଲ ଜୁଲାଇ ୨୫, ୧୯୪୧ ରେ । ଶାନ୍ତି ନିକେତନର ଅନ୍ତେବାସୀଙ୍କ ସହିତ ସମସ୍ତଙ୍କ ବିଦାୟ ଜଣାଇ ତୁମେ ତୁମର ଶୈଶବର ସ୍ମୃତିତୀର୍ଥ ଯୋଡ଼ାଶଙ୍କୁ ଚାଲି ଆସିଲ ଉତ୍ତମ ଚିକିତ୍ସା ପାଇଁ ।

ତମ ସ୍ୱପ୍ନର ତୀର୍ଥଭୂମି ଶାନ୍ତି ନିକେତନ ଦୂରରେ ରହିଗଲା ।

ଗୋଟେ ନୀଳ ରଙ୍ଗର ଛୋଟ ବସ ତମକୁ ସେଦିନ ବୋଲପୁର ରେଳ ଷ୍ଟେସନ୍‌କୁ ନେଇ ଆସିଥିଲା ।

ତାର ତେର ଦିନ ପରେ ତମ ସାତପୁରୁଷର ପୁରୁଣାଘର ଜୋରାସଙ୍କରେ ୧୯୪୧ ଅଗଷ୍ଟ ୭ ତାରିଖରେ ତମର ମହାପ୍ରୟାଣ ଘଟିଲା ।

ତମେ ଶାନ୍ତି ନିକେତନରେ ସବୁଦିନ ପାଇଁ ଆଖି ବୁଜିବାକୁ କାହିଁକି ମନବଳାଇଲନି । ଆମ୍ରକୁଞ୍ଜ, ବଉଳ ବିଥି ତଳେ ତମ ମରଶରୀର ଚିରକାଳ ପାଇଁ ମାଟିରେ ମିଶି ଯାଇଥାନ୍ତା । ପ୍ରତିବର୍ଷ ସେଠିକୁ ବର୍ଷା ବସନ୍ତ ଆସୁଥାନ୍ତା ।

ତମରି ପରି ଜଣେ ମହାନ ପ୍ରକୃତିପ୍ରାଣ ପୁରୁଷର ଦେହାବସାନରେ ସାରାବିଶ୍ୱ ସ୍ତବ୍ଧ ହୋଇ ଯାଇଥିଲା ।

ତମ ସଙ୍ଗୀତ ତମ ସାରସ୍ୱତକୁ କିନ୍ତୁ କାଳ କବଳିତ କରି ପାରିବନି । ତାହା ଯୁଗ ଯୁଗ ଧରି ମନୁଷ୍ୟ ଅନ୍ତରରେ ଅପୂର୍ବ ଶିହରଣ ସୃଷ୍ଟି କରୁଥିବ ।

ହେ ଅମର କବି ରବୀନ୍ଦ୍ର ! ତୁମକୁ ମୁଁ ବାରବାର ପ୍ରଣାମ କରୁଛି ।

ତୁମରି କବିତା ମୋତେ ଅମୃତ ତୁଲ୍ୟ ଲାଗେ ।

ମୁଁ ଯେତେବାର ତମ ଶାନ୍ତିନିକେତନକୁ ଯାଇଛି ପ୍ରବୋଧିତ ହୋଇ ଫେରିଛି । ତୁମର ଜୟ ହେଉ କବି ।

ତୁମ ସ୍ୱପ୍ନର ଜୟହେଉ, ତୁମ ଲେଖନୀର ଜୟହେଉ ।

ଜୟ ହେଉ, ତୁମ କବିତ୍ୱର ।

ଜୟ ହେଉ ତୁମ ମଧୁର ବର୍ଷା ଭାବନାର ।

ତୁମ ଶ୍ରଦ୍ଧାଶୀଳତା ଆଉ ତୁମ ପ୍ରେମିକତାର ।



# ସୁଧା ସ୍ୱାଦୀ : ପ୍ରଥମ ପରିଚୟ ଓ ପ୍ରଥମ ସ୍ପର୍ଶ

ସେ ଗତ ତେଷଠି ଚଉଷଠି ମସିହାର କଥା । ମୁଁ ସେତେବେଳେ ମୋ ସମୁଦ୍ରକୂଳ ଗାଁ ପାଖ ହାଇସ୍କୁଲରେ ମେଟ୍ରିକ୍ ପଢୁଥିଲି । ମୋର ବୟସ ସେତେବେଳେ କମ୍ ଥିଲା । ଗୋଟେ ନିପଟ ଗ୍ରାମ୍ୟ ବାଳକର ବେଶ ପୋଷାକରେ ମୁଁ ସ୍କୁଲକୁ ଆସୁଥିଲି ।

ଆମର ସାହିତ୍ୟ ଶିକ୍ଷକ ଥିଲେ ଉମାକାନ୍ତ କର; ଯେ କେନ୍‌ସାର ରୋଗରେ ପଡ଼ି ଦଶବାର ବର୍ଷ ହେଲା ମରିଗଲେଣି । ସେ ଦିନ ସାହିତ୍ୟ ବା ସାହିତ୍ୟ ତତ୍ତ୍ୱ ବିଷୟରେ ମୋର ଟିକିଏ ବି ଧାରଣା ନଥିଲା । କିନ୍ତୁ ସାହିତ୍ୟ କରିବା ପାଇଁ ବା ପଢ଼ିବାପାଇଁ ଯେମିତି ଗୋଟେ ପ୍ରାଣ ଦର୍କାର ମୋର ସେତେବେଳେ ଗୋଟେ ନିଦରବି ବାପର ପୁଅ ହିସାବରେ ବୋଧେ ତାହା ଥିଲା ବୋଲି ମୁଁ କାହିଁ ସ୍ମରଣ କରି ପାରୁଛି ।

ସେ ଶୈଶବ ଦିନମାନଙ୍କର ମୋତେ ବଣ ପାହାଡ଼ ନଈପୋଖରୀ, ସମୁଦ୍ର ଆକାଶ ଭାରି ମୋହି ଦେଉଥିଲା । ମୋତେ ସେ ବୟସରେ ସବୁଠାରୁ ବେଶୀ ଆବିଷ୍ଟ କରୁଥିଲା ମୋ ସମୁଦ୍ର କୂଳ ଗାଁରେ ଋତୁ ବଦଳିବାର ଦୃଶ୍ୟ ।

ମୁଁ ସେଦିନ ନବମ ଶ୍ରେଣୀରେ ପଢୁଥିଲି । ଉମାକାନ୍ତ ସାର୍ ପଢ଼ାଉଥିଲେ ସାହିତ୍ୟ । ସେଦିନ ସକାଳେ ଭାରି ବର୍ଷା ହୋଇ ଛାଡ଼ି ଯାଇଥିଲା । ଶ୍ରାବଣ ମାସର ଶେଷ । ପଞ୍ଚମ ପିରିୟଡ଼୍‌ରେ ଆମର ସାହିତ୍ୟ ପଢ଼ାଯାଉଥିଲା ।

ସେଦିନ ବିଷୟ ଥିଲା ଗଙ୍ଗାଧରଙ୍କ 'ତପସ୍ୱିନୀ'ର ଆଶ୍ରମେ ପ୍ରଭାତ । ଗଙ୍ଗାଧରଙ୍କ 'ମଙ୍ଗଳେ ଅଇଲା ଉଷା ....' ପଦଟିକୁ ଉମାକାନ୍ତ ସାର୍ ଆବୃତ୍ତି କରୁଥିଲେ ଆମେ ସମସ୍ତେ ମନ୍ତ୍ର ମୁଗ୍‌ଧ ହୋଇ ଶୁଣୁଥିଲୁ ।

ତାପରେ ସେ ବୁଝାଇଲେ । ଉମାକାନ୍ତ ସାର୍ ଗୌର ବର୍ଣ୍ଣର ଥିଲେ । ହସହସ ମୁହଁ । ବଡ଼ ବଡ଼ ଭସାଣିଆ ଆଖି । ଲୋମଶ ଶରୀର । ଧଳା ହାଫ୍‌ଶାର୍ଟ ସହିତ ଧୋତି ପିନ୍ଧୁଥିଲେ ।

ଗଙ୍ଗାଧର ସାହିତ୍ୟ ଆସ୍ୱାଦନ ଥିଲା ମୋ ଜୀବନରେ ସେଦିନ ପ୍ରଥମ ।

ସମୁଦ୍ରକୂଳ ଗାଁରେ ନିଷ୍କପଟ ଶୈଶବ ବିତାଉଥିଲା ବେଳେ ମୋର କାବ୍ୟ ଜିଜ୍ଞାସାର ଅୟ ଆରମ୍ଭ ହିଁ ହୋଇ ନଥିଲା । ମୋ ମନ ଓ ଚେତନା ଥିଲା ଅବିକଳ ଗୋଟେ ସାଧା ସ୍ଲେଟ୍ ବା କାଗଜପରି । ସେଥିରେ ସେତେବେଳେ କିଛି ହିଁ ଲେଖା ହୋଇ ନଥିଲା ।

ଆମ ଗାଁରେ ପ୍ରଚୁର ପୁର୍ବାଳି ପବନ ବହୁଥିଲା ତ ସମୁଦ୍ର ଗର୍ଜୁଥିଲା । ସମୁଦ୍ର ଉପର ଆକାଶ ଭାରି ରହସ୍ୟମୟ ଲାଗୁଥିଲା ।

ଯେଉଁ ଦିନ ଉମାକାନ୍ତ ସାର୍ ଗଙ୍ଗାଧରଙ୍କ ଆଶ୍ରମ ପ୍ରଭାତ ପଢ଼ାଇଲେ ସେଦିନ ବୋଧେ କବିଟିଏ ମୋତେ ସ୍ୱର୍ଗଚ୍ୟୁତ ଗନ୍ଧର୍ବଟିଏ ପରି ଲାଗିଲା ତ କବିତା ମୋତେ ଅଦ୍ଭୁତ ଭାବରେ ସ୍ୱର୍ଗୀୟ ଓ ରହସ୍ୟମୟ ଲାଗିଲା ।

ସମୁଦ୍ରକୂଳ ଗାଁର ନିଶ୍ଚଳ ପ୍ରକୃତି ତ ମୋତେ ଆଗରୁ ସ୍ପର୍ଶ କରି ସାରିଥିଲା; କବିତା ସେ ଦିନ ମୋତେ ପ୍ରଥମ କରି ସ୍ପର୍ଶକଲା । ମୁଁ କ୍ରମଶଃ ଏକ ମଧୁର ପ୍ରଭାତ ଦୃଶ୍ୟ ବର୍ଣ୍ଣନା ଶୁଣି ପ୍ରବୋଧିତ ହୋଇ ଯାଉଥିଲି । ନାନା ଭାବରେ ଅନ୍ତର ମୋର ଭରି ଯାଇଥିଲା । ସବୁକିଛି ଦୃଶ୍ୟମୟ ଲାଗୁଥିଲା ।

ଗୋଟେ ମହାନାଟକର ପରିବୋଧନୀୟ ଦୃଶ୍ୟ ଯେପରି ମୋ ଆଗରେ ମେଲି ହୋଇଗଲା । ମୁଁ କ୍ରମଶଃ ଯେପରି ତଟସ୍ଥ ହୋଇ ଯାଉଥିଲି । କବିତା ଶୁଣି ଏପରି ରୋମାଞ୍ଚକର ଅନୁଭୂତି ମୋର ତା ପୂର୍ବରୁ କେବେ ହୋଇ ନଥିଲା ।

ଏବେ ଅକାଳରେ ମୃତ୍ୟୁବରଣ କରିଥିବା ମୋର ସ୍କୁଲ ସହପାଠୀ ଦିବାକର ସହିତ ଆମେ ସେତେବେଳେ ଗୋଟେ ତରଙ୍ଗିଣୀ ସାହିତ୍ୟ ସଂସଦ କରିଥିଲୁ । ଆମର ସଂସ୍କୃତ ସାର କେତେକ ଶୃଙ୍ଗାରିକ ସଂସ୍କୃତ ଶ୍ଳୋକ ଆବୃତ୍ତି କରି ସମସ୍ତଙ୍କୁ ଆମ ସଂସଦୀୟ ସଭାରେ ଚମକୃତ କରି ଦେଇଥିଲେ । ମାତ୍ର ମୋ ପ୍ରାଣରେ ବିଶେଷ କିଛି ଉଲ୍ଲାସ ମୁଁ ଅନୁଭବ କରି ନଥିଲି ।

ଗଙ୍ଗାଧରଙ୍କ 'ମଙ୍ଗଳେ ଅଇଲା ଉଷା' ପଢ଼ି ସେଦିନ ମୋର ମନେହେଲା କବିଟିଏ ହୁଏତ ଶବ୍ଦରେ ଶବ୍ଦରେ ବିଶ୍ୱକର୍ମା ପରି ଅଦ୍ଭୁତ ମହଲଟିଏ ଗଢ଼ିଦିଅନ୍ତି । ଶବ୍ଦରେ ଏମିତି ବିଚିତ୍ର ମହଲ ଗଢୁଥିବା, ଏମିତି ଗୋଟେ ସକାଳ ହେବାର ଦୃଶ୍ୟକୁ ଅନନ୍ୟ ନାଟକଟିଏ କରି ଦେଇଥିବା କବି କେବେ ମର୍ତ୍ତ୍ୟବାସୀ ହୋଇ ନ ପାରନ୍ତି । ହେଲେ ମୋତେ ସେଦିନ ଭାବ ଭାବନାରେ ଆବିଷ୍ଟ କରି ଦେଇଥିବା କବି ଗଙ୍ଗାଧର ଥିଲେ ବରପାଲି ନିବାସୀ ସାଂସାରିକ ଜୀବନ ବିତଉଥିବା ଜଣେ ମର୍ତ୍ତ୍ୟବାସୀ ।

ଆଜି ମୋର ଏ ଉତ୍ତୀର୍ଣ୍ଣ ବୟସରେ ବି ମୁଁ ମୋର ମନ ଓ ପ୍ରାଣରେ ଗଙ୍ଗାଧରଙ୍କ କାବ୍ୟ ପଠନ ଜନିତ ସେ ପ୍ରଥମ ସ୍ପର୍ଶ, ପ୍ରଥମ ପ୍ରଭାବକୁ ଧରି ରଖିଛି ।

ଗଙ୍ଗାଧରଙ୍କ 'ଆଶ୍ରମେ ପ୍ରଭାତ' କବିତାଟିର ଅନନ୍ୟ ସ୍ପର୍ଶ ମୋ ପ୍ରାଣକୁ ସେଦିନ ଉଦ୍‌ବେଳିତ କରି ଦେଇଥିଲା । ସେ ଦିନୁ କବିଟିଏ ମୋତେ ନିତ୍ୟକାଳର ଲୀଳା କରୁଥିବା ବିଚିତ୍ର ଜୀବଟିଏ ପରି ଲାଗିଲା । ସକାଳ ହେବା ସେଦିନ ଠାରୁ ମୋତେ ଅଶେଷ ନିବିଡ଼ ଲାଗିଲା ତ ମୋର ସାହିତ୍ୟ ଶିକ୍ଷକ ସ୍ୱର୍ଗବାସୀ ଉମାକାନ୍ତ ସାର ମୋତେ ସେ ଦିନଠାରୁ ମହର୍ଷି ପରି ଲାଗିଲେ । ସେ ଏତକ କରିଥିଲେ ଯେ, କବିଙ୍କ 'ଆଶ୍ରମେ ପ୍ରଭାତ'ର ମନ୍ତ୍ର ପରି ଶ୍ଳୋକ ସବୁକୁ ଆବୃତ୍ତି କରି ତା'ର ନାଟକୀୟ ଇଙ୍ଗିତକୁ ସାଧ୍ୟମତେ ପ୍ରକଟିତ କରି ଦେଇଥିଲେ ଆମ ଆଗରେ ।

ସମୁଦ୍ରକୂଳ ଗାଁରେ ସେଦିନ ସେ ଶେଷ ଶ୍ରାବଣର ଦିନଟି ଥିଲା ମୋ ପାଇଁ ଏକ ଶୁଭଙ୍କର ସାରସ୍ୱତ ସ୍ପର୍ଶର ସୁବର୍ଣ୍ଣ ଦିବସଟିଏ ଯେପରି । ସେ ଦିନୁ ମୋ ମନ ଓ ଅନ୍ତର ସୁଧାସ୍ୱାଦୀ ହୋଇ ଉଠିଛି । ପକ୍ଷୀର ଗୀତ, ଫୁଲ ଫୁଟିବା, ନଈ ଝରଣାର ପାଣି ପ୍ରବାହ, ସକାଳ ହେବାର ନିବିଡ଼ ଦୃଶ୍ୟ ମୋତେ ଆହୁରି ସେଦିନ୍ ନିବଡ଼ତର ଲାଗିଛି ।

ପ୍ରାଣରେ ଭାବ ଉଦୟ ହେଲେ ତାହା ଗୋଟିଏ ଚମତ୍କାର ଈଶ୍ୱରୀୟ ଶକ୍ତିରେ ପରିଣତ ହୋଇଯାଏ କି କ'ଣ ଯେଉଁ କବିର କବିତା କେଉଁ କେତେ କାଳ ତଳେ ମୋତେ ପ୍ରଥମେ ସ୍ପର୍ଶ କରିଥିଲା, ମୁଁ ଦୈବାତ୍ ସେଇ କବିର ପୀଠକୁ ସ୍ୱତଃ ଟାଣି ହୋଇ ଆସିଲି ।

ସେ ବର୍ଷ ସେପରି ଗୋଟେ ବର୍ଷଣମୁଖର ଶ୍ରାବଣ ଦିନରେ ମୋର ଅଶେଷ ଜିଜ୍ଞାସାର ଛାତ୍ର ଜୀବନ ପରିସମାପ୍ତ କରି ଓଡ଼ିଆ ଭାଷା ସାହିତ୍ୟର ଅଧାପକ ଭାବେ ଓଡ଼ିଶା ପ୍ରଦେଶରେ ଦ୍ୱିତୀୟ ବୃହତ୍ତମ ସରକାରୀ ମହାବିଦ୍ୟାଳୟ ଗଙ୍ଗାଧର ମେହେର କଲେଜରେ ଯୋଗଦାନ କଲି ।

ମୋର ମନ ଓ କଳ୍ପନାକୁ ମଧୁମୟ କରି ଦେବାର ତାହା ଥିଲା ଯେପରି ଏକାନ୍ତ ମଙ୍ଗଳମୟ ଓ ଏକାନ୍ତ ଆମନ୍ତ୍ରଣୀୟ ମୋ ଜୀବନର ଦୈବଯୋଗ ।

ଗଙ୍ଗାଧର ଜୟନ୍ତୀରେ ଯୋଗ ଦେବା ପାଇଁ ଠିକ୍ ସେହି ବର୍ଷ ମୁଁ ବରପାଲି ସନ୍ନିକଟ ବିଜୟ ପଲ୍ଲୀକୁ ଆମନ୍ତ୍ରିତ ହୋଇଗଲି । ବିଜୟ ପଲ୍ଲୀ ଯାଇ ସେ ବର୍ଷ ଗଙ୍ଗାଧର ପ୍ରେମୀମାନଙ୍କ ସାନିଧ୍ୟଲାଭ କଲି ।

ଗତ ବତିଶ ବର୍ଷର ସମ୍ବଲପୁର ରହଣୀ ମୋର ଅତ୍ୟନ୍ତ ସାର୍ଥକ ଓ ସୁଖକର ହୋଇଛି । କବିଙ୍କ ପରିବାର ସହିତ ଏକାତ୍ମ ହୋଇଯିବା କାରଣରୁ ବେଳେ ବେଳେ ବିରଳ ମୁହୂର୍ତ୍ତ ଦେଖି ମୁଁ ଭାବିଛି ଏହା ମୋ ପାଇଁ ଯେପରି ବିଧି ନିର୍ଦ୍ଦିଷ୍ଟ ଥିଲା ।

କବିଙ୍କ ଉପାର୍ଜିତ ଭାବ ସମ୍ପତ୍ତିରୁ ମୁଁ ଯେପରି ଭାଗ ନେଇଛି । ତାଙ୍କ ମଧୁମୟ ଦୃଷ୍ଟି ଯେମିତି ସତରେ ମୋର ହୋଇ ଯାଇଛି । ସଂସାରର ସନ୍ତାପ ସବୁକୁ ଖାତିର ନ କରି ଜୀବନକୁ, ଜଗତକୁ ମଧୁମୟ ଦୃଷ୍ଟିରେ ଦେଖିବାର ଉପଦେଶ ମୁଁ କବିଙ୍କ କବିତାରୁ ଶିକ୍ଷା କରିଛି । କବିଙ୍କ କବିତାରୁ ମୁଁ ଶ୍ରଦ୍ଧା ଓ ସଦାଚାର ଶିଖିଛି ତ ବିନୀତ ଓ ନୀରବିତ ହେବା ମଧ୍ୟ ଶିଖିଛି ।

କବିଙ୍କ କବିତାରେ ଯେଉଁ କଥା ମୋତେ ସବୁଠାରୁ ବେଶୀ ସ୍ପର୍ଶକରିଛି ତାହା ହେଉଛି ସବୁକିଛି ଉର୍ଦ୍ଧ୍ୱରେ ପ୍ରକୃତିର ପ୍ରେମିକତା କରିବା । ସତରେ ମୁଁ ଆଜି ଉପଲବ୍ଧି କରିପାରୁଛି ଯେ ପ୍ରକୃତିର ପ୍ରେମିକତା କରି ପାରେନା ସେ ଈଶ୍ୱରଙ୍କୁ ଆରାଧନା କରି ପାରେନା କି ସଫଳ ଭାବେ ନିଜ ଜୀବନ ଭୋଗ କରିପାରେନା ।

ପ୍ରକୃତି ମୋତେ ଜଗତର ସବୁ ସମ୍ପତ୍ତିଠାରୁ ଅଧିକ ମୂଲ୍ୟବାନ ଲାଗିଛି । ଜୀବନ ନିବିଡ଼ ଲାଗିଛି ସେଇ ପ୍ରକୃତି ପାଇଁ ।

ଗଙ୍ଗାଧରଙ୍କ କୁଟୁମ୍ବମାନେ ମୋତେ କମ୍ ଶ୍ରଦ୍ଧା, କମ୍ ଆନନ୍ଦ ଦେଇ ନାହାନ୍ତି ଗତ ବତିଶ ବର୍ଷର ମୋ ସମ୍ବଲପୁର ରହଣି ଭିତରେ । କବିଙ୍କ ପରିବାର ସହିତ ଏକାନ୍ତ ହେବାର ବହୁ ସୁଯୋଗ ବିଧାତା ମୋତେ ପ୍ରଦାନ କରିଛନ୍ତି । ସେମାନଙ୍କ ଶ୍ରଦ୍ଧା ଓ ସୌଜନ୍ୟରେ ମୋ ପ୍ରାଣ ପୁଲକିତ ହୋଇଯାଇଛି ।

ମନୁଷ୍ୟ ଏକ ପ୍ରାଣୀ ଯେ ପ୍ରତିଦାନ ଦେଇ ରହିପାରେ ନାହିଁ । ମୁଁ ପ୍ରତିଦାନ ସ୍ୱରୂପ ବାରବାର କବିଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ଯୋଡ଼ ହସ୍ତରେ ଅନ୍ତର ଦେଇ କୃତଜ୍ଞତା ଜଣାଇଛି କେବଳ । ଶ୍ରାବଣ ପୂର୍ଣ୍ଣିମାରେ କବିଙ୍କ ପ୍ରତିମୂର୍ତ୍ତି ନିକଟରେ ଶ୍ରଦ୍ଧାରେ ପୁଷ୍ପାଞ୍ଜଳୀ ଦେଉଥିଲା ବେଳେ ମୁଁ ବହୁବାର ଛଳ ଛଳ ହୋଇ ଯାଇଛି ।

ଗଙ୍ଗାଧର ସାହିତ୍ୟ ମୋତେ ମୋ ଆତ୍ମା ଓ ମନରେ ଶିକ୍ଷିତ ହେବା ପାଇଁ, ଭଦ୍ର ହେବା ପାଇଁ ପ୍ରବୋଧିତ କରିଛି । ନୀତିନିଷ୍ଠ ସୁନ୍ଦର ଜୀବନ ବଞ୍ଚିବା ପାଇଁ ଗଙ୍ଗାଧର ସାହିତ୍ୟ ମୋତେ ପ୍ରେରଣା ପ୍ରଣୋଦିତ କରିଛି । ମୋର ମନ ଓ ଆତ୍ମାକୁ ନିରହଙ୍କାରୀ ଓ ବିନୀତ କରି ଦେଇଛି । ମୋତେ ନୀରବିତ ହେବା ପାଇଁ ନିରନ୍ତର ପ୍ରୋତ୍ସାହିତ କରିଛି । ମୋତେ ମୁକ୍ତି ଓ ସନ୍ୟାସର ଆସ୍ୱାଦନ ଆଣି ଦେଇଛି । ସାରସ୍ୱତ ଜୀବନର ମହତ୍ତ୍ୱ ଶିଖାଇଛି ।

ଯେଉଁଦିନ କବିକୁଟୀରରେ ମୁଁ ପ୍ରଥମେ ପହଞ୍ଚିଲି ସେ ମାଟି, ସେ ପୀଠରେ ପାଣି ପବନ ମୋତେ କେମିତି ଭାରି ପବିତ୍ର ଲାଗିଲା ଆଉ ତାଙ୍କ କୁଟୁମ୍ବମାନେ ମୋତେ ଭାଗ୍ୟଧର, ଭାଗ୍ୟଧରୀ ବୋଲି ଲାଗିଲେ ।

କବିଙ୍କ କଲମ ଦୁଆତ, ଖାଇବା ବାସନ, ପିନ୍ଧିବା ବସନ, ପୀଢ଼ା ଆଉ ତନ୍ତ ଆଦି ବ୍ୟବହୃତ ସାମଗ୍ରୀ ଦେଖିଲି । କେତେ ଭାବାନ୍ତର ସୃଷ୍ଟି ହେଲା ମନରେ ।

ସେ ଦିନ ଚରମ ତୃପ୍ତିର ସହିତ ବିବିଧ ସ୍ୱାଦିଷ୍ଟ ବ୍ୟଞ୍ଜନ ଦେଇ ସରୁ ବାସୁମତି ଚାଉଳର ଭାତ ଖାଇଲି ପୀଢ଼ାରେ ବସି । ନିଜକୁ ଗୌରବନ୍ୱିତ ମନେ କଲି । କବିଙ୍କ ପ୍ରତିମାଟି ଯେପରି ମୋ ଆଗରେ ନାଚି ଉଠିଲା । ମୋ ପ୍ରାଣ ପୁଲକରେ ଭରିଗଲା । ଏ ଘଟଣାକୁ ମୋ ଜୀବନରେ ଏକ ଅମୃତ ଯୋଗ ବୋଲି ମନେକଲି ।

ଗତ ଅଠ ତିରିଶ ବର୍ଷ ଭିତରେ ଯେତେବାର ଗଙ୍ଗାଧର କାବ୍ୟ ପଢ଼ିଛି କିମ୍ବା ଚର୍ଚ୍ଚା କରିଛି ମୁଁ ତାଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି ଓ ରସିକତାରେ ସେତେବାର ଶିହରି ଉଠିଛି । ଗୋଟେ ବସ୍ତି ଇଲାକାରେ ସାଧାରଣ ସାଂସାରିକ ଜୀବନ ବଞ୍ଚୁଥିବା ମଣିଷଟେ କେମିତି ବୈଦିକ ଋଷିପରି ଦୂର ତାରକିତ ନଭ, ସାନୁମାନ ପର୍ବତ ଶ୍ରେଣୀ, ବିପୁଳ ବନସ୍ପତିକୁ ପ୍ରବୋଧିତ ହୋଇ ଦେଖିଛି ଓ ସେସବୁକୁ ଈଶ୍ୱରଙ୍କ ଲୀଳାସ୍ଥଳୀ ବୋଲି ଅଭିହିତ କରିଛି ତାହା ମୋତେ ବାରବାର ବିସ୍ମିତ କରି ଦେଉଥିଲା ଓ ପ୍ରକୃତି ପ୍ରେମର ସଙ୍କଳ୍ପ ଶିଖାଉଥିଲା ।

ଆଉ ଯେଉଁ ଗୋଟିଏ କଥା ପୁଣି ମୋତେ ବେଶୀ ପ୍ରଭାବିତ କରିଛି ଓ ଯାହାକୁ ମୁଁ ମୋ ଭିତରେ ମୋ ଅନ୍ତସ୍ଥଳରେ ସାଇତି ରଖିଛି ତାହାହେଲା ବସୁଧା ମଣ୍ଡଳ ପ୍ରତି କବିଙ୍କ ନିସର୍ଗ ଉନ୍ମୁଖତା, ତାଙ୍କର ଅସାଧାରଣ ବିଶ୍ୱଦୃଷ୍ଟି ।

କବି ଭାରତୀୟ ପୌରାଣିକ କାହାଣୀ, ଭାରତବର୍ଷର ଇତିହାସ, ଜାନପଦିକ ସାଂସ୍କୃତିକ ଜୀବନକୁ ଇତସ୍ତତଃ ଲେଖିଥିଲେ ହେଁ ଏକ ମହାଜୀବନ ବୋଧ ଓ ମହାଜାଗତିକ ଗତି ଓ ବିସ୍ତାର ଓ ତଦସଂଜାତ ଏକ ଅଖଣ୍ଡ ସମଗ୍ର ତାଙ୍କ ରଚନାବଳୀରୁ ସ୍ପଷ୍ଟ ବାରି ହୋଇ ପଡୁଥିଲା । ଓଡ଼ିଶାର ସୁଦୀର୍ଘ ସାରସ୍ୱତ ଧାରାରେ ଗଙ୍ଗାଧରଙ୍କ ଏହି ବିଶ୍ୱ ମୁଖୀନତା ତାଙ୍କ

ଶିଳ୍ପ ସିଦ୍ଧିର ଏକ ଉଚ୍ଚତର ପ୍ରସଙ୍ଗ । ଗଙ୍ଗାଧରଙ୍କ ଏହି ବ୍ରହ୍ମାଣ୍ଡ ବୋଧ ଓ ସେ ସମ୍ପର୍କିତ ଆଧ୍ୟାତ୍ମିକ ଚୁଙ୍ଗିମାର ବୀଜ ମୋ ଭିତରେ ଦ୍ରୁମାୟିତ ହୋଇଛି । ଏହାହିଁ ମୋ ସ୍ୱନିଷ୍ଠ ଉପଲବ୍ଧିର ବିଷୟ ।

ଏଇ ଜଣେ କବି ମୋତେ ସୁନ୍ଦର ଦେଖିବା ପାଇଁ, ସର୍ବଦା ବିଶ୍ୱମୁଖୀ ହେବା ପାଇଁ, ପର ଆପଣା ଭେଦ ନ ବାରିବା ପାଇଁ, ବିଶ୍ୱବାସୀଙ୍କର ପ୍ରେମିକତା କରିବା ପାଇଁ ଓ ନିଜ ମାତୃଭୂମି, ମାତୃଭାଷାକୁ ମମତା ଦେବାପାଇଁ ପ୍ରୋତ୍ସାହିତ କରିଛନ୍ତି ।

ଗଙ୍ଗାଧରଙ୍କ ଅମୃତ ଦୃଷ୍ଟି ଓ ଶିଷ୍ଟତା ଗତ ଚାରି ଦଶନ୍ଧି ଧରି ମୋତେ ଆଚ୍ଛନ୍ନ କରି ରଖିଛି । ଗଙ୍ଗାଧର ମୋର ପ୍ରିୟ କବି । ତାଙ୍କ ମଧୁମୟ ବିଶ୍ୱ ଜୀବନବୋଧ ମୋର ଆଦର୍ଶ ।

ସେଦିନ ଆଦ୍ୟ ଯୌବନରେ ଯେଉଁ କବିଙ୍କ କବିତା ଭାବ ଭାଷା, ଛନ୍ଦ ସଙ୍ଗୀତ ତଥା ସାମଗ୍ରିକ କାବ୍ୟ ପ୍ରଭାବ ଦୃଷ୍ଟିରୁ ମୋତେ ବିଶେଷ ଭାବେ ପ୍ରଭାବିତ କରିଥିଲା ସେହି ପ୍ରଭାବ ମୋର ରସଚେତନା, ସୌନ୍ଦର୍ଯ୍ୟଦୃଷ୍ଟି ଓ ମୋ ଅନ୍ତସ୍ଥଳର ମାର୍ମିକତାକୁ କେତେ ଭାବରେ ବଢ଼ାଇଛ— ଆଜି ମୁଁ ତାହା ଗଭୀର ଭାବେ ଅନୁଭବ କରୁଛି ଆପଣା ପ୍ରାଣର ପୁଲକରୁ, ଆପଣାର ଉଚ୍ଛ୍ୱସିତ ନିମଜ୍ଜମାନତାରୁ ।

ଗଙ୍ଗାଧରଙ୍କ ତପସ୍ୱିନୀର ସମୁଦାୟ ଚତୁର୍ଥ ସର୍ଗଟି ମୋତେ ମହାନାଟକର ଲଳିତ ଦୃଶ୍ୟପଟ୍ଟ ପରି ଲାଗିଥିଲା; ଯାହା ମୋ ଭିତରେ ଗୋଟେ ସମୁନ୍ନତ କାବ୍ୟରୁଚି ଗଢ଼ିବାର ମୂଳ ପ୍ରୋତ୍ସାହନ ହୋଇଛି ।

କବିଙ୍କ 'ଅନ୍ଧାର ଦୁଃଖ ନଗଣି/ଆଲୋକ ସୁଖ ନମଣି/ଚାଲିଛି ଦୂର ସରଣୀ ନତ ବଦନେ;/ଜନମ କରୁଛି ସଫଳ/ଶେୟ-ଦାନେ ତୋଷି ତୀରବାସୀ ସକଳ' । ପଦଟି ସେଦିନ ମୋତେ ବିଭୋର କରି ଦେଇଥିଲା; ଯେଉଁ ବିଭୋର ପଣିଆ ମୋ ଭିତରେ ସୁଖ ଦୁଃଖରେ ବଢ଼ିଛି ସିନା; ଆଦୌ ଛିଡ଼ି ଯାଇନାହିଁ ।

ଶୁଭ୍ର, ସ୍ୱଚ୍ଛତାରେ କବି ମୋତେ ମାନ୍ସ ସରୋବରରେ ମକରନ୍ଦ ପାନ କରୁଥିବା ରାଜହଂସ ପରି ମନେ ହୁଅନ୍ତି । କବିଙ୍କ କବିତାରେ ଚିତ୍ରିତ ନାରୀ ପ୍ରତିମା ସବୁ ମୋତେ ଅନନ୍ତ କାଳର ଲାସ୍ୟ ଓ ମାଧୁର୍ଯ୍ୟର ଅବତାରୀ ପରି ଲାଗନ୍ତି ।

ଏତେକାଳ ଧରି କବିଙ୍କ କାବ୍ୟ କବିତା ଥିଲାମୋ ପାଇଁ ଅମୃତମୟ ରସ ଓ ମାଧୁର୍ଯ୍ୟର କୋଷ ସଦୃଶ; ମାନବୀୟ ଶ୍ରଦ୍ଧା ଓ ସ୍ପନ୍ଦନର ପବିତ୍ର ଆଲେଖ୍ୟ ।

ସମୁଦ୍ର କୂଳ ଗାଁରେ ଶୈଶବ ବିତାଉଥିଲା ବେଳେ ମୋତେ ଯେଉଁ କବି ଅମରାବତୀର ଗନ୍ଧର୍ବ ପରି ଲାଗିଥିଲା ସେହି କବିର ପୁଣ୍ୟପୀଠ ସହିତ ମୋର ସଂଶ୍ଳେଷ ମୋତେ ମୋର ଯୋଗ ଭାଗ୍ୟ ପରି ଲାଗିଛି । ଦୈବଯୋଗ ନଥିଲେ ବାଲେଶ୍ୱର ସମୁଦ୍ରକୂଳ ଗାଁର ବାଳକଟିଏ ସୁଦୂର ବରପାଲିର କବିବଂଶ ସହିତ ଏତେ ଆତ୍ମୀୟତାରେ ସମ୍ବନ୍ଧିତ ହୋଇପାରି ନଥାନ୍ତା ।

କବି ପରିବାର ସହିତ ଆଜି ମୋର ଏକାନ୍ତ ପ୍ରାଣପୂର୍ଣ୍ଣ ସମ୍ବନ୍ଧକୁ ମୁଁ ଦେବତାର ଆଶୀର୍ବାଦ ବୋଲି ଜ୍ଞାନ କରୁଛି ।

ଗଙ୍ଗାଧରଙ୍କ ତପସ୍ୱିନୀ କାବ୍ୟର ଚତୁର୍ଥ ସର୍ଗଟି ଶ୍ରବଣ କରି ସେଦିନ ମୋ ପ୍ରାଣରେ ଯେଉଁ ଶ୍ରଦ୍ଧାତ୍ତ୍ୱକାର ଅନୁଭବ କରିଥିଲି କବିଙ୍କ ଜ୍ଞାତି କୁଟୁମ୍ବଙ୍କ ସହିତ ମୋର ଆତ୍ମୀୟତାକୁ ଆଜି ତା'ଙ୍କ ଏକ ଅବିଚ୍ଛିନ୍ନ ବିସ୍ତାର ବୋଲି ଜ୍ଞାନ କରୁଛି ।

ଦୀର୍ଘ ଚାରି ଦଶନ୍ଧିର ଜୀବନ ପ୍ରବାହ ଭିତରେ କବିପୀଠ ବରପାଲି ମୋ ପାଇଁ ଏକାନ୍ତ ଅବିସ୍ମରଣୀୟ ସତ୍ତିତୀର୍ଥ ହୋଇ ରହିବ ।

ସମ୍ବଲପୁର ବିଶ୍ୱ ବିଦ୍ୟାଳୟର ଚାକିରୀ ସମାପନ ପରେ ଯଦି ବାଲେଶ୍ୱରର ସମୁଦ୍ରକୂଳ ଅବା ବୌଦ୍ଧ ବିହାର କୁପାରୀ ପରି ଏକ ପାହାଡ଼ ମୂଳ ଗାଁରେ ମୁଁ ମୋର ଅବଶିଷ୍ଟ ଅବସର ଜୀବନ କଟାଏଁ ତାହେଲେ ବରପାଲି ମୋ ସ୍ମୃତିରେ ସର୍ବଦା ସ୍ୱପ୍ନିଳ ହୋଇ ରହିବ ଏଥିରେ ସନ୍ଦେହ ନାହିଁ ।



# କାରୁଣ୍ୟର ଅନ୍ୟ ଏକ ଯାଦୁକରୀ ସ୍ପର୍ଶ

'ଏକୋ ରସଃ କରୁଣ ଏକ ନିଭିତ୍ତ ଭେଦାଦ୍
' ଭିନ୍ନଃ ପୃଥକ୍ ପୃଥଗିବାଶ୍ରୟତେ ବିବର୍ତ୍ତାନ୍ ।' (ଭବଭୂତି)

କାରୁଣ୍ୟର ଆସ୍ୱାଦନ ଏତେ ଦିବ୍ୟ, ଏତେ ଅଧିକ ମାତ୍ରାରେ ଚିତ୍ତପ୍ରଶାନ୍ତିକର ପୂର୍ବରୁ ମୋର କେବେ ଏପରି ଅନୁଭବ ନଥିଲା ।

ମୋ ଜୀବନରେ ସେ ଏକ ସ୍ମରଣୀୟ ଦିବସ, ଯେଉଁଦିନ କାରୁଣ୍ୟର ଅନୁଭବ ମୋର ସମଗ୍ର ମନ ଓ ଚେ୍ତନାକୁ ବିଗଳିତ କରିଦେଲା । ମୋ ଭିତରେ ରୋମାଞ୍ଚ ଜାତ ହେଲା ।

ଆଜିକୁ ଦୀର୍ଘ ଚଉତିରିଶ ବର୍ଷ ତଳେ ଉଣେଇଶ ଶହ ଅଢ଼ଷଠି ମସିହା ଶ୍ରାବଣ କି ଭାଦ୍ରବର ଗୋଟେ ବର୍ଷାଦିନ । ଭଦ୍ରକ କଂଲେଜର ସୁଧୀ ଅଧ୍ୟାପକ ସୁଧାଂଶୁ ଶେଖର ରାୟ ଗଙ୍ଗାଧରଙ୍କ 'ତପସ୍ୱିନୀ' କାବ୍ୟର ଏକାଦଶ ସର୍ଗ ପଢ଼ାଉଥିଲେ ।

ବାଲ୍ମୀକିଙ୍କ ରାମାୟଣ ଭବଭୂତିଙ୍କ ଉତ୍ତର ରାମଚ଼ରିତରୁ ତିନି ଚାରୋଟି କରୁଣ ରସାତ୍ମକ ଶ୍ଳୋକକୁ ଭାବପୂର୍ଣ୍ଣ କଣ୍ଠରେ ଆବୃତ୍ତିକରି ସେ ଏକାଦଶ ସର୍ଗ ଆରମ୍ଭ କଲେ । ସୀତାଙ୍କ ବିନୟ ପତ୍ରରୁ ଅଧ୍ୟାପକ ଶ୍ରୀ ରାୟ କେତେ ପଦ ଭାବବିହ୍ୱଳ ହୋଇ ଆବୃତ୍ତି କଲେ ତ କରୁଣ ରସାଶ୍ରିତ ଆଉ କେତେକ ଧାଡ଼ିକୁ ଗାନ କରିବାକୁ ଯାଇ ବିବାକ କ୍ରନ୍ଦନ କରିବାକୁ ଲାଗିଲେ ।

ଶ୍ରେଣୀ ଗୃହରେ ସେଦିନ ଦି'ଧାର ତତଲା ଲୁହ ତାଙ୍କ ଦି'ଆଖିରୁ ବହିଗଲା । ବାରମ୍ବାର ତାଙ୍କର କୋହ ଉଠିଲା । ସେ ତାଙ୍କ ଲୁଗା କାନିରେ ତାଙ୍କ ଆଖିରୁ ଦି'ଥର ଲୁହ ପୋଛିଲେ । ଦି'ଥର ଶ୍ରେଣୀ ଗୃହ ବାହାରକୁ ଗଲେ ।

ସେଦିନ ଗଙ୍ଗାଧରଙ୍କ ତପସ୍ୱିନୀର ଏକାଦଶ ସର୍ଗ ପଢ଼ାଇବା ସାରଙ୍କ ପକ୍ଷେ ଆଉ ସମ୍ଭବ ହେଲାନି । ସେ ଶେଷରେ ସେଦିନ ଶ୍ରେଣୀ ଗୃହ ଛାଡ଼ି ହିଁ ଚ଼ାଲିଗଲେ ।

ଝିଅ ପୁଅ ହୋଇ ଆମେ ପ୍ରାୟ ଷୋଳ ଜଣ ସେଦିନ ଶ୍ରେଣୀ ଗୃହରେ ତଟସ୍ଥ ହୋଇ ବସି ରହିଲୁ କେବଳ । କଲେଜ ଡ୍ରାମାରେ ନାୟିକା ଭୂମିକାରେ ଅଭିନୟ କରୁଥିବା ମୋର ସୁନ୍ଦରୀ ସହପାଠିନୀ ବସନ୍ତ ବି କାନ୍ଦିବାକୁ ଲାଗିଲା । ମୋତେ ବି କେମିତି ଭାରି ବ୍ୟାକୁଳ ଲାଗିଲା । ଅଜାଣତରେ ମୋ ଆଖିରୁ ବି ସେମିତି ଲୁହ ବହି ଆସିଲା ।

ସହକାର ଦ୍ରୁମର ଗହଳ କୁଞ୍ଜ ଭିତରେ ଆମ ଶ୍ରେଣୀ ଗୃହର ଉତ୍ତରକୁ ସର୍ପିଳ ଗତିରେ ଖରସ୍ରୋତା ସାଳନ୍ଦୀ ବହି ଯାଉଥିଲା ।

ଭଦ୍ରକ କଲେଜର ଦଶ ନମ୍ବର ପ୍ରକୋଷ୍ଠରେ ସେଦିନ ସମ୍ମାନ ଶ୍ରେଣୀର ଛାତ୍ର ଛାତ୍ରୀ ଓ ଚମତ୍କାର ଶବ୍ଦ ଉଚ୍ଚାରଣ କରି ପାରୁଥିବା ସୁବକ୍ତା, ସୁଧୀ ଶିକ୍ଷକଙ୍କ ସମ୍ମିଳିତ ଅଶ୍ରୁ ତର୍ପଣର ଦିବସଟି ଆଜି ମୋ ସ୍ମୃତିରେ ଜୀବନ୍ତ ହୋଇ ରହିଛି ।

କାରୁଣ୍ୟର ଏତେ ରୋମାଞ୍ଚକର ସ୍ପର୍ଶ । ସେ ଯାବତ୍ ମୋ ପାଇଁ ଏକାନ୍ତ ଅପୂର୍ବ ହିଁ ଥିଲା । କରୁଣ ରସର ଶୋକ ଜର୍ଜ୍ଜରିତ ସ୍ପର୍ଶ ମୋ ମନ ଓ ପ୍ରାଣକୁ ସେଦିନ ଦୋହଲାଇ ଦେଇଥିଲା ।

କରୁଣ ରସ ଆସ୍ୱାଦନ ସେଦିନ ମୋତେ ଶୃଙ୍ଗାର ଠାରୁ ଆହୁରି ମାର୍ମିକ ଓ ମଧୁର ଲାଗିଲା । ନୀଳ କଇଁପରି ଲାଗୁଥିବା ବସନ୍ତର ଆଖି ଯୋଡ଼ିକ ମୋତେ ସେଦିନ ସେପାଇଁ ଆହୁରି କରୁଣ ଓ ଉଦାସ ଲାଗିଲା ।

ପ୍ରକୃତରେ କରୁଣର ଏତେ ପ୍ରାଣସ୍ପର୍ଶୀ ସାତ୍ତ୍ୱିକ ଅନୁଭବ ପୂର୍ବରୁ କେବେ ମୋର ହୋଇନଥିଲା । ଏତେ ଅଳ୍ପ ବୟସରେ ସେଦିନ ମୋର ମନ ହେଲା ଶୃଙ୍ଗାର ଠାରୁ କରୁଣ ବୋଧେ ଅନ୍ତରକୁ ବେଶୀ ସିକ୍ତ କରିଦିଏ, ଦେହ ମନକୁ ବେଶୀ ବିଗଳିତ କରିଦିଏ ।

ମୋ ସାମ୍ନା ଧାଡ଼ିରେ ବସୁଥିବା ସୁଶ୍ରୀ ଆଉ ଈଷତ୍ ଶ୍ୟାମଳୀ ସହପାଠିନୀ ବସନ୍ତମଞ୍ଜରୀର ଯୌବନପୁଷ୍ଟ ଶରୀର ସେଦିନ ମୋତେ ଆଉ ପୂର୍ବପରି ଆସକ୍ତ କରି ପାରିଲା ନାହିଁ । ସୀତାଙ୍କର ଦୁଃଖ ମୋତେ ବିଚଳିତ କରିଦେଲା ତ ମୋ ଭିତରର ସମ୍ବେଦନଶୀଳତା ମୋତେ ଗୋଟାପଣେ ଆବିଷ୍ଟ କରିଦେଲା ।

ମୋର ମନ ଓ ଚେତନା କ୍ରମଶଃ ତରଳି ଯାଉଥିଲା । କାରୁଣ୍ୟର ଗୋଟେ ଶୁଦ୍ଧ ସାତ୍ତ୍ୱିକ ଭାବ ମୋତେ ଗୋଟେ ଗୈରିକ ଚେତନାର ବିସ୍ତୀର୍ଣ୍ଣ ବୃତ୍ତ ଭିତରକୁ ନେଇ ଯାଉଥିଲା ।

ଗଙ୍ଗାଧରଙ୍କ 'ତପସ୍ୱିନୀ' କାବ୍ୟର ଏକାଦଶ ସର୍ଗରୁ ଏଇ କେତେ ଧାଡ଼ି ଅକ୍ଳିଷ୍ଟ ପଦକୁ ମାତ୍ର ସେଦିନ ସାର ଭାବଦେଇ ଆମ ଆଗରେ ଆବୃତ୍ତି କରିଥିଲେ । ନିମ୍ନୋକ୍ତ ମତେ ଯେଉଁ ପଦଗୁଡ଼ିକୁ ଅବିକଳ ଏଠାରେ ଉଦ୍ଧାର କରୁଛି କେବଳ ।

"ଆଉ ଏକ କଥା ଅଛି ମାତ୍ର ଅନୁରୋଧ
ଦୁଃଖିନୀର ପୁତ୍ର ଯୋଗ ନିତାନ୍ତ ଅବୋଧ ।
ନାହିଁ ତାଙ୍କ ପିତୃ କୋଳ ଆରୋହଣ ଭାଗ୍ୟ
ନ ଜାଣନ୍ତି ଜନ୍ମକାଳୁ ପିତୃ ଅନୁରାଗ ।
ଜାଣିଛନ୍ତି ଜନନୀର ଜୀବନ କାନ୍ଦାଇ
ବୀଣା ତନ୍ତ୍ରୀ ସହକାରେ ରାମାୟଣ ଗାଇ ।"

(ତପସ୍ୱିନୀ-ଏକାଦଶ ସର୍ଗ)

ସୁଧାଂଶୁ ସାରଙ୍କର ସେ ଭାବପ୍ରବଣତା, ତପସ୍ୱିନୀର ଏକାଦଶ ସର୍ଗ ଆବୃତ୍ତି କାଳରେ ତାଙ୍କର କଣ୍ଠରୁଦ୍ଧ ହୋଇଯିବା, ତାଙ୍କ ଆଖିରେ ବାରବାର ଲୁହ ଜକେଇ ଆସିବା ସବୁ ମୋର ଆଜି ଗୋଟି ଗୋଟି ହୋଇ ଏତେ ବର୍ଷ ପରେବି ମନେପଡୁଛି । ତା ସହିତ ମନେପଡୁଛି ମୋର ସହପାଠୀ, ସହପାଠିନୀ ମାନଙ୍କର ଭାବରେ ସେଦିନ ବିଗଳିତ ହୋଇ ଯିବା କଥା । ଭଦ୍ରକ ଉଦୟ ଗୋଷ୍ଠୀର ତିନି ପ୍ରମୁଖ ସଦସ୍ୟ କୈଳାଶ, ଫଣୀନ୍ଦ୍ର ଆଉ ଅପୂର୍ବ ମୋର ପ୍ରିୟ ବାନ୍ଧବୀ ବସନ୍ତ, ଉଷା ଆଦି ସହପାଠିନୀ ସେଦିନ ଶ୍ରେଣୀ କକ୍ଷରେ କିପରି ନୀରବ ହୋଇ ଯାଇଥିଲେ ତାହା ବି ଆଜି ଏତେ ବର୍ଷ ପରେ ମୋ ସ୍ମୃତିରୁ ଆଦୌ ଲିଭି

ଯାଇନି, ଯଦିଓ ସେମାନଙ୍କର ଭିତରୁ କୈଳାଶ ଓ ଫଣୀ ଦୁଇଜଣ ଅସାଧ ରୋଗରେ କବଳିତ ହୋଇ ଏହା ଭିତରେ ସ୍ୱର୍ଗବାସୀ ହୋଇ ଗଲେଣି ।

ଭଦ୍ରକ କଲେଜର ସେ ପୂର୍ବ ଗହଳ ଆମ୍ରକୁଞ୍ଜ ଆଉ ନାହିଁ । ଆଜି କଲେଜର ଉତ୍ତର ଦିଗରେ ଥିବା ସାଳନ୍ଦୀ ଆଜି ଚଉତ୍ରିଶ ବର୍ଷ ବ୍ୟବଧାନ ଭିତରେ ପୁଣି ଅତ୍ୟନ୍ତ କ୍ଷୀଣସ୍ରୋତା ହୋଇଯାଇଛି; ଗୋଟେ ଉଦ୍‌ଭିନ୍ନ ଯୌବନା ତନ୍ୱୀ ମାଳଜ୍ୱରରେ ଯେମିତି କଙ୍କାଳସାର ହୋଇ ଯାଇଥାଏ ।

ମୋ ମନରେ ଆଜି କେତେ ରକମର ସ୍ମୃତି ସାଇତା ହୋଇରହିଛି । ପ୍ରିୟାର ଗାଁ, ମିତଣୀ ଆଖିର ଲୁହ, ଖରାଦିନେ ସାଳନ୍ଦୀ ଗଣ୍ଡରେ ଗାଧୋଇବା, ନଈବଢ଼ିର ଦୃଶ୍ୟ, ଶୀତ ଋତୁର ସଞ୍ଜ, ବାଲି ବିଲରେ ଛତୁ ତୋଳିବା ଆଦି କେତେ କେତେ କଥା । ଅଥଚ ତା'ରି ଭିତରେ ସେଦିନର କରୁଣରସ ଆସ୍ୱାଦନ ଓ ଭାବରେ ବିଗଳିତ ହୋଇଯିବାର ସ୍ମୃତି କେତେ ଜୀବନ୍ତ ହୋଇ ରହିଛି ସତରେ ?

ଭାବାବିଷ୍ଟ ହେବାର ବିହ୍ୱଳ ଆନନ୍ଦ ଓ ତା'ର ଆସ୍ୱାଦନ ସବୁବେଳେ ଅଲଗା ପ୍ରକାରର । ସେ ଏକ ପବିତ୍ର ଆନନ୍ଦ । ତାହା ଏ ସଂସାରରେ ଆଉ କେଉଁ ବିଷୟ ସୁଖରୁ ମିଳେ ନାହିଁ ।

ସୁଧାଂଶୁ ସାରଙ୍କ ମନ ଓ ହୃଦୟ ଥିଲା କେମିତି ଭାରି ନାନ୍ଦନିକ । ସାଂସାରିକ ଜୀବନରେ ସେ ଆଦୌ ବିତ୍ତଶାଳୀ ନଥିଲେ । ବହୁ ସନ୍ତାନର ଜନକ ଥିଲେ । ଅଧ୍ୟାପନାରୁ ସେ ପ୍ରଚୁର ଆନନ୍ଦ କିନ୍ତୁ ପାଉଥିଲେ । ପଢ଼ାଉଥିଲା ବେଳେ ତାଙ୍କ ମୁହଁ ଉଜଳି ଉଠୁଥିଲା ତ ସେ ଭାବରେ ବିମୋହିତ ହୋଇ ଯାଉଥିଲେ ।

ରାମାୟଣର ଗୋଟେ ବିରହାତ୍ମକ କରୁଣଦୃଶ୍ୟ ତାଙ୍କୁ ସେଦିନ ଏତେ ଭାବପ୍ରବଣ କରିଦେବ ଆଉ ସେ ଶ୍ରେଣୀ ଗୃହରେ ତାଙ୍କ ଛାତ୍ର ଛାତ୍ରୀଙ୍କ ଆଗରେ ଅଶ୍ରୁ ବର୍ଷଣ କରିବେ ଏହା ମୁଁ କଦାପି ସେଦିନ ଭାବି ପାରି ନ ଥିଲି । ମୋର ଯାହା ମନେ ଅଛି ଆଉ କେଉଁ କବିଙ୍କ କବିତା ପଢ଼ାଇଲା ବେଳେ ଏମିତି ସେ ଆଉ କାନ୍ଦି ନଥିଲେ ।

ଗଙ୍ଗାଧରଙ୍କ ତପସ୍ୱିନୀ କାବ୍ୟର ଏକାଦଶ ସର୍ଗ ଅଧ୍ୟାପନା କରୁଥିବା ବେଳେ ସୁଧାଂଶୁ ସାର କେବଳ ଏକା କାନ୍ଦିନଥିଲେ ତାସହିତ ଆମ ମାନଙ୍କୁ ବି କନ୍ଦାଇ ଦେଇଥିଲେ ।

ଆତ୍ମା ଶୋକଜର୍ଜ୍ଜରିତ ନହେଲେ ପ୍ରାଣ କାହାର କେବେ ବିନୀତ ହୁଏନି । କାରୁଣ୍ୟ ପ୍ରାଣକୁ କେତେ ଅଧୀର କରି ଦିଏ ସେଦିନ ପ୍ରଥମ କରି ମୁଁ ଶ୍ରେଣୀ ଗୃହରେ ଅନୁଭବ କରିଥିଲି ।

ସେହି କାରୁଣ୍ୟର ଅନୁଭବକୁ ଦୀର୍ଘ ବର୍ଷ ପରେ ଆଜି ମୁଁ ମୋ ବିଶ୍ୱାସର ବିଷୟ କରି ପାରିଛି । ଶୃଙ୍ଗାର ବଢ଼ିଲେ ପ୍ରାଣରେ କାରୁଣ୍ୟ ବି ବଢ଼େ । କାରୁଣ୍ୟ ଶୃଙ୍ଗାରକୁ ଆହୁରି ସ୍ୱର୍ଗୀୟ ଓ ବିଶ୍ୱାସନୀୟ କରେ ।

ବର୍ଷା ପାଗ ହେଉଥିଲେ, କିମ୍ବା ଗାଁ ଘର କଥା ମନେ ପଡୁଥିଲେ ମୁଁ ଗଙ୍ଗାଧରଙ୍କ 'ତପସ୍ୱିନୀ'ର ସେ ଏକାଦଶ ସର୍ଗ ପଢ଼େ । ଗୋଟେ ଏକାନ୍ତ ପତି ସୋହାଗୀ ନାରୀ ଜୀବନର

ନିଃସଙ୍ଗତା ମୋତେ ପ୍ରଚୁର ଭାବ ପ୍ରବଣତା ଆଣିଦିଏ । ଗୋଟେ ସାତ୍ତ୍ୱିକ ବିଷାଦ ମୋ ମନ ଓ ପ୍ରାଣକୁ ମହନୀୟ କରିଦିଏ । କାରୁଣ୍ୟ ମୋତେ ଗୋଟାପଣେ ପବିତ୍ର କରିଦିଏ । ମୋର ମନ, ମୋର ଅସ୍ତିତ୍ୱ ମୋତେ ସେତେବେଳେ ଭାରି କାବ୍ୟିକ ଲାଗେ ।

ଏମିତି ବେଶ କିଛି କାଳଧରି ଗଙ୍ଗାଧରଙ୍କ କବିତାରୁ କାରୁଣ୍ୟ ମୋର ମନ ପ୍ରାଣକୁ ଏକବାରେ ଆବୋରି ବସିଥିଲା । ସେଦିନୁ ମୋ କାରୁଣ୍ୟ, ମୋ ଏକାକୀତ୍ୱ ମୋତେ ଭଲ ଲାଗିଲା ।

ବାଲ୍ମୀକି ଆଶ୍ରମ ସେଦିନୁ ମୋତେ ଚରମ ଏକାକୀତ୍ୱର ଆବର୍ତ୍ତ ପରି ମନେ ହୋଇଛି । କାବ୍ୟ ପ୍ରଭାବର ନିବିଡ଼ତାକୁ ମୁଁ ସେଦିନୁ ପ୍ରାଣଭରି ଅନୁଭବ କରିଛି ।

ଗୋଟେ କାବ୍ୟକୃତି ମନ ଓ ଚେତନାକୁ ଏତେ ଅଧିକ ମାତ୍ରାରେ ପ୍ରଭାବିତ କରିଦିଏ ମୁଁ ତାହା ଗଙ୍ଗାଧରଙ୍କ 'ତପସ୍ୱିନୀ' କାବ୍ୟ ପାଠରୁ ହିଁ ଅନୁଭବ କଲି ।

କମେଡ଼ି ଅପେକ୍ଷା ଟ୍ରାଜେଡ଼ିର ପ୍ରଭାବ ସବୁଠି ସବୁବେଳେ ଅଧିକ । ସୀତାଙ୍କର ଯେଉଁ ଦୁର୍ବହ ଏକାକୀତ୍ୱକୁ ଗଙ୍ଗାଧର ଆଙ୍କିଛନ୍ତି ତାହା ତାଙ୍କ ବିଷୟଚୟନର ଏକ ବିଶିଷ୍ଟ ଅଧ୍ୟାୟ । ରାମାୟଣର ଏହି ଅଂଶଟିକୁ ପୁର୍ନସଂସ୍ଥାପନ କରିବାର ବିଶେଷ ଶିଳ୍ପାୟନଟି ଗଙ୍ଗାଧରଙ୍କର କବିକର୍ମର ଏକ ବଡ଼ ସଫଳ ଓ ଅତି ପ୍ରଶଂସନୀୟ ଦିଗ ।

ଏକାକୀତ୍ୱ ଜନିତ କାବ୍ୟନାୟିକା ସୀତାଙ୍କ ଦୁଃଖ ଓ ଦୁର୍ଭାଗ୍ୟକୁ ବର୍ଣ୍ଣନା କରିବା ପାଇଁ ଗଙ୍ଗାଧର ଯେଉଁ କାବ୍ୟଯୋଜନା କରିଛନ୍ତି ଓ ଯେପରି ବିନୀତ ଭାଷା ସଂଯୋଜନା କରିଛନ୍ତି ତାହା ତାଙ୍କ କବିତ୍ୱର ତୁଙ୍ଗିମାକୁ ସୂଚିତ କରେ । ଜଣେ କବିର ଶକ୍ତି ଓ ସଂସ୍କାର ନଥିଲେ ଜଣେ ଆତ୍ମାରେ ଯଶୋବନ୍ତ ହୋଇନଥିଲେ ସେ କଦାପି କରୁଣ ରସର ଚିତ୍ରଣ କରିପାରିବ ନାହିଁ ।

କରୁଣ ବିପ୍ରଲମ୍ଭ ହୋଇନଥିଲେ ସମ୍ଭୋଗ ଠାରୁ ଅଧିକ ଚିତ୍ତପ୍ରଶାନ୍ତି (Sublimation)ର ଅବସର ସୃଷ୍ଟି କରିଥାଏ । ଭବଭୂତି ଯେଉଁଥିପାଇଁ କରୁଣକୁ ଏକମାତ୍ର ରସ ରୂପେ ଘୋଷଣା କରିଛନ୍ତି; ଯାହା ସହୃଦୟକୁ ଗଭୀର ଭାବରେ ଆବିଷ୍ଟ କରିଦେଇଥାଏ ।

ଗଙ୍ଗାଧର ସମୁଦାୟ ଏକାଦଶ ସର୍ଗଟିକୁ ଗୋଟେ କରୁଣ ବିରହାନ୍ତକ ଭାବ ନେଇ ରଚନା କରିଛନ୍ତି । ଏକାଦଶ ସର୍ଗଟି ଗୋଟେ ସର୍ବଜନବିଦିତ ବିରହାତ୍ମକ ଦୃଶ୍ୟପଟ୍ଟର ଚରମ ପରିଣତ (Climax) ଯେପରି; ଯେଉଁଥିପାଇଁ ତାହା ସୀତାଙ୍କ କାରଣ୍ୟକୁ ସୁତୀବ୍ର କରିବା ସହିତ ଗୋଟେ ଶୋକ ଜର୍ଜ୍ଜରିତ ପ୍ରାଣର ଶେଷ ଯବନିକା ଅଙ୍କନ କରିଛି ।

ସୁଧାଂଶୁ ସାର୍ ସେଦିନ ସୀତାଙ୍କ ଦୁଃଖରେ କେବଳ ଲୁହ ଛଳ ଛଳ ହୋଇଗଲେନି, ଈଶ୍ୱର ବରଂ ତାଙ୍କୁ ତାଙ୍କ ଜୀବନସାରା ଦୁଃଖରେ, ବିଷାଦରେ ବତୁରି ଗଲା ଭଳି ଗୋଟେ ନିରୁତାସମ୍ବେଦନଶୀଳ ପ୍ରାଣର ଅଧିକାରୀ କରିଥିଲେ । ତାଙ୍କ ସେହି ଏକାନ୍ତ ସମ୍ବେଦନଶୀଳ ହୃଦୟବତ୍ତାର ଅନ୍ୟତମ ପ୍ରମାଣ ହେଲା, ତାଙ୍କ ଲେଖା— 'ବିରହର ମହାକାବ୍ୟ ତପସ୍ୱିନୀ ଓ ଏନେକ ଆର୍ଡେନ' । ଭଦ୍ରକରୁ ବାହାରୁଥିବା 'ଶତରୂପା' ପତ୍ରିକାରେ ସେବର୍ଷ "ପ୍ରକାଶିତ' ହୋଇଥିଲା ।

କାବ୍ୟସିଦ୍ଧି ପାଇଁ ବିରହର ଭୂମିକାକୁ ଅଧ୍ୟାପକ ସୁଧାଂଶୁ ଶେଖର ରାୟ ବଡ଼ ତାରିଫ୍ କରିଥିଲେ । ମଧ୍ୟଯୁଗୀୟ ଭାରତୀୟ କାବ୍ୟ ପରମ୍ପରାରେ ଶୃଙ୍ଗାର ରସର ଚିତ୍ରଣ ମାତ୍ରାଧିକ ଭାବେ ପରିଲକ୍ଷିତ । ମାତ୍ର ତାହା ବିପ୍ରଲମ୍ଭକୁ ଉନ୍ନୀତ ହୋଇନଥିଲେ, କାବ୍ୟ ଶୁଦ୍ଧ କ୍ଲାସିକ ସାହିତ୍ୟର ଭୁଙ୍ଗିମା ଲାଭ କରିପାରେ ନାହିଁ । ଏହା ପ୍ରମାଣିତ ହୋଇଛି ଯେ ପ୍ରେମର ବିରହ ପର୍ବଟି ପ୍ରେମର ଗଭୀର ଅନୁଭବ ଦୃଷ୍ଟିରୁ ଶ୍ରେଷ୍ଠ ପର୍ବ । ବିରହରେ କେବଳ ପ୍ରେମିକ ପ୍ରେମିକାର ଆତ୍ମା ଶୋକଜର୍ଜ୍ଜରିତ ହୁଏ । ଶୋକ ଜର୍ଜ୍ଜରିତ ଆତ୍ମା କେବଳ ପ୍ରାଣରେ ସୁବର୍ଣ୍ଣଦୀପ୍ତ ଶୃଙ୍ଗାରକୁ ଅନୁଭବ କରିପାରେ ।

ସୁଫୀ ଓ ବୈଷ୍ଣବ କବି ମାନଙ୍କ ପରି ଗୋଲିୟାର୍ଡ଼ ଓ ବିଟନିକ ମାନେ ବିଶେଷତଃ ୟୁରୋପୀୟ ଟ୍ରୋବାଡ଼ୋର କବିମାନେ ପ୍ରେମ ସଙ୍ଗୀତକୁ ବିରହର ବ୍ୟକ୍ତିକ ଅନୁଭବ ଭିତରେ ବିଷାଦଭରା ରାଗିଣୀରେ ପରିଣତ କରି ଦେଇଛନ୍ତି । ତ୍ୟାଗପୂତ ମହାନ ପ୍ରେମର ଅନୁଭବ ପାଇଁ ବିଷାଦ ପ୍ରାଣକୁ ଅଭିମନ୍ତ୍ରିତ କରିଦିଏ । ଟ୍ରୋବାଡ଼ୋର ମାନଙ୍କ ପରି ଭକ୍ତ କବିମାନେ ମହାନ ପ୍ରେମ ପାଇଁ ବିଷାଦକୁ ପ୍ରାଣର ଐଶ୍ୱର୍ଯ୍ୟ ଜ୍ଞାନ କରିଛନ୍ତି । ଗେଟେ ଓ ଦାନ୍ତେଙ୍କ ପରି ବିଦ୍ୟାପତି ଓ ଚଣ୍ଡିଦାସ ସମୁନ୍ନତ ପ୍ରେମର ଅନୁଭବ ପାଇଁ ମର୍ମେ ମର୍ମେ ବିଷାଦକୁ ଅନୁଭବ କରିଛନ୍ତି । ରବୀନ୍ଦ୍ରନାଥ ତ ଅତି ସହଜ ଭାବେ ଗାଇ ଦେଇଛନ୍ତି, 'ମିଳନେ ମଲିନ ତୁମି ବିରହେ ଶ୍ରେୟସି' ।

ବିରହର ଅନୁଭବ ପ୍ରାଣରେ ଗାଢ଼ ନହେଲେ, ପ୍ରେମିକ ପ୍ରେମିକା ଲୁହରେ ଭିଜାଭିଜା ନହେଲେ ସମୁନ୍ନତ ପ୍ରେମର ଅନୁଭବ କାହିଁ ? ରସଶ୍ରେଷ୍ଠ କରୁଣର ପରିବେଷଣପାଇଁ ଗଙ୍ଗାଧର ବିଶାଳ ରାମାୟଣରୁ ଏହି ବିରହାନ୍ତକ ବିଷୟଟିକୁ ହିଁ ଚୟନ କରିଛନ୍ତି । ଗଙ୍ଗାଧରଙ୍କ ଉପରେ ଭବଭୂତିଙ୍କ 'ଉତ୍ତର ରାମଚରିତ'ର ପ୍ରଭାବକୁ ଲକ୍ଷ୍ୟ କରାଯାଇପାରେ ଯେ ଶୁଦ୍ଧ କରୁଣ ରସ ହିଁ ଚିତ୍ରଣ କରିଛନ୍ତି ।

'ତପସ୍ୱିନୀ' ର ଏକାଦଶ ସର୍ଗ ଅଧ୍ୟାପନା ଭିତରେ ସୁଧାଂଶୁ ସାର ମୋ ଉପରେ ଏପରି ପ୍ରଭାବ ସୃଷ୍ଟିକରି ପାରିଥିଲେ ଯେ ସେଦିନ ଠାରୁ ମୋ ମାନସ ପଟ୍ଟରେ ଭଦ୍ରକ କଲେଜ ବାଲ୍ମୀକି ଆଶ୍ରମର ପବିତ୍ର ବଣଭୂମି ପରିମନେ ହୋଇଛି । ସାଳନ୍ଦୀ ତମସା ହୋଇ ଯାଇଛି । ଭଦ୍ରକ କଲେଜର ସୁବିସ୍ତୀର୍ଣ୍ଣ ଆମ୍ରକୁଞ୍ଜ ମୋତେ ସେଦିନୁ ଗୈରିକ ଆଶ୍ରମ ପରିବେଶ ପରି ଲାଗିଛି ।

ହୃଦୟରୁ ହୃଦୟକୁ ସଂଚରିତ ହୋଇ ଯିବା କବିତାର ଏକ ବଡ଼ ଧର୍ମ । ତପସ୍ୱିନୀର କାରୁଣ୍ୟ ହୃଦୟକୁ ଯେପରି ଭରି ଦେଲା । ଏତେ ଭାବମୟ, ଏତେ ଐଶ୍ୱର୍ଯ୍ୟମୟ ସେ କରୁଣ ରସ ତା'ର ଏକାନ୍ତ ନିବିଡ଼ ଓ ତୀବ୍ର ପ୍ରଭାବକୁ ମୁଁ ସେଦିନ ପ୍ରଥମେ ଶ୍ରେଣୀ ଗୃହରେ ବସି ଅନୁଭବ କରିଥିଲି ।

ଏକାଦଶ ସର୍ଗର ରସ ପ୍ରଭାବ ମୋତେ ଉତ୍ପ୍ଲାବିତ କରିଦେଲା । ମୋ ଅନ୍ତସ୍ଥଳରେ କାରୁଣ୍ୟ ମୋତେ ଆହୁରି ବିନୀତ କରିଦେଲା । କାରୁଣ୍ୟ (Pathos)ର ଏତେ ମର୍ମସ୍ପର୍ଶୀ ପ୍ରଭାବ ତା'ର ଏକାନ୍ତ କାବ୍ୟିକ ଉପଲବ୍ଧିକୁ ମୁଁ ସେଦିନ ପ୍ରଥମେ ଅନୁଭବ କରିଥିଲି ।

ଗଙ୍ଗାଧରଙ୍କ 'ତପସ୍ୱିନୀ' କାବ୍ୟର ଏକାଦଶ ସର୍ଗ ଅଧ୍ୟାପନା କାଳରେ ସୁଧାଂଶୁ ସାରଙ୍କର ସେଦିନ କାନ୍ଦିବା ଘଟଣାଟି ଗତ ଚଉତ୍ରିଶ ବର୍ଷ ଭିତରେ ମୋ ଜୀବନର ଏକାନ୍ତ ଅବିସ୍ମରଣୀୟ ସ୍ମୃତିଚିତ୍ର ହୋଇ ରହିଯାଇଛି ।

କାରୁଣ୍ୟର ପ୍ରଭାବ ସେଦିନୁ ମୋ ହୃଦୟକୁ ଭରି ଦେଇଛି । କାବ୍ୟାସ୍ୱାଦନ ପାଇଁ ମୋର ମନ ଓ ହୃଦୟରେ ସେଦିନୁ ଏକ ରସନିବିଡ଼ ଉନ୍ମୁଖତା ବଢ଼ିଛି । ଗଙ୍ଗାଧରଙ୍କ ରସପୁଷ୍ଟ ଓ ନୀତିନିଷ୍ଠ ସାହିତ୍ୟ ଦ୍ୱାରା ଏତେ ଭାବରେ ପ୍ରଭାବିତ ହେବା ବୋଧେ ମୋ ପାଇଁ ଈଶ୍ୱରଙ୍କ ଇଚ୍ଛାର ବିଷୟ ଥିଲା । ଏପରି ଦୈବଯୋଗ ହୋଇନଥିଲେ ବାଲେଶ୍ୱର ବଙ୍ଗୋପସାଗର କୂଳରେ ଜନ୍ମ ହୋଇଥିଲେ ମଧ୍ୟ ସୁଦୂର ବରପାଲି ସହିତ ମୋ ଜୀବନର ଉଚ୍ଚତର ବ୍ୟାପକ ସମ୍ବନ୍ଧ ହୁଏତ ସ୍ଥାପିତ ହୋଇ ପାରିନଥାନ୍ତା ।

ପିତାମାତା, ପରିବେଶ, କୌଳିନ୍ୟ, ଶିକ୍ଷାଦୀକ୍ଷା ଅପେକ୍ଷା କାବ୍ୟ ପ୍ରଭାବର ଶକ୍ତି ଓ ତା'ର ସ୍ପନ୍ଦନ ଅଧିକ । ଗଙ୍ଗାଧରଙ୍କ ସାହିତ୍ୟ ପ୍ରଭାବରେ ଆସି ମୋର ଜ୍ଞାନୋଦୟ ହେଲା ଠାରୁ ମୁଁ ଏହା ମର୍ମେ ମର୍ମେ ଅନୁଭବ କରିଛି ।

'ପ୍ରଣୟ ବଲ୍ଲରୀ' ବିଷୟଟି ପୁଣି ତପସ୍ୱିନୀ ପରି କରୁଣ ଭାବଦ୍ୟୋତକ । ଏ ଦୁଇଟି କାବ୍ୟର ମୁଖ୍ୟ ରସ ହେଉଛି କରୁଣ ।

ଏହି କରୁଣ ରସ ଚିତ୍ରଣରୁ ହିଁ ଗଙ୍ଗାଧରଙ୍କ କବି ଆତ୍ମାଟିକୁ ଜଣେ ସହଜରେ ଜାଣିପାରେ । ଉଭୟ କାବ୍ୟର ଚିତ୍ରଣଗତ ଚମତ୍କାରିତା ବିଯୋଗିତ ଆତ୍ମାକୁ ଲେଖିବାରେ ହିଁ ପ୍ରକଟିତ ହୋଇଛି । ଆତ୍ମା ଓ ଅନ୍ତରର ବିକାଶ ଓ ଉଲ୍ଲାସ ତାଙ୍କର ଧ୍ୟେୟ ଥିଲା । ସୌଭାଗ୍ୟ ଭିତରେ ନୁହେଁ ଦୁଃସ୍ଥିତିରେ ହିଁ ଗୋଟେ ଆତ୍ମାର ଶ୍ରଦ୍ଧା, ସଂକଳ୍ପ ଓ ଶୁଚିତା ଚିହ୍ନିତ ହୋଇଥାଏ ।

ବିଯୋଗିତ ଆତ୍ମାଟି ତା'ର ଦୁର୍ଭାଗ୍ୟଜନକ ସ୍ଥିତିରେ କେବଳ ଅବଶିଷ୍ଟ ତା'ର ପ୍ରେମକୁ ନେଇ ବଞ୍ଚିଥାଏ । ଆପଣାର ତ୍ୟାଗ ନିଷ୍ଠା ଓ ଦୁଃଖ ସହିବା ଭିତରେ ସେ ପ୍ରେମକୁ ହିଁ ଗୌରାନ୍ୱାନ୍ୱିତ କରିଥାଏ । ଯେଉଁ ପ୍ରେମ ବା ମିଳନ ସହଜ ଲଭ୍ୟ ସେଥିରେ ଖାସ ସେପରି କିଛି ଆନନ୍ଦ ନଥାଏ । ତାଡ଼ନା ନଥିଲେ ପୁଣି ଜଣେ ପ୍ରେମର ପରାକାଷ୍ଠା ପ୍ରଦର୍ଶନ କରିପାରେ ନାହିଁ ।

ଗଙ୍ଗାଧର ଙ୍କ କଲମ ସର୍ବଦା ମହନୀୟ ପ୍ରେମର ଚିତ୍ର ଆଙ୍କିବା ପାଇଁ ମୁଖର ହୋଇଛି । ପ୍ରାଣର ସାଧୁତା ନଥିଲେ ଜଣେ କବି ସତ୍ୟ ନ୍ୟାୟ ନିଷ୍ଠା ପ୍ରତି ଏତେ ଉନ୍ମୁଖତା ପ୍ରଦର୍ଶନ କରି ପାରିବେ ନାହିଁ ।

ଗଙ୍ଗାଧରଙ୍କ ସାହିତ୍ୟ ମଣିଷପଣିଆର ବିଜୟ ଘୋଷଣା କରିଛି । କରୁଣାରେ ବିଗଳିତ ହୋଇଯିବାର ଆତ୍ମିକ ମୁଦ୍ରା ଗଙ୍ଗାଧର ସାହିତ୍ୟର ଚିତ୍ର ଚରିତ୍ରରେ ଫୁଟିଉଠିଛି । କରୁଣାର କଷଟିରେ ତାଙ୍କ ଚରିତ୍ରମାନେ ପରଖ ହୋଇଛନ୍ତି ।

କରୁଣ ରସକୁ ଗଙ୍ଗାଧର ଯଥା ସମ୍ଭବ ଚିତ୍ରଣ କରି ଯେଉଁ ଟ୍ରାଜେଡ଼ି ପ୍ରଭାବ ସୃଷ୍ଟି କରି ପାରିଛନ୍ତି ତାହା ସାମଗ୍ରିକ ଭାବେ ତାଙ୍କ କାବ୍ୟ ଆବେଦନର ଏକ ବଡ଼ ଅଂଶ ହୋଇଛି । ସତେ ଯେପରି କରୁଣକୁ ସେ ତାଙ୍କ କବିକର୍ମର ଆୟୁଧ କରିଛନ୍ତି । ଅନେକ ଗଙ୍ଗାଧରପ୍ରେମୀ

ସାହିତ୍ୟ ଛାତ୍ର, ଓଡ଼ିଶାର ବହୁସୁଧୀ ସାହିତ୍ୟ ସମାଲୋଚକ ଗଙ୍ଗାଧାରଙ୍କୁ ଏଥିପାଇଁ ଓଡ଼ିଶାର ଭବଭୁତି ବୋଲି ଅଭିହିତ କରିଛନ୍ତି ।

ଗଙ୍ଗାଧରଙ୍କ 'ତପସ୍ୱିନୀ' ଓ 'ପ୍ରଣୟ ବଲ୍ଲରୀ' ତ କରୁଣ ରସାଶ୍ରିତ ଆଦ୍ୟନ୍ତବନ୍ତ ବିଯୋଗିତ ବିରହର କାବ୍ୟ; ଯାହା ପାଠକକୁ ଏକ ପରିଶୀଳିତ କାରୁଣ୍ୟର ଅନୁଭବ ଆଣିଦିଏ । ଗଙ୍ଗାଧରଙ୍କ କବି ଆତ୍ମା ଏହି କରୁଣ ପ୍ରତି ଅଧିକ ଆସକ୍ତ ଥିଲା ଯେପରି ।

ବିରହର ସ୍ଥପତି ଗଙ୍ଗାଧର କରୁଣ ରସକୁ ଚିତ୍ରଣ କରିତାଙ୍କ ରଚନାବଳୀରେ ମହତ୍ତର କାବ୍ୟ ପ୍ରଭାବ ସୃଷ୍ଟି କରିଛନ୍ତି ।

ମୋ ରସ ଚେତନାରେ କ୍ରମଶଃ କରୁଣ ଅଧିକ ସମୁନ୍ନତ ଅନୁଭବର ବିଷୟ ହୋଇଛି; ଯଦିଓ ସମୁଚ ଶୃଙ୍ଗାରକୁ ରସବୋଧରେ ସବୁଠାରୁ ଶୀର୍ଷାନୁଭବ ବୋଲି ମୁଁ ଜ୍ଞାନ କରେ ।

ପ୍ରାଣ ଉଦ୍‌ବେଳନର ସମୁଚ ଶୃଙ୍ଗାରକୁ ଯେପରି ଗଙ୍ଗାଧର ଲେଖିଛନ୍ତି ସେହିପରି ତା ସହିତ ସିକ୍ତ କରୁଣକୁ; ଯାହା ତାଙ୍କ ରଚନାର ବୃହତ୍ତର କାବ୍ୟ ପ୍ରଭାବର କାରଣ ହୋଇଛି ।

ସମଗ୍ର ବିଶ୍ୱ ସାହିତ୍ୟ ପରିପ୍ରେକ୍ଷୀରେ ରାମାୟଣ ଏକ କରୁଣ କାବ୍ୟ (tender epic); ଯାହା ରସ ସାହିତ୍ୟ ସୃଷ୍ଟି ପର୍ଯ୍ୟାୟରେ ଅତୁଳନୀୟ । ସବୁଠି କାରୁଣ୍ୟର ସୀକୁଏନସ (sequence) ବିପ୍ରଲମ୍ଭର ଗରିମା ସେଠି ସବୁଠାରୁ ବେଶୀ । ସ୍ମୃତି ଚୟନ କରିବାର ଅବସର ବେଶୀ । କରୁଣରସପ୍ରଧାନ ରାମାୟଣରୁ ବିଷୟ ଗ୍ରହଣ କରିବାରେ ଭବଭୂତି ଓ ଗଙ୍ଗାଧରଙ୍କର ରୁଚି ଓ ଆଦର୍ଶ ପ୍ରାୟ ଏକ ।

ଶ୍ରେଣୀ ଗୃହରେ ସେଦିନ ସୁଧାଂଶୁ ସାରଙ୍କ ମୁହଁରୁ କରୁଣ ରସ ଚିତ୍ରଣରେ ଭବଭୂତିଙ୍କ ପ୍ରତିଷ୍ଠା କଥା ଶୁଣିଲି । କରୁଣକୁ ପ୍ରାଣରେ ଶ୍ରେଷ୍ଠତର ରସାନୁଭୂତି ବୋଲି ଉପଲବ୍ଧି କଲି । ମୋ ସୃଜନଶୀଳ ମନରେ ଶୃଙ୍ଗାର ସହିତ କରୁଣର ସେଦିନ ଅପୂର୍ବ ମିଳନ ଘଟିଥିଲା । ମୋ ସ୍ୱନିଷ୍ଠ ପ୍ରେମାନୁଭୁତିରେ ମୁଁ କ୍ରମଶଃ କରୁଣକୁ ଅଧିକ ପ୍ରତ୍ୟକ୍ଷ କଲି ।

ସୁଧାଂଶୁ ସାର୍‌ଙ୍କ ତପସ୍ୱିନୀ ଅଧ୍ୟାପନା ଓ ତାଙ୍କର ସେ ଏକାନ୍ତ ସାତ୍ତ୍ୱିକ କ୍ରନ୍ଦନ ମୋ ଅନୁରାଗମୟ ବିଦ୍ୟାର୍ଥୀ ଜୀବନରେ ଏକ ଅବିସ୍ମରଣୀୟ ଘଟଣା ହୋଇ ରହିଲା । ମୋତେ ସୁଧାଂଶୁ ସାର ସେଦିନୁ ବିରହ ଓ ବିପ୍ରଲମ୍ଭର ଭାଷ୍ୟକାର ଭଳି ଲାଗିଲେ । ଗତ ତିରିଶ ବତିଶ ବର୍ଷ ଭିତରେ ଭଦ୍ରକର ସ୍ମୃତି ମନକୁ ଆସିଲେ ଗଙ୍ଗାଧରଙ୍କ 'ତପସ୍ୱିନୀ'ର ଏକାଦଶ ସର୍ଗ ମନକୁ ଆସେ ।

ଗଙ୍ଗାଧରଙ୍କ ଅମର ରଚନାର କାବ୍ୟ ପ୍ରଭାବକୁ ଆଜି ମୁଁ ଶତଜିହ୍ୱ ହୋଇ ସ୍ୱୀକାର କରୁଛି ।

ଶୃଙ୍ଖଳା ଓ ମାତ୍ରାଧିକ କ୍ଲିଷ୍ଟ ଶବ୍ଦ ଗୁଡ଼ାଏ କେବଳ ସଯତ୍ନରେ ସଜାଇ ଦେଲେ ଉତ୍ତମ ସାହିତ୍ୟ ହୁଏନାହିଁ । ଉତ୍ତମ ସାହିତ୍ୟର ଗୁଣ ହେଉଛି ତା'ର ଅନନ୍ୟ ସୌନ୍ଦର୍ଯ୍ୟ ଦୃଷ୍ଟି, ନିବିଡ଼ ପ୍ରକୃତିପ୍ରେମ ଓ ମହତ୍ତର ରସପ୍ରଭାବ । ସେଦିନୁ ଗଙ୍ଗାଧରଙ୍କ 'ତପସ୍ୱିନୀ'କୁ ମୁଁ

ଯେତେଥର ଆଲୋଚନା କରିଛି ତା'ର କରୁଣ ରସର ଆବେଦନକୁ ମୁଁ ସେତେବାର ଉପଲବ୍ଧି କରିଛି । ତପସ୍ୱିନୀ ଅଧ୍ୟାପନା କାଳରେ ବାଲ୍ମୀକି ଓ ଭବଭୂତିଙ୍କ କରୁଣ ବ୍ୟଞ୍ଜକ ଶ୍ଳୋକର ଆବୃତ୍ତି ଏବେବି ମୋ ସ୍ମୃତିରେ ଜୀବନ୍ତ ହୋଇ ରହିଛି ।

ସେହି ଗଙ୍ଗାଧରୀୟ ପ୍ରଭାବ ଓ ଗ୍ରହଣଶୀଳତା କାରଣରୁ କି କ'ଣ କେଜାଣି ସମଗ୍ର ଜୀବନ ମୋ ଭିତରେ କିର୍‌କେଗାର୍ଡ଼ୀୟ ପ୍ରେମ ଓ ବିଷାଦ ଅଭିମନ୍ତ୍ରିତ ହୋଇଛି । ସେଦିନୁ ମୋତେ ପ୍ରେମରେ ବିଷାଦ ଭଲ ଲାଗିଛି । ମୋ ପ୍ରାଣକୁ କାରଣ ଅକାରଣରେ ସେଦିନୁ ଶୋକଜର୍ଜ୍ଜରିତ କରିବା ପାଇଁ ଭଲ ଲାଗିଛି । ପ୍ରେମରେ ବିଷାଦକୁ ବରଣ କରିନେବା ଭଲ ଲାଗିଛି ।

ମନଦେଇ ସେ ପାଇଁ ବହୁବାର ଗଙ୍ଗାଧରଙ୍କ ଜୀବନୀ ମୁଁ ପଢ଼ିଛି । ତାଙ୍କ ଆତ୍ମଜୀବନୀର ଅଂଶମାନ ପଢ଼ିଛି । ସଂସାରର ସନ୍ତାପ ସବୁ ତାଙ୍କୁ କିପରି ବ୍ୟଥିତ କରିଛି ତାହା ଜାଣିବାକୁ ପାଇଛି କବି ଜୀବନର ଦୁଃଖ ମୋତେ ସେଦିନୁ କୋଟି ନିଧି ପରି ଲାଗିଛି ।

ଦୁଃଖ-ଗୀତର ଆସ୍ୱାଦନ ସବୁବେଳେ ଅଲଗା ପ୍ରକାରର ତାହା ପ୍ରକୃତରେ ପ୍ରିୟ ଓ ମଧୁର ଗୀତ; ଯେଉଁଥିପାଇଁ ଜଣେ ବଡ଼ କବି କହିଥିଲେ, 'Our sweetest songs are those, that tells of the sadest thought.'

ତପସ୍ୱିନୀ ଓ ଉତ୍ତର ରାମଚରିତର ଗୌରବ ତ ଦୁଃଖ ଓ ବିରହର ଚିତ୍ରଣରେ । ଦୁଃଖ ଓ ବିରହ ସହିତ ପ୍ରଣୟର ସମ୍ବନ୍ଧ । ଏକକ ମିଶ୍ର ଅନୁଭବ ଭିତରେ ଯୋଡ଼ାଯୋଡ଼ି ହୋଇଛି । ଭାରତୀୟ ସାହିତ୍ୟର ମହନୀୟତା ଏଇଠି । ଶୋକରେ, କାରୁଣ୍ୟରେ ଅଧିର ହେଉଥିବା ଆତ୍ମା କିପରି ପୁଣି ତା'ଭିତରେ ଶୃଙ୍ଗାରକାମୀ ହୋଇଛି ।

କରୁଣ ରସର ଅଭିବ୍ୟକ୍ତି ନିମନ୍ତେ ଉଭୟ କବି ଯଶୋବନ୍ତ । ଯେମିତି ଭବଭୂତି, ସେମିତ ଗଙ୍ଗାଧର । କରୁଣ ରସର ମର୍ମସ୍ପର୍ଶୀ ଚିତ୍ରଣକୁ ଲକ୍ଷ୍ୟ କରି ଭବଭୂତିଙ୍କ ସଂପର୍କରେ ଜଣେ ଖାସ କହିଥିଲେ; 'କାରୁଣ୍ୟଂ ଉବଭୂତିରେବ ତନୁତେ' ।

ପ୍ରେମର ବଞ୍ଚନାହିଁ ଅନନ୍ତ ବିରହର ଯେଉଁ ଜାହ୍ନବୀ ସୃଷ୍ଟି କରେ ତା'ରି ଭିତରେ ପ୍ରେମ ଗଭୀର ଭାବରେ ଆସ୍ୱାଦିତ ହୁଏ ।

କାରୁଣ୍ୟରେ ଯା ହୃଦୟ କେବେ ବିଗଳିତ ହୋଇନାହିଁ, ରସ ସ୍ପର୍ଶ ଯା ହୃଦୟକୁ ସୁବର୍ଣ୍ଣଦୀପ୍ତ କରିଦେଇନାହିଁ, ରସସିକ୍ତ ସୃଜନଶୀଳତାରେ ଯାହା ଅନ୍ତର ପୁଣି ଯଶୋବନ୍ତ ନୁହେଁ, ଗଙ୍ଗାଧରୀ କାରୁଣ୍ୟ କେବେ ତାକୁ ସ୍ପର୍ଶ କରିବ ନାହିଁ ।

ସୁଧାଂଶୁ ବାବୁ ସେଦିନ ପଢ଼ିଥିଲେ ଏଇ କେତେ ଧାଡ଼ି । ତାଙ୍କ ଆଖି ଲୁହ ଭର୍ତ୍ତି ହୋଇ ଯାଉଥିବା କାରଣରୁ ସେ ଆଉ ପଢ଼ି ପାରୁନଥିଲେ ।

'ଏ ଛାର ଭିକ୍ଷାରେ ନାଥ ନହେବ କୃପଣ
ଦୟା-ରତ୍ନମୟ-ଦାନ-ବାରିଧି ଆପଣ
ମୁଁ କିଏ, ତା' ଜାଣିବାର ନୁହେଁ ଆବଶ୍ୟକ
ସଦା ତୁମ୍ଭେ ତାପସଙ୍କ ଅଶାନ୍ତି-ନାଶକ

ତାପସଙ୍କୁ କିଛି ତୁମ୍ଭ ନଥାଏ ଅଦେୟ
ମୁହିଁ ତପସ୍ୱିନୀ ମୋତେ ନକରିବ ହେୟ ।
ଯେ ହୋଇଛି ଆଜି ତୁମ୍ଭ ଅଙ୍କର ଭାଜନ
ଭକ୍ତିଭରେ ଦେଖୁଥିବେ ଜଗତର ଜନ
ପୂର୍ବେ ସେହୁ କରିଥିଲେ କେଉଁ ଘୋର ତପ
କେଉଁ ଠାରେ କେତେକାଳ କେଉଁ ମନ୍ତ୍ର ଜପ
ଏହାମାତ୍ର ପ୍ରଭୋ, ମୋତେ ଦେବଟି ଜଣାଇ,
ଅନ୍ୟକିଛି ଧନେ ମୋର ପ୍ରୟୋଜନ ନାହିଁ ।’

(ତପସ୍ୱିନୀ-ଏକାଦଶ ସର୍ଗ)

ସାଳନ୍ଦୀ କୂଳର ସେଦିନ ଶ୍ରେଣୀ କକ୍ଷ କେମିତି ଭାରି ନିଶ୍ଚଳ ହୋଇ ଯାଇଥିଲା । ଗୋଟେ ସାତ୍ତ୍ୱିକ ବିଷାଦ ସମସ୍ତଙ୍କ ମୁଖମଣ୍ଡଳରେ ଛାଇ ହୋଇ ଯାଇଥିଲା । ସହପାଠୀ ସହପାଠିନୀଙ୍କ ଆଖିରୁ ବି ଲୁହ ଗଡ଼ି ପଡ଼ିଲା ।

ଦି ଟୋପା ଲୁହ ଆଉ କିଛି କାରୁଣ୍ୟ କିପରି ଗୋଟେ ଝିଅ ମୁହଁର ସୁନ୍ଦର ପଣକୁ ବଢ଼େଇ ଦିଏ ସେଦିନ ବସନ୍ତ ସମେତ ଅନ୍ୟ ସହପାଠିନୀମାନଙ୍କୁ ଦେଖି ମୁଁ ପ୍ରଥମେ ତାହା ଉପଲବ୍ଧି କଲି ।

କାରୁଣ୍ୟ ସେଦିନ ମୋତେ ସ୍ପର୍ଶ କରିଥିଲା । ମୋ ରସଭୋଗ ସେଦିନ ଚରମ ଅଭିବ୍ୟକ୍ତ ଲାଭ କରିଥିଲା ।

କରୁଣ ରସାନୁଭୂତି ବୋଧେ ସବୁଠାରୁ ସାତ୍ତ୍ୱିକ । କାରଣ କରୁଣରସରେ ହୃଦୟ ବିଗଳନ ଆହୁରି ଚିତ୍ତ ପ୍ରଶାନ୍ତି ଆଣେ । କିଛି ଦୋଷ ତ୍ରୁଟି ସତ୍ତ୍ୱେ ଏହି କରୁଣର ପ୍ରଭାବ ପୂର୍ଣ୍ଣଚିତ୍ରଣ ପାଇଁ ଗୋବର୍ଦ୍ଧନାଚାର୍ଯ୍ୟ ଭବଭୂତିଙ୍କୁ ସ୍ୱୀକାର କରି ଲେଖିଛନ୍ତି :-

‘ଭବଭୂତେଃ ସମ୍ବନ୍ଧାତ୍-ଭୂଧର ଭୂରେବ ଭାରତୀଭାତି
ଏତତ୍‌କୃତ କାରୁଣ୍ୟେ କିମନ୍ୟଥା ରୋଦିତି ଗ୍ରୀବା ତୁଳନୀୟା’

କରୁଣ ରସର ଏତେ ପ୍ରଭାବ, ଏତେ ଆବେଦନ ମୁଁ ପ୍ରଥମେ ନିବିଡ଼ ଭାବରେ ସେଦିନ ଶ୍ରେଣୀ ଗୃହରେ ଅନୁଭବ କରିଥିଲି; ଯାହା ଦୀର୍ଘକାଳ ପରେ ବି ସେମିତି ଅବିସ୍ମରଣୀୟ ହୋଇ ରହିଛି ।

ଗଙ୍ଗାଧରୀ କାରୁଣ୍ୟର ସେହି ଅବିସ୍ମରଣୀୟ ସ୍ପର୍ଶ ମୋ ରସ ଚେତନାକୁ ଯେପରି ମାର୍ମିକ ଓ ମଞ୍ଜୁଳ କରିଛି ସେହିପରି ପ୍ରସାରିତ କରିଛି । ଏହି ରସମୟ ଜଗତରେ ସେହି ଈଶ୍ୱରୀୟ ସାରସ୍ୱତ ସ୍ପର୍ଶ ମୋତେ ପ୍ରକୃତରେ ସୁଧାସ୍ୱାଦୀ କରିଛି; ଏହି ପାର୍ଥିବ ବିଶ୍ୱରେ ଯେଉଁ ଆସ୍ୱାଦନର ପ୍ରକୃତ ତୁଳନା ନାହିଁ ।



# ନବ ଚେତନାର ନବନାଗର

ଏ ସଂସାରରେ ଅନେକ ଲୋକଙ୍କର ଗୁରୁ ଅଛନ୍ତି । ସଦ୍‌ଗୁରୁ ପାଇବା ପ୍ରକୃତରେ ଭାଗ୍ୟର ବିଷୟ । ଗୁରୁତ ଈଶ୍ୱରଙ୍କ ପରି । ସମସ୍ତଙ୍କ ପରି ମୋର ବି ଜଣେ ଗୁରୁଅଛନ୍ତି । ଜଣେ ସତ୍ ପ୍ରେମିକ ମୃତ୍ୟୁ ପର୍ଯ୍ୟନ୍ତ ତା ପ୍ରେମିକା ନାମ ଗୋପନ କରି ରଖିଲା ପରି ମୁଁ ମୋ ଗୁରୁଙ୍କ ନାଁ ଗୋପନ କରି ରଖିଛି ।

ମୋ ଗୁରୁଙ୍କର କୌଣସି ଅଭିଜାତ ଆଶ୍ରମ ନାହିଁ । ତାଙ୍କ ଆଶ୍ରମର ପତାକାନାହିଁ । କୋଟି କୋଟି ଟଙ୍କାର ବ୍ୟାଙ୍କ୍ ବେଲେନସ୍ ନାହିଁ । ତାଙ୍କର ଧନୀ ସୌଦାଗର ଶିଷ୍ୟ ନାହାନ୍ତି କି ବିଚକ୍ଷଣ ଶିଷ୍ୟା ବି ନାହାନ୍ତି । ଅଥଚ ଜାତିଧର୍ମ ବର୍ଣ୍ଣନିର୍ବିଶେଷରେ ସେ ସବୁ ଆଧୁନିକ ମଣିଷଙ୍କ ତ୍ରାଣକର୍ତ୍ତା ।

ଯେଉଁ ନର ନାରୀ ଜାତି ଧର୍ମ ବର୍ଣ୍ଣର ପରିଚୟ ଉର୍ଦ୍ଧ୍ୱରେ ଆଧୁନିକ ଚେତନା ପିଣ୍ଡର ଅଧିକାରୀ ଅଧିକାରିଣୀ ସେମାନେ ସମସ୍ତେ ଯେପରି ସେଇ ମୋ ଗୁରୁଙ୍କ ଦ୍ୱାରା ହିଁ ଆଲୋକିତ ହୋଇଛନ୍ତି ।

ଜୀବନ ସାରା ସେ କାହାକୁ ଘୃଣା କରିନାହାନ୍ତି । କି କାହାକୁ ପର ବୋଲି ଜ୍ଞାନ କରିନାହାନ୍ତି । ସମସ୍ତଙ୍କୁ ସେ ଆପଣାର ମନେ କରିଛନ୍ତି ।

ସେ ଏ ସଂସାରରେ ଜନ୍ମ ହୋଇଥିଲେ ଯେମିତି ପ୍ରେମ ଓ ଆତ୍ମୀୟତା ବାଣ୍ଟିବା ପାଇଁ । ତାହାଥିଲା ତାଙ୍କର ମନୁଷ୍ୟଚିତ କର୍ମ; ଯେଉଁଥିପାଇଁ ଈଶ୍ୱର ତାଙ୍କୁ ହୁଏତ ମନୁଷ୍ୟ ଜନ୍ମ କରି ଏ ସଂସାରକୁ ପଠାଇଥିଲେ ।

ତାଙ୍କ ଚିନ୍ତା ଓ ଚେତନାର କେନ୍ଦ୍ର ଥିଲା ଜୀବନ ବଞ୍ଚୁଥିବା ନିତ୍ୟକାଳର ମନୁଷ୍ୟ । ତାଙ୍କ ଦର୍ଶନ ମୁଖ୍ୟତଃ ମାନବ କେନ୍ଦ୍ରିକ ଥିଲା ।

ମନୁଷ୍ୟର ଐଶ୍ୱର୍ଯ୍ୟ ହେଉଛି ତା ଅନ୍ତରର ଆବେଗ । ଆବେଗ ବିବର୍ଜିତ ମନୁଷ୍ୟ ଗୋଟେ ନିଷ୍ପ୍ରାଣ ମେସିନ ପରି । ଆବେଗ ଦ୍ୱାରରେ ଜଣେ ଜଣକ ସହିତ ସଂପର୍କିତ ହୁଏ । ସଂପର୍କ ଯୋଡ଼ିବା ଦୃଷ୍ଟିରୁ ତର୍କ କରିବା ବା ବୁଦ୍ଧିର ପରାକାଷ୍ଠା ପ୍ରଦର୍ଶନ କରିବା ଏକାନ୍ତ ଅସାର ଓ ଅର୍ଥହୀନ ।

ପ୍ରେମ ଥିଲା ତାଙ୍କ ଜୀବନର ପରମ ତପସ୍ୟା । ତାଙ୍କୁ ସେପାଇଁ ବିଶ୍ୱର ଅନେକ ଦାର୍ଶନିକ ଓ ଚିନ୍ତାନାୟକ ପ୍ରେମ ଓ ଆବେଗର ଦାର୍ଶନିକ ବୋଲି ଅଭିହିତ କରିଛନ୍ତି ।

ଭାଷା, ଧର୍ମ, ଜାତୀୟତା ନାମରେ ସେ କୌଣସି ସଂକୁଚିତ ବଳୟର ବାସିନ୍ଦା ନଥିଲେ । ବ୍ରହ୍ମାଣ୍ଡ ବୋଧ ଥିଲା ତାଙ୍କ ଆତ୍ମଜ୍ଞାନର ବଡ଼ ଦିଗ ।

ସର୍ବୋତ୍ତମ ସୃଜନଶୀଳତାର ଅନୁଭବ କେବଳ ଏକଲା ମଣିଷର । ତାଙ୍କ ସମଗ୍ର ଜୀବନର ସାଧନା ଥିଲା ସେଇ ଏକଲା ମଣିଷ ହେବାକୁ । ଜଣେ ଏକଲା ମଣିଷ ହୋଇ ପାରିଲେ ତା ମନ ଓ ଆତ୍ମାକୁ ସେ ପବିତ୍ର କରି ରଖି ପାରିବ ।

ଜଣେ ବ୍ରହ୍ମଚାରୀ, ଜଣେ ବିଦ୍ୟାର୍ଥୀ କେବଳ ତାହା ହିଁ କରେ । ମନକୁ ବିନୀତ କରି ଜ୍ଞାନ ମାର୍ଗରେ ଜୀବନ କଟାଇବା ଏକ ଅନନ୍ୟ ସାଧୁତା ବୋଲି ସେ କହିଛନ୍ତି । ଜଣେ ଯେ, ତା'ର ବୌଦ୍ଧିକ ଜୀବନ ପ୍ରତି ଅନୁରକ୍ତ ହୋଇ ରହେନାହିଁ ତା'ର କୌଣସି ସାଧୁତା (honesty) ନାହିଁ ବୋଲି ସେ ଯୁକ୍ତି କରିଛନ୍ତି । ଯାହା ଜୀବନରେ ବୌଦ୍ଧିକ ପରିଚ଼ୟ (Intellectual identity) ନାହିଁ ତାହା ଜୀବନର କୌଣସି ମୂଲ୍ୟନାହିଁ ବୋଲି ମୋର ସେ ଗୁରୁ ସମଗ୍ର ମଣିଷ ଜାତିକୁ କହି ଯାଇଛନ୍ତି । ଖାଲି ଖାଇ ପିଇ ପଶୁପରି ବଞ୍ଚୁଥିବା ମଣିଷ ପଶୁତୁଲ୍ୟ । ମହତ୍ତର କିଛି ଅଭିଳାଷ ନଥିବା ମଣିଷର ପରିଚ଼ୟ କିଛି ନଥାଏ ।

ସେ ଜୀବନକୁ ବାଜି ଲଗାଇ ଥିଲେ ସ୍ୱନିଷ୍ଠ ଅନୁଭବ ଲାଭ କରିବା ପାଇଁ । ସେ କହୁଥିଲେ ସ୍ୱନିଷ୍ଠ ଜ୍ଞାନହିଁ ପ୍ରକୃତ ଜ୍ଞାନ । ବସ୍ତୁ ନିଷ୍ଠ ଜ୍ଞାନ ମଣିଷକୁ ହୃଦୟହୀନ କରିଦିଏ । ବସ୍ତୁନିଷ୍ଠ ଜ୍ଞାନ ଦିନେ ବିଶ୍ୱର ସଙ୍କଟ ସୃଷ୍ଟି କରିବ ବୋଲି ସେ ଆଶଙ୍କା ପ୍ରକାଶ କରିଥିଲେ ।

ସେ ମାତ୍ର ବୟାଳିସ ବର୍ଷ ଜୀବନ ବଞ୍ଚିଥିଲେ । ହେଲେ କବି ଓ ବୀର ପରି ବଞ୍ଚିଥିଲେ । କବିତ୍ୱ ଓ ବୀରତ୍ୱ ସହିତ ତାଙ୍କ ପ୍ରେମ ଜୀବନ ସମନ୍ୱିତ ଥିଲା । ବୀର ହେବା ଓ କବିହେବାର ଅନୁଭବକୁ ସେ ଗୋଟେ ବାଳିକାର ପ୍ରେମରୁ ଲାଭ କରିଥିଲେ । ନାରୀକୁ ସେ ଏକ ଉଚ୍ଚତର ଆଧ୍ୟାତ୍ମିକ ଉପଲବ୍ଧିର ପବିତ୍ର ଉତ୍ସ ବୋଲି ମନେ କରୁଥିଲେ । ନାରୀ ଥିଲା ସେ ମୋ ଅନନ୍ୟ ଗୁରୁଙ୍କ ସମକ୍ଷରେ ଏକ ଅତୁଳନୀୟ ସୌନ୍ଦର୍ଯ୍ୟ ବସ୍ତୁ (Beauty object) । ଈଶ୍ୱରାନୁଭୂତି ମାଧ୍ୟମ ଏକ ଅନୁପମ ପ୍ରେମପୂର୍ଣ୍ଣ ବସ୍ତୁ (Loving object) ।

ଦୁଃଖକୁ ସେ ତାଙ୍କ ନିତ୍ୟ ସହଚ଼ର ବୋଲି ଜ୍ଞାନ କରୁଥିଲେ । ଦୁଃଖ ଓ ବିଷାଦ ଥିଲା ତାଙ୍କର ଗୁରୁପରି; ଯାହା ତାଙ୍କୁ ଦିବ୍ୟ ଆଲୋକର ପଥ ଆଡ଼େ ନେଇ ଯାଉଥିଲା ।

ଆମେ ଇତରମାନେ ସମସ୍ତେ ସୁଖର ସନ୍ଧାନ କରୁ । ଦୁଃଖ ଭୋଗିବାକୁ କେହି ପ୍ରସ୍ତୁତ ନୋହୁ । ଆପଣା ପାଇଁ କେହି ଦୁଃଖ ମାଗେ ନାହିଁ । କେହି ବିଷାଦ ବରଣ କରିବାକୁ ଚାହାନ୍ତି ନାହିଁ; ଅଥଚ ଏଇ ଲୋକଟି ନୀଳକଣ୍ଠ ପରି ନିଜ ପାଇଁ ଦୁଃଖ ଭୋଗିବାକୁ, ଆପଣା ଅନ୍ତରକୁ ନିରବଧି ଶୋକ ଜର୍ଜ୍ଜରିତ କରି ରଖିବା ପାଇଁ ପ୍ରାର୍ଥନା କରିଥିଲା ।

ଜୀବନକୁ ପ୍ରେମ ଓ ଆବେଗର ଅନନ୍ୟ ଅନୁଭବ ପାଇଁ ବାଜି ଲଗାଇଥିବା ଏ ଅଦ୍ଭୁତ ଲୋକଟିର ଜୀବନ ବଞ୍ଚିବା ଢ଼ାଞ୍ଚାଟିକୁ ସହଜରେ ବିଶ୍ୱାସ କରି ହୁଏ ନାହିଁ ।

ଉଚ୍ଚତର ମାନବୀୟ ଆଦର୍ଶ ଓ ମୂଲ୍ୟବୋଧର ପ୍ରଚାର ପାଇଁ ସେ ଗ୍ରନ୍ଥକାର ହୋଇଥିଲେ । ସମଗ୍ର ମାନବ ସମାଜ ଆଗରେ ତାଙ୍କର ଗ୍ରନ୍ଥ ସମୂହ ଥିଲା ଆଲୋକର ପଥ ସଦୃଶ । ତାଙ୍କ ଆତ୍ମାର ପ୍ରାର୍ଥନା ସବୁ ହିଁ ତାଙ୍କ ଗ୍ରନ୍ଥରେ ଅଭିଲିପିତ ହୋଇଛି । ଏକ ଉଚ୍ଚତର ବୌଦ୍ଧିକ ଜୀବନ ଆଡ଼କୁ ମୁହାଁଇବା ପାଇଁ ସେ ତାଙ୍କ ଗ୍ରନ୍ଥ ମାନଙ୍କରେ ଆହ୍ୱାନ କରିଛନ୍ତି ।

ମଣିଷ ଜୀବନକୁ ସେ ଅନୁପମ ଜ୍ଞାନ କରିଛନ୍ତି । ତାଙ୍କ ଉପଲବ୍ଧିରେ ମନୁଷ୍ୟ ଏକ ଉଚ୍ଚତର ପ୍ରାଣୀ; ଯାହାର ଅସ୍ତିତ୍ୱ ଅଛି ମନୁଷ୍ୟ ଭିନ୍ନ ଅନ୍ୟ କୌଣସି ପ୍ରାଣୀର ଅସ୍ତିତ୍ୱ ନାହିଁ । ତାହା ହେଉଛି ଚେତନାର ଅସ୍ତିତ୍ୱ; ଯେଉଁଥିପାଇଁ ମଣିଷ ମାନବାତ୍ମାର କଲ୍ୟାଣ ପାଇଁ

ସ୍ୱପ୍ନ ଦେଖିପାରେ, ସୃଜନଶୀଳ କଳ୍ପନା କରିପାରେ, ଉତ୍ତମ କବିତ୍ୱ ବଳରେ ସମସ୍ତଙ୍କୁ ମୋହି ଦେଇ ପାରେ ।

ତାଙ୍କ ଜୀବନରେ ଆଦୌ ଭୋଗର ପ୍ରଶ୍ନ ନଥିଲା । ସମସ୍ତେ ଉଜ୍ଜାଗ୍ରତ ହୁଅନ୍ତୁ, ସମସ୍ତେ ବିବେକବାନ ହୁଅନ୍ତୁ ବୋଲି ସେ କାମନା କରୁଥିଲେ ।

ଜଣେ ତୀର୍ଥଙ୍କର ପରି, ସନ୍ୟାସୀ ପରି, ପରିବ୍ରାଜକ ପରି ଜୀବନ ବଞ୍ଚୁ ବୋଲି ସେ ଚାହୁଁଥିଲେ । ସେ ପରଆପଣା ଭେଦ ନକରିବା ପାଇଁ ଯେପରି ସଙ୍କଳ୍ପବଦ୍ଧ ହୋଇଥିଲେ । ସେଥିଲେ ନାରୀ ପ୍ରେମୀ, ଈଶ୍ୱର ପ୍ରେମୀ, ମଣିଷ ପ୍ରେମୀ, ପ୍ରାଣରେ ସେପାଇଁ ଏକ ଅପୂର୍ବ କବିତ୍ୱ ସେ ଅନୁଭବ କରୁଥିଲେ । ଦୁଃଖ ଓ ଦାରୁଣ ବଚ୍ଛେଦରେ ବି ସେ ଜୀବନକୁ ଅନୁରାଗମୟ ବୋଲି ମନେ କରିଛନ୍ତି ।

ତାଙ୍କ ଭିତରେ ସତ କହିବାକୁ ଗଲେ ମୁଁ ମହାଯୋଗୀ ଶଙ୍କରଙ୍କୁ, ଜ୍ଞାନଯୋଗୀ ବିବେକାନନ୍ଦଙ୍କୁ, ସତ୍ୟଦ୍ରଷ୍ଟା ସକ୍ରେଟିସଙ୍କୁ, ଜୀବନକୁ ପ୍ରେମଧର୍ମର ପ୍ରଚାର ପାଇଁ କ୍ରୁଶବିଦ୍ଧ ହୋଇଥିବା ଯୀଶୁଙ୍କୁ, ଜୀବନଜିଜ୍ଞାସୁ ନିତ୍‌ସେଙ୍କୁ, ହେତୁବାଦୀ ସାର୍ତଙ୍କୁ ଖୋଜିପାଏ ।

ଏକୁଟିଆ ମଣିଷର ଭାଗ୍ୟ ନେଇ ବଞ୍ଚିଥିବା ଏଇ ମଣିଷଟିକୁ କେବେ ସାଧାରଣ ମଣିଷ କହି ହେବନି । କେତେ ଅସାଧାରଣ ଲାଗେ ତା'ର ବୟାଳିଶ ବର୍ଷର ଜୀବନ ଅଥଚ ସେ ସାଧାରଣ ମଣିଷର ଜୀବନ ବଞ୍ଚିବାର ବାସ୍ତବତା ଓ ତା'ର ସୃଜନଶୀଳ ପ୍ରତିଟି ସମ୍ଭାବନା ସବୁକୁ ଦେଖାଇବା ତାଙ୍କ ଦର୍ଶନର ମୂଳ କରିଥିଲେ ।

ତାଙ୍କ ସାଧାରଣ ଚିଠି ଠାରୁ ଆରମ୍ଭ କରି ତାଙ୍କର ସମସ୍ତ ଲେଖାଲେଖି ଥିଲା ଏକାନ୍ତ ଆତ୍ମସ୍ୱୀକାରୋକ୍ତି ମୂଳକ (Confessional) । ତାଙ୍କ ଜୀବନକୁ ସମସ୍ତଙ୍କ ଆଗରେ ସେ ଏକ ଖୋଲାବହି କରି ଦେଇଥଲେ । କିଛି ଗୋପନ କରି ରଖିବା ଥିଲା ତାଙ୍କ ପାଇଁ ପାପ । ରେଜିନା ଓ୍ୱଲସନ (Regina Olsen) ନାମକ ଏକ ବାଳିକାକୁ ତାଙ୍କ ଜୀବନ ପରିଧିରୁ ହଟାଇ ତା ସହିତ ସେ ଯେଉଁ ପ୍ରତାରଣା କରିଥିଲେ ସେ ପାଇଁ ତାଙ୍କ ଆତ୍ମଜୀବନୀ ମୂଳକ ଡାଇରୀର ନାମ ସେ ଦେଇଥିଲେ 'The Dairy of the seducer' ।

ଏପରି ଜଣେ ସତ୍ୟଦ୍ରଷ୍ଟା, ମନ୍ତ୍ରଦ୍ରଷ୍ଟା ସଦ୍‌ଗୁରୁଙ୍କ ନାମ ହେଉଛି ମହାନ ଅସ୍ତିତ୍ୱବାଦୀ ଦାର୍ଶନିକ ଡେନ୍‌ମାର୍କର କୋପେନହାଗାନ୍ ସହରରେ ଜନ୍ମ ଗ୍ରହଣ କରିଥିବା ସୋରେନ କିରକେଗାର୍ଡ଼ (Soren Kierkegaard); ଯାହାଙ୍କୁ ମୁଁ ଗୁରୁ କରି ମୋ ହୃଦୟରେ ଅଭିଷିକ୍ତ କରିଛି; ଯେ ଥିଲେ ସମଗ୍ର ବିଶ୍ୱର ଚିନ୍ତା ବିପ୍ଳବ ଇତିହାସରେ ନବ ଚେତନାର ନବନାଗର ।

ଅଦ୍ଭୁତ ଭାବେ ଜୀବନ ବଞ୍ଚିଥିବା ସେ ଗୁରୁଙ୍କର କେତୋଟି ଦାର୍ଶନିକ ଶବ୍ଦକୁ ଏଠାରେ ବିଶ୍ଳେଷଣ କରାଯାଇପାରେ । ସେଥିରୁ ତାଙ୍କ ଦର୍ଶନର ମୂଳକଥାକୁ ଅନୁମାନ କରିହେବ ।

ଗୋଟେ ଏକଲା ମଣିଷ ଆପଣାକୁ ଗଢ଼େ । ଆପଣାର ଭାଗ୍ୟ ତିଆରି କରେ । ଯାବତୀୟ ପ୍ରତିକୂଳ ଅବସ୍ଥାକୁ ସେ ଡେଇଁଯାଏ । କେତେ ସଫଳ ଭାବରେ ଜଣେ ଜୀବନ ବଞ୍ଚିଛି ତାରି ଉପରେ ନିର୍ଭର କରେ ତା ଜୀବନର ସାର୍ଥକତା ।

ଜଣେ ବିଷାଦକୁ ବରଣ କଲେ ଅଧିକ ଶୁଦ୍ଧ ଓ ସୁଧାର ମଣିଷଟିଏ ହୋଇ ପାରିବ । ବିଷାଦ ତା ଆତ୍ମାକୁ ସୃଜନଶୀଳ କରିରଖିବ । ଜାଗତିକ ସ୍ଥୂଳତା ତାକୁ ଆଉ କବଳିତ କରି ପାରିବନି । କୌଣସି ସୂକ୍ଷ୍ମ ଏସ୍ଥେଟିକ ଚେ଼ତନା ପ୍ରତି ଦାୟ ନଥିବା ସମଷ୍ଟିଗତ ଜୀବନ ଠାରୁ ହୁଏତ ସେ ଦୂରକୁ ଘୁଞ୍ଚିଯିବ । ବିଷାଦ ଜଣକର ସୃଜନଶୀଳ ଆତ୍ମାର ଆଧାର ହେବ ।

ଏକଲା ମଣିଷର ଆଉ ଏକ ଐଶ୍ୱର୍ଯ୍ୟ ହେଉଛି ତା'ର ଦୁଃଖ ଭୋଗ । ଦୁଃଖ ତା ଆତ୍ମାର ନିତ୍ୟ ସହଚ଼ର ହେବ । ସେ କାଉନ୍ଦା ମଣିଷପରି ଉଦାସ ହୋଇ ବଞ୍ଚିବ । ପାର୍ଥିବ ଭୋଗ ତାକୁ ସ୍ପର୍ଶ କରିପାରିବନି । ଆତ୍ମା ବିଷାଦଗ୍ରସ୍ତ ହେଲେ ଆପଣାକୁ ଜାଣିବାର ବାଟ ଫିଟିଯିବ ।

ଆପଣାକୁ ଜାଣିବା (know thyself) ଠାରୁ ବଡ଼ଜ୍ଞାନ ଏ ସଂସାରରେ ଆଉକିଛି ନାହିଁ । ନିଜକୁ ଜାଣିବାର ପର୍ବ ଆରମ୍ଭ ହେଲେ ଜୀବନରେ ସବୁ ଅନୁଭବ ନିବିଡ଼ ଲାଗିବ । ନିବିଡ଼ ନଲାଗିଲେ ଜୀବନର କାବ୍ୟିକ ସ୍ପର୍ଶ ଊଣା ହୋଇଯିବ । ମଣିଷ ଜୀବନ ପଶୁର ଜୀବନ ପରି ହୋଇଯିବ । କାରଣ ପଶୁର ଏସ୍ଥେଟିକ ଜୀବନ ବୋଲି କିଛି ନାହିଁ ।

ପ୍ରକୃତି, କାଳ, ଈଶ୍ୱର ଆଦି ବିଷୟକ ଭାବନାରେ ତାର ଦିନ ଯାଏନି ।

ତା'ପରେ ଆଉ ଗୋଟେ ଶବ୍ଦ ସେ ଗୁରୁ ବ୍ୟବହାର କରିଛନ୍ତି; ଯାହା ପୂର୍ବରୁ ସୂଚ଼ିତ ହୋଇଛି । ତାହା ହେଉଛି ସାଧୁତା (honesty) । ବୌଦ୍ଧିକତା ହେଉଛି ସାଧୁତା । ଜଣେ ମଣିଷ ସହଜରେ ତାର ବୌଦ୍ଧିକ ଜୀବନପ୍ରତି ଅନୁଗତ ହୋଇ ରହି ପାରେନି । ବୌଦ୍ଧିକ ଭାବେ ଜୀବନ ବଞ୍ଚିବା କେବଳ ମୁନି ଋଷିଙ୍କ ପକ୍ଷେ ସମ୍ଭବ ।

ବୌଦ୍ଧିକ ଜୀବନରେ ଜଣେ ଅଧିକ ସୃଜନଶୀଳ ମନନେଇ ବଞ୍ଚେ । ଈଶ୍ୱର ଉପଲବ୍‌ଧି ପ୍ରତି ଉନ୍ମୁଖ ହୁଏ । ପ୍ରକୃତି ପ୍ରାଣ ହୁଏ । ବୌଦ୍ଧିକ ଜୀବନ ଜଣକୁ ଜୀବନ ଭୋଗର ଭଙ୍ଗିମା ଦାନ କରେ । ଜଣଙ୍କର ବୌଦ୍ଧିକ ଜୀବନ ତାପାଇଁ ପରିଚ଼ୟ ତିଆରି କରେ । ଯାହାର ବୌଦ୍ଧିକ ଜୀବନ ନାହିଁ ତା'ର କୌଣସି ପରିଚ଼ୟ ନାହିଁ ।

ଇତିହାସର ଖତଗଦାରେ ସେମାନେ ପଚିସଢ଼ି ଯିବା ପାଇଁ ଜନ୍ମ ହୋଇ ଥାନ୍ତି ଯେପରି । ସେମାନେ ସେମାନଙ୍କ ଜୀବନକୁ ଗୌରବାନ୍ୱିତ କରିପାରନ୍ତିନି । ଅମର ହେବା ସେମାନଙ୍କ ପକ୍ଷେ ଆଦୌ ସମ୍ଭବ ହୁଏନି । କାଳ ସେମାନଙ୍କୁ ନିଶ୍ଚିହ୍ନ କରିଦିଏ । ସେମାନଙ୍କର ସ୍ମୃତି ବଞ୍ଚାଇ ରଖିବା ପାଇଁ କେହ ବାହାରନ୍ତିନି ।

କିରକେଗାର୍ଡ଼ଙ୍କ ଅନ୍ୟଏକ ଶବ୍ଦ ହେଉଛି ଅଙ୍ଗଭଙ୍ଗୀ (gesture) ଯାହା ଅନ୍ତରୀଣ ସାତ୍ତ୍ୱିକ ଜୀବନକୁ ଚିହ୍ନଟ କରିଦିଏ । ଅନ୍ତରୀଣ ଭାବଚ଼େତନା ବାହ୍ୟ ଅଙ୍ଗଭଙ୍ଗୀକୁ ନିୟନ୍ତ୍ରଣ କରେ । ସନ୍ୟାସର ନିବିଡ଼ ଅନୁଭବ ଜଣକର ବାହ୍ୟ ଚାଲି ଚଳଣକୁ ବେଶ୍ ପ୍ରଭାବିତ କରେ ।

ଜଣେ ଆପଣା ଜୀବନ ଢାଞ୍ଚା ଜରିଆରେ ଜୀବନ ଭୋଗକରେ। ଜଣକର ଜୀବନ ଯାପନ ଶୈଳୀ ଅଭ୍ୟନ୍ତରର ସାତ୍ତ୍ୱିକ ଅନୁଭବ ଦ୍ୱାରା ବଦଳିଯାଏ । ଜଣେ ଜ୍ଞାନୀ ଲୋକର

ଅଙ୍ଗଭଙ୍ଗୀରୁ ତା ଜ୍ଞାନର ଗଭୀରତା ମାପିହୁଏ । ଅଙ୍ଗଭଙ୍ଗୀ (gesture) ଜୀବନର ଏକ ଅତି ଗୁରୁତ୍ୱ ପୂର୍ଣ୍ଣ ବିଷୟ; ଯାହା ଭିତରେ ଭିତରର ସାତ୍ତ୍ୱିକ ଜୀବନ ବସ୍ତୁତଃ ବିଜ୍ଞପିତ ହୋଇଥାଏ ।

କିରକେଗାର୍ଡ଼ଙ୍କ ସ୍ୱନିଷ୍ଠ ଅନୁଭବ (Subjective knowledge) ବିଷୟ ତାଙ୍କ ଦର୍ଶନର ସବୁଠାରୁ ଅତି ଗୁରୁତ୍ୱପୂର୍ଣ୍ଣ ପ୍ରଷ୍ଣ । ଏହି ସ୍ୱନିଷ୍ଠ ଅନୁଭବର ଉପାର୍ଜ୍ଜନ ପାଇଁ ସେ ଯେପରି ଜୀବନକୁ ବାଜି ଲଗାଇ ଥିଲେ । ଜଗତକୁ ଅନୁଭବ କରିବାପାଇଁ ବୁଦ୍ଧିର ଭୂମିକାକୁ ସେ ବଡ଼ ଅପସନ୍ଦ କରିଛନ୍ତି । ଆବେଗ ମଣିଷ ଜୀବନର ବଡ଼ ଏ୍ୟଶ୍ୱର୍ଯ୍ୟ ବୋଲି କିରକେଗାର୍ଡ଼ ବର୍ଣ୍ଣନା କରିଛନ୍ତି ।

ଆବେଗ ବଢ଼ିଲେ ପ୍ରାଣ ବଢ଼ିବ । ଜଗତକୁ ଅନୁଭବ କରିବାର ଶକ୍ତି ବଢ଼ିବ । ଜଣେ ତ୍ରୋବାଡୋର କବିଙ୍କ ପରି ସେ ଗୋଟେ ବାଳିକା ଜରିଆରେ ମାଧୁର୍ଯ୍ୟ ପୁରୁଷଙ୍କ ସାନିଧ୍ୟକୁ ତର୍କଣା କରିଛନ୍ତି । ଜୀବନ ପରିଧିରେ ନାରୀପ୍ରେମର ସୃଜନଶୀଳତାକୁ ସେ କମ୍ ଗୁରୁତ୍ୱ ଦେଇ ନାହାନ୍ତି ।

ତାଙ୍କର ଦୁନିଆକୁ ସବୁଠାରୁ ବଡ଼ଦାନ ହେଉଛି ଏକଲା ମଣିଷର ଦର୍ଶନ । ଜଣେ ଏକଲା ମଣିଷ ପ୍ରକୃତରେ ଶକ୍ତିଧର । ଚାହିଁଲେ ସେ ଇତିହାସକୁ ବଦଳାଇ ଦେଇ ପାରିବ । ଏକଲା ମଣିଷଁର ପ୍ରବଳ ଇଚ୍ଛାଶକ୍ତି ଥାଏ ।

ସବୁଠାରୁ ତାଙ୍କର ବଡ଼ଦାନ ହେଲା ବିଶ୍ୱକୁ ଏକ ବ୍ୟକ୍ତିନିଷ୍ଠ ରଚନାଶୈଳୀ । ତା'ର କଥାଧର୍ମ ଅଛି । ଅଥଚ ବହୁଭାବରେ କନଫେସନାଲ । ଅଥର ହିରୋର ଭାରି ପ୍ରଭାବ; ଅଥଚ ମିଥ୍‌ର ବ୍ୟବହାର ହୋଇଛି । କବିତାର ପ୍ରଭାବ ଓ ଆବେଦନ ସାରା ଲେଖାକୁ ଆବୋରି ବସିଛି । ଅଥଚ ଲେଖାସବୁ ତାଙ୍କର ବହୁ ଭାବରେ ବାସ୍ତବ ଓ ଜୀବନ ନିଷ୍ଠ ।

ଅଧିକାଂଶରେ ରଚନା ସବୁ ତାଙ୍କର ବ୍ୟକ୍ତିନିଷ୍ଠ ପ୍ରେମକାହାଣୀ ଓ ତା'ର ଆନୁଷଙ୍ଗିକ ଅନ୍ୟାନ୍ୟ ବିଷୟ । ଅଥଚ ତାଙ୍କ ରଚନାର ମୂଳ ପ୍ରତିପାଦ୍ୟ ହେଉଛି ପ୍ରେମ ନୁହେଁ ଜୀବନ ।

ସେ କାଉନ୍ଦା ପରି ଲାଗନ୍ତି । ଅଥଚ ଜୀବନ ବିଷୟରେ ସେ ଭାରି ସାହସୀ ଆଉ ଅଗ୍ରଗାମୀ ।

ଗତାନୁଗତିକ ଜୀବନ କାହାକୁ ବଢ଼ିବାକୁ ଦିଏ ନାହିଁ । ପ୍ରଚୁର ପ୍ରାଣ ଅଯଥାରେ ସେଥିରେ ନଷ୍ଟ ହୁଏ କେବଳ ।

ଜୀବନର ସୃଜନଶୀଳ ଏକାନ୍ତ ବୌଦ୍ଧିକ ଚୁଙ୍ଗିମାକୁ ଯେ କେବଳ ପ୍ରାର୍ଥନା କରିଛନ୍ତି । ତାହାନୁହେଁ ତାକୁ ମଣିଷ ଜୀବନର ଅସଲ ବୁନିଆଦି ବୋଲି ବର୍ଣ୍ଣନା କରିଛନ୍ତି ସେ ମଣିଷ ଜାତିର ଗୁରୁ ନହେବେ କିପରି ?

ମଣିଷ ତା ଜୀବନ ବଞ୍ଚିବାରେ ପଶୁଟିଏ କେବଳ ହୋଇ ନଯାଉ ବୋଲି ସେ ଅଭିଳାଷ ପୋଷଣ କରିଛନ୍ତି । ଇତର ସର୍ବସାଧାରଣର ବିଚାର ବୋଲି କିଛି ନଥାଏ । ସେମାନେ ଅନ୍ୟର ଭଲ ମନ୍ଦ ଓ ପାପପୁଣ୍ୟର ବିଚାରକୁ ଚିତ୍କାର କରି ଦୋହରାଇ ଥାନ୍ତି କେବଳ ।

ଗୋଟେ ଏକଲା ମଣିଷର ହିରଣ୍ୟମୟ ଶୁଦ୍ଧତାକୁ କିରକେଗାର୍ଡ଼ ସର୍ବାନ୍ତକରଣରେ ସାବ୍ୟସ୍ତ କରି ଯାଇଛନ୍ତି । ଏକଲା ମଣିଷକୁ ଅଭିଷିକ୍ତ କରି ଦେଇ ଯିବାରେ ତାଙ୍କର ଯୁକ୍ତି ସବୁକୁ ତାଙ୍କ ପ୍ରଚଣ୍ଡ ମାନବ ପ୍ରେମର ନିଦର୍ଶନ ବୋଲି କୁହାଯାଇପାରେ ।

ମଣିଷର ହୃଦୟ ସ୍ୱର୍ଗଠାରୁ ବି ଅସୀମ । ବ୍ୟାପ୍ତିରେ ନୁହେଁ ଶୁଚିତାରେ ବି ତା'ର ପଟ୍ଟାନ୍ତର ନାହିଁ । ଗୋଟେ ଏକଲା ମଣିଷର ଅମାପ କବିତ୍ୱ, ଇଚ୍ଛାଶକ୍ତି ବିଷାଦକୁ ବରଣ କରିବାର ଦମ୍ଭ, ପ୍ରେମ ଓ ଆବେଗର ବିମୁଗ୍ଧ ଅନୁଭୂତିର ଦୀପ୍ତିକୁ ସେ ଅତୁଳନୀୟ ବୋଲି ବର୍ଣ୍ଣନା କରି ଯାଇଛନ୍ତି ।

ତାଙ୍କ ଦର୍ଶନର ମୂଳ ହେଲା ମଣିଷ ହୃଦୟର ମଣିମାଣିକ୍ୟତୁଲ୍ୟ ତା'ର ଆବେଗ । ପ୍ରଚଣ୍ଡ ଆବେଗରେ ସବୁବେଳେ ସର୍ବତ୍ର ଜଣକିଆ ମଣିଷ ବଞ୍ଚେ ।

ସମଗ୍ର ବିଶ୍ୱରେ କ୍ରମଶଃ ପରିବ୍ୟାପ୍ତ ସ୍ଥିତିବାଦୀ ଚିନ୍ତନର ଅଗ୍ରନାୟକ ଥିଲେ ଡେ଼ନମାର୍କର ଦାର୍ଶନିକ ସୋରେନ୍ କିରକେଗାର୍ଡ଼ । ଲେଖାର ଆଙ୍ଗିକକୁ ବଦଳାଇ ଦେବାରେ ତାଙ୍କର ପାରଦର୍ଶିତା ଅତୁଳନୀୟ । ଲେଖାରେ ପୁଣି ମାତ୍ରାଧିକ ଲେଖକୀୟ ସତ୍ତାକୁ ଜାହିର କରିବାରେ ତାଙ୍କର କୃତିତ୍ୱ ଅସାମାନ୍ୟ ।

କିରକେଗାର୍ଡ଼ ଅସ୍ତିତ୍ୱବାଦୀ ଚିନ୍ତନକୁ ନେଇ କେବଳ ତାଙ୍କର 'ପୋଷ୍ଟସ୍କ୍ରିପ୍ଟ' 'ଆଇଦର/ଅର', 'ମାଇଁ ଜର୍ନାଲ୍', 'ଦି ଡାଇରୀ ଅଫ ଦି ସୀଡ୍ୟୁସର', କିମ୍ବା 'କନ୍‌କ୍ଲୁଡ଼ିଙ୍ଗ ଅନ୍‌ସାଇଣ୍ଟିଫିକ୍ ପୋଷ୍ଟସ୍କ୍ରପ୍ଟ' ଆଦି ତତ୍ତ୍ୱ ପ୍ରବୋଧକ ଗ୍ରନ୍ଥ ରଚନା କରିନଥିଲେ, ତା ସହିତ ଲେଖାସହିତ ଲେଖକର ସମ୍ବନ୍ଧ ଯୋଡ଼ି ଗୋଟିଏ ନୂଆ ପ୍ରକାରର ଆତ୍ମନିଷ୍ଠ ରଚନା ଶୈଳୀ ସୃଷ୍ଟି କରିଥିଲେ । ତାଙ୍କର କୌଣସି ଗ୍ରନ୍ଥ ଗଳ୍ପ, ଉପନ୍ୟାସ ଅବା ନାଟକ ପରି ସର୍ଜନାତ୍ମକ ନଥିଲା ସତ, ହେଲେ ତାଙ୍କର ରଚନା ସବୁ ଗୋଟେ ଅନନ୍ୟ କଥକତା ଭିତରେ ଜୀବନମୟ ଓ ସେହି କାରଣରୁ ଉଚ୍ଚମାନର କବିତା ପରି ସରସ ଓ ସୁଖପାଠ୍ୟ ଥିଲା ।

ତାଙ୍କ ରଚ଼ନାସବୁ ଏଡ଼େ ସମ୍ବେଗାତ୍ମକ ଓ ସୁଖପାଠ୍ୟ ହେବାର କାରଣ ହେଲା ସେଥିରେ ମଣିଷ ମନର ନାନା ରହସ୍ୟ ବିଜଡ଼ିତ୍ୱ ସଂଶୟ ଓ ମୌଳ ସମ୍ବେଗର ଅବତାରଣା କରାଯାଇଛି । ହଜାର ହଜାର ବର୍ଷ ଧରି ମାନବ ସମାଜ ଆଗରେ ଯେଉଁ ମୂଳ ପ୍ରଶ୍ନ ସବୁ ଅନୁତ୍ତରିତ ହୋଇ ରହିଛି ଯେକୌଣସି ଏକ ଅସ୍ତିତ୍ୱବାଦୀଙ୍କ ପରି କିରକେଗାର୍ଡ଼ ସେସବୁ ବିଷୟରେ ପୁଣି ମନୁଷ୍ୟର ଧ୍ୟାନ ଆକର୍ଷଣ କରିଛନ୍ତି ।

କିରକେଗାର୍ଡ଼ ଜୀବନ ବଞ୍ଚିବାର ମୂଳଭୂମିଠାରୁ ନିଜର ଚିନ୍ତନକୁ ଆଦୌ ଘୁଞ୍ଚାଇ ନେଇ ନାହାନ୍ତି; ଅଥଚ ମଣିଷ ଜୀବନର ଅନନ୍ୟ ସୃଜନଶୀଳତା ଓ ଅକଳନ୍ତି ସମ୍ଭାବନା ବିଷୟରେ ତାଙ୍କର ଆଶା ଓ ଉତ୍ସୁକତା ଅମାପ । ସୃଜନଶୀଳତା ସହିତ ଜୀବନର ବୌଦ୍ଧିକ ସାଧୁତାକୁ ମିଶାଇ ସେ ମଣିଷର ବୌଦ୍ଧିକ ପରିଚ଼ୟ ପ୍ରସଙ୍ଗ ଉଠାଇଛନ୍ତି ।

ମଣିଷ ଜୀବନର ଏହି ସାଧୁତାକୁ କିରକେଗାର୍ଡ଼ ସବୁଠାରୁ ବଡ଼ସୌନ୍ଦର୍ଯ୍ୟ ବୋଲି ମନେ କରିଛନ୍ତି । ସାଧୁତା ଶବ୍ଦଟିକୁ ସେ ଯେପରି ବ୍ୟବହାର କରିଛନ୍ତି ସମଗ୍ର ଦର୍ଶନ

ଜଗତରେ ପ୍ରକୃତରେ ତାର ତୁଳନାନାହିଁ । ମଣିଷର ଅନୁପମ ବୌଦ୍ଧିକ ଜୀବନ ପ୍ରତି ସତ୍ୟଶୀଳ ହୋଇ ରହିବାହିଁ ତାର ସାଧୁତା । ବୌଦ୍ଧିକ ଜୀବନ ପ୍ରତି ବଶମ୍ବଦ ହୋଇ ରହିବା ଜନିତ ସାଧୁତା ମଣିଷ ଭିନ୍ନ ଏ ସଂସାରରେ ଅନ୍ୟ କୌଣସି ଇତର ପ୍ରାଣୀଙ୍କର ନାହିଁ ।

ମଣିଷ ଜୀବନ ବଞ୍ଚିବା ସହିତ ଆଉ ଯେଉଁ ଦୁଇଟି କଥା ଯୋଡ଼ା ଯାଇଛି ବୋଲି କିରକେଗାର୍ଡ଼ କହିଛନ୍ତି ସେ ଦୁଇଟି ହେଲା କବିତ୍ୱ ଆଉ ଏସ୍ଥେଟିକସ୍; ବାସ୍ତବତା ସହିତ ଏ ଦୁଇଟିର ଆପେକ୍ଷିକ ସମ୍ବନ୍ଧକୁ ନେଇ ଛକାପଞ୍ଝା ଖେଳ ଏ ଯାବତ୍ ଶେଷ ହୋଇନି, ଯେଉଁଥି ପାଇଁ ଗୋଟେ ସ୍ୱାଭାବିକ ସଂଶୟ ସୃଷ୍ଟି ହୋଇଛି ।

ମନୁଷ୍ୟ ଚେ଼ତନାର ଅଧିକାରୀ ଅଧିକାରିଣୀ ହୋଇଥିବା କାରଣରୁ ଅସ୍ତତ୍ୱବାଦୀ ମାନେ କେବଳ ମନୁଷ୍ୟର ଅସ୍ତିତ୍ୱକୁ ସ୍ୱୀକାର କରିଛନ୍ତି । କିରକେଗାର୍ଡ଼ ବୌଦ୍ଧିକତାକୁ ମନୁଷ୍ୟର ବଡ଼ ପୌରୁଷ ବୋଲି ଜ୍ଞାନ କରିଛନ୍ତି । ବୌଦ୍ଧିକତା ମଣିଷକୁ ନିବିଡ଼ତା ଆଣିଦିଏ । ମଣିଷର ସକଳ ଜ୍ଞାନ ଓ ଅନୁଭବକୁ ତେଜମୟ କରେ । ବୌଦ୍ଧିକତା ଠାରୁ ମଣିଷଜୀବନର ଆଉ କିଛି ବଡ଼ ମହନୀୟତା ନାହିଁ ।

ବୌଦ୍ଧିକତା ଆଡ଼କୁ କ୍ରମଶଃ ମୁହାଁଉ ନଥିବା ମଣିଷଟି ଇତିହାସର ଖତଗଦାରେ ପଚିସଢ଼ି ଯିବା ପାଇଁ ଯେପରି ଜନ୍ମ ହୋଇଥାଏ । ଭାବ ବା ଜ୍ଞାନଜଗତ ନିର୍ମାଣରେ ସେପରି ମଣିଷ ଆଦୌ ସହଯୋଗ କରିପାରେ ନାହିଁ । ମନ ଓ ହୃଦୟର ଶାଶ୍ୱତ ସଙ୍କଳ୍ପ କ'ଣ ସେ ଜାଣିପାରେ ନାହିଁ ।

ବୌଦ୍ଧିକତା ଅଭାବରୁ ନିଜପାଇଁ ସେ ଉନ୍ନତ ସଂସ୍କାର ସବୁ ତିଆରି କରିପାରେ ନାହିଁ । କିରକେଗାର୍ଡ଼ ମନୁଷ୍ୟର ସ୍ଥୂଳଜୀବନ ବଞ୍ଚିବା ସପକ୍ଷରେ ନଥିଲେ । ସ୍ଥୂଳ ଜୀବନର ସେପରି କୌଣସି ଭାବଭଙ୍ଗୀ (gesture) ନଥାଏ । ଜୀବନ ଯାପନର ବଳୟ ଭିତରେ ଜୀବନଛନ୍ଦ ଏକ ବଡ଼ କଥା । ତାହାହିଁ ଜୀବନର ସର୍ବୋତ୍ତମ ଜୀବନ ମୟତାକୁ ଉଦ୍ଭାସିତ କରେ । 'The gesture alone expresses life.' (Kierkegaard)

ଜୀବନ ସପକ୍ଷରେ ପ୍ରଶ୍ନପ୍ରଶ୍ନ ସଂଶୟ ରହିଛି । ଅବିଦ୍ୟା ଅନ୍ଧକାର ରହିଛି । ଅନ୍ୟ ମଣିଷଙ୍କ ସହିତ ଅଜସ୍ର ସଂଘାତ ଓ ସଂପର୍କହୀନତା ମଧ୍ୟ ରହିଛି । ଅଥଚ ଗୋଟେ ସୁନ୍ଦର ଜୀବନ ବଞ୍ଚିବା ପାଇଁ କିଛି ଅନ୍ତରଙ୍ଗ ସ୍ୱପ୍ନ ଓ ବିଶ୍ୱାସ ଲୋଡ଼ା । ତାହା ଜୀବନ ବଞ୍ଚିବାର ପ୍ରତ୍ୟୟ ଓ ଦୃଢ଼ତା ତିଆରି କରେ ।

ଜୀବନକୁ ନେଇ ଗୋଟେ ଉତ୍ତମ ଖେଳ ଖେଳିବା, ଖେଳରେ ଜିତିବା, ଗୋଟେ ଚୈତ୍ର ଉଦ୍ୟାନ ତୁଲ୍ୟ ଓ ସୁନ୍ଦର ଛବିଳ ଭୁବନରେ ଜୀବନକୁ ଫିଙ୍ଗି ଦେବା, ଜୀବନ ସ୍ଥିତିର ମୂଳ ପ୍ରବଣତା । ପ୍ରସାରଣ ଶୀଳତା ଓ ବିସ୍ତୃତିରେ ଜୀବନଙ୍କ ସ୍ୱାଦ ଓ ସୌନ୍ଦର୍ଯ୍ୟ ରହିଛି ।

ଜୀବନ ଗୋଟେ ସୂତ୍ର ବା ଶୃଙ୍ଖଳାର ବିଷୟ ନୁହେଁ । ଜୀବନ ଗୋଟେ ଧରାବନ୍ଧା ଗତି ନୁହେଁ । କିରକେଗାର୍ଡ଼ ହିଗେଲଙ୍କ ସିଷ୍ଟମ ବା ଗୋଟେ ଢାଞ୍ଚାଗତ ଜୀବନ ସ୍ଥିତି ଧାରଣାକୁ ସବୁବେଳେ ବିରୋଧ କରିଛନ୍ତି । ଦର୍ଶନ ଯଦି ଜୀବନର ମାତ୍ର ସୂତ୍ରୀୟ ବ୍ୟାଖ୍ୟା ତାହେଲେ ସେମିତି ଦର୍ଶନର ଦାର୍ଶନିକ ହେବାକୁ କିରକେଗାର୍ଡ଼ ମନା କରି ଦେଇଛନ୍ତି ।

ମଣିଷ ଜୀବନ ଗୋଟେ ନିର୍ଧାର୍ଯ୍ୟ ସିଷ୍ଟମର ଅଂଶ 'mere paragraph in a system' ନୁହେଁ ବୋଲି କିରକେଗାର୍ଡ଼ କହିଛନ୍ତି । ସେ ଏହା ଦ୍ୱାରା ସତ୍ୟ ବସ୍ତୁନିଷ୍ଠ ନୁହେଁ ବୋଲି ଯୁକ୍ତି କରିଛନ୍ତି । କିରକେଗାର୍ଡ ତାଙ୍କ ଜୀବନ ଦୃଷ୍ଟିରେ ବ୍ୟକ୍ତି ଓ ବ୍ୟକ୍ତିନିଷ୍ଠତାକୁ ଅଧିକ ଗୁରୁତ୍ୱ ଦେଇଛନ୍ତି ।

ମଣିଷ ଜୀବନ ବିଚାରାୟିତ ନୁହେଁ ଓ ବ୍ୟାକରଣର ନିୟମ ପରି ଜୀବନ ବନ୍ଧାଗତ ନୁହେଁ । ମଣିଷ ଜୀବନ ବିଷୟକ ଧାରଣା ତେଣୁ କିରକେଗାର୍ଡଙ୍କର ଅଲଗା ପ୍ରକାରର ଥିଲା । ଜଣେ ଆଉ ଜଣକଠାରୁ ଅଲଗା । ଜୀବନକୁ ବୁଝିପାରିବାରେ ଏହି ଉପଲବ୍ଧିଟି ଦର୍ଶନ ଜଗତରେ ଖୁବ ବଡ଼ କଥା ବୋଲି କିରକେଗାର୍ଡ କହୁଥିଲେ ।

ସେ ମଣିଷ ଜୀବନ ବିଷୟକ ଚିନ୍ତନ ସବୁକୁ ସୂତ୍ରବଦ୍ଧ କରିବା ସପକ୍ଷରେ ନଥିଲେ । ହିଗେଲ୍‌ଙ୍କ ସହିତ ତାଙ୍କର ମୌଳିକ ମତପାର୍ଥକ୍ୟ ଏଇଠି ।

କିରକେଗାର୍ଡ଼ ଯୁକ୍ତି କରି କହୁଥିଲେ ଯେ, 'An existential system can not be formulated.' (Concluding Unscientific Postscript-1846).

ସତ୍ୟ ଚ଼ରମ ଓ ନିର୍ଣ୍ଣୟାତ୍ମକ ନୁହେଁ ବୋଲି କିରକେଗାର୍ଡ଼ କହିଛନ୍ତି । ସତ୍ୟ ପ୍ରତିଟି ମଣିଷର ଜୀବନ ପରିଧିରେ ଭିନ୍ନ ଭିନ୍ନ ଭାବେ ରହିଛି । ସତ୍ୟ ସୈଦ୍ଧାନ୍ତିକ ଓ ବସ୍ତୁନିଷ୍ଠ ନୁହେଁ ବୋଲି ସେ କହିଛନ୍ତି । ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଓ ତା'ର ସ୍ୱାଧୀନ ଉପଲବ୍ଧି ଥିଲା କିରକେଗାର୍ଡ଼ୀୟ ଚିନ୍ତନର ମୂଳାଧାର ।

ଜୀବନ ବଞ୍ଚିବାର ନିଦା ଓ ନିବିଡ଼ ଅଭିଜ୍ଞତା ବାହାରେ ଜୀବନର ସଂଜ୍ଞା ଓ ସ୍ୱରୂପକୁ କେହି ବୁଝେଇ ପାରିବନି । କିରକେଗାର୍ଡ଼ ତାଙ୍କ 'ପୋଷ୍ଟ ସ୍କ୍ରିପ୍ଟ'ରେ କହିଛନ୍ତି, (Life can only be explained after it has been lived.)

ଗଣିତରେ ବସ୍ତୁନିଷ୍ଠ ଜ୍ଞାନ ଭର୍ତ୍ତି ହୋଇ ରହିଛି । ଜୀବନ ପରିଧିରେ କିନ୍ତୁ ସେପରି ବସ୍ତୁନିଷ୍ଠ ସତ୍ୟ ବୋଲି କିଛି ନାହିଁ । ବସ୍ତୁନିଷ୍ଠ ଜ୍ଞାନ ପୃଥିବୀର ଦିନେ କି ବିପଦ ସୃଷ୍ଟି କରିବ ସେ ବିଷୟରେ କିରକେଗାର୍ଡ଼ ସତର୍କ କରି ଦେଇଛନ୍ତି ।

ଗୋଟେ ଏକଲା ମଣିଷର ଅସ୍ତିତ୍ୱକୁ ସେ ନାନା ଦୃଷ୍ଟିରୁ ଦେଖିବାକୁ ଚେ଼ଷ୍ଟା କରିଛନ୍ତି । ତାର ମନ ଓ ଚେ଼ତନାକୁ ସତ୍ୟ ଓ ବାସ୍ତବତା ବୋଲି ମନେ କରିଛନ୍ତି । ମଣିଷର ଜାତିଗତ ଗୁଣକୁ ସେ ସ୍ୱୀକାର କରିଛନ୍ତି ସତ; ମାତ୍ର ତାହା ଏକଲା ମଣିଷର ଅସ୍ତିତ୍ୱ ପରି ଶୁଦ୍ଧ ନୁହେଁ ।

କିରକେଗାର୍ଡ଼ଙ୍କ ରଚ଼ନାଦର୍ଶକୁ ଲକ୍ଷ୍ୟ କଲେ ଏହି ବ୍ୟକ୍ତିସ୍ୱାତନ୍ତ୍ର୍ୟର ମହତ୍ତ୍ୱକୁ ଉପଲବ୍ଧି କରିହେବ । ତାଙ୍କ ରଚନା ଗୋଟେ ନିବିଡ଼ ଅନ୍ତର୍ମୁଖୀତାର ସ୍ମାରକୀ । ଚ଼ିରନ୍ତନତା ପ୍ରତି ପ୍ରଗାଢ଼ ଉନ୍ମୁଖତା ସେଥିରେ ପ୍ରତୀକିତ । ଆତ୍ମଦର୍ଶନ ହେଉଛି କିରକେଗାର୍ଡଙ୍କ ରଚ଼ନାର ସବୁଠାରୁ ବଡ଼ ଗୁଣ ।

କିରକେଗାର୍ଡଙ୍କ ପରି ସଚ୍ଚା ଅସ୍ତିତ୍ୱବାଦୀମାନେ ନିଜକୁ ଜାଣିବା ସର୍ବୋତ୍ତମ ଦାର୍ଶନିକ ଜ୍ଞାନ ବୋଲି ବିବେଚନା କରିଛନ୍ତି । ସେହି ଅନୁରୋଧରେ କିରକେଗାର୍ଡ଼ଙ୍କ ରଚନାରେ ପ୍ରଥମ ପୁରୁଷ ପ୍ରଧାନତା ପରିଦୃଷ୍ଟ । ତାଙ୍କ ରଚନାର ଅଗ୍ରନାୟକ ସେ ନିଜେ ।

କିରକେଗାର୍ଡ଼ ତାଙ୍କ ପ୍ରତିଟି ରଚନାରେ ଭାରି ବାରି ହୋଇ ପଡ଼ନ୍ତି । ସେ ସର୍ବତ୍ର ଅଥର ହିରୋ (Author hero) ହୋଇ ରହିଛନ୍ତି । କଥକତା ଧର୍ମୀ ରଚନା (narratives) ସହିତ ତାଙ୍କର ଅଧିକାଂଶ ଦାର୍ଶନିକ ପ୍ରବନ୍ଧ ମାନଙ୍କରେ ସେ ପ୍ରଥମ ପୁରୁଷ ଆଙ୍ଗିକ ବ୍ୟବହାର କରିଛନ୍ତି ।

ତାଙ୍କ ରଚନାରେ ଲେଖକ କେବେ ନ୍ୟୁନ ହେ'ଇ ଯାଇନି । ସାହିତ୍ୟର କିଛିଟା ଗୁଣ ଓ ଲକ୍ଷଣ ଯିବାପରେ ତାଙ୍କର 'Either/ or' ରେ ମୂଳରୁ ଶେଷଯାଏ ସେ ପ୍ରଥମ ପୁରୁଷ ଆଙ୍ଗିକରେ ଲେଖିଛନ୍ତି ।

ଗ୍ରନ୍ଥ ରଚନାରେ ଗ୍ରନ୍ଥକାରଙ୍କୁ ଗୁରୁତ୍ୱ ଦେବା ଉଚିତ ବୋଲି କିରକେଗାର୍ଡ଼ଙ୍କ ରଚନା ପଢ଼ିଲେ ମନେ ହେବ । ଲେଖକ ଛାୟାପୁରୁଷ ପରି ତାଙ୍କ ପ୍ରତ୍ୟେକ ଲେଖାରେ ଥାନ୍ତି; କେଉଁଠି ଲୁକ୍କାୟିତ ହୋଇ ରହିଥାନ୍ତି ତ କେଉଁଠି ଛାୟାପୁରୁଷ ଭାବେ ଥାନ୍ତି ।

କିରକେଗାର୍ଡ଼ଙ୍କ ବ୍ୟକ୍ତିକେନ୍ଦ୍ରିତ ଦର୍ଶନ ପ୍ରକୃତରେ ତାଙ୍କ ସାହିତ୍ୟ ଆଙ୍ଗିକ ସୃଷ୍ଟି କରିଛି । ତାଙ୍କ ଜୀବନ ଦୃଷ୍ଟି ଓ ସୌନ୍ଦର୍ଯ୍ୟ ଦର୍ଶନ ସହିତ ତାଙ୍କ ରଚନା ଶୈଳୀର ପ୍ରଥମ ପୁରୁଷ ଆଙ୍ଗିକ ଅତି ନିବିଡ଼ ଭାବେ ଗ୍ରଥିତ ହୋଇ ରହିଛି । ଅଥର ହିରୋ ପ୍ରଧାନ ସ୍ଥିତିବାଦୀ ବର୍ଣ୍ଣନା ସବୁ ସ୍ୱନିଷ୍ଠ ଅନୁଭବ (Subjective Experience)କୁ ଅଧିକ ଭାବ ସଞ୍ଚରଣଶୀଳ ଓ ଅର୍ଥପୂର୍ଣ୍ଣ କରି ପ୍ରକାଶ କରିଛି ।

କିରକେଗାର୍ଡ଼ଙ୍କ ଆତ୍ମ ସମ୍ବୋଧନମୂଳକ ରଚନା ଶୈଳୀକୁ 'The immediate stages of the Erotic or the Musical Erotic' ଶୀର୍ଷକ ପ୍ରବନ୍ଧରୁ ଚିହ୍ନଟ କରିହେବ । କିରକେଗାର୍ଡ଼ଙ୍କ 'The Dairy of the Seducer' ତାଙ୍କ ବ୍ୟକ୍ତିଗତ ଜୀବନର ଅଭିଲିପି । ବ୍ୟକ୍ତିଗତ ଚିଠିପତ୍ର ଏଥିରେ ସଂଯୋଜିତ ହୋଇଛି ।

କିରକେଗାର୍ଡ଼ ତାଙ୍କ ପ୍ରସିଦ୍ଧ ପୁସ୍ତକ 'The concert of Irony'ରେ ତାଙ୍କ ଜୀବନର ନାଟକୀୟତାକୁ ପ୍ରକାଶ କରିଛନ୍ତି । ଏହି ଜୀବନନିଷ୍ଠ ନାଟକୀୟତା ତାଙ୍କ ରଚନାକୁ ଅଦ୍ଭୁତ ଭାବରେ କାବ୍ୟିକ କରିଛି । ଜଣେ ଟ୍ରୋବାଡ଼ୋର କବିଙ୍କ ବେଦନାମିଶ୍ରିତ ପ୍ରେମର ସଙ୍ଗୀତ ଠାରୁ କିରକେଗାର୍ଡ଼ଙ୍କ ରଚନା ଅଧିକ କାବ୍ୟାତ୍ମକ ଓ ଗୀତିମଧୁର ହୋଇଛି । ତାଙ୍କ ଗଦ୍ୟ ରଚନାର ବହୁଅଂଶ ସ୍ୱତଃ ଜୀବନ- ମୟତା ଭିତରେ ଏତେ କାବ୍ୟିକ ହୋଇଯାଇଛି । ଏହି ପରିପ୍ରେକ୍ଷୀରେ କିରକେଗାର୍ଡ଼ ଗେଟେଙ୍କୁ ବହୁଭାବରେ ସ୍ୱୀକାର କରିଛନ୍ତି ।

କିରକେଗାର୍ଡ଼ ନିଜକୁ 'Master of Irony' ବୋଲି ଭାବୁଥିଲେ । ସେ 'The Concert of Irony' ବିଷୟରେ ଚର୍ଚ୍ଚା ନିବନ୍ଧ ପ୍ରସ୍ତୁତ କରି ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀଲାଭ କରିଥିଲେ; ଯାହା ସବୁଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଥିଲା । ଆଇରୋନି ତାଙ୍କ ଆଗରେ

ଗୋଟେ ଆଳଙ୍କାରିକ ବିଭାବ ନଥିଲା; ତାହା ଥିଲା ବରଂ ତାଙ୍କ ଜୀବନଦୃଷ୍ଟି ଓ ସ୍ଥିତିବାଦୀ ଚେ଼ତନାର ଏକ ଅଂଶ । ହୁଏତ ଯାହା ତାଙ୍କ ବ୍ୟକ୍ତିନିଷ୍ଠତାର ପ୍ରସଙ୍ଗକୁ ବୁଝିବା ପାଇଁ ସହାୟକ ଭାଗ୍ୟକୁ ସେ 'ଡେଟରମାଇନେସନ ଅଫ ସବଜେକ୍ଟିଭ୍' ବୋଲି ବୁଝୁଥିଲେ । କିରକେଗାର୍ଡ଼ଙ୍କ ପାଇଁ ଏହି ଭାଗ୍ୟଥିଲା 'ବ୍ୟକ୍ତିନିଷ୍ଠତାର ବ୍ୟକ୍ତିନିଷ୍ଠତା' ।

ମଣିଷ ଭାଗ୍ୟକୁ ଆଗକୁ ଆଣିବା ତାଙ୍କ ଦର୍ଶନର ମୂଳ ଥିଲା । ଡାସାଇନ୍ (Dasein) ଇତିହାସରେ କିଛି ଯୋଗ କରିପାରେ ନାହିଁ । ଗୋଟେ କ୍ଳାନ୍ତିକର ନିଧାର୍ଯ୍ୟ ଭାଗ୍ୟ ଭୋଗର ବଳୟ ଭିତରୁ ସେ ନିଜକୁ ଉପରକୁ ଉଠାଇ ଆଣିପାରେ ନାହିଁ ।

ଫରାସୀ ଲେଖିକା ସାଇମନ ଦି ବାଭୋର କିରକେଗାର୍ଡ଼ୀୟ ଚି଼ନ୍ତନକୁ ସମର୍ଥନ କରିଛନ୍ତି । ଏକ ପାରମ୍ପରିକ ଦର୍ଶନ ପରିପ୍ରେକ୍ଷୀରେ ବ୍ୟକ୍ତିନିଷ୍ଠ କିରକେଗାର୍ଡ଼ୀୟ ଦର୍ଶନକୁ ଉପଲବ୍ଧି କରାଯାଇପାରେ ନାହିଁ ବୋଲି ବାଭୋର ଯୁକ୍ତି କରିଛନ୍ତି । କିରକେଗାର୍ଡ଼ଙ୍କ 'ଦି ଡାଇରୀ ଅଫ ଦି ସୀଡ୍ୟୁସର' ଏବଂ ଏବ୍ରାମର ଜୀବନ କଥା ବର୍ଣ୍ଣିତ 'Fear and Trembling' ରଚ଼ନାରେ ଉପନ୍ୟାସ ଆଙ୍ଗିକରେ ସ୍ଥିତିବାଦୀ ଚେ଼ତନାର ଅଭିବ୍ୟକ୍ତି ଘଟିଛି ।

ସ୍ଥିତିବାଦୀ ଅନୁଭବ ଏତେ ଅନ୍ତରୀଣ ଓ ଜୀବନକେନ୍ଦ୍ରିକ ଯେ ତା'ର ଅଭିବ୍ୟକ୍ତି କେବଳ କଥା ଧର୍ମୀ ସାହିତ୍ୟରେ ସମ୍ଭବ । କଥାଧର୍ମୀ ରଚ଼ନାକୁ କିରକେଗାର୍ଡ଼ ଗୋଟେ ନୂଆରୂପ ଓ ନୂତନ ଶକ୍ତିମାନତା ପ୍ରକୃତରେ ଦାନ କରିଛନ୍ତି ।

କିରକେଗାର୍ଡ଼ ଥିଲେ ତାଙ୍କ ରଚ଼ନାରେ ନାୟକ କିମ୍ବା ପାର୍ଶ୍ୱନାୟକ । ତାଙ୍କ ଲେଖା ଭିତରେ ସେ ସବୁବେଳେ ଛାୟାପୁରୁଷ ହୋଇ ରହିଛନ୍ତି । 'Repetition' ତାଙ୍କର ଗୋଟେ ଛୋଟ ଲେଖା; ଯାହାର ଗୋଟେ ସୂକ୍ଷ୍ମ 'Narrative Technique' ଅଛି; ଅଥଚ଼ ସେ ବହି ଖଣ୍ଡିକରେ ସେ ଯାହା ସବୁ ଲେଖିଛନ୍ତି ସେଥିରେ ଗୋଟାପଣେ ତାଙ୍କ ଜୀବନ କଥା ହିଁ ରହିଛି । ଏହା ପ୍ରକୃତରେ ଗୋଟେ ଏସ୍‌ଥେଟିକ୍ ପର୍ଯ୍ୟାୟର ବହି । ଅନୁଭବରେ କିରକେଗାର୍ଡ଼ ଗୋଟେ ଅନନ୍ୟ କାବ୍ୟିକ ସ୍ତରକୁ ନିଜକୁ ଉଠାଇ ନେଇଛନ୍ତି । ଅଳ୍ପ ଗଳ୍ପକାରିତା ଭିତରେ କିରକେଗାର୍ଡ଼ଙ୍କ ରଚ଼ନାରେ ଗୋଟେ ଗଭୀର ମାନସିକ ଦୋଳନ ସହିତ ପ୍ରଚ଼ଣ୍ଡ ଭାବନିଷ୍ଠତାକୁ ଲକ୍ଷ୍ୟ କରାଯାଇପାରେ ।

ଗେଟେଙ୍କୁ କିରକେଗାର୍ଡ଼ ବାରମ୍ବାର ସ୍ମରଣ କରିଛନ୍ତି ଏବଂ କହିଛନ୍ତି ଯେ ତାଙ୍କ କୃତିତ୍ୱ ହେଉଛି 'result of mastered irony' କିନ୍ତୁ ସେ ନିଜେ 'Master of Irony' । କିରକେଗାର୍ଡ଼ଙ୍କ ସୌନ୍ଦର୍ଯ୍ୟାନୁଭୂତି କାରୁଣ୍ୟ ଓ ମଣିଷର ଅନ୍ତସ୍ଥଳରେ ଥିବା ବେଦନାବୋଧ ଦ୍ୱାରା ସିଦ୍ଧ ହୋଇଥିଲା  ତାଙ୍କ ରଚନାର ଶକ୍ତି ଥିଲା ପ୍ରଚ଼ଣ୍ଡ ସାଙ୍ଗୀତିକତା (Musical quality)ର ଏବ୍ରାମ କଥାଟି କିରକେଗାର୍ଡ଼ୀୟ କାବ୍ୟାନୁଭୂତିର ଏକ ଉଜ୍ଜ୍ୱଳ ସ୍ମାରକୀ ।

କିରକେଗାର୍ଡ଼ ଭାବପ୍ରବଣ ହୋଇ ପଚ଼ାରିଛନ୍ତି— 'is there a poet in our age who has a presentineous of such collisions. And yet Abram's conduct was genuinely poetic, magnanimous, more magnanimous than anything I have read of in tragedies.' ।

ଏବ୍ରାମ ପରି ଅନେକ ଆଖ୍ୟାନ ଓ ଏପିସୋଡ ଭିତରେ କିରକେଗାର୍ଡ଼ ନିଜେ ଛାୟାପୁରୁଷ ପରି ଥାନ୍ତି । ଜଣେ ଲେଖକର ଲେଖକୀୟ ସତ୍ତା ତା ଲେଖା ଭିତରେ କେତେ ଅଧିକ ମାତ୍ରାରେ ଥାଇପାରେ ତା'ର ନିଦର୍ଶନ ହେଉଛି କିରକେଗାର୍ଡ଼ଙ୍କ ପରି ଅସ୍ତିତ୍ୱବାଦୀ ଲେଖକମାନଙ୍କର ଲେଖା । ବିଶ୍ୱ ସାହିତ୍ୟରେ ଅସ୍ତିତ୍ୱବାଦୀ ଲେଖକମାନେ ଖାସ ନିଜକୁ ସେମାନଙ୍କର ଲେଖା ଭିତରେ ମିଶାଇବାର ଗୋଟେ ନୂଆ ଶୈଳୀ ଓ ଶିଳ୍ପାୟନର ସୃଷ୍ଟି କରିଛନ୍ତି ।

ସେମାନଙ୍କ ଦୃଷ୍ଟିରେ ଅସଲ କବିତ୍ୱ ହେଉଛି ଶୁଦ୍ଧ ଅନୁଭବର ପ୍ରକଟନ; ତାହା ଚିତ୍ର କେନ୍ଦ୍ରିକ ହେଉ କି ଚରିତ୍ର କେନ୍ଦ୍ରିକ ହେଉ । ଏବ୍ରାମ ଜଗତରେ ସବୁଠାରୁ ତାର ଅଧିକ ପ୍ରେମାସ୍ପଦ ପୁତ୍ରକୁ ହରାଇ ଗୋଟେ ଟ୍ରାଜିକ ହିରୋ ପାଲଟିଯାଇଛି । କିରକେଗାର୍ଡ଼ ଏବ୍ରାମର ପୁତ୍ରଶୋକ ଜରିଆରେ ପାଠକକୁ ଏକଶୁଦ୍ଧ କାବ୍ୟିକ ଅନୁଭବ ଭିତରକୁ ନେଇ ଯାଇଛନ୍ତି । ଏହାଦ୍ୱାରା ଗୋଟିଏ ଧାର୍ମିକ ଘଟଣାକୁ କିରକେଗାର୍ଡ଼ ଚିତ୍ରଣ ଦ୍ୱାରା ଶୁଦ୍ଧ କବିତା (high poetry) ସଂବେଗାତ୍ମକ ନାଟକ (ପେସିଓନେଟ ଡ୍ରାମା) କରି ପକାଇଛନ୍ତି ।

କିରକେଗାର୍ଡ଼ ପ୍ରତିଟି ବିଷୟକୁ ଏକ ଅନ୍ତରୀଣ ଆତ୍ମନିଷ୍ଠତାର ସ୍ପର୍ଶ ଆଣି ଦେଇଥିଲେ । ଏପରି ପ୍ରଭାବ ସର୍ବାଦୌ ତାଙ୍କର ଏକ ରୋମାଣ୍ଟିକ ପ୍ରସଙ୍ଗ ନଥିଲା । ଏକ ଅସୀମ ଆବେଗକୁ ହିଁ ସେ ଏହାଦ୍ୱାରା ପ୍ରତୀକିତ କରୁଥିଲେ । ଏହା ଅନ୍ତଶ୍ଚେତନକୁ ହିଁ ପ୍ରକଟନ କରିବା ଭିତରେ ଏକ ଅନନ୍ୟ କାବ୍ୟପ୍ରଭାବ ସୃଷ୍ଟି କରୁଥିଲେ ।

କିରକେଗାର୍ଡ଼ ହାଇଡଗାର କିମ୍ବା ସାର୍ତଙ୍କ ଅପେକ୍ଷା ନିତ୍‌ସେଙ୍କର ଅଧିକ ସନ୍ନିକଟ ହୋଇ ପାରିଥିଲେ ଏହି ଅନ୍ତର୍ମୁଖୀ କାବ୍ୟ ପ୍ରଭାବ ସୃଷ୍ଟି କରିବା ଦୃଷ୍ଟିରୁ ।

କିରକେଗାର୍ଡ଼ କହିବାକୁ ଚାହୁଁ ଥିଲେ ଯେ, ଗୋଟେ ଶୁଦ୍ଧ କବିତାର ଝଲକ ବା ଦୀପ୍ତି ଅନ୍ୟ କେଉଁଥିରେ ନଥାଏ; ଥାଏ ଏକାନ୍ତ ଜୀବନମୟ ଗଭୀର ଜୀବନାନୁଭୂତିରେ । ଶୁଦ୍ଧ କାରୁଣ୍ୟ ଶୁଦ୍ଧ କବିତାର ପରିଧିକୁ ନିବିଡ଼ ଭାବେ ସ୍ପର୍ଶ କରିଯାଏ ।

ଜୀବନ ଅନ୍ତସ୍ଥଳର କାରୁଣ୍ୟ ଶୁଦ୍ଧ କବିତାକୁ ଜନ୍ମ ଦିଏ । କିରକେଗାର୍ଡ଼ ମୁଖ୍ୟତଃ ବାଇବେଲ ଓ ପାଶ୍ଚାତ୍ୟ ମିଥ୍‌କୁ ତାଙ୍କ କାବ୍ୟପ୍ରସଙ୍ଗ ଅବତାରଣା କରିବାପାଇଁ ଯେତେବେଳେ ଗ୍ରହଣ କରିଛନ୍ତି ତାଙ୍କ ଅନୁରୂପ ଶୁଦ୍ଧ କବିତାର ପ୍ରଭାବ ସୃଷ୍ଟି କରିଥିବା ଗ୍ରୀସ୍ ଓ ମେରିସରୁ ବିଷୟ ନେଇଛନ୍ତି । କିରକେଗାର୍ଡ଼ ଏବ୍ରାମ, ଜନଡୁଆନ ଓ ଅନ୍ୟାନ୍ୟ ଲୋକକଥାର ଅବତାରଣା କରିଥିଲାବେଳେ ନିତସେ ଡାଇନାସସ୍ ଓ ପାର୍ସିଆନ ଧର୍ମଯାଜକ ଜରାଥୁଷ୍ଟ୍ର ଚରିତ୍ରର ଅବତାରଣା କରିଛନ୍ତି ।

ଏଇ ଦୁଇଜଣ ଦାର୍ଶନିକ କିନ୍ତୁ ଯଦି ଶୁଦ୍ଧ କବିତାର ଭାଷା ଲେଖିଛନ୍ତି ତାହା କେବଳ କବିପରି ଚେତନା ପରିଧିରେ ଜୀବନର ସବୁକଥାକୁ ଅନୁଭବ କରିଥିବା କାରଣରୁ । କିରକେଗାର୍ଡ଼ ଏ ପ୍ରସଙ୍ଗରେ ଥରେ କହିଥିଲେ, 'I am living through within myself.' । କିରକେଗାର୍ଡ଼ ସବୁ ଉପନ୍ୟାସକୁ ମିଶାଇଦେଲେ ତାଠାରୁ ଅଧିକ କବିତା ଲେଖିଥିଲେ, 'more poetry than there is in all novels put together.' ।

କବିତାର ପ୍ରଭାବ କିରକେଗାର୍ଡ଼ ଓ କିରକେଗାର୍ଡ଼ଙ୍କ ପରି ସବୁ ଅସ୍ତିତ୍ୱବାଦୀ ଲେଖକଙ୍କ ଲେଖାର ବଡ଼ଗୁଣ । ଏହିପରି ଆତ୍ମକଥନ ପ୍ରବଣତା । ରକ୍ତକ୍ଷରଣର ମୁହୂର୍ତ୍ତ ହେଉ ବା ବିରଳ ପ୍ରେମାନୁଭୂତି ହେଉ ସେସବୁକୁ ସ୍ମୃତିରେ ସାଇତି ରଖିବାର ଗୋଟେ ସଉକ ପ୍ରାୟ ସବୁ ଅସ୍ତିତ୍ୱବାଦୀ ଲେଖକଙ୍କର ।

ସେମାନଙ୍କ ରଚନା ଆଙ୍ଗିକ ଅପେକ୍ଷାକୃତ ଅଲଗା ପ୍ରକାରର । କିଛିଟା ଅଧିକ ଆତ୍ମସ୍ୱୀକାରୋକ୍ତିମୂଳକ ଓ ପ୍ରଥମ ପୁରୁଷ ଆଙ୍ଗିକରେ ରଚିତ । ଭାଗ୍ୟର ଅନିବାର୍ଯ୍ୟ ବିଡ଼ମ୍ବନା ସବୁକୁ ଲେଖିବାରେ ସେମାନେ ଅଧିକ ଆଗ୍ରହୀ । ସେମାନେ ମନେକରନ୍ତି ଯେ, ତାହାହିଁ ଜୀବନ ବିଷୟକ ଅଧିକ ବାସ୍ତବତା ।

କିରକେଗାର୍ଡ଼ଙ୍କ ନାଗରତ୍ୱ ହେଉଛି କେତେ କାଳର ପୁରାଣକଳ୍ପକୁ ନିଜର ଜୀବନପରିଧି ଭିତରେ ଦେଖିବା । ତା'ର ସମାନତାକୁ ଗଭୀରଭାବେ ଅନୁଭବ କରିବା । ଏଠାରେ କିରକେଗାର୍ଡ଼ଙ୍କୁ ଟି.ଏସ୍. ଇଲିୟଟ ସହିତ ତୁଳନା କରାଯାଇ ପାରେ ଯେ ନିଜ ଜୀବନର ଘଟଣା ପ୍ରବାହକୁ ପୁରାଣାୟିତ (Mythologizing) କରିବାରେ ଅତ୍ୟନ୍ତ ପାରଦର୍ଶୀ ଥିଲେ । କିରକେଗାର୍ଡ଼ୀୟ ଆତ୍ମନିଷ୍ଠତା ଲେଖକୀୟ ସତ୍ତାକୁ ଲେଖାର ଚ଼ିତ୍ର ଚ଼ରିତ୍ର ସହିତ ଯୋଡ଼ି ଦେଇ ପାରୁଥିଲା । କଥା ଓ କଥକ, ଲେଖକ ଓ ନାୟକ ମଧ୍ୟରେ ଥିବା ଯୋଗାଯୋଗକୁ କିରକେଗାର୍ଡ଼ କେବଳ ସ୍ୱୀକାର କରିନାହାନ୍ତି ସେମାନଙ୍କ ମଧ୍ୟରେ ସକ୍ରିୟ ସମ୍ବନ୍ଧ ସ୍ଥାପନର ଭୂମିକା ନିର୍ବାହ କରିଛନ୍ତି ।

କିରକେଗାର୍ଡ଼ କେବଳ କବି ହେବା ପାଇଁ ଚ଼ାହିଁ ନାହାନ୍ତି, ବରଂ ବିଶ୍ୱାସର ବୀର (Knight of Faith) ହେବାପାଇଁ ଅଭିଳାଷ ପୋଷଣ କରିଛନ୍ତି । କବିତା ସମୁନ୍ନତ ବିଶ୍ୱାସ ଓ ବାସ୍ତବତାକୁ ହିଁ ପ୍ରକଟିତ କରେ 'that poetry opens up a higher actuality.' । କିରକେଗାର୍ଡ଼ଙ୍କ 'The point of view of my work as an Author' ରେ ଜଣେ ସଚ୍ଚା ଖ୍ରୀଷ୍ଟିୟାନ ହେବାର ବାସନା ପ୍ରତୀକିତ ହୋଇଛି । ଜୀବନ ବିବର୍ଦ୍ଧକ, ମୃତ୍ୟୁ ସଞ୍ଜୀବନୀ ସଦୃଶ ଗୋଟେ ଚ଼ରମ ବିଶ୍ୱାସକୁ ପାଇବା ପାଇଁ ସେ ସମଗ୍ର ଜୀବନସାରା ଯେଉଁ ଅନ୍ୱେଷଣ କରିଛନ୍ତି ତାଙ୍କ ଲେଖାସବୁ ତା'ର ଏକ ଏକ ସ୍ମାରକୀ । ନାନା ଦୁଃଖ ଓ ସଂଶୟ ଭିତରେ ବଞ୍ଚିଥିବା କିରକେଗାର୍ଡ଼, ସମଗ୍ର ଜୀବନକୁ କିନ୍ତୁ ଗୋଟେ ଭାବ ବିଭୋର କବିପରି ଅନୁଭବ କରିଛନ୍ତି ।

କିରକେଗାର୍ଡ଼ କିନ୍ତୁ ତାଙ୍କ ରୁଚ଼ି ଓ ଅନୁଭବରେ 'ଏସଥେଟିକସ୍'କୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ଶୁଦ୍ଧ ଏସ୍ଥେଟିକସ୍କୁ ସେ ଦିବ୍ୟାନୁଭବର କାରଣ ବୋଲି ଅଭିହିତ କରିଛନ୍ତି । କିରକେଗାର୍ଡ଼ ଲେଖିଛନ୍ତି : 'Vainly I strive against it. My foot slips. My life is still a poet's existence. What could be more unhappy ? I am predestined; fate laughs at me when suddenly it should me how everything I do to resist becomes a moment in such an existence.' (The point of view of my work as an Author). କିରକେଗାର୍ଡ଼ଙ୍କ ଥେସିସ ଏକ

ପ୍ରକାର ସ୍ୱତନ୍ତ୍ର ରଚ଼ନା, ବ୍ୟକ୍ତିଗତ ଚ଼ିନ୍ତା ଚ଼େତନାର ଅଭିଲିପି ପରି, ଯଦିଓ ତାହା ଉଚ୍ଚତର ଡିଗ୍ରୀ ପାଇଁ ଆନୁଷ୍ଠାନିକଭାବେ ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ ହୋଇଛି ।

କିରକେଗାର୍ଡ଼ 'ଏସ୍‌ଥେଟିକସ'କୁ ଏକ ପ୍ରକାର ଶଠତାର ବିଷୟ ବୋଲି ଜ୍ଞାନ କରିଛନ୍ତି । ସେ କହିଛନ୍ତି, 'the aesthetic production is a deceit' ଜଣେ ସଂଶୟ ଭିତରେ ଥିଲେ ଜଣକୁ ଠକି ହୁଏତ ସତ୍ୟ ଉପଲବ୍‌ଧ କରାଯାଇପାରେ । ସତ୍ୟ ଉପଲବ୍‌ଧି କ୍ଷେତ୍ରରେ ଏସ୍‌ଥେଟିକ୍ ବାଧାସୃଷ୍ଟି କରେ ବୋଲି ସେ କହିଛନ୍ତି । ବୁଦ୍ଧି ଓ ସୌନ୍ଦର୍ଯ୍ୟାନୁଭୂତି ମଣିଷ ଜୀବନପାଇଁ ଦରକାର । ବୌଦ୍ଧିକତା ସହିତ ସୌନ୍ଦର୍ଯ୍ୟଚ଼େତନା ମଣିଷର ବଡ଼ ପରିଚ଼ୟ । ମାତ୍ର ବୌଦ୍ଧିକତା ସହିତ ସୌନ୍ଦର୍ଯ୍ୟାନୁଭୂତିର ତୁଳନା କରି ଉତ୍କର୍ଷ ଦୃଷ୍ଟିରୁ ଗୋଟିକୁ ବାଛିବାକୁ କହିବା ପୁଣି ସଂଶୟର ବିଷୟ ବୋଲି କିରକେଗାର୍ଡ଼ କହିଛନ୍ତି ।

କିରକେଗାର୍ଡ଼ ତାଙ୍କ ରଚ଼ନାରେ ଅନନ୍ତକାଳରେ ମଣିଷକୁ କେବଳ ଅଜସ୍ର ପ୍ରଶ୍ନହିଁ ପଚ଼ାରିଯାଇଛନ୍ତି । ମଣିଷକୁ ଛକ ରାସ୍ତା ମାନଙ୍କରେ ଛିଡ଼ା କରାଇଛନ୍ତି । ସେ ଜାଣିଥିବା ବାଟଟିକୁ କହି ଦେଇ ନାହାନ୍ତି । ନିର୍ଦ୍ଦିଷ୍ଟ ବାଟଟି କେଉଁଟା ଚ଼ିନ୍ତା କରିବାକୁ ବରଂ ପ୍ରୋତ୍ସାହିତ କରିଛନ୍ତି ।

କିରକେଗାର୍ଡ଼ୀୟ ବ୍ୟକ୍ତି ସତ୍ତାଟିକୁ ସହଜରେ ବୁଝି ହେବନାହିଁ । ତାଙ୍କ ରଚ଼ନାରେ ସେହି ବ୍ୟକ୍ତିଜୀବନଟି କେତେ ବାସ୍ତବ ଅବା କେତେ କାଳ୍ପନିକ ସେଥିନେଇ ଗୋଟେ ନିର୍ଦ୍ଦିଷ୍ଟ ସୀମାରେଖା ପକାଇ ହେବନି । ତାହା କେତେ ପୁଣି ବାସ୍ତବ ଓ ସତ୍ୟ ପ୍ରଖ୍ୟାପକ ତାହାକୁ ମଧ୍ୟ ସଠିକ୍ ଭାବେ କଳନା କରିହେବନି ।

କିରକେଗାର୍ଡ ଯେଉଁ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ଅସ୍ତିତ୍ୱ କଥା କହିଛନ୍ତି ଓ ଯେଉଁ ଏକଲା ମଣିଷର ସାଧୁତା ଓ ସ୍ୱାଧୀନତା ସପକ୍ଷରେ ନିଜ ଆତ୍ମାର ସମର୍ଥନ ଯୋଗାଇ ଦେଇଛନ୍ତି ତାହା ବାସ୍ତବ ଜୀବନ ବଞ୍ଚୁଥିବା ଗୋଟେ ଏକଲା ମଣିଷର ଅସ୍ତିତ୍ୱ କି ତାହା ଗଳ୍ପାୟିତ ଏକ କାହାଣୀ ପୁରୁଷ ତାହା ବି ଏଠାରେ ଏକ ପ୍ରଶ୍ନ । କଥାୟିତ ମଣିଷଟି ସତ୍ୟ ପ୍ରକାଶ କରେ ନାଁ ସତ୍ୟର ସମ୍ଭାବନାକୁ ପ୍ରକାଶ କରେ ତାହାଁ ମଧ୍ୟ ମୂଳପ୍ରଶ୍ନ ସହିତ ଅନ୍ୟ ଏକ ପ୍ରାସଙ୍ଗିକ ଜିଜ୍ଞାସା ।

କିରକେଗାର୍ଡ଼ ନିଜର ବ୍ୟକ୍ତିନିଷ୍ଠ ଧାରଣାକୁ ଆଦୌ ପରିହାର କରିନାହାନ୍ତି । ତା ସହିତ କଥାୟିତ ଚ଼ରିତ୍ର ସବୁକୁ ମଧ୍ୟ ତାଙ୍କ ଲେଖାରେ ଛିଡ଼ା କରାଇଛନ୍ତି । କିରକେଗାର୍ଡ଼ ଏମିତି ସଂଶୟର ମଧ୍ୟ ଭାଗରେ ଛିଡ଼ା ହୋଇ ନୂଆ ବିଭାବ (genre) ସୃଷ୍ଟି କରିଛନ୍ତି । ଯଥା:– ଯଥେଷ୍ଟ ସୃଜନଶୀଳ, ଯେପରି ଓ ଯେତେମାତ୍ରାରେ ବ୍ୟକ୍ତିଗତ ସେତିକି ଓ ସେହିମାତ୍ରାରେ ସାର୍ବଜନୀନ ଚିଠିପତ୍ର, ଡାଏରୀ, ଆତ୍ମକଥା, ସଲଲିକ, ଡ୍ରିମସ୍ ଲିରିକାଲ ଏଫୋରିଜିମ୍ ଆଦି ଅନେକ ବିଭାବରେ କିରକେଗାର୍ଡ଼ ନିଜର ସ୍ୱନିଷ୍ଠ ଅନୁଭବ ସବୁକୁ ଲେଖିଛନ୍ତି । କିରକେଗାର୍ଡ଼ ସର୍ବଦା ମନେ କରୁଥିଲେ ଯେ, ସ୍ୱନିଷ୍ଠ ଜ୍ଞାନର ମର୍ଯ୍ୟାଦା ଅଲଗା ପ୍ରକାରର । ବସ୍ତୁନିଷ୍ଠ ଜ୍ଞାନ କାହାକୁ ସ୍ପର୍ଶ କରେ ନାହିଁ କି ପ୍ରବୋଧିତ କରେନାହିଁ ।

କିରକେଗାର୍ଡ଼ ଜୀବନସାରା ଯେଉଁ ଏସ୍‌ଥେଟିକ୍ ଦ୍ୱନ୍ଦ୍ୱରେ ପଡ଼ିଥିଲେ ତାଙ୍କ ଲେଖାସବୁ ତାର ଆଭାସ ବହନ କରେ । ଏପରି କି ତାଙ୍କର ନୂଆ ଆଙ୍ଗିକ ସବୁ ହେଉ ଦ୍ୱନ୍ଦ୍ୱର ପରିଣତି । ଭୟଙ୍କର ଚିତ୍ତ ଆନ୍ଦୋଳନର ତୀବ୍ରତା ତାଙ୍କ ଲେଖା ସବୁରେ ପ୍ରତୀକିତ ହୋଇଛି; ଯାହା ପରବର୍ତ୍ତୀ ସାହିତ୍ୟ ସମାଲୋଚ଼କଙ୍କ ବଡ଼ ଅସୁବିଧାରେ ପକାଇଛି । କିରକେଗାର୍ଡ଼ ଯେଉଁ ଜୋହନସ୍ ଓ କର୍ଡ଼େଲିଆ ଚ଼ରିତ୍ର ଦୁଇଟିର ଅବତାରଣା କରିଛନ୍ତି ତାହା ଡାଇରୀ ଫର୍ମର ଉଲଘଂନ କରେ ।

କିରକେଗାର୍ଡ଼ଙ୍କ ଡାଇରୀଲେଖାର ବିଶେଷତ୍ୱ ହେଲା ତା'ର ସୃଜନଶୀଳ କଳାତ୍ମକତା । ସେ ତାକୁ ତାଙ୍କ ଦିନଲିପିର ବିବରଣୀ ସର୍ବସ୍ୱ ବ୍ୟାବହାରିକ ପୃଷ୍ଠା କରି ଦେଇ ନାହାନ୍ତି । ସେଥିରେ ଯେଉଁ କଥା ସେ ଅବତାରଣା କରିଛନ୍ତି ତାହା ସବୁକାଳର ସବୁମଣିଷଙ୍କ ମନ ଓ ଆତ୍ମାକୁ ଆନ୍ଦୋଳିତ କରେ । ତାଙ୍କ ଡାଇରୀର ଏସ୍‌ଥେଟିକ୍ ଗୁଣ ସହିତ ନାଟକୀୟତା ଅନ୍ୟ ଏକ ଦିଗ; ଯାହା ଘଟଣା ପ୍ରବାହକୁ ଜୀବନ୍ତ ଓ ବିଶ୍ୱାସନୀୟ କରିଛି ।

ଡାଇରୀ ହେଉ ବା ଅନ୍ୟ କୌଣସି ରଚ଼ନା ହେଉ ସବୁ କାଳକୃତିର ମୂଳଗୁଣ ହେଲେ ତା'ର ଏସ୍‌ଥେଟିକ୍ ଆନନ୍ଦ; ଯାହା କିରକେଗାର୍ଡ଼ଙ୍କ 'ଦି ଡାଇରୀ ଅଫ୍ ସୀଡ୍ୟୁସରରେ' ଭର୍ତ୍ତି ହୋଇ ରହିଛି । କିରକେଗାର୍ଡ଼ଙ୍କ ଡାଇରୀର ବହୁପୃଷ୍ଠା ଗୋଟେ ଚ଼ିତ୍ତ ଉତ୍ତେଜକ ପ୍ରଣୟର ପରିବେଶର ବର୍ଣ୍ଣନାରେ ମୁଖର ହୋଇଛି ଓ ନାରୀ ଅଙ୍ଗର ଅନନ୍ୟ ଲାବଣ୍ୟକୁ ଚିତ୍ରଣ କରିଛି । ତାର କାବ୍ୟନନ୍ଦ ଏତେ ସଞ୍ଚରଣଶୀଳ ଓ ପ୍ରଭାବାତ୍ମକ ଯେ ଜଣେ ପ୍ରଭାବିତ ନହୋଇ ରହିପାରିବନି ।

ଶବ୍ଦ ସଂଯୋଜନାରେ କିମ୍ୱା ଗୀତମୟ ସାଙ୍ଗୀତିକତା ସୃଷ୍ଟିରେ ନୁହେଁ ପ୍ରେମ ଓ ବଳିଦାନରେ ମନ ଓ ଅନ୍ତରକୁ ବିଗଳିତ କରିଦେବାରେ ସର୍ବୋତ୍ତମ କାବ୍ୟାନନ୍ଦର ଅତୁଳନୀୟ ପ୍ରଭାବ ସୃଷ୍ଟି ହୋଇଥାଏ; ଯେଉଁ ପ୍ରଭାବ କିରକେଗାର୍ଡ଼ଙ୍କ ରଚ଼ନାରେ ପରିଦୃଷ୍ଟ ।

କିରକେଗାର୍ଡ଼ଙ୍କ ଡାଇରୀ କିନ୍ତୁ ଐତିହାସିକତା ଦୃଷ୍ଟିରୁ ତଥ୍ୟନିଷ୍ଠ ନଥିଲା; ନଥିଲା ବି ଉପନ୍ୟାସ ପରି ସଂପୂର୍ଣ୍ଣ କାଳ୍ପନିକ । ଜର୍ମାନର ରୋମାଣ୍ଟିକ ସମାଲୋଚ଼କ ଫ୍ରେଡେରିକ୍ ଶେଲିଗଲ (Friedrich Schelegel) ଏ ପ୍ରସଙ୍ଗ ଉତ୍‌ଥାପନ କରିଛନ୍ତି । କିରକେଗାର୍ଡ଼ କାବ୍ୟାତ୍ମକ ସୃଜନଶୀଳତା ଉପରେ ଅବଶ୍ୟ ସବୁବେଳେ ଗୁରୁତ୍ୱ ଦେଇ ଆସିଛନ୍ତି ।

ଭାଗ୍ୟବାଦୀ କବି କିରକେଗାର୍ଡ଼ ପ୍ରେମ ପ୍ରତାରକ ବା ସୀଡ୍ୟୁସରଜୀବନକୁ ଏକ ନାଟକ ଭାବେ ଯେପରି ଦେଖିଛନ୍ତି । କିରକେଗାର୍ଡ଼ ତାଙ୍କ ଡାଇରୀକୁ ଯେପରି କଥାଧର୍ମୀ କରିଛନ୍ତି ଓ ସେଥିରେ ନିଜେ ଏକ ଅଂଶ ହୋଇଛନ୍ତି ତାହା ରଚ଼ନାଧାରାରେ ଏକାନ୍ତ ଅଭିନବ ହୋଇଛି । ଗୋଟିଏ କଡ଼େ ତାଙ୍କର ଭାଗ୍ୟବାଦୀ ଦୃଷ୍ଟିଭଙ୍ଗୀ ଅନ୍ୟ କଡ଼େ ତାଙ୍କର ଆବେଗିକ ଅନୁଭବ ମିଶି ତାଙ୍କ ଡାଇରୀକୁ ଗୋଟିଏ ବିଶେଷ ରୂପରେ ପ୍ରତିଷ୍ଠିତ କରିଛି ।

କିରକେଗାର୍ଡ଼ ଚ଼ରିତ୍ର ଜରିଆରେ ତାଙ୍କ ପ୍ରସିଦ୍ଧ 'ଦି ଡାଇରୀ ଅଫ ସୀଡ୍ୟୁସର'କୁ କେତେକାଂଶରେ ଗଳ୍ପାୟିତ କରିଥିଲେ ହେଁ ସେଥିରେ ତାଙ୍କର ଆତ୍ମପ୍ରବେଶକୁ ବହୁସ୍ଥଳରେ

ବାରିହୁଏ । ତାଙ୍କ ପରି ଜଣେ ଭାବପ୍ରବଣ ଶିଳ୍ପୀ ନିଜକୁ ନିଜ ଲେଖାଭିତରେ ପ୍ରବେଶ ନକରାଇ ରହିପାରି ନାହାନ୍ତି । ସୂଚିତ ହୋଇଛି ଗୋଟେ ପ୍ରେମ ଲୋଡୁଥିବା ନବଯୁବତୀକୁ ଯୌନତୃପ୍ତି ଦେବାପାଇଁ ପୁରୁଷ ଭାବରେ କିରକେଗାର୍ଡ ଶକ୍ତିହୀନ ଥିଲେ । ଜଣେ ଯୌନଶକ୍ତି ଅସମର୍ଥ ପୁରୁଷ ସୁରତି ଲୋଡୁଥିବା ନାରୀ ନିକଟରେ ଯେଉଁ ଅସହାୟତା ପ୍ରକାଶ କରେ ଓ ଯେଉଁ ଆବେଗିକ ସନ୍ତାପର ଶୀକାର ହୁଏ କିରକେଗାର୍ଡ଼ଙ୍କଠାରେ ତାହା ପୂର୍ଣ୍ଣମାତ୍ରାରେ ହୁଏତ ଲକ୍ଷ୍ୟଣୀୟ ।

କିରକେଗାର୍ଡ଼ ସେ ପ୍ରେମ ପ୍ରତାରକକୁ ଜଣେ ସୌନ୍ଦର୍ଯ୍ୟଶାସ୍ତ୍ରୀ, ଜଣେ ଶୃଙ୍ଗାରିକ ଭାବେ ଚିତ୍ରଣ କରିଛନ୍ତି; ଯେ ଅନୁଭବ କରିଛି କୌଣସି ଯୌନ ପ୍ରେମ  ଛଅମାସରୁ ଅଧିକ କାଳ ଦୀର୍ଘସ୍ଥାୟୀ ହୋଇ ରହେନାହିଁ । ପୁଣି ଯେ କୌଣସି ଯୌନସମ୍ପର୍କ ବିକଳ୍ପ ଆନନ୍ଦ ଲାଭ ଉତ୍ପଟିଏ ମିଳିବା କ୍ଷଣି ଆପେ ବନ୍ଦ ହୋଇଯାଏ । କିରକେଗାର୍ଡ଼ ଲେଖିଛନ୍ତି; 'No love affair should last more than six months at the most and that every erotic relationship should cease as soon as one has had the ultimate enjoyment," x x x To Poetic oneself into a young girl is as art, to poetic oneself out of her is a masterpiece ? (E.O., 1, 363-64) ।

ରେଜିନା ଓ୍ୱଲସନ ନାମକ ସେ ବାଳିକାଟିକୁ ପ୍ରକୃତରେ କିରକେଗାର୍ଡ଼ ଆପଣାର ଅଧିକାର ଭିତରକୁ ଆଣିବା ପାଇଁ କେବଳ ଚାହୁଁନଥିଲେ ତାକୁ ଜଣେ କଳାକାର ଭାବେ ଉପଭୋଗ କରିବାକୁ ଚାହୁଁଥିଲେ । ତାଙ୍କର ଆବେଦନ ଏକାନ୍ତଭାବେ କଳାକାର ସୁଲଭଥିଲା । ଏହି ମହାନ ପ୍ରେମ ଘଟଣାରେ କିରକେଗାର୍ଡ଼ ନିଜକୁ ଜଣେ ପ୍ରତାରକ ବୋଲି ଆଦୌ ଜ୍ଞାନ କରିନାହାନ୍ତି । କାରଣ ସାଧାରଣ ଦୃଷ୍ଟିରୁ ସେ ପ୍ରେମରେ ଶଠତା ଆଚରଣ କରି ନାହାନ୍ତି । କିମ୍ବା ଅନ୍ୟପକ୍ଷରେ ରେଜିନା କିରକେଗାର୍ଡ଼ଙ୍କୁ ଜଣେ ନିଷ୍ପାପର ପ୍ରେମିକ ବୋଲି ମନେ କରିପାରିନି ।

ଏଠାରେ ଏହି ପ୍ରେମଘଟଣାଟିକୁ ଜଣେ କଳାକାର ସ୍ୱତେ ଯେପରି ଚିତ୍ରଣ କରିଛନ୍ତି । ଜଣେ କବି ବା କଳାକାର ପ୍ରେମିକାର ଚିତ୍ରଟିଏ ଆଙ୍କିଲେ ସେ ପ୍ରତିମାଟି ଯାହାହୁଏ କିରକେଗାର୍ଡ଼ଙ୍କ ଡାଇରୀର ଚିତ୍ରିତା ସେ ଝିଅଟିର ରୂପଗୁଣ  ସେହିପରି ହୋଇଛି । ଚିତ୍ରକର ମଧ୍ୟ ଅନୁରୂପ ଆନନ୍ଦ ଲାଭ କରିଛି ।

'ମୁଁ ସେପରି କରିଛି ବୋଲି' ପ୍ରେମିକ (କିରକେଗାର୍ଡ଼) କହିଛି । ଅଥଚ୍ ଏକ ଶୁଦ୍ଧ ଆବେଗିକ ସ୍ତରରେ । ଏପରି ଏକ ପ୍ରେମ ପ୍ରତିମାକୁ ପ୍ରେମିକ ତା ମନଭିତରେ ଚିତ୍ରଣ କରିଛି ବୋଲି ହୁଏତ ପ୍ରେମିକା ଜାଣିନାହିଁ । ହୁଏତ ଏହିଠାରେ ଶଠତା ରହିଛି । ଜୋହାନସ୍ ଓ କର୍ଡେଲିଆ ରୂପକ ପ୍ରେମ ଘଟଣାଟି ସତରେ କିରକେଗାର୍ଡ଼ ଓ ରେଜିନାଙ୍କ ମଧ୍ୟରେ ହିଁ ଅନୁଷ୍ଠିତ ହୋଇଥିଲା; ଯାହାକୁ କିରକେଗାର୍ଡ଼ ଗଳ୍ପ ଛଳରେ ଏପରି ଲେଖିଛନ୍ତି । ଜୋହନସ୍ ଓ କର୍ଡେଲିଆଙ୍କ ଭିତରେ ପ୍ରେମ ଘଟଣାର ବିସ୍ତୃତ ତଥା ଏକାନ୍ତ ଅନୁଭବ ପ୍ରଧାନ ବର୍ଣ୍ଣନା

ଦିଆ ଯାଇଛି । ପୁରୁଣା ଡାଇରୀ ଫର୍ମ ଠାରୁ କିରକେଗାର୍ଡ଼ଙ୍କ ଡାଇରୀ ଅଫ୍ ସାଡ୍ୟୁସରର ବର୍ଣ୍ଣନା କୌଶଳ ତଥା ପରିବେଷଣ ଶୈଳୀ କେତେ ଅଲଗା ପ୍ରକାରର ।

ପ୍ରଥମ ପୁରୁଷ ଆଙ୍ଗିକ, ପୁରାଣାୟିତ କରିବା, ଆତ୍ମ ସ୍ୱୀକାରୋକ୍ତି ମୂଳକ, ଅତିମାତ୍ରାରେ ବ୍ୟକ୍ତିନିଷ୍ଠତା, ଅନୁଭବ ପ୍ରଧାନତା, ଅନ୍ତରୀଣ କାବ୍ୟିକତା, ନିବିଡ଼ ଏସ୍‌ଥେଟିକ୍ ଦୃଷ୍ଟିଭଙ୍ଗୀ ଆଦି ଅନେକ ବିଷୟର ସଂଶ୍ଲେଷଣାତ୍ମକ ସମଷ୍ଟି କିରକେଗାର୍ଡ଼ଙ୍କ ରଚ଼ନା ଶୈଳୀକୁ ଏତେ ପ୍ରାଣସ୍ପର୍ଶୀ କରିଛି ।

ପ୍ରେମଘଟଣାର ଉତ୍ତରଣକୁ କିରକେଗାର୍ଡ଼ ଗୋଟେ ଯୁଦ୍ଧ ଚ଼ିତ୍ରକଳ୍ପ ଭିତରେ ବର୍ଣ୍ଣନା କରିଛନ୍ତି । ସେ ବାଳିକାଟିର ପ୍ରେମର ଶକ୍ତି ଓ ଦୃଢ଼ତା ତାଙ୍କୁ ଆନନ୍ଦିତ କରୁଥିଲା । ସେ ଲେଖିଛନ୍ତି : 'The more abundant strength she has the more interesting for me. The first war was a war of liberation, it was only a game; the second is a war of conquest, it is for life and death ? (E.O,I) ।

ସାହିତ୍ୟିକ କିମ୍ବା ଜଣେ ସୁଲେଖକ ଭାବେ ଚ଼ିତ୍ରଣଗତ ପରିପକ୍ୱତା ନଥିଲେ ଏତେ ଅର୍ଥପୂର୍ଣ୍ଣ ଓ ମାର୍ମିକ କରି କିରକେଗାର୍ଡ଼ ଯୁଦ୍ଧ ଚ଼ିତ୍ର ରୂପକରେ ଏପରି ଗୋ଼ଟେ ପ୍ରେମ ଘଟଣାକୁ ବର୍ଣ୍ଣନା କରି ପାରିନଥାନ୍ତେ । କିରକେଗାର୍ଡ଼ଙ୍କ ବର୍ଣ୍ଣନାରେ ଈଶ୍ୱର, ଏକଲାମଣିଷ, ବିଷାଦ ପରି ନାରୀ ମଧ୍ୟ ଏକ ବିଶିଷ୍ଟ ବିଷୟ । ନାରୀମନସ୍ତତ୍ତ୍ୱକୁ ସେ ଉଭୟ ମନସ୍ତତ୍ତ୍ୱ ଓ ଏସ୍‌ଥେଟିକ୍ ଦୃଷ୍ଟିରୁ ଚ଼ିତ୍ରଣ କରିଛନ୍ତି । ନାରୀପ୍ରେମ ଓ ତଦ୍‌ସଂଜାତ ଆଶା ନିରାଶାର ବହୁ ବିଷୟକୁ କିରକେଗାର୍ଡ଼ ଭାବପୂର୍ଣ୍ଣ କରି ବର୍ଣ୍ଣନା କରିଛନ୍ତି । ଜୀବନ ଅଭ୍ୟନ୍ତରର ଉଦ୍‌ବେଳନ ସବୁକୁ ଲେଖିବାରେ କିରକେଗାର୍ଡ଼ ଡାଇରୀ ଆଙ୍ଗିକର ଗଦ୍ୟରଚ଼ନାକୁ କାବ୍ୟାତ୍ମକ କରି ପାରିଛନ୍ତି ।

ପୁରୁଣା ପ୍ୟୁରିଟାନ ଧାରଣାକୁ ପରିହାର କରି ନାରୀସତ୍ତା ସଂପର୍କିତ ଭାବପୂର୍ଣ୍ଣ ଅଥଚ ବାସ୍ତବ ବିଚାର ନେଇ କିରକେଗାର୍ଡ଼ ତାଙ୍କ ନାରୀଚେତନାକୁ ଅଦ୍ଭୁତ ଭାବେ ଏକ ଏସ୍‌ଥେଟିକ୍ ଚୁଙ୍ଗିମାକୁ ନେଇଯାଇଛନ୍ତି । ବାଇବେଲର ଶୃଙ୍ଖିଳା ନୀତିଶାସ୍ତ୍ରୀୟ ବିଚାର ତାଙ୍କ ଚିନ୍ତା ଓ ଚ଼େତନାକୁ କବଳିତ କରି ପାରିନାହିଁ ।'

ନାରୀ ଚିନ୍ତନରେ ସେ ନୀତିବାଦୀ ନଥିଲେ କି ନିତ୍‌ସେଙ୍କ ପରି ନାରୀବିଦ୍ୱେଷୀ ବି ନଥିଲେ । ନାରୀ ପ୍ରେମ ସଂପର୍କରେ ସେ କିନ୍ତୁ ଅତିଶୟ ଉତ୍ସୁକ ଥିଲେ । ନାରୀର୍ ଆଖି ହଠାତ୍ ସବୁ କିଛି ବଦଳାଇ ଦିଏ; ଯେଉଁଥିପାଇଁ ନାରୀର କାନ୍ଦିବାକୁ କିରକେଗାର୍ଡ଼ ନିହାତି ବିରକ୍ତିକର ବିଷୟ ବୋଲି ଜ୍ଞାନ କରିଛନ୍ତି । ନାରୀକୁ ସେ ଭଲପାଇବା ସତ୍ତ୍ୱେ ନାରୀ ତାଙ୍କ ଆତ୍ମାକୁ ବେଢ଼ିଦେଇ ପାରିନାହିଁ ବୋଲି ସେ ତାଙ୍କ ଡାଇରୀରେ ଠାଏ ଉଲ୍ଲେଖ କରିଛନ୍ତି ।

କିରକେଗାର୍ଡ଼ ତାଙ୍କ ଡାଇରୀ ଲେଖିବାରେ ଯେଉଁ ରଚନା ଆଙ୍ଗିକ ସୃଷ୍ଟି କରିଛନ୍ତି ଓ ଜଣେ ସ୍ଥିତିବାଦୀ ଭାବେ ପ୍ରେମ ଓ ଜୀବନକୁ ଯେପରି ଅନୁଭବ କରିଛନ୍ତି ତାହା ବିଶ୍ୱର ଉଭୟ ଦର୍ଶନ ଓ ସାହିତ୍ୟ ଜଗତରେ ଏକାନ୍ତ ଅତୁଳନୀୟ । ତାଙ୍କ ପୂର୍ବରୁ ଏମିତି ନାରୀପ୍ରେମ ଓ ନାରୀକୁ ପ୍ରେମରେ ସମ୍ମୋହିତ କରିଦେବା ବିଷୟକୁ ନେଇ ଆଉ କିଏ ଲେଖିଥିଲେ କି

ନାହିଁ ତାହା ଜଣା ପଡୁନଥିଲେ ବି ରୋନାଲଡ୍ ଗ୍ରିମସ୍‌ଲେ ତାଙ୍କ 'ସୋରେନ କିରକେଗାର୍ଡ଼ ଆଣ୍ଡ ଫ୍ରେଞ୍ଚ ଲିଟରେଚର' ପ୍ରବନ୍ଧରେ ଲାକ୍ଲୋଜ (Laclas)ଙ୍କ ଉପନ୍ୟାସରେ ସଦୃଶ ବିଷୟ ସେହିପରି ଆଙ୍ଗିକରେ ଲେଖାହୋଇ ଥିଲା ବୋଲି ଉଲ୍ଲେଖ କରିଛନ୍ତି ।

କିରକେଗାର୍ଡ଼ଙ୍କ ଜୋହନସ୍ ଡାଇରୀ ପରି ଲାକ୍ଲୋଜଙ୍କ ଭାଲମଣ୍ଟ (Valmont) ର ଚିଠିପତ୍ର ସେମିତି ଅନୁରୂପ ପ୍ରେମପ୍ରତାରଣାର କାହାଣୀକୁ ରୂପାୟିତ କରିଛି । କିରକେଗାର୍ଡ଼ଙ୍କ ଜୋହନସ୍ (Johannes) ପରି ଭଲମଣ୍ଟ ଏକ ସାଡ୍ୟୁସର । ଗୋଟେ ନିରୀହା ନାରୀର ପ୍ରେମ ସଂପର୍କିତ ବର୍ଣ୍ଣନାରେ ଲାକ୍ଲୋଜ ମଧ୍ୟ ସମାନ ଭାବରେ ଯୁଦ୍ଧ ଚିତ୍ରକଳ୍ପ ବ୍ୟବହାର କରିଛନ୍ତି ।

ପ୍ରେମରେ ଶଠତା ଆଚରଣ କରିଥିବା ଜଣେ ଧପାବାଜ ପ୍ରେମକୁ ଏକ ଶକ୍ତି ଏକ ଅତୁଳନୀୟ ସୃଜନଶୀଳତା ବୋଲି ଜ୍ଞାନ କରିବା ବିଡ଼ମ୍ବନାର ବିଷୟ ବୋଲି କିରକେଗାର୍ଡ଼ କହିଛନ୍ତି ।

କିରକେଗାର୍ଡ଼ଙ୍କ ଏହି 'ଡାଇରୀ ଅଫ୍ ସାଡ୍ୟୁସର' ଏକ ବିମୁଗ୍ଧ ପ୍ରେମାନୁଭୂତିର ମହାନ ଗ୍ରନ୍ଥ । ମଣିଷ ଜାତି ପାଇଁ ଏପରି ଗ୍ରନ୍ଥ ଲେଖିବାପାଇଁ ଯେମିତି ଈଶ୍ୱର କିରକେଗାର୍ଡ଼ଙ୍କୁ ପ୍ରେରଣ କରିଥିଲେ ଆଉ କିରକେଗାର୍ଡ଼ଙ୍କ ପ୍ରେମରେ ପ୍ରବୋଧିତ ହୋଇ ରହିବା ପାଇଁ ସେ ତାଙ୍କ ଜୀବନପ୍ରିୟ ରେଜିନାକୁ ବିସର୍ଜିଦେଇଥିଲେ । ପ୍ରେମ ସମ୍ପର୍କିତ ଏତେ ଅନୁଭବ ପ୍ରଧାନ କଥା କିରକେଗାର୍ଡ଼ଙ୍କ ଭିନ୍ନ ଅନ୍ୟ କେହି ଅସ୍ତିତ୍ୱବାଦୀ ଲେଖକ ପ୍ରାୟ କହି ନାହାନ୍ତି । ତାଙ୍କ 'ଆଇଦର ଅର' ଅନ୍ୟ ଏକ ଆବେଗିକ ପ୍ରେମର ତତ୍ତ୍ୱମୂଳକ ଗ୍ରନ୍ଥ । 'ଆଇଦର/ଅର' ରେ କିରକେଗାର୍ଡ଼ କହିଛନ୍ତି : 'It is the eternal element in love that the individuals first exist for one another in the moment of love.' (either/or) ।

ପ୍ରେମକୁ ବିଷାଦ ଓ ନିସଙ୍ଗତା ଭିତରେ ଅନୁଭବ କରି ସେ ତାଙ୍କ ଜୀବନକୁ ମିଠା ଗୀତ ପଦେ କରି ଦେଇ ପାରିଥିଲେ । 'Kierkegaard made a poem of his life.' ଜଣେ ବିରହାନ୍ତକ ପ୍ରେମର ବିଷାଦକୁ ବରଣ କରିନେଇଥିବା ନିଃସଙ୍ଗ ମଣିଷର ମନୋଭାବସୂଚକ ଅଙ୍ଗଭଙ୍ଗୀ ତାଙ୍କ ରଚନାର ଶୈଳୀ ଓ ଆଙ୍ଗିକକୁ ବିଶେଷଭାବେ ରୂପାୟିତ କରିଛି ।

ହଜାରେ ବଞ୍ଚନା ଓ ଦୁର୍ଭାଗ୍ୟ ସତ୍ତ୍ୱେ ଜଣେ ତା'ର ଜୀବନକୁ ଝୁରି ମରିବାର ପ୍ରେମୀ ଜୀବନଟିଏ କରିବା ଦର୍କାର ବୋଲି କିରକେଗାର୍ଡ଼ କହିଛନ୍ତି । ମଣିଷ ମୃତ୍ୟୁପର୍ଯ୍ୟନ୍ତ ପ୍ରକୃତରେ ମନ ଓ ହୃଦୟରେ ହିଁ ବଞ୍ଚେ । ସେମିତି ବଞ୍ଚିବାକୁ ପ୍ରେମ କେବଳ ଜୀବନ୍ତ କରି ରଖିଥାଏ । କିରକେଗାର୍ଡ଼ ତାଙ୍କ ଜୀବନ ବଞ୍ଚିବାର ପାରଦର୍ଶିତା ସଂପର୍କରେ କହିଛନ୍ତି : 'Loving is the only thing I am expert in.' ।

କିରକେଗାର୍ଡ଼ୀୟ ସାଧୁତା ଯେଉଁ ସତ୍ୟଶୀଳତାର କଥା କହୁଥିଲା ତାହା ଯେପରି ବୌଦ୍ଧିକ ଜୀବନ ପାଇଁ ସେହିପରି ପ୍ରେମ ଓ ଆବେଗ ପାଇଁ । ଏମିତି ପ୍ରେମ ବିବେକ ଓ ହୃଦୟର କଥା କହି କିରକେଗାର୍ଡ଼ ଚର୍ଚ୍ଚକୁ ବିରୋଧ କରିବା ସତ୍ତ୍ୱେ ଅନେକଙ୍କ ସମକ୍ଷରେ କୁନି ପାଦ୍ରୀ ପାଲଟି ଯାଇଥିଲେ ।

ଜଣେ ବୀଟ ପୁରୁଷ ସବୁବେଳେ ଗୋଟେ ଅସ୍ଥିର ଜୀବନ ନେଇ ବଞ୍ଚେ । ତା ମନ ଓ ସଙ୍କଳ୍ପର କିଛି ଦୃଢ଼ତା ନଥାଏ । କିରକେଗାର୍ଡ଼ ନିଜକୁ ଲକ୍ଷ୍ୟ କରି କହିଛନ୍ତି ଯେ, ପ୍ରେମରେ ଅସ୍ଥିର ଧପ୍‌ପାବାଜି ପ୍ରେମିକ ଜଣେ ନିଜକୁ ନିରନ୍ତର ଗଢୁଥିବା ଶିଳ୍ପୀଟିଏ ପରି; ପ୍ରତିମାଟିଏ ଗଢ଼ିବା ଯାହାର କେବେବେଳେ ବି ଶେଷ ହୁଏନି । ତାଙ୍କପରି ପ୍ରେମ ପ୍ରତାରକର ପ୍ରେମ ନାଁ ନାରୀ ପ୍ରତି ନାଁ ଏସ୍ଥେଟିକ୍ ପ୍ରତି ସତ୍ୟଶୀଳ । ପ୍ରେମର ଗଭୀରତା, ହୃଦୟର ଆକୁଳଉଚ୍ଛାସ ସହିତ କିରକେଗାର୍ଡ଼ ଜଣେ ଅକୃତଜ୍ଞ ପ୍ରେମିକର ନିଷ୍ଠାହୀନତାକୁ ମଧ୍ୟ ନାନା ରୂପକରେ ଲେଖିଛନ୍ତି । ଏଥିପାଇଁ ସେ ଯେଉଁ ମିଥ୍ ଓ ମେଟାଫର ବ୍ୟବହାର କରିଛନ୍ତି ତାହା ତାଙ୍କ ରଚନାକୁ ଜଣେ ଟ୍ରୋବାଡୋର କବିଙ୍କ ଅସଫଳ ପ୍ରେମର ବିଷାଦ ରାଗିଣୀପରି କରିଦେଇଛି । ତାଙ୍କ ରଚନାସବୁ ତେଣୁ ଦୁଃଖର ଗୀତ ପରି ପାଠକର ପ୍ରାଣକୁ କରୁଣାର୍ଦ୍ର କରିଦିଏ । କିରକେଗାର୍ଡ଼ କହନ୍ତି, ବିଷାଦ ହେଉଛି ଅନୁଭବର ମଞ୍ଚ ।

ହୁଏତ କିରକେଗାର୍ଡ଼ ତାଙ୍କ ଡାଇରୀରେ ଅନ୍ୟ ମାନଙ୍କର ଅସ୍ତିତ୍ୱକୁ ସେତିକି ଗୁରୁତ୍ୱ ଦେଇ ନାହାନ୍ତି; ଯେତିକି ତାଙ୍କ ନିଜ ଜୀବନର ପ୍ରେମାନୁଭୂତିକୁ ଗୁରୁତ୍ୱ ଦେଇଛନ୍ତି । ପ୍ରେମର ବିରଳ ମୁଗ୍ଧାନୁଭୂତି ହେଉ କିମ୍ବା ହାତାଶା ହେଉ ସେସବୁକୁ କିରକେଗାର୍ଡ଼ ତାଙ୍କ ରଚନାରେ ଅଧିକ ଦାର୍ଶନିକତା ଭିତରେ ହିଁ ଲେଖିଛନ୍ତି; ଅଥଚ ଏସ୍ଥେଟିକ୍‌ସ୍‌ର ଶୈଳୀରେ ।

କର୍ଡେଲିଆ ଓ ଜୋହାନସଙ୍କ ପ୍ରେମ ସଂପର୍କକୁ କିରକେଗାର୍ଡ଼ ଗଳ୍ପାୟିତ କରି ଗୋଟେ ଉତ୍କଣ୍ଠାପୂର୍ଣ୍ଣ ନାଟକୀୟତା ଭିତରେ ବର୍ଣ୍ଣନା କରିଛନ୍ତି; ଅଥଚ୍ ସେ ତାଙ୍କର ବ୍ୟକ୍ତିଗତ କବି ଓ ପ୍ରେମିକର ଜୀବନକୁ ମିଠା କବିତା ମନେ କରି ତା ଭିତରେ ରଖି ଦେଇଛନ୍ତି ।

ତାଙ୍କର ସଂପର୍କ ବିଷୟ ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି : 'ଆମର ସଂପର୍କ ପରସ୍ପର ପ୍ରତି ଅଙ୍ଗୀକାରବଦ୍ଧ ନଥିଲା । ପରସ୍ପର ପ୍ରତି ଆସକ୍ତି ଓ ଆକର୍ଷଣ ବି ନଥିଲା' । ଲାବଣ୍ୟଲାଳସା ଥିବା ଜଣେ ଅତ୍ୟଧିକ ବାଳିକା ପ୍ରେମୀ ସୀଡ୍ୟୁସର (ପ୍ରେମ ପ୍ରତାରକ) ସର୍ବଦା ଅସ୍ଥିର ଚିତ୍ତ । ତା ଜୀବନରେ ପ୍ରେମର ସ୍ଥାୟିତ୍ୱ ବୋଲି କିଛି କଥା ନଥାଏ । ଗୋଟିଏ ନାରୀକେନ୍ଦ୍ରିକ ହୋଇ ରହିବା ତାପକ୍ଷେ ପ୍ରାୟତଃ ଅସମ୍ଭବ ହୋଇ ପଡ଼େ । ପ୍ରାଣର ସେହି ଅସ୍ଥିରତା ସେହି ଉଦ୍‌ବେଳନ ସବୁ ହୁଏତ ଏକ ବିରଳ କାବ୍ୟାନୁଭବ ବା ଏସ୍ଥେଟିକ୍ ଅଭିଜ୍ଞତା ପାଇଁ ଅତି ଦରକାରୀ କଞ୍ଚାମାଲ ହୋଇପାରେ; ଯାହାକୁ ମୂଳ ପୁଞ୍ଜି କରି ଜଣେ ପ୍ରେମର ଅସାଧାରଣ ଗୀତିକାଟିଏ ରଚନା କରି ଦେଇପାରେ ।

କିରକେଗାର୍ଡ଼ ପ୍ରେମକୁ ଏକ ସମୁନ୍ନତ ସ୍ତରରେ ବୌଦ୍ଧିକ ଜୀବନର ପରିଚର୍ଯ୍ୟା ବୋଲି ମନେ କରିଛନ୍ତି । ତାହା ସଂଯମ, ଧୈର୍ଯ୍ୟ, ଅବବୋଧ ଓ ସହନଶୀଳତା ବଢ଼ାଏ ବୋଲି ସେ ଯୁକ୍ତି କରିଛନ୍ତି । ମାତ୍ର ଜଣେ ବୁଦ୍ଧିବାଦୀ ପ୍ରେମିକ ପ୍ରାଣର ଏହି ବୌଦ୍ଧିକ ମୁକ୍ତିକାମନା ଗୋଟେ ରତିକାଂକ୍ଷିଣୀ ବାଳିକା ପାଇଁ ଏକାନ୍ତ ନିରର୍ଥକ । ଦେହବାଦୀ ପ୍ରେମର ଉଦଗ୍ରକାମନା ରେଜିନା ଓ୍ୱଲସନ ପରି ବାଳିକାର ଦେହ ମନକୁ କବଳିତ କରି ଦେଇଥିଲା । ପ୍ରେମର ଯୋଡ଼ି ହେବାପାଇଁ ସେମାନଙ୍କ ମଧ୍ୟରେ କିଛି ମେଳନ ହିଁ ନଥିଲା ।

କିରକେଗାର୍ଡ଼ ତାଙ୍କ 'ଦି ଡାଇରୀ ଅଫ ସୀଡ୍ୟୁସର' ଆଦି ରଚନା ମାନଙ୍କରେ ପ୍ରେମର ଏତେ ଜୀବନ୍ତ ଓ ସମ୍ବେଦନଶୀଳ ବର୍ଣ୍ଣନା ଦେଇଛନ୍ତି ଯେ ତାହା ତାଙ୍କ ନାରୀ ରସିକତାର ବିରଳ ଦୃଷ୍ଟାନ୍ତ ହୋଇ ରହିଯାଇଛି । ତାହା ଉପନ୍ୟାସର କାଳ୍ପନିକା ପ୍ରେମ କାହାଣୀ ଠାରୁ ଆହୁରି ସରସ ଓ ଚିତ୍ତ ପ୍ରବୋଧକ ହୋଇ ପାରିଛି ।

ତାଙ୍କ ଡାଇରୀ ଏକାନ୍ତ ବିରଳ ଓ ପରିବୋଧନୀୟ କବିତାର ଆବେଦନ ସୃଷ୍ଟି କରିଛି । ପ୍ରେମର ଭାବମୟ ସୃଷ୍ଟିକୁ ସେ ଯେପରି ବାରି ପାରିଛନ୍ତି । ଜୋହନସ୍ ମୁହଁରେ କୁହାଇଛନ୍ତ; 'I am watching the birth of love within her. I am even almost in visibly present when I visibly sit by her side. My relation to her is that of an unseen partner in a dance which is danced by only one, when it should really be danced by two." ।

କିରକେଗାର୍ଡ଼ କାବ୍ୟିକତାର ବଳୟ ଡେଇଁ ମୁଗ୍‌ଧ ପ୍ରେମାନୁଭୂତିକୁ କ୍ରମଶଃ ରହସ୍ୟର ବଳୟ ଆଡ଼କୁ ନେଇଯାଇଛନ୍ତି । ପ୍ରାଣରେ ଅତୁଳନୀୟ ପ୍ରେମର ସ୍ୱର୍ଗୀୟ ସୁଷମାକୁ ଯେପରି ଅନୁଭବ କରିଛନ୍ତି । ତାଙ୍କ ଡାଇରୀ ଆମ୍ବିକତା ଦୃଷ୍ଟିରୁ ସତେ ଯେପରି ଜଣେ ଟ୍ରୋବାଡୋର କବିର ରହସ୍ୟମୟ ଭାଷା ହୋଇ ଯାଇଛି । ନିଜକୁ ସେ ଦୃଶ୍ୟ ଅଦୃଶ୍ୟ ନଟ ବୋଲି ତର୍କଣା କରିଛନ୍ତି । ନାଚି ନାଚି ସେ ନର୍ତ୍ତକୀର ହାତଧରି ସତେଯେପରି ଏକ ବେଦନାଭରା ସଙ୍ଗୀତର ଆସର ଭିତରକୁ ଚାଲି ଯାଉଛନ୍ତି ।

କିରକେଗାର୍ଡ଼ ପ୍ରେମ କଥାରେ ବାରବାର ବଡ଼ ଅଦ୍ଭୁତ ଢଙ୍ଗରେ କବିତାର ସ୍ପର୍ଶ ଆଣି ଦେଉଥିଲେ । ତାଙ୍କ ଆଗରେ ଏଥିପାଇଁ ପ୍ରଚୁର ଏସ୍‌ଥେଟିକ୍ ସଂଶୟମାନ ସୃଷ୍ଟି ହୋଇଛି । ତାଙ୍କ ରଚନା ଗୁଡ଼ିକରେ ତାଙ୍କର ଏହି ଏସ୍‌ଥେଟିକ୍ ଡିଲେମାର ପ୍ରଭାବ କମ୍ ନୁହେଁ ।

ତାଙ୍କ ଡାଇରୀର ସଂରଚନା ଓ ବିଷୟ ପରିଯୋଜନାରେ ଏହି ଏସଥେଟିକ ଡିଲେମାଜନିତ ଆଙ୍ଗିକ ଆମ୍ବିକର ପ୍ରଭାବ ରହିଛି ।

କିରକେଗାର୍ଡ଼ ନିଜକୁ କବି ବୋଲି ଦାବି କରୁଥିଲେ । କବି ପରି ବଞ୍ଚିବା ଦର୍କାର ବୋଲି ସେ ଅନୁଭବ କରିବା ପାଇଁ ଚେଷ୍ଟା କରିଛନ୍ତି । କାରଣ କବି ପାର୍ଥିବ ଗତାନୁଗତି କତାରେ ବଞ୍ଚେ ନାହିଁ । ବଞ୍ଚେ କୋମଳ ଏସ୍‌ଥେଟିକସ୍‌ର ଉଷୁମ କୋଳରେ । ଏସଥେଟିକସ୍ ମଣିଷର ଅନ୍ତରକୁ ଭାବରେ ଭରିଦିଏ । ତାକୁ ଯାବତୀୟ ସାଂସାରିକ ବଞ୍ଚନା ଭିତରେ ବି ଉଲ୍ଲସିତ କରି ରଖିଥାଏ । କିରକେଗାର୍ଡ଼ ତାଙ୍କ ଡାଇରୀକୁ ଇତିହାସ ତଥ୍ୟଦ୍ୱାରା ପ୍ରାମାଣିକ କରିନାହାନ୍ତି କିଶୁଦ୍ଧ କାଳ୍ପନିକ କାହାଣୀ କରିଦେଇ ନାହାନ୍ତି । ବରଂ ଏସ୍‌ଥେଟିକ ବିଭୋର ପଣିଆର ଶୁଦ୍ଧ କବିତାମୟ ଅଭିଲିପି କରି ଦେଇଛନ୍ତି ।

କର୍ଡେଲିଆ ଚରିତ୍ର ଜରିଆରେ କିରକେଗାର୍ଡ଼ ରେଜିନାର କ୍ଷୁବ୍‌ଧ ମାନସିକତାର ଚିତ୍ରଣ କରିଛନ୍ତି । ସେ ଚରମ ପରିକ୍ରାନ୍ତି ଭୋଗିଛି । ନିର୍ବନ୍ଧ ଭାଙ୍ଗିଯିବା କାରଣରୁ ସେ ଅଶାନ୍ତ

ହୋଇ ଉଠିଛି । ସେ ଉଭୟଙ୍କର ପ୍ରତାରଣାର ଶିକାର ହୋଇଛି ବୋଲି ମନେ କରିଛି । ମାତ୍ର ଏତିକି ଦୁଃଖ ଯେ, ସେ ତଥାପି ନିର୍ବନ୍ଧ ଭାଙ୍ଗିଥିବା, ପ୍ରେମର ପ୍ରତାରଣା କରିଥିବା କିରକେଗାର୍ଡ଼୍ଙ୍କୁ ବୁଝି ପାରିନାହିଁ ।

କିରକେଗାର୍ଡ଼ ଜୋହାନସ ଓ କର୍ଡ଼େଲିଆ ଚରିତ୍ର ଜରିଆରେ ଗୋଟେ ଡାଇରୀ ଲେଖିଛନ୍ତି ସତ । ସେ ଡାଇରୀ ଥିଲା ତାଙ୍କ ନିଜର ପ୍ରେମ କାହାଣୀ ଯେତେ ନୁହେଁ; ସେତେ ବେଶୀ ତାଙ୍କ ଉତ୍ସର୍ଗୀକୃତ ଶୃଙ୍ଗାରୀ ଏସ୍ଥେଟିକସ୍‌ର ଭାଷା । କିନ୍ତୁ, ତାହା ଥିଲା ବିଶ୍ୱର ଏକ ଅନନ୍ୟ ପ୍ରେମକାହାଣୀ; ଯେଉଁଥିରେ ଭୋଗ ଅପେକ୍ଷା ବଳିଦାନର ପ୍ରଶ୍ନ ଅଧିକ ଜଡ଼ିତ ଥିଲା ।

କିରକେଗାର୍ଡ଼ ତାଙ୍କ 'ଆଇଦର ଅର' ରେ ଏହି ରୂପକ ଚିତ୍ରଟିକୁ ଆହୁରି ମାର୍ମିକ କରି ଆଙ୍କିଛନ୍ତି । କର୍ଡ଼େଲିଆ ଏକ ସ୍ୱୀକାରୋକ୍ତିରେ କହିଛି ତାଙ୍କର ବୌଦ୍ଧିକ ଜୀବନ ସମକ୍ଷରେ ତାର ନାରୀ ସତ୍ତା କ୍ଷୁଦ୍ର ହୋଇ ଯାଉଥିଲା । ବେଳେବେଳେ କିରକେଗାର୍ଡ଼ ଏତେ ଆସକ୍ତି ଏତେ ଭାବପ୍ରବଣତା ଦେଖାଇଥିଲେ ଯେ ରେଜିନା ଭୟରେ ଥରି ଯାଉଥିଲେ ।

ବେଳେବେଳେ କିରକେଗାର୍ଡ଼ ରେଜିନାକୁ ଅପରିଚିତ ଲାଗୁ ଥିଲେ ତ ବେଳେବେଳେ ଆସକ୍ତ ପ୍ରେମିକ ପରି ଲାଗୁଥିଲେ । ସେ କର୍ଡ଼େଲିଆ ହେଉ କି ରେଜିନା ହେଉ ତାଙ୍କ ମୁହଁରେ ଦିଆଯାଇଥିବା ଭାଷା ହୃଦୟ ବିମଥିତ ଭାଷା ।

ମଣିଷର ଜୀବନ ବୃତ୍ତରେ ଯୌନ ଏକ ବଡ଼ ଅଂଶ । ପ୍ରାଣ ସ୍ପନ୍ଦନର ମୂଳାଧାର । କିରକେଗାର୍ଡ଼ ପ୍ରେମକୁ ଜୀବନର ସର୍ବୋତ୍ତମ ସୃଜନଶୀଳତା ବୋଲି କହିଛନ୍ତି । ଜଣେ ପ୍ରେମର ପଡ଼ିଥିବା ପୁରୁଷ କ୍ରମଶଃ ତାର ଏସ୍ଥେଟିକ୍ ଅନୁଭବ ଭିତରେ କଳାର ସର୍ଜନା କରୁଥାଏ । ସେମିତି କଳାକାରର ଅଲକ୍ଷରେ ଜଣେ ବାଳିକାର ସଂବେଗାତ୍ମକ ପ୍ରେମକୁ ମଧ୍ୟ କୌଣସି ପ୍ରକାରରେ ଅସ୍ୱୀକାର କରିହେବନି । ଏହି କଥାକୁ କିରକେଗାର୍ଡ଼ଙ୍କ ଡାଇରୀ ପ୍ରକାଶ କରିନି । ମାତ୍ର ତାହା କଳା କଳ୍ପନା ଜଗତରେ ସବୁଠାରୁ ମୂଲ୍ୟବାନ ।

କିରକେଗାର୍ଡ଼ଙ୍କ 'ଆଇଦର/ଅର'ରେ ଜୋହାନସ୍ କର୍ଡ଼େଲିଆଙ୍କୁ ସମ୍ବୋଧନ କରି ଯେଉଁ ଚିଠି ଲେଖିଛି ତାହାର ପ୍ରେମାନୁଭୂତି ଆଉ କଳ୍ପନା ବିଳାସକୁ ଲକ୍ଷ୍ୟ କରାଯାଇପାରେ । 'My Cordelia ! because I have loved you so short a time you almost seem to fear that I may have loved someone before. x x x So your eyes has taught me to find myself in myself x x x, then I discover that my love for you is as old as myself. Thy Johannes.'

ମୋ ପ୍ରେମର କର୍ଡ଼େଲିଆ ! ଗୋଟେ ପ୍ରାଚୀନ କାହାଣୀରେ ଲେଖାଅଛି ଯେ ଗୋଟିଏ ନଦୀ ଗୋଟେ ଝିଅ ପ୍ରେମରେ ପଡ଼ିଥିଲା । ମୋ ଆତ୍ମା ସେ ନଦୀପରି ତୁମକୁ ଆଜି ଭଲ ପାଉଛି । ଯେତେବେଳେ ମୁଁ ତୁମର ବଢ଼ିଲା ସ୍ତନ ଉପରେ ଆଖି ପକାଏଁ ଆଉ ବେଶି କିଛି ସମୟ ଆଖି ବନ୍ଦ କରେ ନାହିଁ । ସେତେବେଳେ ମୁଁ କଳ୍ପନା ନେତ୍ରରେ ଗୋଟେ ସୁନ୍ଦରୀ

ପରୀର ମୁହଁ ହିଁ ଦେଖୁଥାଏ । 'That when I rest my head upon your breast and then almost close my eyes, but peep up through my eyelids. Then I see an angel's face.' ଯେତେବେଳେ ସ୍ୱତ କହୁଛି ତମର ବଢ଼ିଲା ବଢ଼ିଲା ଦୁଇଟି ସ୍ତନ ଉପରେ ମୁଁ ଦୃଷ୍ଟି ନିକ୍ଷେପ କରେ ସେତେବେଳେ ମୁଁ ଆଖି ବନ୍ଦ କରି ପରମଶାନ୍ତିରେ କେବଳ ଶୋଇଯିବାକୁ ଇଚ୍ଛାକରେ ।'

ଏପରି ଲେଖା ସତେ ପ୍ରେମର ଅନ୍ଭବହୁତ ଅନୁଭବ ଥିବା କେତେ ମଣିଷଙ୍କ ହୃଦୟକୁ ଦୋହଲାଇ ଦେବ ତାହା ସବୁକାଳର ମଣିଷ ଉପଲବ୍‌ଧି କରି ପାରିବେ । ଏହି ଗଦ୍ୟଭାଷା କେତେଧାଢ଼ି ହୃଦୟକୁ ମଛି ଦେବାରେ ନିତ୍ୟକାଳର ଅନନ୍ୟ କବିତା ନୁହେଁତ ଆଉ କଣ ? ଶୁଦ୍ଧ କବିତା ପାଷାଣ୍ଡର ହୃଦୟକୁ ବି ଭାବରେ ମୋହିଦିଏ । ତା'ର ମନ ଓ ଚେ଼ତନାକୁ ସିକ୍ତ କରିଦିଏ ।

କିରକେଗାର୍ଡ଼ ପୃଥିବୀକୁ ଗୋଟେ ଅଦ୍ଭୁତଶୈଳୀ, ଗୋଟେ ଏକାନ୍ତ ସୃଜନଶୀଳ ଶୃଙ୍ଗାରିକ ଚେ଼ତନା ଦାନ କରି ଯାଇଛନ୍ତି; ଯାହାର ପଟାନ୍ତର ନାହିଁ । ଏକଲା ମଣିଷର ଜୀବନବଞ୍ଚିବା, ତାର ପ୍ରେମ, ଯନ୍ତ୍ରଣା ତା ଅଭ୍ୟନ୍ତରର ଏକାନ୍ତ କବିତ୍ୱପୂର୍ଣ୍ଣ ବିଷାଦ, ତା ପ୍ରାଣର ସୃଜନଶୀଳତା, ତାର ବଳିଦାନ ସବୁକୁ ସେ ଯଥାସମ୍ଭବ ଗୌରିବାନ୍ୱିତ କରିବା ପାଇଁ ଚେଷ୍ଟା କରିଛନ୍ତି । ଏକଲା ମଣିଷକୁ ସେ ନିତ୍ୟ କାଳର ଭାବରାଜ୍ୟରେ ଅଭିଷିକ୍ତ କରି ଯାଇଛନ୍ତି । ଏକଲା ମଣିଷ ଭିତରେ ଥିବା ସୃଜନଶୀଳ ସମ୍ଭାବନାକୁ ସେ ନଭଶ୍ଚୁମ୍ବୀ ବୋଲି ବର୍ଣ୍ଣନା କରି ଯାଇଛନ୍ତି ।

ସଂଘ, ସମାଜ, ରାଷ୍ଟ୍ର ଓ ଧର୍ମ ଆଗରେ ଏକଲା ମଣିଷର ଅସହାୟତାକୁ ସେ ନାନା ମତେ ବିଶ୍ଳେଷଣ କରିଛନ୍ତି । ଏ ସମସ୍ତ ସମଷ୍ଟିଗତ ବିଷୟଠାରୁ ଛଳଛଳ ଶ୍ରଦ୍ଧା ଓ ସୃଜନଶୀଳତାର ଗୌରବ ଦୃଷ୍ଟିରୁ ଏକଲା ମଣିଷର ଶୁଦ୍ଧତାକୁ ସେ ଅଧିକ ସ୍ୱୀକାର କରିଛନ୍ତି । ଅସହାୟ ଏକଲା ମଣିଷକୁ ସେ ତାଙ୍କ ଆତ୍ମାର ସମର୍ଥନ ଦେଇଛନ୍ତି । କିରକେଗାର୍ଡ଼ଙ୍କ ରଚନାସବୁ ପ୍ରଥମ ପୁରୁଷର ବଚନ ଯେପରି । ସେ ପ୍ରେମର କଥା କହିଥାଉ କି ପରମର କଥା କହିଥାଉ । ଏହି ପ୍ରଥମ ପୁରୁଷର ବଚନ (a first Person Accou ') ଡାଇରୀରେ ହେଉ କି ଚିଠିରେ ହେଉ ସେହି ଏକଲା ମଣିଷର ଅନୁଭବ ଭିତରେ ହିଁ ସୀମିତ ଥିଲା । କିରକେଗାର୍ଡ଼ ସର୍ବଦା ପ୍ରଥମ ପୁରୁଷର ମନୋଭାବକୁ ବ୍ୟକ୍ତ କରିବା ପାଇଁ ଅଙ୍ଗୀକାରବଦ୍ଧ ଥିଲେ । ତାଙ୍କ ବିପୁଳ ସୃଷ୍ଟି କର୍ମରେ ସେ ସେହି ଏକଲା ମଣିଷ ଭାବେ ପୃଥିବୀ ଓ ପୃଥିବୀର ବୃହତ୍ତର ଜ୍ଞାନ ମଣ୍ଡଳ ସହିତ ସମ୍ବନ୍ଧ ସ୍ଥାପନ କରିଛନ୍ତି ।

କିରକେଗାର୍ଡ଼ଙ୍କ ଅଧିକାଂଶ ରଚ଼ନାର ସଂଯୋଗକାରୀ ସଂପାଦକ, ବର୍ଣ୍ଣନାକାରୀ ଏପରିକି ଅନେକ ଚ଼ରିତ୍ର ସହିତ ନାୟକ ନାୟିକା ତାଙ୍କର ଛାୟାପୁରୁଷ । ସେ ସମସ୍ତ ଯେପରି ତାଙ୍କର ଛଦ୍ମନାମ । ଗୋଟେ ଛଦ୍ମନାମରେ ଜଣେ କାଳ୍ପନିକ ପୁରୁଷ ଭିକ୍ଟର ଏରିମିଟା (Victor Eremita) ଙ୍କୁ କିରକେଗାର୍ଡ଼ ତାଙ୍କ ଆଇଦରଅରର ସଂପାଦକ କରିଛନ୍ତି ।

ଏପରି ଛଦ୍ମନାମ ବ୍ୟବହାର କରକେଗାର୍ଡ଼ ଆହୁରି ବ୍ୟକ୍ତିଗତ ଗୋପନ ଜୀବନକୁ ଅଧିକ ନାଟକୀୟତା ଭିତରେ ପ୍ରକାଶ କରି ପାରିଛନ୍ତି । ଏହି ଶୈଳୀ ବ୍ୟବହାର କରିବା ଦ୍ୱାରା ତାଙ୍କ ସ୍ୱନିଷ୍ଠ ଅନୁଭବ ତଥା ଏକଲା ମଣିଷର ସ୍ୱପ୍ନ ଓ ବିଷାଦ ଅଧିକ ଅର୍ଥପୂର୍ଣ୍ଣ ଅଭିବ୍ୟକ୍ତି ଲାଭ କରି ପାରିଥିଲା ।

କିରକେଗାର୍ଡ଼ଙ୍କ ରଚନାରେ କିଛି ଦ୍ୱନ୍ଦ୍ୱ ଓ କିଛି ସ୍ୱବିରୋଧ ଜଟିଳତା ବିଦ୍ୟମାନ ଥିଲା । କିରକେଗାର୍ଡ଼ଙ୍କ ‘Stages on Life’s way’ରେ ପ୍ରତିଫଳିତ କେତେକ ଦୃଷ୍ଟିଭଙ୍ଗୀ ତାଙ୍କର ପ୍ରଥମ ରଚନା “Right hand and Left hand”ଠାରୁ ଭିନ୍ନ ପ୍ରକାରର ଥିଲା । ଶବ ଆଗରେ କୌଣସି ସଂଶୟ ନଥାଏ । ଜିଇଁଥିବା ମଣିଷ ଆଗରେ କୁଢ଼ କୁଢ଼ ଡ଼ିଲେମା ଥାଏ । ଏସ୍‌ଥେଟିକ୍ ଜୀବନକୁ ବାଛି ନେଇ ଥିବା ମଣିଷ ଆଗରେ ଆହୁରି ବେଶୀ ।

ରଚ଼ନାଦର୍ଶକୁ ଅନୁସରଣ କରବା କ୍ଷେତ୍ରରେ କିରକେଗାର୍ଡ଼ ଆଦୌ ପରମ୍ପରା ବାଦୀ ନଥିଲେ; ଯଦିଓ ଐତିହ୍ୟ ଓ ପରମ୍ପରା ବିଷୟରେ ତାଙ୍କର ଯଥେଷ୍ଟ ସଚ଼େତନତା ଥିଲା । କିରକେଗାର୍ଡ଼ଙ୍କ ‘author hero identification’ ଏବଂ ପ୍ରଥମ ପୁରୁଷ ଆଙ୍ଗିକରେ ରଚ଼ନା ଶୈଳୀର ବ୍ୟବହାରକୁ ତାଙ୍କ ରଚ଼ନାଦର୍ଶର ଦୁଇଟି ନୂଆ ବିଷୟ ବୋଲି କୁହାଯାଇପାରେ । ଏହା ଦ୍ୱାରା ଅନୁଭବ ପ୍ରଧାନ ଅସ୍ତିତ୍ୱବାଦୀ ଚେତନାକୁ ସେ ସ୍ୱଛନ୍ଦରେ ପ୍ରକାଶ କରି ପାରିଛନ୍ତି ।

କିରକେଗାର୍ଡ଼ ତାଙ୍କ ରଚ଼ନାରେ କେତେବେଳେ କେମିତି ଛଦ୍ମ ନାମ ବ୍ୟବହାର କରିନାହାନ୍ତି ସେ ବିଧିବଦ୍ଧଭାବେ ପ୍ରତ୍ୟେକ ରଚ଼ନା କରିଛନ୍ତି । ନିମ୍ନୋକ୍ତ ଚ଼ରିତ୍ର ଜରିଆରେ କିରକେଗାର୍ଡ଼ ତାଙ୍କ ବ୍ୟକ୍ତିକେନ୍ଦ୍ରିକ ନବଚ଼େତନାକୁ ପ୍ରକାଶ କରିଛନ୍ତି । ଆଇଦର-ଅର ଭିକ୍ଟୋର ଏରିମିଟା-କୋପେନେ ହେଗାନ-ଫେବୃ ୧୮୪୩, ଫିଅର ଏଣ୍ଡ ଟ୍ରେମ୍ବଲିଙ୍ଗ୍-ଜୋହାନସ-ଜିସେଲେଣ୍ଟିଓ-୧୮୪୩, ରିପିଟେସନ-କନଷ୍ଟାଣ୍ଟିନ କନଷ୍ଟାଣ୍ଟିଅସ-୧୮୪୩, ଦିକନସେପ୍ଟ ମତ ଅଫ ଡ୍ରେଡ- ଭିଜିଲିୟସ ହଫନିନସ-୧୮୪୪, ଷ୍ଟେଜେସ ଅନ ଲାଇଫସୱେ-ହିଲାରି ଅଏ ବୁକବାଇଣ୍ଡର: ୟୁଲିୟମ ଆଫାମ୍, ଦିଜଜ୍, ଫ୍ରେଟର ଟେସିଟରନାସ-୧୮୪୫, କନୁକ୍ଲୁଡ଼ିଙ୍ଗ ପୋଷ୍ଟସ୍କ୍ରିପ୍ଟ ଟୁଦି ଫିଲୋସଫିକାଲ ଫ୍ରେଗମେଣ୍ଟଏ-ଜୋହାନସ କ୍ଲାଇମାକ୍ସ-୧୮୪୬, ଏନ ଆଟିକଲ; ଇନଦି ଫାଜରଲ୍ୟାଣ୍ଡ-୧୮୪୩-ଭିକ୍ଟର ଏରିମିଟା, ଫ୍ରେଟର ଟାସିଟରନସ ।

ଆଇନଗତ ଦଣ୍ଡବିଧାନକୁ ଡରି, ଭୟବଶତଃ କିରକେଗାର୍ଡ଼ ତାଙ୍କ ରଚନାମାନଙ୍କରେ ଏପରି ଛଦ୍ମନାମ ବ୍ୟବହାର କରି ନାହାନ୍ତି । ଲେଖାସହିତ ଲେଖକର ଅଭିନ୍ନତା ସ୍ଥାପନ ପାଇଁ କିରକେଗାର୍ଡ଼ ପ୍ରାକ୍ତନ ଲିଖନ ଶୈଳୀକୁ ପୂରାପୂରି ବଦଳାଇ ଦେଇଛନ୍ତି ।

କିରକେଗାର୍ଡ଼ ‘ଆଇଦର ଅର’ର ସାତ୍ୟୁସର କିମ୍ବା ଏଡ଼ିଟର ଭିକ୍ଟର ଏରିମିଟା ସହିତ ପରିଚିତ ହେବାକୁ ଚାହିଁ ନାହାନ୍ତି; ଯାହାକୁ ଏକ ଆତ୍ମଲୀନ ଭାବୁକ ଚ଼ରିତ୍ର କରି ସେ ଉପସ୍ଥାପନ କରିଛନ୍ତି । ଏପରି ଗୁଡ଼ାଏ ଛଦ୍ମ ଚରିତ୍ର ସୃଷ୍ଟି କରିଥିବାରୁ ପାଠକମାନେ ଯଦି ଅଯଥାରେ ସଂଶୟରେ ପଡ଼ିଥାନ୍ତି ତାହେଲେ କିରକେଗାର୍ଡ଼ ସେମାନଙ୍କୁ ସେପାଇଁ କ୍ଷମା

ମାଗିଛନ୍ତି । ସେ ଦୃଷ୍ଟିରୁ ତାଙ୍କ ଗ୍ରନ୍ଥ ସବୁ କେତେକାଂଶରେ ଅଧିକଥା ବା ମେଟାଫିକସନ ପରିଥିଲା ।

କିରକେଗାର୍ଡ଼ ତାଙ୍କ ବ୍ୟକ୍ତି ଜୀବନକୁ ତଥା ତାଙ୍କର ବଞ୍ଚିଥିବା ବାସ୍ତବ ଜୀବନକୁ ସେ ଯେପରି ଶାଶ୍ୱତ କାଳର ପାଠକଙ୍କ ପାଇଁ ସରସ ପ୍ରେମକାହାଣୀ କରି ଦେଇଛନ୍ତି । ସେ ଆଳଙ୍କାରିକ କବିତା ଓ ଶୂନ୍ୟଗର୍ଭ କଳ୍ପନାକୁ ବର୍ଜନ କରିଛନ୍ତି; ଅଥଚ୍ ଜୀବନକୁ ସେ କବିତାର ପରିଧି ଭିତରକୁ ଠେଲି ଦେଇଛନ୍ତି । ଅଦ୍ଭୁତ ପ୍ରକାର ଜିଦ୍ ଓ ଭାବପ୍ରବଣତା ଭିତରେ ସେ ବଞ୍ଚିଥିଲେ ।

ସେ ଯଦିଓ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ରକ୍ଷାପାଇଁ ନିଜ ସମାଧିରେ 'That Individual' ଲେଖିବା ପାଇଁ କହିଥିଲେ, ତଥାପି ସେ ବ୍ୟକ୍ତିଗତ ଜୀବନକୁ ଶାଶ୍ୱତ ଜୀବନର ସହଜ ପ୍ରବହମାନତା ଭିତରେ ଦେଖିଥିଲେ । ତାଙ୍କୁ ଲେଖାଲେଖି ଜରିଆରେ ସେ ଏକ ଚ଼ିରନ୍ତନ ସାର୍ବକାଳୀନ ଜୀବନର ମହତ୍ତ୍ୱ ପ୍ରତିପାଦନ କରିବାକୁ ଚାହିଁଥିଲେ ।

ଚ଼ରିତ୍ର ଓ ଲେଖକ କିରକେଗାର୍ଡ଼ଙ୍କ ରଚ଼ନାରେ ବାରି ହୋଇ ପଡ଼ିଛନ୍ତି  ନିଜନିଜ ଜୀବନ ଦୃଷ୍ଟିରେ । ଯେ କୌଣସି ସଚ୍ଚା ଅସ୍ତିତ୍ୱବାଦୀ ଲେଖକଙ୍କ ପରି କିରକେଗାର୍ଡ଼ ଲେଖା ଅପେକ୍ଷା ଲେଖକକୁ ଅଧିକ ମୂଲ୍ୟ ଦେଇଛନ୍ତି । ଜୀବନପ୍ରତି ସ୍ୱଚ୍ଛ ଦୃଷ୍ଟି ନଥିବା ଲେଖା ଯେତେ ଆଳଙ୍କାରିକ ହେଉ ପଛେ ତା'ର କୌଣସି ମୂଲ୍ୟ ନାହିଁ ବୋଲି କିରକେଗାର୍ଡ଼ ମନେ କରିଛନ୍ତି ।

କିରକେଗାର୍ଡ଼ ପ୍ରତ୍ୟେକ ରଚ଼ନାର ଗୁଣ ନିର୍ଣ୍ଣୟ କଲାବେଳେ 'କାବ୍ୟିକ ବାସ୍ତବତା (Poetic reality) ଓ ସୌନ୍ଦର୍ଯ୍ୟତାତ୍ତ୍ୱିକ ସମ୍ଭାବନା (Aesthetic Possibility) ସଂପର୍କରେ ପ୍ରଶ୍ନ ଉଠାଇଛନ୍ତି ।

ପ୍ରତ୍ୟେକ ମଣିଷ ତା ନିଜଭାବରେ ବଞ୍ଚିଥାଏ । 'Each individual dances alone' (Kierkegaard) ପ୍ରତ୍ୟେକ ମଣିଷର ଜୀବନ ଢାଞ୍ଚା ତେଣୁ ଅଲଗା ଅଲଗା । କିରକେଗାର୍ଡ଼ୀୟ ନାୟକ ସବୁ କାବ୍ୟିକ ଭାବେ ସୃଷ୍ଟି ହୋଇଛନ୍ତି ଓ ସୌନ୍ଦର୍ଯ୍ୟ ତାତ୍ତ୍ୱିକ ବାସ୍ତବତାକୁ ନେଇ ଗତିଶୀଳ ହୋଇଛନ୍ତି । କିରକେଗାର୍ଡ଼ୀୟ ଲେଖକୀୟ ସତ୍ତା ପୁଣି ସର୍ବକାଳର । ନର୍ଦ୍ଦିଷ୍ଟ ସମୟଖଣ୍ଡରେ ସେ ଲେଖକ କେବଳ ବଞ୍ଚେ ନାହିଁ । ସେ ସବୁକାଳର ମଣିଷଙ୍କ ପାଇଁ ତାର ଲେଖକୀୟ ଉପଲବ୍ଧିକୁ ଦାନକରିଥାଏ । ଜଣେ ଲେଖକ ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ଆତ୍ମଜୀବନୀ, ଡାଇରୀ ଯାହା ଲେଖୁ ସେଥିରେ ସବୁଠାରୁ ମୂଲ୍ୟବାନ ବିଷୟଟି ହେଉଛି ଲେଖକୀୟ ଉପଲବ୍ଧିର ପ୍ରକାଶ । ତା ବ୍ୟତୀତ କୌଣସି ଲେଖାର କିଛି ମୂଲ୍ୟ ନାହିଁ ।

କିରକେଗାର୍ଡ଼ଙ୍କ ରଚ଼ନାର ଚ଼େତନାଧର୍ମ ଉପରେ ସାର୍ତ ମନ୍ତବ୍ୟ ଦେଇ କହିଥିଲେ ହିଗେଲ ଥିଲେ କିରକେଗାର୍ଡ଼ଙ୍କ ପର୍ଯ୍ୟନ୍ତ ଅପ୍ରତିଦ୍ୱନ୍ଦ୍ୱୀ ଦାର୍ଶନିକ; ଯାହାଙ୍କ ଠାରୁ କିରକେଗାର୍ଡ଼ଙ୍କ ସ୍ଥିତବାଦୀ ଚେତନାର ବିପରୀତଧର୍ମୀ ଦର୍ଶନ ଆରମ୍ଭ ହୋଇଛି କିରକେଗାର୍ଡ଼ ଆତ୍ମଚେତନାକୁ ଅଧିକ ସ୍ୱୀକାର କରିବାରେ ହିଁ ହିଗେଲଙ୍କ ସହିତ ତାଙ୍କର ମତପାର୍ଥକ୍ୟ ହୋଇଥିଲା ।

ଜଣେ ଲେଖକଙ୍କ ସହିତ ଆଉ ଜଣେ ଲେଖକଙ୍କୁ ସାମିଲ କରିବାର କିରକେଗାର୍ଡ଼ୀୟ କୌଶଳ ଏକ ଚୀନାଖେଳ ବାକ୍ସ (Like the parts of a chinese puzzle box) ପରି । ବ୍ୟକ୍ତିର ଅନିବାର୍ଯ୍ୟ ନିଃସଙ୍ଗତା ସତ୍ତ୍ୱେ ପୃଥିବୀ ପାଇଁ ଗୋଟେ ସୌନ୍ଦର୍ଯ୍ୟ ବଳୟ ସୃଷ୍ଟି କରିବାପାଇଁ ଲେଖକ ଭାବେ କିରକେଗାର୍ଡ଼ଙ୍କ ଜୀବନ ତମାମ ଉଦ୍ୟମ ଜାରିରହିଥିଲା ।

କହିବା ନିଷ୍ପ୍ରୟୋଜନ ଯେ, କିରକେଗାର୍ଡ଼ଙ୍କ ରଚନାର ଲେଖକୀୟ ନାୟକ (ଅଥର ହିରୋ) ତାଙ୍କ ଅସ୍ତିତ୍ୱବାଦୀ ଚେତନାକୁ ଅତି ପ୍ରଭାବପୂର୍ଣ୍ଣ କରି ପ୍ରକାଶ କରିପାରିଛି । ଏହା ହୋଇନଥିଲେ ଲେଖାର ପ୍ରଭାବ ପାଠକକୁ ଏତେ ନିବିଡ଼ ଲାଗିନଥାନ୍ତା ।

ସ୍ଥିତିବାଦୀମାନେ ଈଶ୍ୱରହୀନତାର ଦର୍ଶନ ପ୍ରଚାର କରିଛନ୍ତି । ସେହିପରି ସମୟହୀନତା (Timelessness) ସେମାନଙ୍କ ଦର୍ଶନର ଅନ୍ୟ ଏକ ଦିଗ । ଅଥଚ କିରକେଗାର୍ଡ଼ ତାଙ୍କ ଦର୍ଶନର ଗୋଟେ ବିଶିଷ୍ଟ ଦିଗ ।

ଶୁଦ୍ଧତା (honesty) ତାଙ୍କ ଦର୍ଶନର ସବୁଠାରୁ ବଡ଼ ପ୍ରସଙ୍ଗ । ଜ୍ଞାନ ହେଉ ବା ଈଶ୍ୱର ହେଉ ସେଥିରେ ପ୍ରତି ଅଦମ୍ୟ ପିପାସା ବଢ଼ିବା ହେଉଛି ଅନୁଭବର ଗାଢ଼ତା; ଯାହା ଯେପରି ସତ୍ୟଶୀଳ ସେହିପରି ଶୁଚିବନ୍ତ ।

ଜଣେ ମନୁଷ୍ୟ ହୋଇ ତା ଅନ୍ତରରେ ଜ୍ଞାନ ପ୍ରତି ଶ୍ରଦ୍ଧା ନଥିଲେ ତା'ର ସାଧୁତା କିଛିନାହିଁ ବୋଲି ବୁଝିବାକୁ ପଡ଼ିବ । ଜ୍ଞାନହୀନ ଜୀବନ ସବୁଠି ସବୁ ସମୟରେ ଏକାନ୍ତ ଅସଫଳ ଜୀବନ । କିରକେଗାର୍ଡ଼ ଜ୍ଞାନ ଓ କବିତ୍ୱ ସହିତ ଶୁଦ୍ଧ ନାନ୍ଦନିକତାକୁ ଯୋଡ଼ିଛନ୍ତି । ମାତ୍ର ଜଣେ ମନୁଷ୍ୟ ଖାଲି ବୁଦ୍ଧିର ହେଉ ଆଉ ତର୍କ କରି ଉପଲବ୍ଧି କରୁ ବୋଲି କିରକେଗାର୍ଡ଼ ଚାହୁଁ ନଥିଲେ । ଆବେଗିକ ବିଶ୍ୱାସମୟତାକୁ ଉପଲବ୍ଧିର ଚାବିକାଠି ବୋଲି କିରକେଗାର୍ଡ଼ କହୁଥିଲେ ।

କିରକେଗାର୍ଡ଼ଙ୍କ ସମେତ ଅନେକ ସ୍ଥିତିବାଦୀ ଲେଖକ ଓ ଦାର୍ଶନିକ ବୁଦ୍ଧି ସର୍ବନାଶର ବାଟ ଫିଟାଇ ଦେବ ବୋଲି କହୁଥିଲେ । ଏକଲା ମଣିଷର ଅନୁଭବ ହେଉଛି ଏ ସଂସାରରେ ସବୁଠାରୁ କବିତ୍ୱମୟ ବିଷୟ । ଏକଲା ମଣିଷର ଅନୁଭବ ବି ଭାରି ନିରୁତା ଖାଣ୍ଟି ।

ଜଣକୁ କବି ହେବା ପାଇଁ ନିଜ ଜୀବନର କିଛି ଅଧିକ ଦୁଃଖ ଓ ବଞ୍ଚନା ସବୁବେଳେ ସହାୟତା କରିଥାଏ । କିରକେଗାର୍ଡ଼ଙ୍କ କବିତ୍ୱର ମୂଳଉତ୍ସ ଥିଲା ତାଙ୍କର ବିଷାଦ ନିର୍ଜିତ ବିକ୍ଷତ ଜୀବନ । ଆତ୍ମାକୁ ଶୋକ ଜର୍ଜରିତ ନକଲେ, ଅନ୍ତରକୁ ବିଷାଦଗ୍ରସ୍ତ ନକଲେ ସମୁଚ୍ଚ ଭାବର ଉଦୟ ହେବ୍‌ନି । ବିଷାଦବୋଧ ଜୀବନମୟ କବିତାରେ ଯୋଡ଼ି ହୋଇଗଲେ ତାହା ମହାର୍ଘ ହୋଇପଡ଼େ ।

ଗୋଟେ ଅନନ୍ୟ ନାନ୍ଦନିକ ଅନୁଭବ ପାଇଁ, ଗୋଟେ ଶ୍ରଦ୍ଧାନ୍ୱିତ କବିତ୍ୱର ଉପାର୍ଜ୍ଜନ ପାଇଁ ବିଷାଦ ଓ ଏକାକୀତ୍ୱକୁ ବରଣ କରିବା ପୂର୍ବକ ସେ ତାଙ୍କ ଜୀବନକୁ ବାଜି ଲଗାଇଥିଲେ ଯେପରି ।

ବିସର୍ଜନରେ ପ୍ରାପ୍ତି, ବିରହରେ ମିଳନ ଅନୁଭବ କରିବା ପାଇଁ ସେ ଚାହିଁଛନ୍ତି । ପ୍ରତ୍ୟେକ ନିଜ ନିଜ ଭାବରେ ଗୋଟେ ଶୈଳୀ, ଗୋଟେ ଭାଷା ବାଛି ନେଇଥାନ୍ତି । ଏହା ବଡ଼ଲେଖକ ମାନଙ୍କର ଗୁଣ । ନିଜ ପାଇଁ ସେମାନେ ନୂଆ ଶୈଳୀଟିଏ ବାଛିଥାନ୍ତି । କିରକେଗାର୍ଡ଼ ତାହାହିଁ କରିଛନ୍ତି । ତାଙ୍କ ଡାଇରୀ ସାହିତ୍ୟ ତାଙ୍କ ନିଜର ଗୋଟେ ଫର୍ମ । ଆଉ ତାଙ୍କ ପ୍ରଥମ ପୁରୁଷ ଆଙ୍ଗିକ ତାଙ୍କ ନିଜ ଶୈଳୀର ପୁଣି ଏକ ଅଂଶ ।

କିରକେଗାର୍ଡ଼ ତାଙ୍କ ଦାର୍ଶନିକ ବିଚାରରେ ସକ୍ରେଟିସ୍‌ଙ୍କୁ ବେଶୀ ମାନ୍ୟତା ଦେଇଛନ୍ତି । କାରଣ ସକ୍ରେଟିସୀୟ ମହତ୍ୱ ହେଉଛି ବଳିଦାନର ପରକାଷ୍ଠା । କିରକେଗାର୍ଡ଼ ଯେଉଁଥିପାଇଁ କହୁଥିଲେ 'My task is a Sacratic task.' । କିରକେଗାର୍ଡ଼ ପୁଣି ନିଜକୁ ଜଣେ ଟ୍ରାଏଲମ୍ୟାନ (trial man) ଭାବେ ବିଚାରିଛନ୍ତି । ଲେବୋରଟାରୀରେ ଗୋଟେ ଅସହାୟ ଠେକୁଆ ଭଳି ନିଜକୁ ଅନୁଭବ କରିଛନ୍ତି ।

କିରକେଗାର୍ଡ଼ଙ୍କ ପରି ଅନେକ ଅସ୍ତିତ୍ୱବାଦୀ ମଣିଷ ଜୀବନକୁ ଅନୁପମ ବୋଲି ଜ୍ଞାନ କରିଛନ୍ତି 'All men are good.' । ମଣିଷ ବିଷୟରେ ଉଚ୍ଚ ମତ ପୋଷଣ କରିବା ଓ ନାରୀପ୍ରେମକୁ ସୃଜନଶୀଳତାର ସର୍ବୋତ୍ତମ ଆଧାର ବୋଲି ଜ୍ଞାନ କରିବା ଏକ ବଡ଼ କବିତ୍ୱମୟ ବ୍ୟାପାର ବୋଲି କୁହାଯାଇପାରେ; ଯାହା କିରକେଗାର୍ଡ଼ୀୟ ଉପଲବ୍ଧିକୁ ଏତେ ଅନ୍ତରୀଣ ଭାବେ ପ୍ରାଣମୟ କରିଛି ।

ପତିପତ୍ନୀ ପ୍ରେମର ସ୍ୱାଧୀନତାକୁ ସର୍ବଦା ବିପନ୍ନ କରନ୍ତି । କର୍ତ୍ତବ୍ୟର ତାଡ଼ନା ଓ ସାଂସାରିକ ଚାପ ଭିତରେ କେହି କାହାପାଇଁ ପ୍ରେରଣାର ଉତ୍ସ ହୋଇ ପାରନ୍ତି ନାହିଁ । ସେମାନେ ପ୍ରେମ ପାଆନ୍ତିନି ଦେଇ କି ନେଇ ପାରନ୍ତିନି; ଚାପ ପ୍ରୟୋଗ କରନ୍ତି ଯା ।

ଟ୍ରୋବାଡୋର ଓ ସୁଫୀ କବିମାନଙ୍କ ପରି କିରକେଗାର୍ଡ଼ ନାରୀଙ୍କୁ ମାଧୁରୀର ଅବତାରୀ ବୋଲି ଜ୍ଞାନ କରିଛନ୍ତି ଓ ପରକୀୟା କବିତ୍ୱର ପ୍ରସ୍ରବଣ ବୋଲି ମନେ କରିଛନ୍ତି । ଯେଉଁଥିପାଇଁ କିରକେଗାର୍ଡ଼ କହିଛନ୍ତି :— କିଏ କହ ତ ପତ୍ନୀ ପ୍ରେମରେ ସୌନ୍ଦର୍ଯ୍ୟ ଶାସ୍ତ୍ରୀ ବୋଲାଇଛି ? କିଏ କହତ କବି ହୋଇଛି ? ନାରୀକୁ ଯେତେଦିନ ପର୍ଯ୍ୟନ୍ତ ଜଣେ ଶୁଦ୍ଧ ପ୍ରେରଣାର ସାମଗ୍ରୀ ବୋଲି ମନେ ନକରିଛି ସେତେଦିନ ପର୍ଯ୍ୟନ୍ତ ତାର କବିତ୍ୱର ସ୍ଫୂର୍ତ୍ତି ହେବନାହିଁ ।

ନାରୀ ଭିତରେ ସେ କବିତାର ଅନନ୍ତ ସମ୍ଭାବନାକୁ ଦେଖିଛନ୍ତି ଓ ନାରୀ ପ୍ରେମ ଭିତରେ କବିତାର ଗତି ଓ ବିସ୍ତାରକୁ ଅନୁଭବ କରିଛନ୍ତି । କିରକେଗାର୍ଡ଼ ଥିଲେ ଅତିମାତ୍ରାରେ ସ୍ମୃତିପ୍ରିୟ ଓ ଅତୀତର ଶୈଶବ ସ୍ମୃତି ପ୍ରତି ବିମୋହିତ । ଥରେ ସେ କହିଥିଲେ, ଅଭିଜ୍ଞତା ଅର୍ଜନ କରିବା କବିର କାମ ନୁହେଁ ବିଗତ ସ୍ମୃତିସ୍ନିଗ୍ଧ ସଂପର୍କକୁ ମନକୁ ଆଣି ଆମୋଦିତ ହେବା । 'The task of the poet, is not to experience a relationship, but to recall it.'

କିରକେଗାର୍ଡ଼ ହେଉଛନ୍ତି ଯଥାର୍ଥରେ ଅସ୍ତିତ୍ୱବାଦର ଜନକ; ଯାହାର ଆଧୁନିକ ପ୍ରବକ୍ତା ହେଉଛନ୍ତି ଫରାସୀ କଥାଶିଳ୍ପୀ ଜାଁପଲସାର୍ତ । ଜଣେ ବଡ଼ ଦାର୍ଶନିକ ଜଡ଼ ବିଜ୍ଞାନର

ଯେତେ ନିକଟବର୍ତ୍ତୀ ନୁହେଁ ସେତେ ସନ୍ନିକଟ ପ୍ରକୃତରେ କବିତାର । କିରକେଗାର୍ଡ଼ ସେହିପରି ଜଣେ ଦାର୍ଶନିକ ଥିଲେ ଯେ ମଣିଷକୁ ବିଜ୍ଞାନର ସର୍ବନାଶୀ କବଳରୁ ଉଦ୍ଧାର କରି ତା ଆତ୍ମାର ବିଳାସ ପାଇଁ କବିତା ଆଡ଼କୁ ନେଇ ଯାଇଛନ୍ତି । କବିତା ଜୀବନର ବିଡ଼ମ୍ବନା ଅବସ୍ଥାକୁ ହିଁ ବସ୍ତୁତଃ ଚିତ୍ରଣ କରିଥାଏ । ମଣିଷ ସ୍ୱପ୍ନ ଦେଖେ ପ୍ରକାରେ ଆଉ ଜୀବନ ବଞ୍ଚିବାକୁ ବାଧ୍ୟହୁଏ ଆଉ ପ୍ରକାରେ । ସଂସାରର ଯାବତୀୟ ସ୍ଥୂଳତା ତାକୁ ଅସଲ କବିତା ଠାରୁ ଦୂରକୁ ଘୁଞ୍ଚାଇ ନିଏ ।

ଅସ୍ତିତ୍ୱବାଦୀ ଲେଖକମାନଙ୍କ ମଧ୍ୟରେ ଆଙ୍ଗିକ ସୃଷ୍ଟି କରିବାରେ କିରକେଗାର୍ଡ୍ ଅଧିକ ଯତ୍ନ ଓ ପାରଦର୍ଶିତାର ପରିଚୟ ଦେଇଛନ୍ତି । ମିଥ୍ ହେଉ କି କାହାଣୀ ହେଉ କାହାଣୀର ଚରିତ୍ର ସହିତ ଏକାତ୍ମ ହେବାକୁ କିରକେଗାର୍ଡଙ୍କ ଲେଖନଗତ ଚେଷ୍ଟା ଅତୁଳନୀୟ । ଆଙ୍ଗିକ ସହିତ ପୁଣି ଚିନ୍ତା ଓ ଚେତନାର ସମନ୍ୱୟ କିରକେଗାର୍ଡ଼ଙ୍କ ବିଶେଷ ଲକ୍ଷ୍ୟଥିଲା ।

ଫରାସୀ ବିଦୂଷୀ ସାଇମନ୍‌ଡ଼ି ବାଭୋର ତାଙ୍କ ପ୍ରବନ୍ଧ 'କିରକେଗାର୍ଡ଼ ଓ ହାଇଡ଼ଗାର' ନଲେଖିବା ପର୍ଯ୍ୟନ୍ତ ଅସ୍ତିତ୍ୱବାଦ ଶବ୍ଦ ସହିତ ବିଶେଷ ପରିଚିତ ହୋଇ ପାରିନଥିଲେ । ଏହି ଅସ୍ତତ୍ୱବାଦ ଶବ୍ଦଟିକୁ ଦାର୍ଶନିକ ଅର୍ଥରେ ପ୍ରଥମେ କିରକେଗାର୍ଡ଼ ବ୍ୟବହାର କରିଥିଲେ । କିରକେଗାର୍ଡ଼ ପୁଣି ନିର୍ବାଚନ (choice)ର ପ୍ରଶ୍ନ ଉଠାଇଛନ୍ତି । ଜୀବନରେ କିଛି ବାଛିବା ଓ ଗ୍ରହଣ କରିବା ଜନିତ ରୁଚିବୋଧ ସହିତ ବ୍ୟକ୍ତିତ୍ୱର ସମ୍ବନ୍ଧ ଅତ୍ୟନ୍ତ ନିବିଡ଼ । ଜଣକର ସୌନ୍ଦର୍ଯ୍ୟ ପ୍ରତି ରୁଚି ରହିବା ସ୍ୱାଭାବିକ; ମାତ୍ର ତାହା ସ୍ୱତଃସ୍ଫୂର୍ତ୍ତ; ବ୍ୟାବହାରିକ ନୁହେଁ । ଭଲମନ୍ଦ ମଧ୍ୟରେ ଚରମ ପାର୍ଥକ୍ୟ 'ଆଇଦର ଅର' ଉପରେ ପର୍ଯ୍ୟବସିତ ।

କିରକେଗାର୍ଡ଼ ଯୁକ୍ତି କରି କହନ୍ତି ଯେ, ଜଣେ ବାଳିକାର ପ୍ରେମ ଯେହେତୁ ସ୍ୱତଃସ୍ଫୂର୍ତ୍ତ ହୃଦୟରୁ ଜାତ ସେହେତୁ ତାହା ତାର ନିର୍ବାଚନର ବିଷୟ ନୁହେଁ । ସେ ସବୁକଥା ସହିତ ମିଳାଇ ବିଚାରସମ୍ମତ ଭାବେ ଏପରି ନିଷ୍ପତ୍ତି ନେଇନି ।

ଜଣେ ବ୍ୟକ୍ତିର ଏସ୍‌ଥେଟିକ୍ ରୁଚି ତତ୍‌କ୍ଷଣିକ ନୁହେଁ, ବହୁ ପ୍ରଶ୍ନ ଯୁକ୍ତ ସମସ୍ୟା ସହିତ ତାହା ନାନାଭାବରେ ଜଡ଼ିତ । ସେ ଚରମ ଭାବରେ ଯେ କଡ଼ କି ସେ କଡ଼ କିଛି ଠିକ୍ କରିପାରେନା । ତା ଆଗରେ ନୀତିଗତ ତଥା ରୁଚିଗତ ବିଭିନ୍ନତା ମଧ୍ୟ ନାନା ଜଟିଳତା ସୃଷ୍ଟି କରେ । ଦୁଃଖ ଓ ନିଃସଙ୍ଗତାର ଯନ୍ତ୍ରଣା ସତ୍ତ୍ୱେ, ସଂସାରିକ ସୁଖକୁ ବିସର୍ଜି ଦେଇ ଜଣେ ଏସ୍‌ଥେଟିକ୍ ଜୀବନକୁ ବାଛି ନେଉ ବୋଲି କିରକେଗାର୍ଡ଼ କହୁଥିଲେ ।

ଜଣେ ସ୍ପଷ୍ଟତଃ ନୀତି ପ୍ରଚଳିତ ବିଧିବିଧାନ ଭିତରେ ବଞ୍ଚୁ 'So then one either has to live aesthetically or one has to live ethically' ନ ହେଲେ ବେପରୱା ଭାବେ ଏସ୍‌ଥେଟିକ୍‌ସ ଭିତରେ ବଞ୍ଚୁ । ଯେ କବିତ୍ୱ ଓ ରମ୍ୟବୋଧ ଭିତରେ ବଞ୍ଚିବା ପାଇ ନିଷ୍ପତ୍ତି ନେଇ ତା ଭିତରେ ବଞ୍ଚେନାହିଁ ତାହା ଅବଶ୍ୟ ଏକପ୍ରକାର ପାପ ।

କିରକେଗାର୍ଡ଼ କହିଛନ୍ତି ତିନୋଟି କଥା ମଣିଷର ମନକୁ ବେଶୀ ଉଦ୍‌ବେଳିତ କରେ । ପ୍ରଥମଟି ରୁଚି (Choice) ଦ୍ୱିତୀୟଟି ସ୍ୱାଧୀନତା ଓ ତୃତୀୟଟି ହେଉଛି ଗତାନୁଗତିକ ନୀତି ନିୟମ । ଏସବୁ ଏଥିଥେଟିକ୍ ଜୀବନର ବାଧକ ।

କିରକେଗାର୍ଡ଼ ଆଉ ଦୁଇଟି, ଆପେକ୍ଷିକ ପ୍ରଶ୍ନ ପୁଣି ଉଠାଇଛନ୍ତି, ଗୋଟିଏ ହେଲା ଭଲ ମନ୍ଦ ମଧ୍ୟରେ ଥିବା ଭେଦ । ଯେଉଁ ବ୍ୟକ୍ତି 'ଏଥିକାଲ' ନୀତିନିୟମକୁ ଜୀବନ ବଞ୍ଚିବା ପାଇଁ ବାଛେ ସେ ହୁଏତ ସ୍ୱାଭାବିକ ଭାବେ ଭଲକୁ ହିଁ ବାଛିବ । ମାତ୍ର ଅନ୍ୟ ପକ୍ଷରେ ଏସ୍‌ଥେଟିକ୍‌ସ ଯେ ମନ୍ଦ ଏପରି ଆଦୌ କହିହେବ ନାହିଁ । ତାହା କିନ୍ତୁ ଅଧିକାଂଶରେ ନୀତିନିଷ୍ଠ ନହୋଇ ନୀତିନିରପେକ୍ଷ ହୋଇଛି ।

ମଣିଷକୁ ଯେଉଁ ଦୁଇଟି ଅତି ମୂଲ୍ୟବାନ ବିଷୟ ମିଳିଛି ତାହା ହେଉଛି ନିଜର ରୁଚି ଓ ସ୍ୱାଧୀନତା ବୋଲି କିରକେଗାର୍ଡ଼ କହିଛନ୍ତି । ସ୍ୱାଧୀନତା ଅପହୃତ ହୋଇଯିବା ଭୟରେ ମଣିଷ ନିରନ୍ତର ଉଦ୍‌ବିଗ୍ନ ହୋଇ ଥାଏ । ଜଣେ ଲୋକର ଅସ୍ତିତ୍ୱକୁ ଏହି ଦୁଇଟି କଥା ମୁଖ୍ୟତଃ ସବୁବେଳେ ନିୟନ୍ତ୍ରଣ କରିଥାଏ ।

ଭଲମନ୍ଦ, ପାପପୁଣ୍ୟ ଭିତରେ ଗୋଟିକୁ ବାଛିବାର ସ୍ୱାଧୀନ ଅଧିକାର ସବୁକାଳର ମନୁଷ୍ୟର ରହିଛି । ମନୁଷ୍ୟ ଜୀବନର ଅନେକ ଉଦ୍‌ବେଗ ଏଇଥିପାଇଁ ।

ଜଣେ ଧନୀଲୋକ କଳ୍ପନାରେ ନିଜକୁ ଦରିଦ୍ର ମନେ କରିବା ଓ ସେହି ଦାରିଦ୍ର୍ୟ ଭିତରେ ମରିଯିବା ଯାହା, ଜଣେ ଲୋକର ସବୁକିଛି ସଠିକ ଭାବେ ବାଛିବାର ଅଧିକାର ଥିବା ସତ୍ତ୍ୱେ ସେ ଈଶ୍ୱରଙ୍କୁ ନ ଲୋଡ଼ିବା ଠିକ୍ ସେହିପରି ।

ଈଶ୍ୱରହୀନତାର ଅନୁଭବ ମଣିଷକୁ ସବୁବେଳେ ରୁଗ୍‌ଣ କରିଦିଏ । ଈଶ୍ୱର ବିଶ୍ୱାସ ମଣିଷର ମନକୁ ନାନା ପ୍ରତ୍ୟୟରେ ଭରିଦିଏ । ଶୀତ, ବର୍ଷାରୁ ରକ୍ଷା ପାଇବା ପାଇଁ ଈଶ୍ୱର ବିଶ୍ୱାସ ତମ୍ବୁର ଖୁଣ୍ଟ ପରି କାମ କରେ ।

ପ୍ରଚଣ୍ଡ ଜୀବନବାଦୀ, ନାରୀପ୍ରେମ କିରକେଗାର୍ଡ଼ କିନ୍ତୁ ଈଶ୍ୱରଭକ୍ତି ଓ ନୈତିକତା ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ସେ ପାଇଁ ଫରାସୀ କଥା ଶିଳ୍ପୀ ଜାଁପଲ ସାର୍ତ ଓ ତାଙ୍କ ଅନନ୍ୟା ପ୍ରେମିକା ସାଇମନ ଡ଼ି ବାଭୋର କିରକେଗାର୍ଡ଼ୀୟ ଅସ୍ତିତ୍ୱବାଦକୁ ଖ୍ରୀଷ୍ଟିୟାନ ଅସ୍ତିତ୍ୱବାଦ ଓ ସୌନ୍ଦର୍ଯ୍ୟତାତ୍ତ୍ୱିକ ଅସ୍ତିତ୍ୱବାଦ (Aesthetic Existentialism) ବୋଲି ଅଭିହିତ କରିଛନ୍ତି ।

କିରକେଗାର୍ଡ଼ଙ୍କ ବୀରତ୍ୱ ହେଉଛି ଯେ ତାଙ୍କ ଜୀବନ ଅଭ୍ୟନ୍ତରରୁ ଗୋଟେ ନୂଆ ବ୍ୟକ୍ତିନିଷ୍ଠ ଆଙ୍ଗିକ ସୃଷ୍ଟି କରି ପାରିଛନ୍ତି । ତାଙ୍କର ନିଷ୍ଠା ହେଉଛି ଗୋଟେ ଛକ ରାସ୍ତାରେ ଶେଷ ପର୍ଯ୍ୟନ୍ତ ଅନିର୍ଦ୍ଦିଷ୍ଟ ପଥରେ ନିଶ୍ଚିତ ଭାବେ ଚାଲିଛନ୍ତି ।

ଯେଉଁ ଜୀବନ ସହଜରେ କେହି ବଞ୍ଚିପାରିବେନି ସେହି ଜୀବନ ବଞ୍ଚିବା ପାଇଁ ସେ ରୀତିମତ ଉଦ୍ୟମ କରିଛନ୍ତି । ନିଜକୁ ସବୁମତେ ଏକୁଟିଆ କରିଦେବା ସେହି ଜୀବନ ବଞ୍ଚିବାର ଏକ ଅଂଶ । ତାଙ୍କ ରଚ଼ନାର ଭାଷା, ଶୈଳୀ ଓ ଆଙ୍ଗିକର ଗୋଟେ ନିରୁତା ଏକଲା ମଣିଷର ଜୀବନଢାଞ୍ଚା (Pattern) ପ୍ରତୀକିତ ହୋଇଛି ।

କିରକେଗାର୍ଡ଼ଙ୍କ ରଚ଼ନାରେ ସବୁବେଳେ ଗୋଟେ ଏକଲା ମଣିଷ ଦୁଃଖରେ ଅବଶେଷରେ ଯେପରି କଥା କହିଛି । ଜଣେ ଏକଲା ମଣିଷ ପ୍ରାଣର ସୃଜନଶୀଳ ବିଷାଦକୁ ସେ ନାନା ସମ୍ଭାବନାର ଉତ୍ସ ବୋଲି ବର୍ଣ୍ଣନା କରିଛନ୍ତି । ଜନପୁଞ୍ଜର କୌଣସି ଅନୁଭବ ନାହିଁ

କି ପ୍ରାଣ ନାହିଁ । ସମଷ୍ଟି କାହାକୁ ଗଭୀର ଭାବେ ବୁଝିପାରେନି । କାହାରିକୁ କେବେ ଦୟା ପ୍ରେମ ପ୍ରଦର୍ଶନ କରି ପାରେନି । ବହୁଶୀର ବିଶିଷ୍ଟ ଅସୁର ପରି ସମଷ୍ଟି ବ୍ୟକ୍ତିକୁ ନିରନ୍ତର ଭୟ ପ୍ରଦର୍ଶନ କରିବା ପୂର୍ବକ ବ୍ୟକ୍ତି ଉପରେ ଅତ୍ୟାଚାର କରେ ।

ପ୍ରତ୍ୟେକ ବ୍ୟକ୍ତି ଭିତରେ ଯେମିତି ଗୋଟେ ଛଳଛଳ ଭିତର ମଣିଷ ଥାଏ ସମଷ୍ଟି ଭିତରେ ସେମିତି ନଥାଏ ବୋଲି କିରକେଗାର୍ଡ୍ କହିଛନ୍ତି । ସେ ଯୀଶୁଖ୍ରୀଷ୍ଟଙ୍କ ସହିତ ସମଗ୍ର କାଳର ମଣିଷ ଜାତିକୁ ତୁଳନା କରିଛନ୍ତି । ଯୀଶୁଖ୍ରୀଷ୍ଟଙ୍କୁ ସମଷ୍ଟି ବୁଝିପାରିନି । କୌଣସି କାଳରେ ବି ନୁହେଁ । ଯୀଶୁଖ୍ରୀଷ୍ଟଙ୍କ ଅସ୍ତିତ୍ୱ ହେଉଛି ଶ୍ରଦ୍ଧା ଓ ସହନଶୀଳତା ହୀନ ସମଷ୍ଟି ପ୍ରତି ଏକ ଆହ୍ୱାନ । ବ୍ୟକ୍ତି ଜୀବନର ବିଡ଼ମ୍ବନା ଏଇଠି । ସମଷ୍ଟି ତାକୁ ଗୋଟେ ମହନୀୟ ସୃଜନଶୀଳ ଆତ୍ମାର ଅଧିକାରୀ କରି ରଖିଦେବନି । ସମଷ୍ଟି ସହିତ ଜଡ଼ିତ ହୋଇ ରହିବା ପାଇଁ ସବୁଠି, ସବୁକାଳରେ ବ୍ୟକ୍ତିକୁ ବାଧ କରାଯାଇଛି ।

ସାହସ ଅଭାବରୁ ସମଷ୍ଟି ସହିତ ସଂଘର୍ଷ କରିନିଜକୁ ସବୁମତେ ଏକୁଟିଆ କରି ରଖିବା ବ୍ୟକ୍ତି ପକ୍ଷେ କେବେ ସମ୍ଭବ ହୁଏନି । କିରକେଗାର୍ଡ୍ ମଣିଷ ଭାଗ୍ୟର ଏହି ବିଡ଼ମ୍ବିତ ସତ୍ୟ ଉପରେ ଅଧିକ ଆଲୋକପାତ କରିଛନ୍ତି ।

ବ୍ୟକ୍ତି ହେଉଛି ନିଦା । ସମଷ୍ଟି ପୋଲା । ଜଣେ ବ୍ୟକ୍ତି ଜରିଆରେ ସମକାଳର ଧର୍ମ, ଦର୍ଶନ, ଇତିହାସ ସମେତ ଯାବତୀୟ ସାଂସ୍କୃତିକ ପ୍ରଭାବ ଗତି କରିଯାଏ, ସମଷ୍ଟି ସମକ୍ଷରେ ବ୍ୟକ୍ତିକୁ ଅପାଂକ୍ତେୟ ମନେ କରିବା ମଣିଷ ଜାତିର ଇତିହାସରେ ସବୁଠାରୁ ନିକୃଷ୍ଟ ଚିନ୍ତା । ପ୍ରତ୍ୟେକ ବ୍ୟକ୍ତି ପ୍ରଥମତଃ ଜଣେ ଜଣେ ମଣିଷ ହେବାକୁ ବାଧ୍ୟ । ଏହାର ଗତ୍ୟନ୍ତର ନାହିଁ । ଏକଲା ମଣିଷ ସପକ୍ଷରେ କିରକେଗାର୍ଡ୍ ଜୀବନସାରା ଓକିଲାତି କରିଛନ୍ତି ।

ବନ୍ଧୁ, ପରିବାର, ସମାଜ ଓ ଏ ଜଗତର ସହସ୍ର ସହସ୍ର ମଣିଷଙ୍କର ଚଳପ୍ରଚଳ ହେବା ସତ୍ତ୍ୱେ ସବୁଠି ସମସ୍ତଙ୍କୁ କେମିତି ଭାରି ନିର୍ଜନ ଲାଗେ । ଏହି ନର୍ଜନତାର ଅନୁଭବ ଏକଲା ମଣିଷ ଜୀବନର ଏକ ଶୁଦ୍ଧ ଅନୁଭବ । ଏମିତି ନିର୍ଜନତା ଅନୁଭବ ଜନିତ ବିଷାଦରୁ ଦୁର୍ଲଭ ସୃଜନଶୀଳତା ମିଳେ ।

କିରକେଗାର୍ଡ୍ ଆପଣାକୁ ଦଗ୍‌ବିଜୟୀ ବୋଲି କେବେ କହିନାହାନ୍ତି, ବରଂ ପ୍ରଚଣ୍ଡ ସ୍ୱାଭିମାନ ଭିତରେ ନିଜକୁ ଏକଲା ମଣିଷ ବୋଲି ଜ୍ଞାନ କରିଛନ୍ତି । ତା'ସହିତ ନିଜକୁ କବିବୋଲି ସେ ବର୍ଣ୍ଣନା କରିଛନ୍ତି ।

ଏକଲା ମଣିଷ ହେବାପାଇଁ ତାଙ୍କ ପ୍ରାଣର ବ୍ୟାକୁଳତା କେତେ କବିତାମୟ ନୁହେଁ ସତରେ । ସେ କହିଛନ୍ତି; "I have said from the beginning and repeated again and again, without authority to provoke, it possible to invite to stir up the many to press through this defile of the individual through which however no one can pass except by becoming the individual the contrary being a categorical impossibility. And yet, if I were to desire an inscription for my tombstone, I should desire more other

than "That Individual"— if that is not now understood, it surely will be.'

ଏକଲା ମଣିଷର ଭାଷା ଚିଠିର ଭାଷା ପରି ଭାରି ଆବେଗିକ ଓ ଆପଣାର । ନିଜକୁ ବ୍ୟକ୍ତ କରିବାର ବ୍ୟାକୁଳତା ସେ ଭାଷାରେ ଅଧିକ ଲକ୍ଷ୍ୟଣୀୟ । ବସ୍ତୁନିଷ୍ଠ ଜ୍ଞାନର ପାଣ୍ଡିତ୍ୟପୂର୍ଣ୍ଣ ଚର୍ଚ୍ଚା ଡାଇରୀ ଅଙ୍ଗିକରେ ରଚିତ ଲେଖାରେ ପ୍ରାୟ ନଥାଏଁ । ତର୍କ ନିଷ୍ଠ ରଚନା ଆପଣା ହୃଦୟର କଥା କହିପାରେନି । ତାଙ୍କ ଉଚ୍ଚାରଣ ଯେପରି ସ୍ୱନିଷ୍ଠ ଥିଲା ସେହିପରି ଶୋକ ଜର୍ଜରିତ ଥିଲା ଗୋଟେ ନିଃସଙ୍ଗ ପକ୍ଷୀର ଗୀତପରି ।

ଗୋଟିଏ ଶୁଦ୍ଧ ବ୍ୟକ୍ତିନିଷ୍ଠ ରଚନା ଶୈଳୀକୁ ପ୍ରତିଷ୍ଠିତ କରି ନେଇ ଯିବାରେ କିରକେଗାର୍ଡ଼ଙ୍କ ଅବଦାନ ଏକାନ୍ତ ଅତୁଳନୀୟ । ଏହାଦ୍ୱାରା ଏକାନ୍ତ ଅନୁଭବ ପ୍ରଧାନ ସ୍ଥିତିବାଦୀ ଭାବଚେ଼ତନାକୁ ପ୍ରକାଶ କରିବା ଅପେକ୍ଷାକୃତ ସହଜ ଓ ପ୍ରଭାବପୂର୍ଣ୍ଣ ହୋଇ ପାରିଛି । ଅଥର ହିରୋକୁ ସ୍ଥାପନା କରିବାରେ ରଚନା ଜଗତରେ କିରକେଗାର୍ଡ଼ ଅଗ୍ରନାୟକ ଥିଲେ । ତାଙ୍କର ନାୟକତ୍ୱ ଏହି ନୂତନତାରେହିଁ ସ୍ୱୀକୃତ ।

ରଚନାର ଭାଷାଗତ ଓ ଭାବଗତ ଗତିମାନତା (ଫୋର୍ସ) ରହିବା ବିଧେୟ ବୋଲି କିରକେଗାର୍ଡ଼ଙ୍କ ପରି ଅସ୍ତିତ୍ୱବାଦୀ ଲେଖକମାନେ ମନେ କରନ୍ତି । ତାହା ସହିତ ସ୍ୱଚ୍ଛ ଜୀବନଦୃଷ୍ଟି ଓ ଜୀବନପ୍ରିୟତାର ଯାଦୁକରୀ ନିବିଡ଼ତା ।

ନିତସେ, ହାଇଡଗାର, ୟାସଫରସଙ୍କ ପରି କିରକେଗାର୍ଡ଼ ମଣିଷ ଜୀବନର ବାସ୍ତବ ଅବସ୍ଥାର ଚିତ୍ରଣ କରିଛନ୍ତି; ଯାହା ପୁରୁଣା ଲେଖାପରି କଳ୍ପନା ଓ କୁଞ୍ଜବନ ଦର୍ଶନରେ ପୋଲା ହୋଇ ଯାଇନି ।

ବ୍ୟକ୍ତି ସମାଜର ଅଂଶ ବୋଲି କିରକେଗାର୍ଡ଼ ମନେକରି ପାରିନାହାନ୍ତି । ବରଂ କହିଛନ୍ତି ଜଣକର ଆଉ ଜଣକ ସହିତ ସଂପର୍କ ରହଛି; ରହିଛି ବି ଈଶ୍ୱରଙ୍କ ସହିତ; ମାତ୍ର ସମାଜ ସହିତ ବ୍ୟକ୍ତିର ଗଭୀର ସଂପର୍କ ବୋଲି କିଛି ନାହିଁ, ଏହା କିରକେଗାର୍ଡ଼ଙ୍କ ଗୋଟେ ନୂଆ ଥେସିସ ।

ବ୍ୟକ୍ତିର ବିଶ୍ୱଚେ଼ତନା ସଂପର୍କରେ ସେ ଅତ୍ୟନ୍ତ ଅସ୍ପର୍ଥକ ଥିଲେ । ପରିବ୍ୟାପ୍ତ ଚେ଼ତନାର ମଣିଷଟିଏ ସେମିତି ଭାଷା ଅବଶ୍ୟ କହିଥାଏ । ଜଣକର ଭାଷା ତା'ର ଚେ଼ତନା ମଣ୍ଡଳକୁ ଚିହ୍ନିତ କରେ । ବିଶିଷ୍ଟ ଭାଷାତତ୍ତ୍ୱବିଦ୍ ତଥା ସୌନ୍ଦର୍ଯ୍ୟ ଶାସ୍ତ୍ରୀ ଉଇଟ ଗେନଷ୍ଟାଇନ୍ (Wittgenstein) କହିଥିଲେ : 'The limits of my language are limits of my words.' ଭାଷା ପ୍ରକୃତରେ ପ୍ରତିଟି ଭାବସୌଧର ଆଧାର ଶିଳା । କିରକେଗାର୍ଡ଼ଙ୍କ ଭାଷା ତାଙ୍କ ଭାବ, ତାଙ୍କ ଓ ତାଙ୍କ ସକ୍ରେଟିସୀୟ ଭାଗ୍ୟର ସ୍ମାରକୀ । ତାଙ୍କର ମହାଜୀବନବୋଧ, ମହାକାଳଚେ଼ତନା ଜଗତରେ ପରଆପଣା ଭେଦ ନବାରିବା ଆଦି ତାଙ୍କ ରଚ଼ନାକୁ ଏକଲା ମଣିଷର ସ୍ନେହ ସୋହାଗର ନିବିଡ଼ ସ୍ପର୍ଶରେ ଯେପରି ଭିଜାଇ ଦେଇଛି ।

କିରକେଗାର୍ଡ଼ ଭାଷା ପ୍ରୟୋଗ କରିବା କ୍ଷେତ୍ରରେ କେମିତି ଅତି ମାତ୍ରାରେ ଆତ୍ମସ୍ୱୀକାରୋକ୍ତି ମୂଳକ ବା କନଫେସନାଲ ଥିଲେ । ତାଙ୍କ ଭିତରେ ଥିବା ଉଚ୍ଛଳ କବିତ୍ୱ

ତାଙ୍କ ରଚ଼ନାର ଭାଷାକୁ ଏତେ ଜୀବନମୟ ଓ ସମ୍ବେଦନଶୀଳ କରିଛି । ତାଙ୍କ ବିଷାଦିତ ଜୀବନବୋଧ ଓ ଶୋକ ଜର୍ଜରିତ ଆତ୍ମାଯୋଗୁଁ ତାଙ୍କ ରଚ଼ନାର ଭାଷା ପୁଣି ଅଧିକ ଭାବସଂଚ଼ରଣଶୀଳ କ୍ଷମ ଥିଲା । ତାଙ୍କ ରଚ଼ନାର ଆଙ୍ଗିକ ବୈଶିଷ୍ଟ୍ୟ ଏପରି ଭାବସଂଚ଼ରଣଶୀଳ ଭାଷା ସଂଯୋଜନାର ମୂଳକାରଣ ଥିଲା । ଏପରି ଆଙ୍ଗିକ ତାଙ୍କ ଏକାନ୍ତ ଜୀବନମୟ ତଥା ଅନୁଭବ ପ୍ରଧାନ ଚ଼େତନାରୁ ହିଁ ଉଦ୍ଭୁତ ହୋଇଥିଲା । କିରକେଗାର୍ଡ଼ଙ୍କ ରଚ଼ନାର ବିଷୟପିଣ୍ଡ ଓ ଭାବଚ଼େତନା ଅନୁସାରେ ତାଙ୍କ ଫର୍ମ ଗତିଶୀଳ ହୋଇଛି । ବଦଲେୟାର, ମାଲାର୍ମେ ପ୍ରମୁଖ ଫରାସୀ ପ୍ରତୀକବାଦୀ କବିମାନେ ଯେଉଁ ମେଟାଫୋରିକ ଭାଷା ବ୍ୟବହାର କରିବା ସପକ୍ଷରେ ଥିଲେ ସେହି ମେଟାଫୋରିକ ଭାଷା ବିବିଧ ଏଲିଗୋରୀ ଭିତରେ କିରକେଗାର୍ଡ଼ ବ୍ୟବହାର କରିଛନ୍ତି ।

ଯେଉଁ କେତୋଟି ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ତଥା ସୌନ୍ଦର୍ଯ୍ୟତାତ୍ତ୍ୱିକ ଶବ୍ଦ ଭିତରେ କିରକେଗାର୍ଡ଼ୀୟ ଚ଼େତନାର ପରିଧିକୁ କଳନା କରାଯାଇପାରେ ସେଗୁଡ଼ିକ ହେଲା— ଦି ସିଷ୍ଟମ, ଡାଇଲେକ୍ଟିସ୍, ମେଡ଼ିଏସେନ, ଅବଜେକ୍ଟିଭ, ଦି ଏକଜିଷ୍ଟିଙ୍ଗ୍ ଥିଙ୍କର, ସବ୍‌ଜେକ୍ଟିଭିଟ୍, ଟ୍ରୁଥ୍, ଦି ସିଡ୍ୟୁଡୋନିମସ, ଦି ଇଣ୍ଡିଭିଜୁଆଲ, ଦି ଷ୍ଟେଜେସ,ଦି ଏଥେନେଟିକାଲ ଷ୍ଟ୍ରେଗି, ଦି ଏଥିକାଲ ଷ୍ଟେଜ, ଦି ରିଲିଜିୟସ ଷ୍ଟେଜ, ଦି ଖ୍ରୀଷ୍ଟିୟାନ ରିଲିଜିୟସ ଷ୍ଟେଜ, ଦି ପାରାଡକ୍ସ, ଅନେଷ୍ଟି, ଦିଲିପ୍, ବିଚ଼ଏସ୍, ସିନ୍ଥେସିସ୍, ଏଙ୍ଗେଷ୍ଟ, ଡେସପାଏର, ଫେଥ୍, କଣ୍ଟେପୋରାନିଟ୍ ଇତ୍ୟାଦି ।

କିରକେଗାର୍ଡ଼ ଚ଼ରମ ବ୍ୟକ୍ତିବାଦୀ ଥିବାରୁ ସେ ମଣିଷ ଜୀବନର ପ୍ରବଣତାକୁ ଓ ତା'ର ଆବେଗିକ ବାସ୍ତବତାକୁ ସଠିକ ଭାବେ ଚ଼ିତ୍ରଣ କରିଛନ୍ତି । କେତେଜଣ ତେଣୁ କିରକେଗାର୍ଡ଼ଙ୍କୁ ଦାର୍ଶନିକ ଅପେକ୍ଷା ଅଧିକ ମନୋବିଜ୍ଞାନୀ ବୋଲି ଗଣନା କରନ୍ତି । କିରକେଗାର୍ଡ଼ ସମୁନ୍ନତ ଏସ୍‌ଥେଟିକ୍ ଅନୁଭବ ପାଇଁ ଜଣେ ମନୁଷ୍ୟର ନିରୁତା ମନସ୍ତତ୍ତ୍ୱକୁ କଳନା କରିଛନ୍ତି । ସୃଜନଶୀଳ ମାନସିକତା ଓ ଜୀବନରେ ଉନ୍ନତତର ଏସ୍‌ଥେଟିକ୍ ଦୃଷ୍ଟିଭଙ୍ଗୀ ପୋଷଣ କରିବା ପାଇଁ କିରକେଗାର୍ଡ଼ ତାଙ୍କ ଆପଣାର ମଣିଷମାନଙ୍କୁ କହି ଯାଇଛନ୍ତି ।

ତାଙ୍କର ଏହି ବକ୍ତବ୍ୟ ଆଦୌ ଏକ ବିଜ୍ଞାନ ନୁହେଁ । ବରଂ ଏପରି ଗୁଣାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରିବା ପାଇଁ ତାଙ୍କର ଏହା ଏକ ଉଦ୍ୟମ । ତାଙ୍କ 'ଅନ୍‌ଷାଇଣ୍ଟିଫିକ୍ ପୋଷ୍ଟସ୍କ୍ରିପ୍ଟ'ରେ କିରକେଗାର୍ଡ଼ ଏହି ଉଦ୍ୟମକୁ 'ଅସ୍ତିତ୍ୱବାଦୀ ଦାନ' ଭାବେ ଅଭିହିତ କରିଯାଇଛନ୍ତି ।

୧୮୫୫ ଖ୍ରୀ. ନଭେମ୍ବର ୧୧ ତାରିଖରେ ମୃତ୍ୟୁବରଣ କରିଥିବା ଏହି ଡେନମାର୍କର ଦାର୍ଶନିକ ସୋରେନ୍ କିରକେଗାର୍ଡ଼ କାବ୍ୟତତ୍ତ୍ୱ ଦର୍ଶନ ଓ ସୌନ୍ଦର୍ଯ୍ୟ ତତ୍ତ୍ୱର ଚ଼ିନ୍ତନକୁ ଅଧିକ ପ୍ରଭାବିତ କରିଥିଲେ । ୧୮୯୦ ଖ୍ରୀ. କେତେକ ଜର୍ମାନ ଦାର୍ଶନିକ କିରକେଗାର୍ଡ଼ଙ୍କ ଲେଖାକୁ ଆବିଷ୍କାର କରିଥିଲେ । ୧୮୪୦ ରେ ଫରାସୀ ଅସ୍ତିତ୍ୱବାଦୀମାନେ କିରକେଗାର୍ଡ଼ଙ୍କ ସ୍ଥିତିବାଦୀ ଚ଼ିନ୍ତନକୁ ବହୁଭାବରେ ମୌଳିକ ଓ ଗୁରୁତ୍ୱପୂର୍ଣ୍ଣ ବୋଲି ମନେକଲେ ।

କିରକେଗାର୍ଡ଼ଙ୍କ ଜର୍ନାଲସ ବ୍ୟତୀତ ତାଙ୍କର ଅନ୍ୟରଚନା ସବୁ ମାତ୍ର ସୀମିତ କେତେକଙ୍କ ମଧରେ କେବଳ ପରିଚ଼ିତ ଥିଲା । କାରଣ ତାଙ୍କର ଶୈଳୀ ଅତ୍ୟନ୍ତ ଆତ୍ମନିଷ୍ଠ ଓ ରୂପକାତ୍ମକ ଥିଲା ।

ଚେହେରାରେ କିରକେଗାର୍ଡ଼ ଟିକିଏ ବାଙ୍ଗର ଅଥଚ଼ ସୁନ୍ଦର ଥିଲେ । ଦୁର୍ଘଟଣା କାରଣରୁ ଟିକିଏ କୁଜା ବି ହୋଇ ଯାଇଥିଲେ । କିରକେଗାର୍ଡ଼ ତାଙ୍କ ବେଶପୋଷାକ ଓ ଚେହେରାରେ ଯେପରି ଅଦ୍ଭୁତଥିଲେ ସେହିପରି ଅଦ୍ଭୁତ ଥିଲେ ତାଙ୍କ ଦୃଷ୍ଟିଭଙ୍ଗୀରେ । ୟୁରୋପୀୟ ଦାର୍ଶନିକ ମଣ୍ଡଳୀରେ ଏ ଲୋକଟି ପୂରାପୂରି ବାରି ହୋଇ ପଡୁଥିଲା ।

ତାଙ୍କୁ ଯେଉଁ ଦୁଇଜଣ ବେଶୀ ପ୍ରଭାବିତ କରିଥିଲେ ସେମାନେ ହେଲେ ମାଇକେଲ ପେଡ଼ରସନ ନାମକ ତାଙ୍କର ବିପତ୍ନୀକ ବୁଢ଼ାବାପା ଏବଂ ତାଙ୍କ ସହିତ, ତାଙ୍କ ବିଶ୍ୱାସ ଓ ମନନଶୀଳତା ସହିତ ଆଦୌ ମେଳନ ନଥିବା ରେଜିନା ନାମ୍ନୀ ଗୋଟିଏ ବାଳିକା; ଯାହାକୁ ସେ ଅସାଧାରଣ ଭାବେ ଭଲ ପାଉଥିଲେ; ଅଥଚ ବିବାହ କରିବା ପାଇଁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

୧୮୧୩ ରେ କୋପେନହାଗାନ ସହରରେ ସେ ଜନ୍ମ ହୋଇଥିଲେ । ତାଙ୍କ ବାପାଙ୍କୁ ସେତେବେଳେ ଛପନ ବର୍ଷ ତ ତାଙ୍କ ମାଆଙ୍କୁ ପଇଁଚାଳିଶ ବର୍ଷ । ତାଙ୍କ ବାପା ଜଣେ ଅବସରପ୍ରାପ୍ତ ଉଲ୍ ବ୍ୟବସାୟୀ ଥିଲେ; ଅଥଚ଼ ଦର୍ଶନ ଓ ଜ୍ଞାନବିଜ୍ଞାନ ପ୍ରତି ବହୁତ ଆଗ୍ରହୀ ଥିଲେ ।

ପ୍ରକୃତରେ ତାଙ୍କ ପାରିବାରିକ ଜୀବନର ଦୁଃଖ ତାଙ୍କୁ ବିଷାଦବାଦୀ କରିଥିଲା । ନିଜ ବାଟରେ ତାଙ୍କ ବାପା ବିଷାଦ ଭୋଗୁଥିଲେ ତ ସେ ନିଜେ ନିରୋଳାରେ ବିଷାଦଗ୍ରସ୍ତ ହୋଇ ରହୁଥିଲେ । ଅଠର ବର୍ଷ ବୟସରେ କୋପେନହାଗାନ ବିଶ୍ୱବିଦ୍ୟାଳୟରେ ସେ ନୀତିଶାସ୍ତ୍ର ବିଷୟରେ ଅଧ୍ୟୟନ କରିବା ପାଇଁ ସୁଯୋଗ ପାଇଥିଲେ । ଅଥଚ଼ ସେତେବେଳେ ସେ ଇନ୍ଦ୍ରିୟାସକ୍ତ ଜୀବନ କଟାଉଥିଲେ । ବେଶ୍ୟାଳୟକୁ ବି ଯାଉଥିଲେ । ପିନ୍ଧାପିନ୍ଧିରେବି ଭାରି ସଉକଥିଲା ତାଙ୍କର । ଆପାତତଃ କାଉନ୍ଦା ଥିଲେବି ଜ୍ଞାନମାର୍ଗରେ ଅତ୍ୟନ୍ତ ଚତୁର ଓ ବିଚ଼କ୍ଷଣ ଥିଲେ ।

ତାଙ୍କ ବାପାଙ୍କଠାରୁ ଅଲଗା ହୋଇ କିରକେଗାର୍ଡ଼ ଚ଼ରମ ମାନସିକ ଉଦ୍‌ବେଳନ ଭିତରେ ବଞ୍ଚିଲେ । ୧୮୩୯ ଖ୍ରୀ.ରେ ତାଙ୍କ ବାପା ମରିଗଲେ । ତାପରେ ଚ଼ରମ ଦୁଃଖ ଭିତରକୁ ସେ ଫିଙ୍ଗି ହୋଇଗଲେ । ଜୀବନ ତାଙ୍କୁ ଭାରି ଶୂନଶାନ୍ ଲାଗିଲା । ଶୂନ୍ୟତା ତାଙ୍କୁ ଚ଼ାରିଆଡୁ ବେଢ଼ିଦେଲା ।

ନିଜ ଜୀବନକୁ ସେ ତାଙ୍କ ଦର୍ଶନର କର୍ମଶାଳା କରିଥିବାରୁ ତାଙ୍କ ଦର୍ଶନ ଜାଣିବାପାଇଁ ତାଙ୍କ ଜୀବନୀ ଯେପରି ପଢ଼ିବା ଦର୍କାର । କିରକେଗାର୍ଡ଼ ନିଜର ବିଶ୍ୱାସକୁ ଯେପରି ଅତଳ ଜଳରେ ବୁଡ଼ାଇ ରଖିଥିଲେ । ସେ କହୁଥିଲେ, 'ସତ୍ୟ ଏକ ଗାଣିତିକ ସୂତ୍ର ନୁହେଁ; ଜୀବନକୁ ଆଧାର କରି ତାହା ଥାଏ ।

ରେଜିନା କିରକେଗାର୍ଡ଼ଙ୍କ ସମଗ୍ର ଜୀବନ ପାଇଁ ପ୍ରେମାସ୍ପଦ ହୋଇରହିଗଲା । କିରକେଗାର୍ଡ଼ ତାଙ୍କୁ ବିଶ୍ୱଜୀବନ ସମକ୍ଷରେ ଅମର କରି ଦେଇଗଲେ ।

ପ୍ରେମର ବ୍ୟାକୁଳତା, ପ୍ରେମର ବିଷାଦିତ ଶୁଦ୍ଧ ଅନୁଭବ, ପ୍ରେମର ବଳିଦାନ ବିଷୟକୁ କିରକେଗାର୍ଡ଼ ମନ ଦେଇ ଲେଖିଛନ୍ତି । ବିଶ୍ୱସାହିତ୍ୟରେ ତାହା ସବୁଠାରୁ ପ୍ରାଣସ୍ପର୍ଶୀ ବର୍ଣ୍ଣନା ହୋଇଛି । ୧୮୪୯ ଖ୍ରୀ. ରେ କିରକେଗାର୍ଡ଼ ଠାଏ ଲେଖିଛନ୍ତି : 'ମୋର ନିଷ୍ପତ୍ତି ଅପରିବର୍ତ୍ତିତ ହୋଇ ରହିଛି । ମୋର ମୃତ୍ୟୁପରେ ମୋ ଲେଖାସବୁ ତାଙ୍କୁ ସମର୍ପିତ ହେବ । ଲେଖକ ଭାବରେ ମୋର ସମସ୍ତଲେଖା ତା'ର ସମ୍ମାନ ଓ ପ୍ରଶଂସାର ସ୍ମାରକୀ ହେବ । ଏମିତି ପ୍ରେମର ତୁଳନା ନାହିଁ ସତରେ ।

କିରକେଗାର୍ଡ଼ ରେଜିନା ପ୍ରେମରେ ଏସଥେଟିକ୍ ସ୍ତରରେ ଜୀବନ ବଞ୍ଚୁଥିଲେ । ସେ ତିନିସ୍ତରର ଜୀବନ କଥା କହିଛନ୍ତି ।

୧- Aesthetical (ସୌନ୍ଦର୍ଯ୍ୟତାତ୍ତ୍ୱିକ ସ୍ତର)
୨- Ethical (ନୈତିକ ସ୍ତର)
୩- Religious (ଧାର୍ମିକ ସ୍ତର)

ତାଙ୍କ ଲେଖାଲେଖି ଏଇ ତିନିପ୍ରକାର ଜୀବନକୁ ପ୍ରଦର୍ଶନ କରିଛି । ରେଜିନା ନାମ୍ନୀ ସେ ବାଳିକାର ପ୍ରେମରୁ ଯେପରି ସେ ଆନନ୍ଦ ପାଇଛନ୍ତି ସେହିପରି ତାଙ୍କ ଲେଖାଲେଖିରୁ । ଲେଖାଲେଖି ଥିଲା ତାଙ୍କ ନିସଙ୍ଗ ଜୀବନର ଏକମାତ୍ର ସାନ୍ତ୍ୱନା । ତାଙ୍କ ଲେଖା ତାଙ୍କ ଭିତରର ଦୁଃଖକୁ ପ୍ରକଟନ କରିଛି । ତା ସହିତ ତାଙ୍କ ଏସ୍‌ଥେଟିକ୍ ଜୀବନର ଅନମନୀୟ ଅନୁଭବକୁ ।

କିରକେଗାର୍ଡ଼ଙ୍କ ରଚନାର ସବୁଠାରୁ ଉଜ୍ଜ୍ୱଳ ବିଷୟ ଥିଲା ତାଙ୍କର ଚେ୍ତନା ବଳୟ । ଦୁଃଖ ବିଷାଦକୁ ଆତ୍ମସ୍ଥ କରିବାର ଉଦଗ୍ର ପ୍ରବଣତା ସହିତ ପ୍ରେମ ଆବେଗକୁ ନିବିଡ଼ ଭାବେ ଅନୁଭବ କରିବାର ସମର୍ପିତ ଆତ୍ମନିୟୋଗ କିରକେଗାର୍ଡ଼ଙ୍କ ରଚନାବଳୀକୁ ଏତେ ହୃଦୟସ୍ପର୍ଶୀ କରିଛି । ନିଜର ଲେଖାସହିତ ଆତ୍ମାର ଏତେ ଅଙ୍ଗୀକାରବଦ୍ଧତା ସାରସ୍ୱତ ଜଗତରେ ଏକ ବିରଳ ଘଟଣା ନିଶ୍ଚୟ ।

କିରକେଗାର୍ଡ଼ଙ୍କ ରଚ଼ନାର ଢାଞ୍ଚା (Pattern)ଟି ତାଙ୍କ ଶୋକ ଜର୍ଜ୍ଜରିତ ଆତ୍ମାର ଅନ୍ତସ୍ଥଳରୁ ହିଁ ଉତ୍ସାନ୍ତରିତ ହୋଇ ଆସିଛି । ତାଙ୍କ ଲେଖାର ଭାବ ଭାଷା ତେଣୁ ପାଠକକୁ ଏତେ ନିବିଡ଼ ଓ ଜୀବନମୟ ଲାଗେ । ପାଠକ ନିଜକୁ ନିଜର ସୁଖ ଦୁଃଖକୁ ବାରବାର ସେ ଲେଖାରେ ଆବିଷ୍କାର କରେ ।

କିରକେଗାର୍ଡ଼ କଥାହାନି ତାଙ୍କ ଗଦ୍ୟରଚ଼ନା ସବୁକୁ ଜାନପଦିକ ବାସ୍ତବତା ଦୃଷ୍ଟିରୁ ଏତେ ବିଶ୍ୱାସନୀୟ କରିପକାଇଛନ୍ତି ଯେ ପ୍ରକୃତରେ ବିଶ୍ୱ ସାହିତ୍ୟରେ ତା'ର ତୁଳନା ନାହିଁ ।

ସେହିଁ ଥିଲେ ସବୁଦୃଷ୍ଟିରୁ ବିଶ୍ୱଗର୍ଭିକ ନବଚେ୍ତନାର ନବନାଗର । ପ୍ରଜ୍ଞା, ପ୍ରେମ ଓ ଆବେଗର ମହନୀୟତାକୁ ଯେ ଶତଜିହ୍ୱ ହୋଇ ଘୋଷଣା କରିଛନ୍ତି ।



# କାହିଁକି ଆସିଛୁ ମନ କିସ ନେବା ପାଇଁ ତ

ଶ୍ରୀ ଜଗନ୍ନାଥଙ୍କ ପବିତ୍ର ଘୋଷଯାତ୍ରା ଦିନ ବଡ଼ଦାଣ୍ଡରେ ସେଇ ଶୈବାଳାଚ୍ଛନ୍ନ, ଜୀର୍ଣ୍ଣ ସମାଧି ମନ୍ଦିର ନିକଟରେ ନନ୍ଦିଘୋଷ ରଥ ଅଟକେ ଯବନକବି ସାଲବେଗଙ୍କ ବିହ୍ୱଳ ଭକ୍ତିକତାକୁ କୋଟି ଜନତାଙ୍କ ସ୍ମରଣକୁ ଆଣିବା ପାଇଁ ।

ବିଶ୍ୱ ଇତିହାସରେ ଶ୍ରୀ ଜଗନ୍ନାଥ ଏକ ଅନନ୍ୟ ତତ୍ତ୍ୱ । ଏକ ଅନୁପମ ଆଧ୍ୟାତ୍ମିକ ସୃଷ୍ଟି । ସମଗ୍ର ବିଶ୍ୱ ସାହିତ୍ୟ କ୍ଷେତ୍ରରେ ଓଡ଼ିଆ ଜଣାଣ ତେଣୁ ସେହି ପରମ ଆଧ୍ୟାତ୍ମ୍ୟ ଅଭିଳିପ୍ସାର ଉତ୍ସ ଶ୍ରୀ ଜଗନ୍ନାଥଙ୍କୁ ନେଇ ଯାହା ସୃଷ୍ଟି ହୋଇଛି ତା'ର ତୁଳନା ଅନ୍ୟତ୍ର ନାହିଁ ।

ସାଲେ ବେଗ ସେମିତି ଜଣେ ଭକ୍ତ ଥିଲେ ଯାହାଙ୍କ କବିତ୍ୱ ତାଙ୍କ ଅନୁପମ ଭକ୍ତିକତାରୁ ଉତ୍ସାନ୍ତରିତ ହୋଇ ଆସିଛି; ସେଇ ମୈତ୍ରୀ ଦେବ ଜଗନ୍ନାଥଙ୍କୁ ଉପାସନା କରି । ଆଳଙ୍କାରିକ ଭାଷାର ଆଟୋପ ଥିବା ଶବ୍ଦରେ ନୁହେଁ; ଯାହାକୁ ପୁଣି ସେ ନିଜେ ନିଜର ସୁଲଳିତ କଣ୍ଠରେ ଗାନ କରିଛନ୍ତି ପତିତପାବନ ଜଗନ୍ନାଥଙ୍କୁ ସ୍ତୁତି କରି ।

ଶ୍ରୀ କ୍ଷେତ୍ରର ମହୋତ୍ସବରେ ବଡ଼ଦାଣ୍ଡ ଫାଟିପଡୁଥାଏ ସାଲବେଗଙ୍କ ଅନବଦ୍ୟ ଜଣାଣରେ କେବଳ ।

'ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋ ଆରତ-ନଳିନୀ ବନକୁ କର ଦହନ
ଗଜରାଜ ଡାକ ଦେଲା ଗ୍ରାହ ଯୁଦ୍ଧ ବେଳେଣ
ଚକ୍ର ପେଷି ନକ୍ରନାଶି କୃପା କଲ ଆପଣ
ଦ୍ରୌପଦୀ ଯେ ଚିନ୍ତା କଲା କୁରୁସଭା ତଳେଣ
କୋଟି ବସ୍ତ୍ର ଦେଇ ତାଙ୍କ ଲଜ୍ଜା କଲ ବାରଣ
ହରିଣୀ କି ଘୋର ବନେ ପଡ଼ିଥିଲା କଷଣ
ଡାକିଲା ମାତ୍ରକେ ହରି ରକ୍ଷା କଲ ଆପଣ
ରାବଣର ଭାଇ ବିଭୀଷଣ ଗଲା ଶରଣ
କେତେ କେତେ ବିପତ୍ତିରୁ ରଖିଅଛ ଆପଣ ।'

ମଧ୍ୟ ଯୁଗରେ ଆଉ କେତେଜଣ ଓଡ଼ିଆ ଭକ୍ତକବି ଅଛନ୍ତି ଯେଉଁମାନେ ଅକ୍ଷରଗଣି, ପଦମିଳାଇ, ଯତି ଯମକ ଖଞ୍ଜି ଗୀତ ଲେଖିଛନ୍ତି ତାହା ଗାନ କରାଯାଏ ସତ; ତାହା କିନ୍ତୁ କାହାକୁ ପ୍ରବୋଧିତ କରି ପାରେନା ।

ସାଲବେଗଙ୍କ ଭଜନ ସବୁ ସେ ଦୃଷ୍ଟିରୁ ଏକାନ୍ତ ଭାବ ପ୍ରବୋଧକ । ସଂଗୀତ ସାହିତ୍ୟକୁ ନାନାମତେ ପୁଷ୍ଟ କରିଥିବା କବି ସୂର୍ଯ୍ୟ, ଭଂଜ, ଗୋପାଳକୃଷ୍ଣଙ୍କ ପରି ବିକ୍ଷତ ବିଡ଼ମ୍ବିତ ଜୀବନକୁ ନେଇ ସାଲବେଗ ଗରୁଡ଼ସ୍ତମ୍ଭ ସନ୍ନିଧାନରେ ନିଜ ଆତ୍ମାକୁ ଯେପରି ନିଜର ଜଣାଣ ଭିତରେ ଜଗନ୍ନାଥଙ୍କୁ ଉତ୍ସର୍ଗ କରି ଦେଇଛନ୍ତି ।

କାଳ କାଳକୁ ସାଲବେଗ ତାଙ୍କ ଜଗନ୍ନାଥ ଜଣାଣ ଭିତରେ ନିଜର ଅପୂର୍ବ ଭକ୍ତିକତା ଓ ଜଗନ୍ନାଥରେ ଅର୍ପିତ ଭକ୍ତପ୍ରାଣର ପରିଚ଼ୟ ଦେଇ ଯାଇଛନ୍ତି ।

'ଆହେ ରାମହରି/ପ୍ରଭୁ ବିଜେ କରିଛନ୍ତି ନୀଳଗିରି/ପ୍ରଭୁ ଦର୍ଶନ ମାତ୍ରକେ ଯିବତରି ! ଅବା ଏ 'ନବଘନ କଳାବଦନ ଲୁଚି ଯାଇଛି । /ପିନ୍ଧିଛି ପାଟ ପତନୀ ଜଡ଼ିଛି ରତନ, କଳାମେଘ ବିଜୁଳି ଯେହ୍ନେ ମୋର ଘନଘନ ।/କହେ ସାଲବେଗ ହୀନ ମୁଁ ପତିତ ହୀନ କହ୍ନେ କହ୍ନେ ସେବି ଅଛି ଶ୍ରୀରଙ୍ଗାଚ଼ରଣ' । ଅବା 'ଚାଲସଖୀ ଆମ୍ଭେ ଦର୍ଶନ କରିବା ନୀଳଗିରି କାଳିଆକୁ,/କେଉଁ ସୁରପତି ବେଶ କରିଅଛି ଗିରିବର-ତୋଳିଆକୁ । /ସେ ଯେ ଶ୍ରୀମୁଖ ତୋରା ଶିରେ ସୁନା ସୁତା କେରା କେରା । ଶ୍ୱେତପଦ୍ମ ଆଖି ଦେଖିଲେ ମୋ ସଖି ଚ଼ିତ୍ତ କି ଗହୁଡ଼େ ଆଉ/କର୍ଣ୍ଣରେ କୁଣ୍ଡଳ ଦିଶେ ଝଲମଲ କଉସ୍ତୁଭ ଦାଉଦାଉ । ସେ ଯେ ହିଆ ବୃଶାଳ/ମିଶାମିଶି ବାରାନିଧି ଫଳ । ଆଜି ଜଗନ୍ନାଥ ଜଣାଣ ସବୁ ଏ ଜାତିର ଆବାଳବୃଦ୍ଧ ବନିତା ସମସ୍ତଙ୍କ ପ୍ରାଣରେ ଜଗନ୍ନାଥ ଭାବର କଲ୍ଲୋଳ ସୃଷ୍ଟିକରେ ।

ଜାତିରେ ଯବନ ହୋଇଥିଲେ ହେଁ ଜଣେ ଶୁଦ୍ଧ ଶାସ୍ତ୍ରଜ୍ଞ ହିନ୍ଦୁ ପଣ୍ଡିତଙ୍କ ପରି ଅନେକ ତତ୍ତ୍ୱ, ପୁରାଣ ଉପପୁରାଣରୁ ଅନେକ ଦୃଷ୍ଟାନ୍ତ ଦେଇ ସାଲବେଗ ଜଗନ୍ନାଥ-କୃଷ୍ଣ ଓ ଶିବଙ୍କୁ ସ୍ତୁତି କରିଛନ୍ତି ତାଙ୍କ ରଚ଼ିତ ଅସଂଖ୍ୟ ଜଣାଣରେ ।

କଥିତ ଅଛି ସାଲବେଗ ତାଙ୍କ ଆଦ୍ୟ ଯୌବନରେ ପିତା ଲାଲବେଗଙ୍କ ନିର୍ଦ୍ଦେଶରେ ଅସି ଧାରଣ କରିଥିଲେ; ମାତ୍ର ଘଟଣାକ୍ରମେ ବ୍ରାହ୍ମଣୀପୁତ୍ର ସାଲବେଗ ତାଙ୍କ ପରିଣତ ବୟସରେ ସ୍ୱେଚ୍ଛାକୃତଭାବେ ସନ୍ୟାସକୁ ବରଣ କରି ନେଇଛନ୍ତି । ଏହି ସନ୍ୟାସକୁ ବରଣ କିରନେବାରେ ସାଲବେଗ ବିପୁଳ ସଂଗୀତ ସୃଷ୍ଟି କରି ପାରିଛନ୍ତି; ତାହାକୁ ଶ୍ରୀକ୍ଷେତ୍ରରେ ଗାଇ ଗାଇ ଦୁଃସହ ଯନ୍ତ୍ରଣାକୁ ବିସ୍ମରି ଯାଇଛନ୍ତି ।

ସାଲବେଗ ରୋଗମୁକ୍ତ ହେବାପରେ ସାଧୁମାନଙ୍କ ଗହଣରେ ପୁରୁଷୋତ୍ତମରେ ଏକାନ୍ତ ସନ୍ୟାସ ଜୀବନଯାପନ କରୁଥିଲେ । ଏହି ଜନମତର ସତ୍ୟତା ପ୍ରତିପାଦିତ ହୁଏ ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି ରସାମୃତ'ରେ—

'ପୁତ୍ର ବୋଇଲା ସତ୍ୟ ଏହି । ପବିତ୍ର କଲ ମୋର ଦେହୀ ।।
ମୁହିଁ ସନ୍ୟାସ ହୋଇବଇଁ । ସଂସାର ସୁଖ ତେଜିଲଇଁ ।।
ଏମନ୍ତ କହି ବସ୍ତ୍ର ଚିରି । ଡୋର କୌପୀନ ଆଶ୍ରେ କରି ।।
ମାତାଙ୍କୁ ଦଣ୍ଡବତ କଲା । ଶୁଣ ଗୋ ଜନନୀ ବୋଇଲା ।।
ଏମନ୍ତ ପ୍ରଭୁ ଥାଉଁ ଥାଉଁ । ଯେ ଆନେ ଆଶ୍ରେ କରେ ଆଉ ।।
ଧିକ ବୋଇଲା ତା ଜୀବନ । ଏ ଦେହେ କିସ ପ୍ରୟୋଜନ ।।
କେବଳ ଜପୁଥାଅ ହରି । ତୋ ମନେ ସନ୍ଦେହ ନକରି ।।
ଏମନ୍ତ କହି ଅନୁକୂଳ । କରି ଚଳିଲା ନୀଳାଚଳ ।।

ସ୍ୱେଚ୍ଛାକୃତ ଭାବେ ସନ୍ନ୍ୟାସକୁ ବରଣ କରି ସାଲବେଗ ଯେଉଁ ଆଧାତ୍ମ ପ୍ରଶାନ୍ତି ଲାଭ କରିଛନ୍ତି ତାଙ୍କ ଗୀତି କବିତା ଗୁଡ଼ିକ ତା'ର ଏକ ଏକ ମଧୁର ମୂର୍ଚ୍ଛନା । ସାଲବେଗଙ୍କ ଭଜନଗୁଡ଼ିକୁ ମୁଖ୍ୟତଃ ପାଞ୍ଚୋଟି ଧାରାରେ ବିଭକ୍ତ କରାଯାଇପାରେ । (୧) ଶ୍ରୀକୃଷ୍ଣ ଲୀଳା ଭଜନ (୨) ଶ୍ରୀ ଜଗନ୍ନାଥ ଭଜନ (୩) ଶିବଭଜନ (୪) ବ୍ରହ୍ମଜ୍ଞାନ ଭଜନ (୫) ଦେବୀ ଭଜନ ।

ସାଲବେଗ ତେଣୁ ନିର୍ଦ୍ଦିଷ୍ଟ ଭାବେ କେଉଁ ଧର୍ମାବଲମ୍ବୀ ଥିଲେ ଓ କେଉଁ ଦେବତାର ଉପାସକ ଥିଲେ ତାହା ସଠିକ୍ ଭାବେ କହିହେବ ନାହିଁ । ହିନ୍ଦୁ ଦେବଦେବୀଙ୍କର ଉପାସନା କରି ସେ ଯେଉଁ ଭଜନସବୁ ଲେଖିଛନ୍ତି ତାହା ତାଙ୍କ ଭକ୍ତିକତାର ପରିଚ୍ୟ ଦେବା ସଙ୍ଗେ ସଙ୍ଗେ ଓଡ଼ିଶାର ଲୋକ ବିଶ୍ୱାସ ଓ ଲୋକ ପରମ୍ପରାକୁ ମଧ ନାନାଭାବରେ ପ୍ରତୀକିତ କରିଛି ।

ଅସୁସ୍ଥ ହୋଇ ଶଯ୍ୟାଶାୟୀ ଥିଲାବେଳେ ଭକ୍ତକବି ସାଲବେଗ ବାଳମୁକୁନ୍ଦଙ୍କ ରୂପ ସ୍ୱପ୍ନରେ ଦର୍ଶନ କରିଥିଲେ । ଶ୍ରୀକୃଷ୍ଣଙ୍କ ବାଳଲୀଳାକୁ ତେଣୁ ସାଲବେଗ ତାଙ୍କ ଅନେକ ଭଜନରେ ଭାବ ନେଇ ଗାଇଛନ୍ତି ।

'ଜୀବନରେ ଥିବି ଯେବେ ଯିବି ବୃନ୍ଦାବନ
ଦର୍ଶନ କରିବି ଯାଇ ଶ୍ରୀ ମଧୁସୂଦନ ।
x x x x
ରାଧାକୃଷ୍ଣ ବେନି ଭିନ୍ନ ନୋହେ କୁଞ୍ଜବନ
କହେ ସାଲବେଗ ହୀନ ଜାତିରେ ଯବନ ।'

ଅବା

ଯାଅ ତୁମ୍ଭେ ନନ୍ଦ କହ୍ନାଇ
ମୋ ନାମେ ମୂରଲୀ ବାଇବ ନାହିଁ ।
ଶିରରେ ତୁମର ମୟୂର ପୁଛ
ବାମେ ଆଉଜାଇ ବାନ୍ଧିବ ନାହିଁ ।
ବାମେ ଆଉଜାଇ ବାନ୍ଧିବ ଯେମନ୍ତ
ପୁଞ୍ଜା ପୁଞ୍ଜା ମଲ୍ଲୀ ଖଞ୍ଜିବ ନାହିଁ ।
x x x x
କହେ ସାଲବେଗ ଜାତିରେ ଯବନ
ରାଧାକୃଷ୍ଣ ପାଦ ହୃଦରେ ଧ୍ୟାୟି ।'

ସାଲବେଗଙ୍କ କୃଷ୍ଣ ଭଜନରେ ତେଣୁ ତାଙ୍କର କୋମଳ କବିତ୍ୱ ଭକ୍ତିଭାବର ନମନୀୟତା ପ୍ରକଟିତ ହୋଇଛି । କ୍ଲିଷ୍ଟ ସଂସ୍କୃତି କିମ୍ବା କୃତ୍ରିମ ଆଳଙ୍କାରିକ ଭାଷାରେ ସାଲବେଗ ଭଜନ ରଚନା କରିନାହାନ୍ତି; ବରଂ ଜାନପଦିକ ଲୋକଭାଷାର ସୌକୁମାର୍ଯ୍ୟ ସାଲବେଗଙ୍କ ଭଜନ

ଗୁଡ଼ିକୁ ଅଧିକ ହୃଦ୍ୟ ଓ ଆପଣାର କରିଛି । ସବୁକାଳର ସାହିତ୍ୟ ଭାବ ହିଁ ମୁଖ୍ୟ । ଏହି ଭକ୍ତିଭାବ ପ୍ରଧାନତା ସାଲବେଗଙ୍କ ସୁପ୍ରସିଦ୍ଧ ଜଣାଣ ସାହିତ୍ୟ ବିଶେଷତ୍ୱ । ଏ ପରମ୍ପରାର ଆଉ ଜଣେ ସ୍ମରଣୀୟ ପ୍ରତିଭା ହେଉଛନ୍ତି ପରବର୍ତ୍ତୀ ସମୟରେ ଭକ୍ତକବି ଭୀମଭୋଇ ।

ସାଲବେଗଙ୍କ ବ୍ରହ୍ମଜ୍ଞାନ ଭଜନ ଜୀବନର ସାରଶାଶ୍ୱତକୁ ପରମାର୍ଥ ଜ୍ଞାନ କରିଛି । ସଂସାରର ପାପତାପ ଭିତରେ ସନ୍ତାପିତ ହେବା ଅପେକ୍ଷା ଦିବ୍ୟ ଜ୍ଞାନ ବଳରେ ନିଜତ୍ୱକୁ ଜାଣିବା ଅଧିକ ଶ୍ରେୟ ବୋଲି ସାଲବେଗ ସବୁକାଳର ମଣିଷକୁ ଯେପରି ବାର୍ତ୍ତା ଦେଇ ଯାଇଛନ୍ତି ।

'ସୁମନରେ ନିଶ୍ଚୟ ଏ ଜୀବ ଯିବ ।
ସାଧୁସଙ୍ଗ ପ୍ରୀତି ଦାନଧର୍ମ କୀର୍ତ୍ତି
ଏଇ ମାତ୍ର ରହିଥିବ ॥

x x x x

ମୋହର ମୋହର ବୋଲୁଅଛୁ ତୁହି
ମୋହ ମାୟା ସଂସାରକୁ
ମଲେ ତୁ ଆଉକି ଲେଉଟି ଦେଖିବୁ
ପୀରତି ବନ୍ଧୁ ଜନକୁ ॥
ଭଜ ରାମ କୃଷ୍ଣ ଗୋବିନ୍ଦ ଗୋପାଳ
ଚିନ୍ତାକର ମନ ନିତି
କହେ ସାଲବେଗ ଜାତିରେ ଯବନ

ଅବା

'କାହିଁକି ବସିଛୁ ମନ, କିସ ନେବା ପାଇଁ ତ ।
ଆସିଛୁ ଲଙ୍ଗଳା ହୋଇ ଯିବୁ ଶୂନ୍ୟହୋଇ ତ
ମାଟି ଘଟ ପଞ୍ଜରୀରେ ସୁବର୍ଣ୍ଣର ଶୁଆ ତ
ଅଠାକାଠି ଲଗାଇଛି ଭାବ ବିନୋଦିଆ ତ

ଅବା

'ହେ ଚକାଡ଼ୋଳା ଚାହୁଁ ଚାହୁଁ ବୁଡ଼ିଲା ମୋ ଭେଳା ।
ଏକ ଚକେ ରଥ ଚଳୁଥିଲା
ବେନି ଚକ ହେତୁ ନଚଳିଲା
ତିଳ ଚୋପା ପ୍ରାୟେ କବାଟ ଲାଗିଛି ତହିଁ ମତ୍ତ ଗଜ ଖେଳୁଥିଲା ।

x x x x x x

କହେ ସାଲବେଗ ରସଲୀଳା
କେ କହିପାରିବ କୃଷ୍ଣ ଲୀଳା
ସହନ୍ତା ଦୀପରେ ଅନଳ ଜଳୁଛି ତଇଳ ପକାନ୍ତେ ଲିଭିଗଲା ।'

ଭାରତୀୟ ଆଧ୍ୟାତ୍ମିକ ଅଭିଳିପ୍‌ସାକୁ ସର୍ବଭାରତୀୟ ସ୍ତରରେ ତୁକାରାମ, ତୁଳସୀଦାସ, ଜ୍ଞାନଦେବ, ନାନକ, କବୀର, ଭୀମଭୋଇ ଯେପରି ପ୍ରଚାର କରି ଯାଇଛନ୍ତି ସାଲବେଗ ମଧ୍ୟ ନିଜ ଅନ୍ତରର ଶୁଦ୍ଧ ଭାଗବତ ଉପଲବ୍ଧିକୁ ତାଙ୍କ ସୁଲଳିତ ଜଣାଣରେ ଅଭିବ୍ୟକ୍ତି ଦେଇ ପାରିଛନ୍ତି ।

ସାଲବେଗ ନିଜର ଭକ୍ତିଭାବନାକୁ ନିର୍ଦ୍ଦିଷ୍ଟ ଏକ ଉପାସ୍ୟ ଦେବତା ବା ନିର୍ଦ୍ଦିଷ୍ଟ ଏକ ଉପାସନା ପୀଠରେ ସୀମିତ କରି ରଖି ଶିବଙ୍କୁ ମଧ୍ୟ ଅନୁରୂପ ଭକ୍ତି କରିଛନ୍ତି । ସାଲବେଗ ବିଜାତୀୟ ଯବନ ହୋଇଥିଲେ ବି ନିଜ ଅନ୍ତରାତ୍ମାକୁ ଶ୍ରୀ କ୍ଷେତ୍ରରେ ହିନ୍ଦୁର ଶାସ୍ତ୍ରୀୟ ଆଧ୍ୟାତ୍ମିକ ପରମ୍ପରାରେ ସମନ୍ୱିତ କରିଯାଇଛନ୍ତି ଯେପରି ।

ଭକ୍ତକବି ସାଲବେଗଙ୍କ ଜୀବନୀ ସଂପର୍କରେ ସବିଶେଷ ପ୍ରାମାଣିକ ବିବରଣୀ ନଥିଲେ ହେଁ କବିଙ୍କ ଜଣାଣ ଉତ୍କଳର ତୀର୍ଥ ଭୂମିରେ କୋଟିକଣ୍ଠରେ ଗୀତ ହେଉଛି ।

ସାଲବେଗ ଜୀବନର ସକଳ ପାର୍ଥିବତାକୁ ଅସାର ମନେ କରିଛନ୍ତି । ଏ ସଂସାରରୁ ଗଲାବେଳେ କେହି କିଛି ତା ହାତରେ ନେଇପାରେନା । ଜଣେ ଏକଲା ଯିବ ଆଉ ନିସ୍ୱ ହୋଇ ଯିବ । ବାଇବେଲରେ କୁହାଯାଇଛି 'Naked thy come and naked thy go' ।



# ଜୀବନ ପାତ୍ର ମୋ ଭରିଛ କେତେ ମତେ

ଜୀବନ ପୂର୍ଣ୍ଣତାରେ ଭରି ଯାଇଛି ବୋଲି ଯେଉଁ କବି ଈଶ୍ୱରଙ୍କୁ କୃତଜ୍ଞତା ଜଣାଇଛନ୍ତି ସେ କବିର ଦୁଃଖ ଆଉ କେଉଁଠି ରହିଲା ?

ଜଣେ ନିଃସ୍ୱ ଈଶ୍ୱରପ୍ରେମୀ ସୁନ୍ଦର ବସୁନ୍ଧରାରେ ଯଦି ସତ୍ୟଶୀଳ ଗୀତ ପଦେ ଗାଇବ ସେତ ଏମିତି ଏଇ ଗୀତ ହିଁ ଗାଇବ :

'ଜୀବନ ପାତ୍ର ମୋ ଭରିଛ କେତେ ମତେ
ନଦେଲ ବୋଲି କିଛି କହିବି କିଏ ଆଉ'

ସତ କହିଲେ ଏ ପୃଥିବୀରେ ଜଣେ ଏମିତି କେହି ନାହିଁ ଯେ କୌଣସି ନା କୌଣସି ଭାବରେ ଦୁଃଖୀ ନହେଁ । ଅଥଚ ଜଣେ ମର୍ତ୍ତ୍ୟବାସୀ କବିର ଜୀବନ ପାତ୍ରକୁ ଈଶ୍ୱର ଏପରି ଭରି ଦେଇଛନ୍ତି ଯେ, ସେ ତାଙ୍କୁ କିଛି ନ ଦେଇଛନ୍ତି ବୋଲି କହି ପାରୁନାହାନ୍ତି ।

ଈଶ୍ୱର ପରମ କାରୁଣିକ ହୋଇଥିବା କାରଣରୁ ଜଣକର ଜୀବନ ପାତ୍ରକୁ କ'ଣ ଦୁଃଖରେ ବି ଭରିଦିଅନ୍ତି କି ? ହଁ ଏମିତି ବି ହୋଇ ପାରେ । ଈଶ୍ୱର ଦୁଃଖ ଦେଲେ ବି ଜଣକ ଜୀବନରେ ତାହା ଆଶୀର୍ବାଦ ହୋଇ ଫଳେ ।

ଏହି ପରମ ସନ୍ତୋଷର ଆଶା ଓ ଆନନ୍ଦଭରା ଗୀତ ପଦିକ ଗାଇଛନ୍ତି ସବୁଜ ଯୁଗର ବିଶିଷ୍ଟ କବି ବୈକୁଣ୍ଠନାଥ ।

ତାଙ୍କ ଜୀବନ ଦୁଃଖ ଓ ହତାଶାରେ ଭରି ଯାଇଥିଲା । ଅଥଚ ସେ ଦୁଃଖ ଓ ବଞ୍ଚନାର କଥାକୁ ଗାଇ ନାହାନ୍ତି । ଜଣେ ସଚ୍ଚା କବି ବୋଧେ ଜୀବନର ଯାବତୀୟ କ୍ଳେଶ ଓ ଯାତନାକୁ ଡେଇଁ ଯାଏ । ସେ କେବଳ ସୁନ୍ଦର ଦେଖିବା ପାଇଁ ଓ ଆନନ୍ଦର ଗୀତ ଗାଇବା ପାଇଁ ବୋଧେ ଈଶ୍ୱରଙ୍କ ଆଶୀର୍ବାଦ ପାଇ ସଂସାରକୁ ଆସି ଥାଆନ୍ତି ।

ବୈକୁଣ୍ଠ ନାଥ ଏ ଗୀତ ପଦିକ ପାଇଁ ଋଷି ସ୍ତରକୁ ଉନ୍ନୀତ ହୋଇ ଯାଇଛନ୍ତି ।

କାପୁରୁଷ ହିଁ ଦୁଃଖ ଓ ନୈରାଶ୍ୟର ଗୀତ ଗାଏ । କବି କେବେ ନିରାଶା ଆଉ ବଞ୍ଚନାର କଥା ଲେଖେ ନାହିଁ । ଯଦି ଲେଖେ ତା ଉପରେ କଲ୍ୟାଣର ସ୍ପର୍ଶ ବୋଳା ହୋଇଥାଏ ।

ଇତରଙ୍କ ପରି ନିଜ ଦୁଃଖକୁ ବାହୁନିବା ଆଉ ଏ ମଙ୍ଗଳମୟ ଜଗତରେ ନିଜ ଜୀବନକୁ ଅଭିସଂପାତ ଜ୍ଞାନ କରିବା ଗୋଟେ ଭୀରତା ସତରେ । ଗୋଟେ ପରାଜିତ ଆତ୍ମା ବେଳେ ବ୍ୟର୍ଥତାର କଥାକୁ ଉଚ୍ଚାରଣ କରେ ଆଉ ଜୀବନକୁ ଦୁଃଖ ଓ ବଞ୍ଚନାର ବୋଲି ଜ୍ଞାନ କରେ ।

ଯେ ବ୍ରହ୍ମାଣ୍ଡରେ ଅନୁଦିନ ନିବିଡ଼ ନୀଳ ଆକାଶକୁ ଦେଖେ, ଶୋଭାବନ୍ତ ଦିଗ୍‌ବଳୟକୁ ଦେଖେ, ଚଢ଼େଇର ଗୀତ ଶୁଣେ, ମାଟି ଯାହାକୁ ନିରନ୍ତର ପବିତ୍ର ଓ ବିଶ୍ୱାସନୀୟ ଲାଗେ ସେତ ଏହି ସୁନ୍ଦର ପୃଥିବୀର ମହିମା କୀର୍ତ୍ତନ କରେ ।

ବର୍ଷା ଏଠି କେତେ ମଙ୍ଗଳମୟ, ଋତୁ ଚକ୍ରର ନିତ୍ୟଲୀଳା, ମନୋଜ୍ଞ ସଞ୍ଜ ସକାଳ, ଚିତ୍ତ ଉଲ୍ଲାସକ ଚୈତ୍ରବନ, ଗିରି ଝରଣା, ମଳୟ ପବନ ଆଦି ସକଳ ବିଷୟ ମଣିଷକୁ ସମ୍ମୋହିତ କରେ ।

ମଣିଷ ଏଥିପାଇଁ ଏ ସୁନ୍ଦର ପୃଥିବୀର ଜୀବନ ଭୋଗକୁ ବେଶୀ ଭଲପାଏ । ମୃତ୍ୟୁ ଜୀବନ ଭୋଗର ଦାରୁଣ ପରିସମାପ୍ତି ବୋଲି ମଣିଷ ମୃତ୍ୟୁକୁ ଏତେ ଭୟ କରେ

ଏ ସୁନ୍ଦର ପୃଥିବୀରେ ମଣିଷ ମତୁଆଲା ହୁଏ । ସେ ଦୁଃଖସବୁ ଭୁଲିଯିବାକୁ ସଙ୍କଳ୍ପ କରେ ।

ସନ୍ତାପ ତ ସମସ୍ତଙ୍କ ଜୀବନରେ ଅଛି । ସନ୍ତାପ ଭୁଲିବା କିନ୍ତୁ ଜରୁରୀ ।

ଜୀବନ ପାତ୍ର ଏଇ ପୃଥିବୀରେ କାହାର ଭରି ଯାଇନି । କିଛିନା କିଛି ଅପୂର୍ଣ୍ଣତାକୁ ନେଇ ସଭିଏଁ ଜିଇଁଛନ୍ତି ଯେପରି । କାହାର ସୁନା ଅଛିତ କାନ ନାହିଁ । କାହାର ପୁଣି କାନ ଅଛିତ ସୁନା ନାହିଁ ।

ଏ ସଂସାରରେ ଏପରି କେହି ନାହିଁ ଯେ ଦୁଃଖରେ ଆଉଟୁ ପାଉଟୁ ହେଉ ନାହିଁ । ଦୁଃଖ ଭୋଗିବା ଯେମିତି ଚିରନ୍ତନ ସତ୍ୟ । ଯାହା ସବୁ ମଣିଷଙ୍କ କପାଳରେ ବିଧାତା ସତେ ଯେପରି ଲେଖି ଦେଇଛନ୍ତି । ଅଥଚ ଏ ମାଟିର କବିଟିଏ କେତେ ଦମ୍ଭର ସହିତ କେତେ ଉଲ୍ଲସିତ ହୋଇ ଗାଉଛି 'ଜୀବନ ପାତ୍ର ମୋ ଭରିଛ କେତେ ମତେ ନଦେଲ ବୋଲି କିଛି କହିବି କି ହେ ଆଉ ।'

ଏ ଆତ୍ମ ସନ୍ତୋଷ ଅନନ୍ୟ ସତରେ । କବିଟିଏ ହିଁ ଦୁଃଖକୁ ସୁଖ ମଣେ । ସଂସାରର ଗରଳ ପାନ କରି ସେ ଅମୃତର ଆସ୍ୱାଦନ କରେ ।

ଏହି ଆନନ୍ଦବାଦୀ କବି ଜୀବନରେ କେତେ ଯେ କେତେ ଦୁଃଖ ଭୋଗିଛନ୍ତି । ଅନ୍ତିମ ଜୀବନ ତାଙ୍କର ଚରମ ବଞ୍ଚନା ଭିତରେ କଟିଛି । ଏପରିକି ସେ ଚରମ ନିଃସଙ୍ଗତା ଭିତରେ ଅବଶିଷ୍ଟ ଆୟୁଷ କାଟିଛନ୍ତି । ପରିବାର ସହିତ ତାଙ୍କର ପାରିବାରିକ ଯୋଗସୂତ୍ର ଯେମିତି ଛିନ୍ନ ହୋଇଯାଇଛି ।

ସେ ଥିଲେ ପରମ ବୈଷ୍ଣବ, ଭାବଭୋଳା ଜିଜ୍ଞାସୁ ।

ସେ ମୋତେ ମୁଗ୍ଧ କରି ଦେଇଥିଲେ । ତାଙ୍କର ବୌଦ୍ଧିକ ତଥା ସାରସ୍ୱତ ସଂପ୍ରୀତିକୁ ମୁଁ ଜୀବନର କଦାପି ଭୁଲି ପାରିବିନି । ସେ କଟକରେ ତାଙ୍କର ନିଃସଙ୍ଗ ଜୀବନ କଟାଉଥିଲା ବେଳେ ମୁଁ କବିଙ୍କ ନିକଟକୁ ବହୁଥର ଯାଇଛି ।

ତାଙ୍କର ଯାତ୍ରାସଙ୍ଗୀତ, ବର୍ଷାବରଣ, ବାସର ଗୃହ, ପାନ୍ଥଶାଳା ଆଦି କାବ୍ୟ ସଞ୍ଚୟନର କବିତା ସବୁ ମୋତେ ପ୍ରବୋଧିତ କରି ଦେଇଥିଲା । ତାଙ୍କର ଦି'ଧାଡ଼ି କବିତା ମୋତେ ଅନନ୍ୟ ଶ୍ଳୋକ ପରି ଲାଗିଛି ଓ ମୋତେ ଆବିଷ୍ଟ କରି ପକାଇଛି ।

ଉଣେଇଶ ସତୁରୀରେ ମୋ ସହପାଠିନୀ ଲଳିତା ପ୍ରକାଶ କରିଥିବା ମୋ ସେ

କବିତାଗ୍ରନ୍ଥ 'ମାଇ ସଞ୍ଚର କବିତା'ର ଅଗ୍ରଲେଖ ଲେଖି ଦେଇଥିଲେ .ବୈକୁଣ୍ଠନାଥ ତାହା ମୋ ସାତପୁରୁଷ ପାଇଁ ଅବିସ୍ମରଣୀୟ ହୋଇ ରହିବ ।

କବି ଥିଲେ ପରମ ପ୍ରେମଭିକ୍ଷୁ ଓ ସ୍ୱାଭିମାନୀ । ତାଙ୍କ ଅଭିମାନର ତୁଳନା ନାହିଁ ।

ସଂସାର କରି ବି ସେ ସନ୍ୟାସୀ ପରି ବଞ୍ଚିଥିଲେ ।

ଏ ସଂସାର, ଏଠି କାଳ ସମୁଦ୍ର ପରି । ଜୀବନ ନୌକା ସଦୃଶ । ଜୀବନ ନୌକାକୁ ସମୁଦ୍ରରେ ଭସାଇ ଦେବା ହିଁ ତ ସାର । ସମସ୍ତଙ୍କ ଜୀବନ ଡଙ୍ଗା କାଳ ସୁଅରେ ଭାସୁଛି ।

ଜଣେ ବଡ଼ କବି ହିଁ କେବଳ କାଳ ସଚେତନ । କାଳ ନିରବଧି ପ୍ରବାହିତ । ଗଭୀର ଭାବରେ ଭାବିଲେ ରହସ୍ୟମୟ ଲାଗେ ।

ବୈକୁଣ୍ଠ ଜୀବନର ଲୀଳାକୁ ନାନାମତେ ଲକ୍ଷ୍ୟ କରିଛନ୍ତି । କବିଟିଏ ପରି ଜୀବନ ବଞ୍ଚିବା ହିଁ ଥିଲା ତାଙ୍କର ଏକମାତ୍ର ସ୍ୱପ୍ନ । ତାଙ୍କ ଜୀବନରେ ଆଉ କିଛି ଅଭିଳାଷ ନଥିଲା କି ଅନ୍ୟ କୌଣସି କାର୍ଯ୍ୟକ୍ରମ ବି ନଥିଲା ।

କିଛି ବିଷୟକୁ ବିଜ୍ଞପ୍ତି ଦେବାର ପ୍ରଲୋଭନ ତାଙ୍କର ନଥିଲା । ପ୍ରକାଶ ଓ ପ୍ରଚାର ଦିଗରେ ବୈକୁଣ୍ଠ ଚିର ଉଦାସୀନ ଥିଲେ ।

କିଏ କ'ଣ ଦେଲା ନଦେଲା କିଛି ବୁଝୁ ନଥିଲେ । ତାଙ୍କ କବିତ୍ୱର ସୃଜନଶୀଳ ବଳୟ ଭିତରେ ସେ ସାରା ଜୀବନ ଯେପରି ନିମଜ୍ଜିତ ହୋଇ ରହିଥିଲେ ।

ଶେଷ ଜୀବନରେ ସେ ଚରମ ନିଃସଙ୍ଗତା ଭିତରେ ବଞ୍ଚିଥିଲେ । ପତ୍ନୀଙ୍କ ସହିତ ସେ କଥାବାର୍ତ୍ତା ପ୍ରାୟ ବନ୍ଦ କରି ଦେଇଥିଲେ ।

ପତିଙ୍କ କବିତ୍ୱ ପ୍ରତି ପତ୍ନୀଙ୍କ ପ୍ରାଣରେ ଶ୍ରଦ୍ଧା ନଥିଲା କି ସମ୍ମାନବୋଧ ନଥିଲା । ବଣ୍ଡାମ୍ବାରେ ଛେଳି କୁକୁଡ଼ା ନେଇ ସେ ବ୍ୟସ୍ତ ରହୁଥିଲେ ତ ବୈକୁଣ୍ଠନାଥ ବ୍ୟସ୍ତ ରହୁଥିଲେ ମହାଜୀବନକୁ ଉପଲବ୍ଧି କରିବାରେ ।

ଏ ପାର୍ଥିବ ଭବ ଲୀଳା ସତରେ କେତେ ଅସାର । ସେ ଭାବମୟ, ପୁଲକମୟ, ଅନ୍ତରମୟ ଜୀବନ ପ୍ରିୟତମଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିଛନ୍ତି ।

'ଜୀବନ ପ୍ରିୟତମ ହରିଛ ମୋ' ଭରମ
ତରଣୀ ମୋର ତବ ସାଗରେ ବହିଯାଉ ।'

ସେ ତାଙ୍କ କବିତା ରଚନାରୁ ସାନ୍ତ୍ୱନା ପାଇଁ ପ୍ରୟାସ କରିଛନ୍ତି । ଆପଣା ଜୀବନର ସୁଖ ଦୁଃଖକୁ ଭୁଲିବା ପାଇଁ ଚେଷ୍ଟା କରିଛନ୍ତି । ଅଥଚ ଜଣେ ତାଙ୍କୁ ଚିରଶାନ୍ତି ଦେଇ ପାରିନି ।

ଦୀର୍ଘ ଏଇ ଯାତ୍ରା ପଥେ କାବ୍ୟ ସ୍ୱପ୍ନ ମାୟା
ରହେ କେତେ ଦିନବନ୍ଧୁ ବାରିବାହ ଛାୟା ?
ମେଣ୍ଟିବ କି ତହିଁ ପ୍ରିୟ, ଜୀବନର କ୍ଷୁଧା ?
କାହିଁ ତୁମ ସ୍ୱର୍ଗଲୋକ ନିତ୍ୟରୂପ ସୁଧା ?,

ବୈକୁଣ୍ଠନାଥ ଥିଲେ ଅନାସକ୍ତ ଯାତ୍ରୀ । ଆଗକୁ ଚାଲିବା ଥିଲା ତାଙ୍କ ସ୍ୱପ୍ନ, ତାଙ୍କ ପ୍ରବଣତାର ବିଷୟ । ଆଗକୁ ଯିବାରେ ପ୍ରତି ବନ୍ଧକ ସବୁତ ରହିବ । ଜୀବନରେ ପ୍ରତିବନ୍ଧକ ସବୁକୁ ଯେ ଡରେ ସେତ ବାଟଚାଲି ପାରିବନି ।

ଜୀବନ ସାରା ପ୍ରେମର ଗୀତ ସେ ଗାଇଛନ୍ତି ।

ଶାଶ୍ୱତର ସାନିଧ୍ୟ ପାଇଁ ବ୍ୟାକୁଳତା ପ୍ରକାଶ କରିଛନ୍ତି ।

ମୃତ୍ୟୁ ପର୍ଯ୍ୟନ୍ତ ସେ କବିତା ଲେଖିଛନ୍ତି । ଈଶ୍ୱରଙ୍କ କରୁଣା ଭିକ୍ଷା କରିଛନ୍ତି, ସାଧୁତାର ଜୟଗାନ କରିଛନ୍ତି । ବିଦ୍ରୋହ କରିଛନ୍ତି ।

ତାଙ୍କ ଜୀବନର ଅନ୍ତିମ କବିତାଟି ଥିଲା 'ନେତା ସାବଧାନ' ।

'ସ୍ୱାର୍ଥ ସାଧନେ ଜନତାକୁ ଦେଉ ଖେଦି
ଆପଣା ଗଳାକୁ ନିଜକରେ ଯାଉ ଛେଦି
ମୂକ ଜନତାର ଜଗାଇଛ ଯେଉଁ କ୍ରୋଧ
ସେଇ ଜଡ଼, ମୂକ ନେବ ଦିନେ ପ୍ରତିଶୋଧ ।'

ଜଣେ ଉତ୍ତମ କବିର କବିତା ସବୁଠି ସବୁକାଳରେ ପରମ କଲ୍ୟାଣର କଥା ହିଁ କହିଥାଏ । କବିର କଲ୍ୟାଣକର ଏହି କବିତ୍ୱର ଉପଲବଧି ହିଁ ତା ଆତ୍ମାର ସର୍ବୋତ୍ତମ ସୃଜନଶୀଳତା ।

ବୈକୁଣ୍ଠ ନାଥ ତାଙ୍କ ଆତ୍ମାର ଉଲ୍ଲାସ ଭିତରେ ବଞ୍ଚିଥିଲେ ଯେପରି । ଘର ସଂସାର, ଚାକିରୀ ତାଙ୍କୁ ବଖାଇ ନଥିଲା ।

ସୁନ୍ଦରର ଆରାଧନା କରିବା ପାଇଁ ଆନନ୍ଦର ଗୀତ ଗାଇବା ପାଇଁ କବି ବୈକୁଣ୍ଠ ନାଥ ନିଜର ଅପୂର୍ଣ୍ଣତା, ନିଜ ଜୀବନର ସନ୍ତାପ ସବୁକୁ ସତେ ଯେପରି ଅତିକ୍ରମ କରି ଯାଇଛନ୍ତି ।

ସୁନ୍ଦରର ବିବିଧ ଚିତ୍ର ଅଙ୍କନ କରିବା ପରିପ୍ରେକ୍ଷୀରେ ତାଙ୍କ ଜୀବନ ଥିଲା ଏକ ଧ୍ୟାନସ୍ଥ ଶିଳ୍ପୀର ଜୀବନ ଓ ତାଙ୍କ ରଚନାବଳୀ ଥିଲା ଚାରୁ ଚିତ୍ରଶାଳା ।

ସ୍ୱପ୍ନହିଁ ଯୌବନକୁ ଏତେ ସୁନ୍ଦର କରିଛି । ଯୌବନହିଁ ପ୍ରକୃତରେ ସ୍ୱପ୍ନ ଦେଖିବାର କାଳ । ସ୍ୱପ୍ନହୀନ ଯୌବନ ଯୌବନ ନୁହେଁ । କବି ଯୌବନର ସ୍ୱପ୍ନ ପ୍ରତି ଅଧିକ ଅନୁରକ୍ତ ।

କବି ବେକୁଣ୍ଠ ନାଥ ପ୍ରିୟାକୁ ଜହ୍ନରାତି ଓ ପୁଷ୍ପସ୍ତବକିତ ସୁରଭିତ ମଣ୍ଡଳକୁ ଆସିବାକୁ ନିମନ୍ତ୍ରଣ ଜଣାଇଛନ୍ତି ।

'ମଧୁର ଆଜି ଜ୍ୟୋସ୍ନାରାତି
ପ୍ରେୟସୀ ମୋ ଆସ
ହାସ୍ନା ହେନାର ଗନ୍ଧବନେ
ଲାଗିଛି ପ୍ରଣୟ ରାସ

ଗୋଲାପ କେବେ ସ୍ୱପ୍ନ ଦେଖେ
ବିରଳେ କବି ଚିତ୍ର ଲେଖେ
ସ୍ୱପ୍ନର ଏ ସୃଷ୍ଟି ମେଳେ
ମଳୟ ମେଳେ ବାସ
ଆସ ମୋ ପ୍ରିୟ ଆସ ।' (କବିପ୍ରେୟସୀ)

କବି ତରୁଣ ଜୀବନକୁ ସବୁଜସ୍ୱପ୍ନର ବୟସ ବୋଲି ତର୍କଣା କରିଛନ୍ତି । 'ଶ୍ୟାମଳ କ୍ଷେତ ଯେ ମାଇଲ ମାଇଲ ଧରି/ତରୁଣ ଜୀବନ ସବୁଜ ସ୍ୱପ୍ନ ପରି ।'

ସ୍ୱପ୍ନହୀନ ଜୀବନ ନିସ୍ପନ୍ଦ । ଯୌବନ ସମୟ ସ୍ୱପ୍ନ ଯୋଗୁଁ ହିଁ ସ୍ପନ୍ଦିତ ହୁଏ । ବୈକୁଣ୍ଠ ନାଥ ପ୍ରେମ ସହିତ ସୌନ୍ଦର୍ଯ୍ୟକୁ ସମନ୍ୱିତ କରି ଲେଖିଛନ୍ତି ।

ସୁନ୍ଦର ଦେଖିବା କବି ଚିତ୍ତର ସର୍ବୋତ୍ତମ ସଂସ୍କାର ।

ବୈକୁଣ୍ଠଙ୍କ କବି ଚିତ୍ତ ପ୍ରକୃତି ପ୍ରତି ଅଧିକ ଉନ୍ମୁଖ ଥିଲା । ଯୌବନର ସେ ପୂଜାରୀ ଥିଲେ ସତ ହେଲେ ପ୍ରକୃତି ତାଙ୍କ କବି ପ୍ରାଣରେ ଅଧିକ ଆଧାତ୍ମିକ ସ୍ପର୍ଶ ଆଣି ଦେଇଛି । ତାଙ୍କୁ ପ୍ରେମ, ସୌନ୍ଦର୍ଯ୍ୟ ଓ ମାନବାତ୍ମାର କବି କୁହାଯାଇପାରେ ।

ପୀଡ଼ିତ ମାନବାତ୍ମା ପ୍ରତି ସେ କେବେ ଉଦାସ ନଥିଲେ । ତାଙ୍କ ପ୍ରକୃତି ପ୍ରାଣତା ତାଙ୍କ ଈଶ୍ୱର ପ୍ରାଣତାର ନିଦର୍ଶନ ଥିଲା ।

ସୌନ୍ଦର୍ଯ୍ୟ ବୋଧ ବୈକୁଣ୍ଠଙ୍କୁ ଅଧିକ ଗୁଣୀ ଓ ସଂଯମୀ କରିଥିଲା । ତାଙ୍କ ଭିତରେ ସୌନ୍ଦର୍ଯ୍ୟାନୁଭୂତିର ଗୋଟେ ମାର୍ମିକ ପ୍ରତ୍ୟୟ ସୃଷ୍ଟି ହୋଇଥିଲା । ସବୁଜ ଯୁଗର କବି; ଅଥଚ ସିଦ୍ଧ ସାଧକଙ୍କ ଭଳି ସେ ଜୀବନ ବଞ୍ଚିଥିଲେ । ବୈଷ୍ଣବ ଭକ୍ତଙ୍କ ପରି ବିନୟ ଓ ତଦ୍‌ଗତ ଭାବ ଭିତରେ ସେ ଈଶ୍ୱରଙ୍କ ଉପାସନା କରିଛନ୍ତି ।

ଅନ୍ତିମ ଜୀବନର ଚରମ ଦୁର୍ଭାଗ୍ୟ ଭିତରେ ବି ସେ ପ୍ରାଣରେ ସୌନ୍ଦର୍ଯ୍ୟ ଓ ଈଶ୍ୱାରାନୁଭୂତିର ଉପାସନା କରିଛନ୍ତି ।

ଶେଷ ବେଳକୁ କବି ସଂପୂର୍ଣ୍ଣ ଦୃଷ୍ଟି ଶକ୍ତି ହରାଇ ବସିଥିଲେ । ପର ଆପଣା ଭିତରୁ କେହି ଜଣେ ହେଲେ ବି ପାଖରେ ରହୁନଥିଲେ । ଚରମ ନିଃସଙ୍ଗତା ଭିତରେ ସେ କାଳ କାଟୁଥିଲେ । ଆଖିକୁ ଦିଶୁନଥିବା କାରଣରୁ ଦରାଣ୍ଡି ଦରାଣ୍ଡି ସେ ସବୁକାମ କରୁଥିଲେ ।

ରେଭେନ୍‌ସା କଲେଜରେ ଏମ.ଏ. ପଢୁଥିଲା ବେଳେ ମୁଁ ବହୁଥର ତାଙ୍କ ପାଖକୁ ଯାଇଛି । ଏ ଘଟଣା ମୋ ଜୀବନରେ ଏକ ଅବିସ୍ମରଣୀୟ ଘଟଣା ହୋଇ ରହିବ ।

ସେ ଥିଲେ ମୋର ଅତ୍ୟନ୍ତ ପ୍ରିୟ କବି । ତାଙ୍କ କବିତାର କେତୋଟି ଧାଡ଼ିକୁ ମୁଁ ମୁଖସ୍ତ କରି ଗାଉଥିଲି ଓ ସର୍ବଦା ମୋ ବନ୍ଧୁମାନଙ୍କୁ ଶୁଣାଉଥିଲି ।

ମୋ ବିଦ୍ୟାର୍ଥୀ ଜୀବନରେ ସେ ମୋତେ ବହୁତ ପ୍ରଭାବିତ କରିଥିଲେ । ମୁଁ ତାଙ୍କ ବ୍ୟକ୍ତିତ୍ୱ ଓ କବିତ୍ୱ ଦ୍ୱାରା ସ୍ୱତଃ ଆକୃଷ୍ଟ ହୋଇ ତାଙ୍କ ପାଖକୁ ଯାଇଥିଲି । ମୋ 'ମାଇ

ସଞ୍ଚାର କବିତା' ବହିର ପ୍ରକାଶିକା ମୋର ଅତି ଆଦରଣୀୟା ଲଳିତାକୁ ମୁଁ ସେତେବେଳେ ବାର ବାର କବିଙ୍କ କଥା କହୁଥିଲି ।

କବିଙ୍କ ଚ଼ରମ ନିଃସଙ୍ଗ ଜୀବନ ଥିଲା ତାଙ୍କ ପ୍ରତି ମୋର ବଡ଼ ଉତ୍ସୁକତାର ଏକ ଅଂଶ ।

ଅଣ୍ଟାଳି ଅଣ୍ଟାଳି ସେ ନିଜେ ସୁରେଇରୁ ପାଣି ଗଡ଼େଇ ପିଉଥିଲେ । ନିଜେ ଜନତା ଷ୍ଟୋଭରେ ରୋଷେଇ କରୁଥିଲେ । ସଂସାର କରିଥିଲେ ବି ସେ ଅଧିକାଂଶ ଦିନ ମୁନିପରି ବଞ୍ଚୁଥିଲେ । ନିଜର ଯାବତୀୟ କାର୍ଯ୍ୟ ସମାପନ କରିବା ସହିତ ନିଜ ପାଇଁ ପାକ ନିଜେ ପ୍ରସ୍ତୁତ କରୁଥିଲେ ।

କଟକରେ ରାଣିହାଟ-ଗୌଡ଼ ସାହିରେ ନୂଆ ତିଆରି ପଲସ୍ତରା ହୋଇ ନଥିବା ଘରେ ସେ ରହୁଥିଲେ ।

ଚ଼ରମ ଏକାକୀତ୍ୱ ଥିଲା ବୋଧେ ତାଙ୍କ ସୃଜନଶୀଳ ଅଭିଳାଷର ବିଷୟ; ଯେଉଁ ଏକାକୀତ୍ୱ ପ୍ରତି ମୁଁ ଅତି ଶୈଶବରୁ ହିଁ ଉତ୍ସୁକ ଥିଲି ।

ଗୋଟେ ଏକାକୀ ବଞ୍ଚୁଥିବା ଏକଲା ମଣିଷ ପ୍ରତି ମୋର ଅଶେଷ ଦୁର୍ବଳତା ରହିଛି । ସେଇ ଏକାକୀତ୍ୱ ଯୋଗୁଁ ଅସ୍ତିତ୍ୱବାଦର ଜନକ ସୋରେନ କିରକେଗାର୍ଡ଼ ମୋ ଚେ଼ତନାର ଦିବ୍ୟପୁରୁଷ ପାଲଟି ଯାଇଛନ୍ତି ।

ମୋର ଏକାନ୍ତ କିରକେଗାର୍ଡ଼ୀୟ ପ୍ରାଣ ଆଜି ମୋ ଅନ୍ତରର ସର୍ବୋତ୍ତମ ସାରସ୍ୱତ ସଂପତ୍ତି ହୋଇ ଯାଇଛି; ଯାହାର ବିକଳ୍ପ ଆଜି ମୋ ନିକଟରେ ହୁଏତ କିଛି ନାହିଁ ।

ଏକୁଟିଆ ବଞ୍ଚୁଥିବା ଜଣେ ମଣିଷ ପ୍ରତି ମୋର ସବୁବେଳେ ବଡ଼ ଖାତିର ଓ ସମ୍ମାନ ବୋଧ ।

ଜଣେ ଏକଲା ମଣିଷ ହିଁ ଶୁଦ୍ଧ କବି ପରି ବଞ୍ଚିପାରେ । ବୀର ପରି ଅନୁଭବ କରିପାରେ ।

ମଠ ଓ ଆଶ୍ରମ କରିଥିବା ମଣିଷ୍ମମାନଙ୍କ ଜୀବନ ବଞ୍ଚିବାକୁ ମୁଁ ସାର୍ଥକ ଜୀବନ ବୋଲି ମନେ କରେ ।

ପରବର୍ତ୍ତୀ ସମୟରେ ମୁଁ ଅନେକଙ୍କ ଠାରୁ ଶୁଣିଛି ବୈକୁଣ୍ଠ ନାଥ ଭାରି ସ୍ୱାଭିମାନି ଥିଲେ ଓ ଏକା ଏକା ରହିବାକୁ ଭଲ ପାଉଥିଲେ ।

ଏକଲା ମଣିଷର ନିଭୃତ ବିଳାସ ଓ ଶୁଚ଼ିତା ତାଙ୍କ କବିତାରେ ପରିଲକ୍ଷିତ ।

କବିଙ୍କ ପ୍ରଶାନ୍ତ ମୁଖମଣ୍ଡଳ ଆଜି ସ୍ପଷ୍ଟତଃ ମୋର ମନେ ପଡ଼ି ଯାଉଛି । କବି ଦିନେ ତାଙ୍କ ବାସଭବନରେ ଭାବବିଭୋର ହୋଇ ଗୋଟେ ପ୍ରଶ୍ନ କରିଥିଲେ ଯେ, ଏ ସଂସାରରେ ପରମ ବୈଷ୍ଣବ କିଏ ପୁଅ ।

ମୁଁ ସେଦିନ ତାଙ୍କ ସେ ପ୍ରଶ୍ନର କିଛି ଉତ୍ତର ଦେଇ ପାରି ନଥିଲି । ମୁଁ ନୀରବ ହୋଇ ତାର ଉତ୍ତର ଚି଼ନ୍ତା କରୁଥିଲି ।

ସେ ବୁଝାଇ କହିଲେ ପିତାହିଁ ଏ ସଂସାରରେ ପରମ ବୈଷ୍ଣବ । କାରଣ କନ୍ୟାକୁ ସେ ସୁବେଶିତ କରି ଜାମାତାଙ୍କ ନିକଟକୁ ପ୍ରେରଣ କରେ ପ୍ରଣୟ ପାଇଁ । କନ୍ୟାକୁ ଗଭୀର ପ୍ରଣୟ ମିଳିଲେ ଏ ସଂସାରରେ ଆଉ କେହି ନୁହେଁ ପିତା କେବଳ ଅଧିକ ଆନନ୍ଦିତ ହୁଅନ୍ତି । ଅଥଚ୍ ଯେ କୌଣସି ପ୍ରଣୟରେ ଅନ୍ୟ ସବୁ ପୁରୁଷ ଈର୍ଷା ହିଁ କରିଥାଆନ୍ତି ।

କବିଙ୍କ ସହିତ ଜୀବନ ଓ ସାହିତ୍ୟ ସଂପର୍କରେ ମନଖୋଲା କଥା ହୁଏ ।

ରାତି ହୋଇଯାଏ ।

ମୁଁ ପ୍ରତିଥର ରେଭେନ୍‌ସା କଲେଜ ପରିସର ଭିତରକୁ ଫେରିଆସେ ଗୋଟେ ଏକଲା ମଣିଷକୁ ଭଲ ପାଇବାର ନିବିଡ଼ ଅନୁଭବକୁ ନେଇ ।

ବୈକୁଣ୍ଠ ନାଥଙ୍କ କବିତା ମୋତେ ସେଦିନ ବହୁଭାବରେ ଆବିଷ୍ଟ କରି ପକାଇଥିଲା । ମୁଁ ତାଙ୍କର କାବ୍ୟ ସଞ୍ଚୟନର କବିତାଗୁଡ଼ିକୁ ବାରବାର ପଢୁଥିଲି ।

ହୃଦୟର ସୌନ୍ଦର୍ଯ୍ୟକୁ ସେ ନାରୀର ପ୍ରକୃତ ସୌନ୍ଦର୍ଯ୍ୟ ବୋଲି ଅଭିହିତ କରିଛନ୍ତି । ବୈକୁଣ୍ଠଙ୍କ ନାୟିକା ଅଧିକ ସ୍ୱପ୍ନମୟୀ, ଅଧିକ ରହସ୍ୟମୟୀ ।

ନାରୀକୁ ସ୍ୱପ୍ନ ଓ ରହସ୍ୟର ପ୍ରତିମା କରିପକାଇବା ଥିଲା ବୈକୁଣ୍ଠଙ୍କ ନାରୀ ବିଳାସର ବୈଶିଷ୍ଟ୍ୟ ।

ନାରୀ ହେଉ ବା ପ୍ରକୃତି ହେଉ ବୈକୁଣ୍ଠ ନାଥ ଥିଲେ ସବୁକିଛି ଚିତ୍ରଣରେ ଅଧିକ ପ୍ରେମୀ ଓ ମରମୀ ।

ବୈକୁଣ୍ଠ ନାଥ ତୁଚ୍ଛ ଧାର୍ମିକତା ଓ ଅବୋଧ ଆଧ୍ୟାତ୍ମିକତା ପ୍ରତି ଅଙ୍ଗୀକାରବଦ୍ଧ ନଥିଲେ । ତାଙ୍କ କବିଦୃଷ୍ଟି ସେପାଇଁ ସ୍ୱଚ୍ଛ ହୋଇଛି । ସେ ବରଂ ମାନବୀୟ ସମ୍ବେଗ ଓ ସୌନ୍ଦର୍ଯ୍ୟ ପ୍ରତି ଅଧିକ ଅଙ୍ଗୀକାର ବଦ୍ଧ ଥିଲେ ।

ବୈକୁଣ୍ଠଙ୍କ କବିତାର ସର୍ବୋତ୍ତମ ଲାବଣ୍ୟଟି ହେଉଛି ଗଭୀର ମାନବୀୟ ସମ୍ବେଗ ଓ ସମ୍ବେଦନଶୀଳତା । ଆଇଜାକ ସିଙ୍ଗର ଥରେ କହିଥିଲେ, 'ମଣିଷକୁ କେନ୍ଦ୍ରରେ ନରଖି କୌଣସି ଉତ୍ତମ ରଚନା ଏ ପର୍ଯ୍ୟନ୍ତ ହୋଇନାହିଁ । ହାସ୍ୟ, ବିଷାଦ, ପ୍ରାପ୍ତି ସବୁଥିରେ ବୈକୁଣ୍ଠନାଥ ମଣିଷର ସହଜାତ ସମ୍ବେଗକୁ ଲେଖିଛନ୍ତି ।

ବୈକୁଣ୍ଠନାଥଙ୍କ ନିଃସଙ୍ଗତା ବୋଧ ତାଙ୍କ ସୌନ୍ଦର୍ଯ୍ୟବୋଧର ଏକ ଅଂଶ ହୋଇ ଯାଇଛି । ଯେଉଁଠି ସେ ଚିରନ୍ତନତା ପ୍ରତି ଉନ୍ମୁଖ ହୋଇଛନ୍ତି ସେଠି ଆପଣା ଅନ୍ତରରେ ସ୍ୱତଃ ସେ ଉଦାସୀନତାକୁ ଅନୁଭବ କରିଛନ୍ତି ଓ ସେଠି ଆପଣା ପ୍ରାଣକୁ ବିଷାଦଗ୍ରସ୍ତ କରାଇଛନ୍ତି ।

ଶୁଦ୍ଧ ଜୀବନବାଦୀ କବିଟିଏ ବାରବାର ଜୀବନକୁ ଅନୁଭବ କରିବା ପାଇଁ ଯେପରି ମରଣର କଥା ଭାବେ, ବୈକୁଣ୍ଠନାଥ ସେହିପରି ବିରଳ ମୃତ୍ୟୁର କଥା ଜୀବନକୁ ଭଲପାଇବା ପରି ପ୍ରେକ୍ଷୀରେ ହିଁ ଲେଖିଛନ୍ତି ।

ସ୍ମୃତି ଏକ ବିରଳ ଅନୁଭବ । ମଣିଷ ଯାହାକୁ ତା ଅନ୍ତରରେ ବଢ଼ାଏ । ସେ ସ୍ମୃତିତ ଅବଶ୍ୟ ପ୍ରୀତିର; ବ୍ୟାବହାରିକ ଜୀବନର ନୁହେଁ ।

ବୈକୁଣ୍ଠନାଥ ଲେଖିଛନ୍ତି :

'ସକଳ ଅସାର ମେଳେ ସଜନିରେ ସାର ପ୍ରୀତି, ସତି
ସହସ୍ର ଜୀବନ ମେଳେ ସାରକ୍ଷଣ ରୂପ ଅନୁଭୁତି ।'

ଦାନ୍ତେ ତାଙ୍କ ସୁପ୍ରସିଦ୍ଧ ଦି ଡିଭାଇନ କମେଡ଼ିରେ ଲେଖିଥିଲେ ବିୟେଟ୍ରିଶ ଯେତେବେଳେ ତାଙ୍କ ସମ୍ମୁଖକୁ ଆସେ ସେତେବେଳେ ସେ ସାରା ସଂସାରରେ ଘୃଣା ଓ ବୈରତାକୁ ବିସ୍ମରି ଯାଉଥିଲେ ।

ସବୁକାଳରେ ଜଣେ ସଚ୍ଚା କବି, ଜଣେ ସଚ୍ଚା ପ୍ରେମୀର ଅନୁଭବ ଏମିତି । କ୍ଷଣକାଣ ପାଇଁ ହେଉ ପଛେ ପ୍ରୀତିରେ ମୁଗ୍ଧ ହେବା ରୂପରେ ମୁଗ୍ଧ ହେବାତ ଅସଲ କବିତ୍ୱ ।

ପ୍ରେମ ମରଣର କୃଷ୍ଣ ବଳୟକୁ ବି ଅପସାରି ଦିଏ । ଏହା କମ ବଡ଼ ତଲ୍ଲୀନ ଚିତ୍ତର ଅନୁଭବ ନୁହେଁ ।

କବିତାିତ ଚିରକାଳ ସ୍ୱର୍ଗୀୟ ଲାଗେ ଏଇଥିପାଇଁ । କବିତାତ ମନ୍ତ୍ରପରି ମୋହିଦିଏ ଏମିତି ବିଲୋକ ଅନୁଭବର ପ୍ରସ୍ତାବନାରେ ବୈକୁଣ୍ଠ ନାଥ ଜୀବନରେ ମୁଗ୍ଧ ହୋଇଛନ୍ତି, ପ୍ରବୋଧିତ ହୋଇଛନ୍ତି ସତ; ହେଲେ ତାଙ୍କ ଆତ୍ମାର ଅପମାନ ହୋଇଛି । ପ୍ରାଣିତାଙ୍କର କାନ୍ଦିଉଠିଛି ।

ଆଦରଣୀୟାମାନଙ୍କ ଅନାଦରରେ, ସଂସାରର ଦୁଃଖ ଓ ତାଡ଼ନାରେ ତାଙ୍କ ଅନ୍ତର ବିଳପି ଉଠିଛି । ଚରମ ବାର୍ଦ୍ଧକ୍ୟରେ ବି ସେ ଆଖିରୁ ତତଲା ଲୁହ ଗଡ଼ାଇ କାନ୍ଦିଛନ୍ତି । ସଂସାର କରି ମୁନିଋଷି ମାନଙ୍କ ପରି ସ୍ଥିତପ୍ରଜ୍ଞ ହୋଇ ରହିଛନ୍ତି । ବିଷୟସୁଖ ତାଙ୍କଠାରୁ ବହୁଦୂରରେ ରହିଛି ।

ବାର୍ଦ୍ଧକ୍ୟରେ କନିଷ୍ଠପୁତ୍ର ସଂଘମିତ୍ରାର ବିୟୋଗ କଷ୍ଟ, ପତ୍ନୀଙ୍କ ସହିତ ମତାନ୍ତରରୁ ମନାନ୍ତର ଓ ତଦ୍‌ଜନିତ କ୍ଲେଶ, ଉତ୍ତର ଜୀବନରେ ଆର୍ଥିକ ଅସ୍ୱଚ୍ଛଳତା ଓ ଚରମ ନିଃସଙ୍ଗତା ସତ୍ତ୍ୱେ ବୈକୁଣ୍ଠ ନାଥ ସତରେ ଉଚ୍ଛୁଳା ଆବେଗରେ ଜୀବନ ପ୍ରିୟତାର କି ଚମତ୍କାର ଗୀତ ଗାଇଛନ୍ତି ।'

ବଡ଼ାମ୍ବାରେ ତାଙ୍କ ଘର ବାଡ଼ି, ତାଙ୍କ ଜାତି ପ୍ରତିପତ୍ତି ସବୁକିଛି ଉର୍ଦ୍ଧ୍ୱରେ ଖାସ କବିତାଙ୍କର ଆନନ୍ଦର ମହାସଙ୍ଗୀତ ପାଇଁ ଅମର ହୋଇ ରହିବେ । ଏ ସନ୍ତାପିତ ସଂସାରୀମାନଙ୍କୁ ଏମିତି ପୁଣ୍ୟାତ୍ମା ହିଁ ଆଶା ଓ ଆନନ୍ଦର ଅମର ଗୀତ ଶୁଣାଇ ଥାଆନ୍ତି ।

ବୈକୁଣ୍ଠ ନାଥ ଥିଲେ ପ୍ରଥମରୁ ସବୁଜଗୋଷ୍ଠୀର କବି । କଞ୍ଚା ତାରୁଣ୍ୟର କେତେ ସରସ ଗୀତ ସେ ଭଣିତା କରିଛନ୍ତି । କେତେ ରହସ୍ୟବାଦୀ ଅନୁଚିନ୍ତା ଭିତରେ ସେ ନାରୀ ପ୍ରେମକୁ ତଉଲିଛନ୍ତି ।

ବୈକୁଣ୍ଠ ନାଥଙ୍କୁ ସବୁଜ ଗୋଷ୍ଠୀର ଜଣେ ସଦସ୍ୟ ବୋଲି କହିଦେଇ ଅନେକ ହୁଏତ ଚୁପ୍ ହୋଇ ଯାଇଛନ୍ତି । ତାଙ୍କ କବିତ୍ୱର ଅନ୍ୟାନ୍ୟ ଉଜ୍ଜ୍ୱଳ ଦିଗ ଉପରେ ଆଲୋକପାତ କରି ନାହାନ୍ତି ।

ପ୍ରତିଭା ପୂଜାର ବଳିଷ୍ଠ ଧାରା ନଥିବା ଓଡ଼ିଶାରେ ବୈକୁଣ୍ଠନାଥଙ୍କ ପରି ଜଣେ ବହୁମୁଖୀ ପ୍ରତିଭାର କବିଙ୍କୁ ଆମେ ଏ ଯାବତ୍ ଅତି ଅପ୍ରଶସ୍ତ ଭାବେ ନେଇଛୁ ।

ବୈକୁଣ୍ଠନାଥଙ୍କ ଅସାଧାରଣ କବିତ୍ୱରେ ଆଜନ୍ମ ମୁଗ୍ଧ ରବିସିଂହ ଯଥାର୍ଥରେ ମନ୍ତବ୍ୟ ଦେଇ ଲେଖିଛନ୍ତି : ଓଡ଼ିଆ କାବ୍ୟ ଜଗତରେ ସ୍ୱର୍ଗତ କବି ବୈକୁଣ୍ଠନାଥ ପଟ୍ଟନାୟକ ଥିଲେ ସତେ ଯେପରି ଗୋଟିଏ ପଥଭୁଲା ରାଜହଂସ । ତାଙ୍କର ସେହି ନିଜସ୍ୱ ମୂଳକ କେଉଁ ମରାଳ ହ୍ରଦରୁ ସମୟର ଦାରୁଣ ଘୂର୍ଣ୍ଣି ଝଡ଼ରେ ସେ ହୁଏତ ବାଟଭୁଲି ପ୍ରତିଭାର ଏହି ବଧ୍ୟଭୂମି ଓଡ଼ିଆ କାବ୍ୟ ମୂଳକକୁ ଉଡ଼ି ଆସିଥିଲେ ।

ବୈକୁଣ୍ଠନାଥଙ୍କ କାବ୍ୟ ଆବେଗର ତୁଙ୍ଗିମାକୁ ସହଜରେ ମାପି ହେବ ନାହିଁ । ନାରୀ, ପ୍ରକୃତି, କାଳ, ଈଶ୍ୱର, ପୃଥିବୀ ସବୁକିଛି ତାଙ୍କ କବିତାରେ ବର୍ଣ୍ଣିତ ।

ସେ ବର୍ଣ୍ଣନା ପ୍ରାଣର ସଶ୍ରଦ୍ଧ ଉଚ୍ଚାରଣରେ ନିବିଡ଼ ଲାଗେ ।

ବୈକୁଣ୍ଠ ନାଥ ବୃତ୍ତିର ଆଶାସ୍ତ୍ରୀୟ ଚାପ ଅବା ସଂସାରର ସ୍ଥୂଳ ବ୍ୟାବହାରିକତା ଭିତରେ ଛନ୍ଦି ଯାଇ ନାହାନ୍ତି । ତାଙ୍କ ଆତ୍ମା ଥିଲା ଯଥାର୍ଥରେ ମାନସରୋବରର ରାଜହଂସପରି । ଯେ ସଂସାରର ଗରଳ ସବୁକୁ ଆଡ଼େଇ ଦେଇ କେବଳ ଅମୃତ ଭକ୍ଷଣ କରିଛନ୍ତି ।

ସନ୍ତାପରେ ପଡ଼ି ତାଙ୍କ ଶ୍ରଦ୍ଧାନ୍ୱିତ ଆକାଂକ୍ଷାକୁ ସେ କେବେ ବିସର୍ଜ୍ଜି ଦେଇ ନାହାନ୍ତି ।

ବୈକୁଣ୍ଠ ନାଥ ସବୁ ବଳୟ ଭିତରେ କେବଳ ସୀମିତ ନଥିଲେ । ତାଙ୍କ ଉଚ୍ଚାରଣରେ ଥିଲା ପୀଡ଼ିତ ମଣିଷ ପ୍ରତି ନିସର୍ତ୍ତ ସମର୍ଥନ । ଦାରୁଣ ଦୁର୍ଗତି ଭିତରୁ ସେ ମଣିଷକୁ ଉଠାଇ ଆଣିବା ପାଇଁ ନୈତିକ ସମର୍ଥନ ଯୋଗାଇ ଦେଇଛନ୍ତି ।

ତାଙ୍କୁ କେହି ସ୍ୱୈରବାଦୀ କହେ ତ କେହି ରହସ୍ୟବାଦୀ କହେ । କିଏ ବିଷାଦବାଦୀ କହେ ତ ପୁଣି କେହି ମାନବବାଦୀ । ବୈକୁଣ୍ଠ ନାଥ ଥିଲେ ଏ ସବୁ ଉର୍ଦ୍ଧ୍ୱରେ ମାନବାତ୍ମାର ଜୈତ୍ର ଗୀତି ତଥା ଗଣତନ୍ତ୍ରର ବନ୍ଦନା ଗୀତି ଗାଉଥିବା ନିତ୍ୟକାଳର କବି । ତାଙ୍କ ଚେତନାବଳୟ ନିର୍ଦ୍ଦିଷ୍ଟ ସ୍ଲୋଗାନ ଭିତରେ ଆଦୌ ସୀମିତ ନଥିଲା ।

ବୈକୁଣ୍ଠ ନାଥଙ୍କର ରାଜନୀତିକ ସଚେତନତା ମଧ୍ୟ କମ ଥିଲା । ଏହା ଥିଲା ବରଂ ତାଙ୍କ କବିତ୍ୱର ଏକ ବଳଶାଳୀ ତଥା ପରିପକ୍ୱ ଦିଗ ।

ବୈକୁଣ୍ଠ ନାଥ ବିଷୟ ଭିତରେ ବନ୍ଧିନଥିଲେ କି ବୃତ୍ତି ଭିତରେ ବଜ୍ଝନଥିଲେ । ଅନ୍ୟମାନଙ୍କ ପରି କୌଣସି ସଂଘୀୟ ସ୍ଲୋଗାନ ଭିତରେ ବଝ୍ଝନଥିଲେ; ବରଂ ଏକ ନିରୁତା କବିତ୍ୱ ଭିତରେ ସେ ବଝ୍ଝିଥିଲେ ।

କବିତା ଭିତରେ ବଝି ନଥିଲେ ସଂସାରର ଘାତକ ଆକ୍ରମଣରେ ସେ କେଉଁ ଦିନୁ ନିଃଶେଷ ହୋଇ ସାରନ୍ତେଣି ।

ସେ ସଂସାର କରିଥିଲେ ସତ । ସେ ସଂସାର ଭିତରେ କିନ୍ତୁ ନଥିଲେ । ପୁଅମାନେ ଜଣକ ପରେ ଜଣେ ଅକାଳରେ ମରିଗଲେ । କବିଙ୍କୁ ଦେଖା ଦେଖି କରିବା ପାଇଁ କେହି ନଥିଲେ ପାଖରେ । କବି ରାଧାମାଧବଙ୍କୁ ମନରେ ପୁରାଇ ଜାଗତିକ ଦୁଃଖ ସବୁକୁ ଭୁଲିବା ପାଇଁ ଚେଷ୍ଟା କରିଥିଲେ ଯେମିତି ।

ତାଙ୍କ ଦର୍ଶନର ତୁଳନା ନାହିଁ । ଏତେ ଆଶା, ଏତେ ଆନନ୍ଦ, ଏତେ ବିଶ୍ୱାସର ବାଣୀ ଫୁଟିଛି ତାଙ୍କ କବିତାରେ-ଜାଗତିକ ଦୁଃଖରେ ଭାଙ୍ଗିପଡୁଥିବା ଜଣେ ସାଧାରଣ ମର୍ତ୍ତ୍ୟବାସୀ ସେ କବିତା ଲେଖି ପାରିବନି ।

ତାଙ୍କ ଜୀବନର ଶେଷ ପର୍ଯ୍ୟାୟକୁ ସେ ତାଙ୍କ ଯୁବାକାଳ ଅପେକ୍ଷା ଅଧିକ ବିଳାସୀ ହୋଇ ଯାଇଥିଲେ ।

ସେ ସ୍ୱପ୍ନ ତାଙ୍କର ନଥିଲା ପରୀ ମାନଙ୍କ ପାଇଁ ।

ତାହା କୌଣସି ଶୀତଳ ସବୁଜ କୁଞ୍ଜର ସ୍ୱପ୍ନବି ନଥିଲା ।

ତାହା ଥିଲା ବରଂ ନିଃପୀଡ଼ିତ ମଣିଷର ସୁଖ ଓ ସ୍ୱାଧୀନତା ପାଇଁ ସ୍ୱପ୍ନ ।

ସବୁଜଗୋଷ୍ଠୀର କବି ଭାବେ ଯେ କାଲି ଦିନେ ଫୁଲ ଫଗୁଣର କଥା ଲେଖିଥିଲେ । ସେ ପୁଣି ଚରମ ବାର୍ଦ୍ଧକ୍ୟରେ ଜରାଗ୍ରସ୍ତ ଶରୀର ନେଇ ବାରୁଦ ଗଦାରେ ନିଆଁ ଲଗାଇବା ପାଇଁ ବସିଲେ; ଖାସ ପୀଡ଼ିତ ମଣିଷମାନଙ୍କ ପାଇଁ ଆତ୍ମାର ସମର୍ଥନ ଦେବାକୁ ।

ବୈକୁଣ୍ଠନାଥ ତାଙ୍କ କବି ଜୀବନର ଗୋଟେ ନୂଆ ଇତିହାସ ଲେଖିବାକୁ ଯାଉଥିଲେ । ଝଡ଼ର ଭୈରବୀ ଗାଇବାକୁ ଯାଇଥିଲେ ।

ଜୀବନସାରା ପ୍ରେମ, ସ୍ୱପ୍ନର ଏତେ ନରମ କବିତା ଲେଖିଥିବା ବୈକୁଣ୍ଠ ନାଥ ବହ୍ନିମାନ ଝଡ଼ ବିପ୍ଳବର କଥା ଲେଖିବାକୁ ଲାଗିଲେ ।

ଚରମ ଦୁଃଖ ଓ ଅସହାୟତା ଭିତରେ ବି ସେ ପୀଡ଼ିତ ମଣିଷର ସୁଖ ପାଇଁ ସ୍ୱପ୍ନ ଦେଖିଲେ । ନିପୀଡ଼ିତ ସର୍ବହରାମାନଙ୍କୁ ଆତ୍ମାର ସମର୍ଥନ ଦେଲେ । ଅବିନାଶୀ ସର୍ବହରାମାନଙ୍କୁ ଉଦ୍‌ବୋଧନ ଦେଲେ ।

କବିତାଙ୍କ ଶେଷ ଜୀବନରେ ଆଉ ସବୁଜ ସ୍ୱପ୍ନ ଦେଖିଲେ ନାହିଁ । ତାଙ୍କ ସୃଜନ ସ୍ୱପ୍ନ ବଦଳିଗଲା । ସେତେବେଳକୁ ଜୀବିତ ଥିବା ତାଙ୍କ ସବୁଜ ବନ୍ଧୁମାନେ ହୁଏତ ବ୍ୟଥିତ ହୋଇଯିବେ ତାଙ୍କ ଚେତନାର ପରିବର୍ତ୍ତନ ସପକ୍ଷରେ ପ୍ରଶ୍ନବାଚୀ ସୃଷ୍ଟି କରିଥିବେ ।

ରାଧାମାଧବଙ୍କର ପୂଜାସାରି ସେମିତି ସାନପୁଅ ହାକିମ୍‌କୁ ନିଜ ହାତରେ ରାନ୍ଧିଥିବା ଖାଦ୍ୟ ଖୁଆଇ ଏକା ଏକା ଖାଇ ବସନ୍ତି । କଟକ ସହରର ସେଇ କୋଠରୀଟି ଥିଲା ଏକାଧାରରେ ତାଙ୍କ ପୂଜାଘର, ପଢ଼ାଘର ଓ ବୈଠକଖାନା ଓ ସାରସ୍ୱତ ମିଳନର କ୍ଷେତ୍ର ।

ଏତେ ବର୍ଷପରେ ଆଜି ରାଣୀହାଟ ଗଉଡ଼ ସାହିରେ ସେ ଘର ହୁଏତ ଥିବ କି ନଥିବ । ମାତ୍ର ସେ ଘରର ସ୍ମୃତି ଆଜି ବହୁବର୍ଷ ପରେ ମୋ ଚେତନାରେ ଉଦ୍‌ଜୀବିତ ହୋଇ ରହିଛି ।

ମୋ ଆଦ୍ୟ ଯୌବନକୁ ତାଙ୍କର କବିତା ପ୍ରବୋଧିତ କରି ରଖିଥିଲା । ପ୍ରୀତିର ଗୀତ ଗାଇଥିବା ଲୋକ ମରଣକୁ ତ ଜିଣିଯାଏ ।

'ମରଣ ଛାୟା ମୋର ପରାଣେ ଘେରିଥିଲା ସୋହାଗି

ଜିଣିଛି ମରଣକୁ ପୀରତି ଗୀତେ ଆଜି ତୋଲାଗି' । (ରୂପକଥା)

କବିଙ୍କର ଏଇ ଗୀତ ପଦେ ମୋତେ କମ ଭାବପ୍ରବଣ କରିନଥିଲା । ଆଜି ବି ଆବୃତ୍ତି କଲେ ପ୍ରାଣରେ କେମିତି ଶିହରଣ ଖେଳି ଯାଏ । କବିଙ୍କ କଣ୍ଠରୁ ପୁଣି ବି ଫାଟି ପଡ଼ୁଛି ସେଇ ମଧୁରର ମହାନ ସତ୍ୟର ବାଣୀ ।

'ସକଳ ଅସାର ମେଳେ ସଜନିରେ ସାର ପ୍ରୀତି ସ୍ମୃତି

ସହସ୍ର ଜୀବନ ମେଳେ ସାରକ୍ଷଣ ରୂପ ଅନୁଭୂତି '।

କବିତା ହେଉଛି ତାଙ୍କର ପରିଚୟ । କବିତାରେ ସେ ନିଜକୁ ବ୍ୟକ୍ତ କରିଛନ୍ତି । ଭାବନାର ମହଲ ତୋଳାଇଛନ୍ତି । ତାଙ୍କ ଶୈଶବ ପ୍ରୀତି, ତାଙ୍କ ମଧୁର ପ୍ରେମାନୁଭୂତି, ତାଙ୍କ ବୈଷ୍ଣବ ଭାବଚେତନା ସବୁ ତାଙ୍କ କବିତାରେ ହିଁ ପ୍ରତୀକିତ ହୋଇଛି ।

କବିତା ଥିଲା ତାଙ୍କର ସବୁକିଛି । ଯୌବନର ସ୍ୱପ୍ନ ସବୁକୁ ସେ କବିତାରେ ଲେଖିଛନ୍ତି ପୁତ୍ର ବିୟୋଗରେ ଲୁହ ଝରାଇଛନ୍ତି ସେଇ କବିତାରେ । କବିତା ଲେଖିବା ଥିଲା ତାଙ୍କ ପାଇଁ ଅସରନ୍ତି ସାନ୍ତ୍ୱନାର ଉତ୍ସ ।

ମୃତ୍ୟୁ ପର୍ଯ୍ୟନ୍ତ ସେ କବିତା ଲେଖିଛନ୍ତି । ଚରମ ନିଃସଙ୍ଗତା ଭିତରେ ବରଂ ସେ ବଞ୍ଚି ପାରିଛନ୍ତି ସେଇ କବିତା ଭିତରେ ।

ତାଙ୍କ କବିତ୍ୱ ପିରବାରର ଆଉ କାହା ପାଇଁ ଗର୍ବ ଓ ଉଷ୍ମତାର ବିଷୟ ନଥିଲା । ତାଙ୍କ ସାନଝିଅ ସୁନନ୍ଦା ପଟ୍ଟନାୟକ କେବଳ ନିଜ କଣ୍ଠରେ ଭାବପୂର୍ଣ୍ଣ କରି କବିଙ୍କର ସେଇ ଅତୁଳନୀୟ କବିତା କେତେ ଧାଡ଼ିକୁ ଗାଇଛନ୍ତି : 'ଜୀବନ ପାତ୍ର ମୋ ଭରିଛ କେତେ ମତେ ନ ଦେଲ ବୋଲି କିଛି କହିବି କିଏ ଆଉ' ।



# ଜୀବନର ସୁଆଦ ଅଛି

ଜୀବନର ସ୍ୱାଦ ନାହିଁ ତ ଜୀବନ କାହିଁ ? ଚଢ଼େଇ ଛୁଆଟେ ବି ଏ ସଂସାରକୁ ଆସିଛି ତା ଜୀବନର ସ୍ୱାଦ ଚାଖିବା ପାଇଁ । ଯାହାକୁ ଜୀବନ ସରସ ଲାଗିବନି, ମିଠା ଗୀତ ପଦେପରି ଲାଗିବନି ତା'ର ବଞ୍ଚିବା ତ ଭାରି ମୁସ୍କିଲ ହୋଇଯିବ ।

ଜୀବନର ଆକର୍ଷଣ ସବୁ ଆମକୁ ବଞ୍ଚାଇ ରଖେ । ଆକର୍ଷଣ ନଥିଲେ ଆଦୌ ବଞ୍ଚି ହୁଅନ୍ତାନି । ଜୀବନ ମିଠା ଲାଗିବା ପାଇଁ ଆମେ ସେପାଇଁ ହୁଏତ କେତେ ଆୟୋଜନ କରୁ ।

ଜଣକର ସ୍ନେହରେ, ସୋହାଗରେ ଜୀବନ ଭାରି ମିଠାଲାଗେ, ବଞ୍ଚନା ଜମା ବାଧେନାହିଁ । ଅପ୍ରାପ୍ତି, ଅପୂର୍ଣ୍ଣତା ସବୁ ଜଣା ପଡ଼େନି । ସୋହାଗ ଟିକିଏ ପାଇଁ ଆମେ କେତେ ବିକଳ ନହେଉଁ ! ଜୀବନ ସାରା ସେପାଇଁ ମନର ମଣିଷ ହିଁ ଖୋଜୁଁ । ଜୀବନ ସରିଯାଏ; ଅଥଚ୍ କେବଳ ମନର ମଣିଷ ହୁଏତ ମିଳେ ନାହିଁ ।

ମନ ଓ ଆତ୍ମାକୁ ଭରି ଦେଲାଭଳି ମନର ମଣିଷକୁ ପୀରତିର ଗୀତ ଗାଇ ଗାଇ ଆମେ ସଭିଁଏ କାଳ କାଳ ଧରି ଖୋଜୁଛୁଁ । ନାରୀଟିଏ ପୁରୁଷକୁ ପ୍ରାଣର ମିତଣୀ ଭଳି ଲାଗିବା କଥା । ନହେଲେ ଏ ସଂସାର ତା'କୁ ହୁଏତ ପିତା ଲାଗିବ । ନାରୀ ପୁରୁଷକୁ ଅତୁଳନୀୟ ଆନନ୍ଦ ଦିଏ । ପୁରୁଷ ଆଗରେ ନାରୀର ତେଣୁ ବିକଳ୍ପ ହୋଇ ଆଉକିଛି ନାହଁ । ନାରୀଟିଏ ପୁରୁଷକୁ ସ୍ୱର୍ଗସୁଖ ଦିଏ ।

ସେମିତି ନାରୀତ ପୁରୁଷର ସୋହାଗକୁ ତା'ଜୀବନରେ ଅନନ୍ୟ ଐଶ୍ୱର୍ଯ୍ୟ ବୋଲି ଜ୍ଞାନ କରେ ପ୍ରେମ ପାଇଁ ପୁରୁଷର ବ୍ୟାକୁଳତାକୁ ନାରୀହିଁ ଭାଗ୍ୟ ଭୋଗର ବିଷୟ ବୋଲି ମନେ୍ କରେ । ନାରୀଟିଏ ଯାବତୀୟ ଭାଗ୍ୟ ହୀନତାକୁ ସହିପାରେ; ମା୍ତ୍ର ନାରୀ ତା ମନ-ମଣିଷର ଅପ୍ରେମକୁ ଆଦୌ ସହିପାରେନି । କାରଣ ଅନ୍ୟ କୌଣସି ସଂପତ୍ତି ନୁହେଁ, ପୁରୁଷ ହେଉଛି ତା ଜୀବନର ଭୋଗବସ୍ତୁ । ତାପାଇଁ ପୁରୁଷ ପ୍ରାଣର ପ୍ରେମ ଓ ବ୍ୟାକୁଳତା କୋଟି ନିଧି ପରି ।

ମୁଁ ତ ଭାବେ କାଳ କାଳ ଧରି ସାହିତ୍ୟ ସବୁଠି ସବୁକାଳରେ ଏଇ ନାରୀ ପୁରୁଷର ପ୍ରେମକୁ ହିଁ ବସ୍ତୁତଃ ଲେଖିଛି । ସବୁ ସାହିତ୍ୟର ମୂଳ ବିଷୟ ହେଉଛି ବୋଧହୁଏ ତାହା । ଜୀବନର ସ୍ୱାଦ ଏଇ ପ୍ରେମ ପାଇବା ଓ ଦେବାରେ ହିଁ ଅଛି । କଥାଶିଳ୍ପୀ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସସବୁ ସେହି ଦୃଷ୍ଟିରୁ ଗୋଟେ ଗୋଟେ ପ୍ରେମ କାହାଣୀ; ଯେଉଁ ସବୁ କାହାଣୀର ମଞ୍ଜି ହେଉଛି ପ୍ରେମ । ପ୍ରେମ ନାହିଁତ ଜୀବନର ସୁଆଦ ନାହିଁ ।

ଖଦି ନାହିଁ, ଖାଦି ନାହିଁ; ବ୍ୟବସ୍ଥା ନାହିଁ, ପଦପଦବୀ, ପ୍ରତିପତ୍ତି କିଛି ନାହିଁ । ଘର, ସମ୍ପତ୍ତି, ସାହିତ୍ୟ କିଛି ବୋଲି କିଛି ନାହିଁ । ବଣ ଭୂମିରେ ଦିନ କାଟୁଥିବା ଆଦିବାସୀର ଏସବୁ କ'ଣ କିଛି ଥାଏକି ? ହେଲେ ତା ମୁଣ୍ଡଉପରେ ନିବିଡ଼ ଆକାଶ ଥାଏତ ତା ପାଦତଳେ ଥାଏ ଏକାନ୍ତ ବିଶ୍ୱାସନୀୟ ଆଦିମ ବସୁନ୍ଧରା ।

କିଛି ନଥାଉ ତା'ର । କେବଳ ସେମାନଙ୍କର କଉପୁନି ଖଣ୍ଡେବି ନଥାଏ । ଏ ପାଇଁ ସେ ମାଳଞ୍ଚ, ପୃଥିବୀରେ କାହାର ଅବଶୋଷ ଥାଏ କି ? ବଣଭୂମିରେ ଜୀବନ ସେମାନଙ୍କୁ କେବଳ ମତୁଆଲା କରେ ।

ଆଗରେ ପାହାଡ଼ି ଝରଣା ବହି ଯାଉଥାଏତ ଫୁଲ ବାସ୍ନାରେ ଚତୁର୍ଦ୍ଦିଗ ସୁରଭିତ ହୋଇ ଯାଉଥାଏ । ରାତିରେ ସେଠି ଜହ୍ନ ଉଠେ । ପାହାଡ଼ ମୂଳ ପାଂଶୁଳ ଦିଶେ । ବଣପକ୍ଷୀ ଗୀତ ଗାଏ । ଧାଂଡ଼ା ବସାରେ ଡୁଙ୍ ଡୁଙ୍ଗା ବାଜେ । ବଇଁଶୀର ସୁର ଶୁଭେ । ଧାଂଡ଼ିମନ ଚହଲି ଉଠେ ।

ରାତି ତମାମ ନାଚ୍‌ହୁଏ । ଗୀତରେ ଗୀତରେ ଗୁମାନ ଭାଙ୍ଗେ । ଚଇତି ରାତିର ବାଜାଗୀତ ଚାରିଆଡ଼କୁ ମେଲିଯାଏ । ରାତି ବଢ଼େ ତ ପ୍ରୀତି ବଢ଼େ ।

ଧାଂଡ଼ିଟିଏ ସ୍ୱପ୍ନ ଦେଖେ । ପ୍ରାର୍ଥନା କରେ ତାକୁ ମନର ମଣିଷଟିଏ ମିଳିଯାଉ । ଆଉକିଛି ତାର ଦର୍କାର ନାହିଁ । ଧାଂଡ଼ା ପ୍ରେମରେ କେବଳ ସେ ଜୀବନ ଭୋଗ କରିବ । କବରୀରେ କୁରେଇ ଫୁଲ ଖୋସି ଚଇତ ପର୍ବରେ ନାଚିବ । ଆଖିରେ ଆଖି ମିଶାଇବ । ଧାଂଡ଼ା ସହିତ ଯାଇ ପର୍ବତ ଖୋଲାରେ ମାଛ ଧରିବ । ତା ଦିହ ଝଲମଲ ଦିଶିବ । ତାକୁ ମନ ଦେଇଥିବା ଧାଂଡ଼ାଟି ହୁଏତ ପିଇ ଯାଉଥିବ ତା ରୂପଯୌବନ ।

ବଣ ଜଙ୍ଗଲରେ ଆଉ ଅଧିକ ଆନନ୍ଦଦାୟକ ବିଷୟ ତା ପାଇଁ କ'ଣ ଥିବଯେ ? ଆଦିବାସୀ ଆଉ କିଛି ଜାଣେ ନାହିଁ । ଧନୀ ସାମନ୍ତ ଅବା ଚକ୍ରବର୍ତ୍ତୀ ହେବାପାଇଁ କଦାପି ସ୍ୱପ୍ନ ଦେଖେ ନାହିଁ ସେ ।

ହାତ ପାତି ମନର ମଣିଷଠାରୁ ଖାଲି ପ୍ରେମହିଁ ମାଗେ । ବିଶ୍ୱାସ ମାଗେ । ସେଇ ପ୍ରେମରେ ସେ ବଞ୍ଚେ ଆଉ ବିଚରଣ କରେ ।

ସେଇଠି ସେଇ ବଣଭୂମିରେ ମେଘ ପବନ ଆସେ । ଟିକିଏକୁ ଋତୁ ହୁଏତ ବଦଳିଯାଏ । ଅସରା ଅସରା ବର୍ଷା ବର୍ଷିଯାଏ । ପାହାଡ଼ ମୂଳ ହାଉଳି ଖାଏ । ପୁବୁଲି ପ୍ରଜାପତି ପରି ଉଡ଼ି ବୁଲିବାକୁ ସ୍ୱପ୍ନ ଦେଖେ । ଆର ଗାଁର ହାର୍ଗୁଣାକୁ ମନରେ ପୂରାଇ କେତେ ଖୋଜେ । ଅପେକ୍ଷାରେ କେତେ ବର୍ଷା ବସନ୍ତ କଟିଯାଏ ।

ଜୀବନର ବ୍ୟବସ୍ଥାକୁ ଆହୁରି ସ୍ୱଚ୍ଛଳ କରିବା ପାଇଁ ସେ ମାଳଞ୍ଚ ପୃଥିବୀର ମଣିଷିମାନେ ଆଦୌ ବିକଳ ହୁଅନ୍ତିନି । ଗଣ୍ଡେ ଖାଇବା ଆଉ କଉପନୀ ଖଣ୍ଡେ ପିନ୍ଧିବାକୁ ସେମାନେ ଜୀବନର ବଡ଼ ବ୍ୟବସ୍ଥା ବୋଲି ଜ୍ଞାନ କରନ୍ତି । ଶିକ୍ଷା ଦୀକ୍ଷା ନାଁରେ ଆଟୋପ ଅହଙ୍କାର କିଛି ନଥାଏ ସେଠି । ଧନସମ୍ପତ୍ତିର ମୋହ ନଥାଏ କି ଜାତିର ଅଭିମାନ ନଥାଏ ।

ଗୋପୀନାଥ ମହାନ୍ତିଙ୍କ ସୃଜନଶୀଳ ଆତ୍ମା ଯେମିତି ସେମାନଙ୍କୁ ଆହୁରି ଜୀବନମୟ କରି ଲେଖିଛି । ନାଚିବା ଗାଇବା ସେମାନଙ୍କୁ ସଂକ୍ରମିତ କରେ । ତାରି ଭିତରେ ପୀରତି ରଚନା । ପର୍ବତ କନ୍ଦରରେ ସେମାନେ ଜୀବନର ସୁଆଦ ଖୋଜନ୍ତି । ଜଣେ ଆଉ ଜଣକର ପରମ ଆତ୍ମୀୟତା ଲୋଡ଼େ ।

ମନଦେବା ଆଉ ମନପାଇବା ପାଇଁ ଖାଲି ସେମାନଙ୍କର ଆକୁଳତା । ସେମାନଙ୍କ ପର୍ବ ନାଚ଼ଗୀତର ପର୍ବ । ପ୍ରେମ ରଚ଼ନାର ପର୍ବ ।

ଅନ୍ଧାରି ମୂଲକରେ ଜୀବନ କେତେ ଭଲ ଲାଗେ ସେମାନଙ୍କୁ । ବଣ ଭୂମିରେ ବର୍ଷାପବନ ଆସିଲେ, ଜହ୍ନ ଉଇଁଲେ, ଋତୁ ବଦଳିଲେ କେତେ ପ୍ରାଣପୂର୍ଣ୍ଣ ଲାଗେ ସେମାନଙ୍କୁ । ଅସଲ କବିତା ତ ସେଇଠି । ଜୀବନ ଯାହାକୁ ଭଲ ଲାଗେନାହିଁ, ନିବିଡ଼ ଲାଗେ ନାହିଁ ତା ଭିତରେ ପ୍ରାଣ ପ୍ରାଚୁର୍ଯ୍ୟ ନଥାଏ କି ଆନନ୍ଦ ଟିକକ ନଥାଏ ।

ଟିକିଏ ଆନନ୍ଦ ପାଇଁ ବଣଭୂମିରେ ସେ ଆଦିମ ଅଧିବାସୀମାନେ ଏତେ ମାତିଥାନ୍ତି ।

ସେମାନେ ସଂସାରର ଦୁଃଖ ସହନ୍ତି । ଦୁଃସ୍ଥିତି ଅନେକ । ବାଘଭୟ, ଦୁର୍ଭିକ୍ଷ, ରୋଗ ଶୋକ କେତେ । ଜରାମରଣର ଜୀବନ ଜିଅଁନ୍ତି ସେମାନେ । କୌଣସି ପରିସ୍ଥିତିରେ କିନ୍ତୁ ସେମାନେ ଜୀବନରୁ ଆନନ୍ଦ ଟିକକୁ ବସର୍ଜି ଦିଅନ୍ତିନି । କେତେବେଳେ ବି ନୁହେଁ ।

ଧନ ସମ୍ପତ୍ତି ଗୋଟାଇବାରେ କି କଉଡ଼ି ଗଣିବାରେ ଆନନ୍ଦ ନଥାଏ । ଜନପଦର ସଭ୍ୟ ସାମନ୍ତମାନେ ଯେତେବେଳେ ନିହାତି ଅଳିକ କଥାରେ ମନ ଦେଇଥାନ୍ତି ସେମାନେ ସେତେବେଳେ ନାଚ଼ଗୀତରେ ହିଁ ମାତିଥାନ୍ତି ।

ଶୁଦ୍ଧ ଆନନ୍ଦରେ ଜୀବନ ବଞ୍ଚିବା ହିଁ ସେମାନଙ୍କ ପାଇଁ ବଡ଼କଥା ।

ସବୁ ଅନୁଭବର ଶୀର୍ଷ ହେଉଛି ଆନନ୍ଦ । ଜୀବନରେ ଯେ ଅତୁଳନୀୟ ଆନନ୍ଦ ଭରି ରହିଛି ତା'ର ସୁବିଖ୍ୟାତ ଚ଼ିତ୍ରକର ହେଉଛନ୍ତି କଥାକାର ଗୋପୀନାଥ ମହାନ୍ତି ।

ଏତେ ପୁଲକମୟ ହେଉଛି ଏ ମଣିଷର ଜୀବନ ସୃଜନଶୀଳ ଶିଳ୍ପୀ ଆମ୍ଭାଦେଇ ତା'ରି ହିଁ ଚ଼ିତ୍ରଣ କରିଛନ୍ତି ।

ଏଇ ଆମ ମଣିଷ ଜୀବନ ଆଉ ସେଇ ଜୀବନର ଆନନ୍ଦର କଥା ଲେଖିବାରେ ଜୀବନବାଦୀ ଶିଳ୍ପୀ ଗୋପୀନାଥ ମହାନ୍ତି କେତେ ଓସ୍ତାଦ ସତରେ ।

ପୁୟୁତ ଅମୃତର ସନ୍ତତି । ଆନନ୍ଦମୟ ଜୀବନ । ତଥାପି ଚ଼ରମ ବଞ୍ଚନାର ଦୁର୍ଭାଗ୍ୟ ତା'କୁ ସହିବାକୁ ପଡୁଛି । ରୂପସୀ ଶ୍ୟାମଳି ପୁୟୁଶେଷରେ ସ୍ୱାମୀ ପରିତ୍ୟକ୍ତା ହୋଇଛି । ଫୁଲ ପରି ନାଚ଼ି ଖେଳି ମଧୁର ଶୈଶବ ବିତାଇଥିବା ପୁୟୁ ବାପଘର ଗାଁ ଆଡ଼େ ଚାହିଁଛି । ସେଠି ସଭିଏଁ ତା'ର ମରିହଜି ଯାଇଛନ୍ତି । ଶିଶୁପୁତ୍ର ହାକିନାକୁ କାଖରେ ବସାଇଲା । ସକାଳର ଉଦିୟାନ ସୂର୍ଯ୍ୟ ଉଠୁଛି । କୁଆଡ଼େଯିବ । ସବୁ କିଛି ଅନିର୍ଦ୍ଦିଷ୍ଟ । ଆଖିରେ ଲୁହ ଜକେଇ ଆସିଲା ।

ନିଜକୁ ବୁଝାଇଲା ପୁୟୁ । ପିଂପୁଡ଼ି ଛୁଆଟେ, ଚଢ଼େଇ ଛୁଆଟେ ଯଦି ବଞ୍ଚି ପାରୁଛି, ବଞ୍ଚିବାର ସ୍ୱପ୍ନ ଯଦି ତା'ର ଅଛି ମୁଁ ମଣିଷ ଛୁଆଟେ ହୋଇ କାହିଁକି ତେବେ ବଞ୍ଚିପାରିବିନି ।

ଅମୃତର ସନ୍ତାନ ପରି ଏକ ଗଦ୍ୟମହାକାବ୍ୟର ବାର୍ତ୍ତା ତ ବୋଧେ ଏତକ । ହଜାରେ ଦୁଃସ୍ଥିତି ସତ୍ତ୍ୱେ ଜଣେ ବଞ୍ଚିବାର ମୋହ ତୁଟାଇ ଦେବା ଉଚ଼ିତ ନୁହେଁ । ଅସରନ୍ତି ସମ୍ମୋହନ

ଭିତରେ ବଞ୍ଚିବା ତ ଜୀବନ । ଜଣେ ସଚ୍ଚା ଜୀବନବାଦୀ ଶିଳ୍ପୀ ଜୀବନର ପ୍ରାଣ ପ୍ରାଚୁର୍ଯ୍ୟ (Abundance of life) ଭିତରେ ତ ମଣିଷ ଜୀବନର ଲୀଳା ଖେଳାକୁ ଦେଖେ ।

ଏ ଜୀବନ ଆନନ୍ଦର । ଯାହା ପାଇଁ ନିରାନନ୍ଦର ନୁହେଁ । ଜୀବନରେ ଆନନ୍ଦ ହିଁ କେବଳ ଧ୍ୟେୟ । ସେହି ଆନନ୍ଦ ଟିକକ ହିଁ ଆଗକୁ ବଞ୍ଚାଇ ରଖିଛି । ବଞ୍ଚିବା ପାଇଁ ପ୍ରେରଣ ଦେଉଛି । ଆନନ୍ଦ ଅପେକ୍ଷା ଆଉ ଅଧିକ ପରମାର୍ଥ କ'ଣ ?

ଆନନ୍ଦ ବିବର୍ଜିତ ହୋଇ ଜୀବନ ନାହିଁ ? କିଏ କେଉଁ ଆନନ୍ଦରେ ବଞ୍ଚିଛି । ସେ ସବୁ ଜୀବନ ଭଣ୍ଡାରର ଗୋଟେ ଗୋଟେ କୋଷ । ସବୁ ମଧୁଭର୍ତ୍ତି । ଖାଲି ମହୁମାଛି ପରି ଶୋଷିଲେ ହେଲା ।

ମଣିଷ ଜୀବନ ସବୁମତେ ସୁନ୍ଦର । ଏ ଜୀବନର ସୁଆଦ ଅଛି— ଏହି ଉପଲବ୍ଧି ପ୍ରତି ଶିଳ୍ପୀର ଯେତେ ସମର୍ଥନ ଅଛି, ଯେ ଏହି ପ୍ରତି ଯେତେ ଅଧିକ ସତ୍ୟଶୀଳ ସେ ଶିଳ୍ପୀ ତ ଅମର ଶିଳ୍ପୀ । ତା ସୃଜନଶୀଳ ଆତ୍ମାର ମୃତ୍ୟୁ ନାହିଁ ।

ଗୋପୀନାଥ ମହାନ୍ତିଙ୍କ ଶିଳ୍ପୀ ପ୍ରାଣଟି ଯଥା ସମ୍ଭବ ସେହି ଆନନ୍ଦର ଶ୍ଳୋକହିଁ ଉଚ୍ଚାରଣ କରିଛି । ତାହ ଆମକୁ ପ୍ରବୋଧିତ କରୁ । ଆମ ଜୀବନରେ ଆନନ୍ଦ ଭରି ଦେଉ । ଆନନ୍ଦକୁ ଆମେ ସଭିଏଁ ଜୀବନର ସର୍ବୋତ୍ତମ ଐଶ୍ୱର୍ଯ୍ୟ ବୋଲି ଜ୍ଞାନ କରି ତାକୁ ଆମ ଜୀବନ ବୃକ୍ଷର ମୂଳ ବୋଲି ମନେକଲେ ଆମକୁ ବି ଜୀବନ ଭଲ ଲାଗିବ ଆଉ ଆମେ ବି ଏ ଜୀବନର ସୁଆଦ ଅଛି ବୋଲି ମନେକରିବା ।

ମଣିଷ ଜୀବନର ସୁଆଦ ଟିକକ ହେଉଛି ଆନନ୍ଦ । ତାହାହିଁ ଜୀବନର ଅସଲ ଉଦ୍ଦେଶ୍ୟ । ତାହାହିଁ ମୂଳ । ଜୀବନର ସବୁଥାଇ ଯଦି ଆନନ୍ଦ ନାହିଁ ତାହେଲେ କିଛିନାହିଁ ।

ଆନନ୍ଦ ବ୍ୟତିରେକ ଜୀବନ ବିଫଳ ହୋଇଛି ବୋଲି ବୁଝିବାକୁ ପଡ଼ିବ । ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ ସବୁ ମଣିଷର ହର୍ଷବିଷାଦ, ଆର୍ତ୍ତି ଅଶ୍ରୁ, ଜୟ ପରାଜୟର ବିପୁଳ ଚିତ୍ର ଆଙ୍କିଛି । ଆନନ୍ଦକୁ ଜୀବନର ଧ୍ୟେୟ ବୋଲି ସେ ମନେ କରିଛନ୍ତି ।

ମାଳଞ୍ଚ ପୃଥିବୀରେ, ନୀରବିତ ବଣ-ପାହାଡ଼ ଦେଶରେ ଆଦିମ ମଣିଷ ଟିକିଏ ଆନନ୍ଦ ପାଇଁ ଯେପରି ସକଳ ଆୟୋଜନ କରିଛି । ତାଙ୍କ ଉପନ୍ୟାସ ସବୁବୋଧ ତାର ଏକ ଏକ ରୂପକ ଚିତ୍ର । ଗୋପୀନାଥ ମହାନ୍ତି ନିଜେ ଲେଖିଛନ୍ତି : 'ଏ କ୍ଷେତ୍ରରେ ଆହୁରି ଗୋଟିଏ ବିଚିତ୍ର ବିଷୟର ଅନୁଧ୍ୟାନ ଉପୁଜେ । ଅହଂ ଓ ତତ୍‌ର ପାରସ୍ପରିକ ସଂପର୍କ । ସେ ସଂପର୍କ ଦେଖାଦିଏ ପ୍ରକୃତିର ନାନା ଦୃଶ୍ୟ ଭିତରେ, ଘଟଣା ଭିତରେ, ଯେପରି ସବୁ ଜିଅନ୍ତା ତା'ଭିତରେ ମୁଁ ଜିଅନ୍ତା । ସେ ଗଛଟା ମୁଁ, ମୁଁ ସେ ଗଛ, ବାଘଟା ମୁଁ, ମୁଁ ସେ ବାଘ ପୁଣି—ମୁଁ ନାହିଁ, ବାଘ ନାହିଁ, କେହି ନାହିଁ କିଛି ନାହିଁ । ତଥାପି କମ ଅଛି ? ଶୂନ୍ୟ ଅଥଚ ପୂର୍ଣ୍ଣ, ଅରୂପ ଅଥଚ ସବୁବେଳେ ବୈଚିତ୍ର୍ୟମୟ, କ୍ରିୟାଶୀଳ । ସେ କ୍ଷେତ୍ରରେ ବେଳେବେଳେ ଦିଗ୍‌ବଳୟର ଗାର ବି ହୋଇଯାଏ ଭାଷା, ଶୁଣିବା ଶବ୍ଦ ହୁଏ ରଙ୍ଗ, ଭାବ ତେଜ, ଗୋଟାଏ ଇନ୍ଦ୍ରିୟ ଅନୁଭୂତି ଆଉ ଏକ ପ୍ରକାରର ରୂପାନ୍ତରିତ ହୁଏ ।

ଏ ଧ୍ୟାନ ଓ ମନନଲାଗି ଆଦିବାସୀ ଅଞ୍ଚଳର ଶୁନଶାନ ବଣ ପାହାଡ଼, ନୀରବତା, ବ୍ୟାପ୍ତି ସମୟ ହୀନତାର ସୂଚନା ଆହୁରି ସୁଯୋଗ ଦିଏ । ସେଠି ଟିକିଏ ସାନ ଶବ୍ଦ ହେଲେ ଖୁଡ଼କିନା, ଆପେ ତାର ତାତ୍ପର୍ଯ୍ୟ ବାରିହୁଏ ।’

ଏ ସଂସାରରେ ଅନେକ ପ୍ରକାର ଭୋଗ ଓ ସ୍ୱାର୍ଥପରତା ଅଛି; ତା ସହିତ ରହିଛି ପୁଣି ଉତ୍ସର୍ଗ ଓ ବଳିଦାନ । ମରଣ ରହିଛି ଧାରୁଆ ଖଣ୍ଡାପରି ଝୁଲୁଛି । କେଉଁ ଅସତର୍କ ମୁହୂର୍ତ୍ତରେ ବେକ କଟିଯିବ ସେ ଖଣ୍ଡାରେ । ସେ ପାଇଁ ମଣିଷ ନିରନ୍ତର ଉଦ୍‌ବିଗ୍ନ । ତାରି ଭିତରେ ଫେଣ୍ଟା ଫେଣ୍ଟି ହୋଇ ରହିଛି ପ୍ରାଣର ଗଭୀର ପୁଲକ, ଜୀବନର ସୁଆଦ ।

ଗୋପୀନାଥ ମହାନ୍ତିଙ୍କ ରଚନାର ଶ୍ରେଷ୍ଠତା ଏଇଠି । ଏହି ଜୀବନ ପ୍ରିୟତାର ଦର୍ଶନକୁ ତାଙ୍କ ଶିଳ୍ପୀ ଜୀବନର ମୂଳବିଶ୍ୱାସ କରିବା । ସେହି ଦର୍ଶନକୁ କଳାରୂପ ଦେଉଁ ଦେଉଁ ନିଜପ୍ରାଣରେ ଶିହରଣ ଅନୁଭବ କରିବା ।

ଏତେ ଅନ୍ଧାର । ସେ ଅନ୍ଧାରର ପୁଣି ଏତେ ମାଦକ । କେତେ ପାଂଶୁଳ ଜହ୍ନରାତି । ବଣ ପାହାଡ଼ ଦେଶରେ ଚାରିଆଡ଼େ ଯେମିତି ବିଛୁଡ଼ିହୋଇ ପଡ଼ିଛି । ଘାସ ପଡ଼ିଆର ଏତେ ସବୁଜିମା । ବ୍ରଣ ଝରଣାର ପାଣି ଏତେ ଶୀତଳ । ଏତେ ମନଲୋଭା ଶୋଭାବନ୍ତ ଦିଗ୍‌ବଳୟ ସବୁ । କେତେ ଚିତ୍ତ ଉଲ୍ଲାସକ ଏଠି ସଞ୍ଜ ସକାଳ ସବୁ । ଫୁଲ ବାସ୍ନା, ମାଟିଗନ୍ଧ, ମନଦେବା, ମନପାଇବା, ହସିବାର ସ୍ୱାଦ ଅଛି ତ ଅଶ୍ରୁର ସ୍ୱାଦ ଅଛି ।

ପେଟ ପଛେ ନପୁରୁ । ଖଣ୍ଡେ ପିନ୍ଧିବାକୁ ନମିଳୁ । ଖାସ କିଛି ବ୍ୟବସ୍ଥା ନଥାଉ ଜୀବନ କେତେ ସୁନ୍ଦର ସେଇଠି ତଥାପି । କେତେ ରକମର ଅନୁଭବ । କେତେ ରକମର ଆମନ୍ତ୍ରଣ ଏ ଜଗତର । କେତେ ପ୍ରକାରର ସ୍ପର୍ଶ ଓ ରୋମାଞ୍ଚ । ସବୁ ପ୍ରକାରେ ପ୍ରକାରେ । ଖରାକାଳ ପ୍ରକାରେ ତ ଶୀତରାତି ପ୍ରକାରେ ।

ଜୀବନ କେତେ ସୁନ୍ଦର ଏଇଠି । କେତେ ନିବିଡ଼ ଭାବରେ ମଣିଷ ବ୍ରହ୍ମାଣ୍ଡ ଉପରେ ପାଦ ଥାପି ଛିଡ଼ା ହୋଇଛି । କେତେ ବିଶ୍ୱାସନୀୟ ଲାଗିଛି ତାକୁ ମାଟି; କେତେ ମଧୁର ଲାଗୁଛି ଆକାଶ । ନିରବଧି କାଳ ପୁଣି ତା’କୁ କେତେ ରହସ୍ୟମୟ ଲାଗୁଛି ।

ଋତୁ ବଦଳୁଛି । ଋତୁ ପରିବର୍ତ୍ତନ ମୁଦ୍ରାମାନ ବଣରେ, ପାହାଡ଼ରେ, ନଈରେ, ବନସ୍ପତିରେ ଲାଖି ରହୁଛି । ଚାରିଆଡ଼େ ରାଉରାଉ ତୋଫାନ, ବର୍ଷା ରାତିରେ କେଁ କଟର, ଟିକିଏକୁ ପୁଣି ନିଃଶବ୍ଦ, ଶୂନଶାନ । ପାହାନ୍ତି ପହର । ସକାଳକୁ ଆକାଶରେ ଚଢ଼େଇମାନଙ୍କର ଚଳପ୍ରଚଳ । ସକାଳର ନାଲିଖରା । ଏସବୁ ମଣିଷକୁ କେତେ ନିବିଡ଼ ଲାଗେ ।

ବଣର ନିଛାଟିଆ ରାସ୍ତା, ଗୋଡ଼ିମାଟି, ପଥୁରିଆ ସମୟ ବି କେମିତି ମଣିଷ ମନକୁ ବିକିଦିଏ । ଭାରି ପରିଚିତ ଲାଗେ ସବୁ । ଚରମ ନିଃସଙ୍ଗତାର ବି ଗୋଟେ ସ୍ୱାଦ ଅଛି । ଜୀବନ କେତେ ସୁନ୍ଦର ଲାଗେ ଉତ୍ସବରେ ।

ଦୁଃଖ ଭୁଲିବା ପାଇଁ, ପରିଶାନ୍ତି ଭୁଲିବା ପାଇଁ କେତେ ଆୟୋଜନ । କେତେ ମିଳନର ପର୍ବ । କେତେ ନାଚ଼ଗୀତ । କେତେ ଉଚ୍ଚାଟନ । ସାଥୀ ସୋହାଗ ଭିତରେ ପୁଣି ବାଟ ଚ଼ାଲିବା ।

କେତେ ଫଗୁଣକୁ ପୁଣିପଛରେ ଛାଡ଼ିଆସିବା । ବାସନ୍ତିକ ଦିନ ସବୁ ପଛରେ ରହିଯାଏ । ଆସେ ଖରାକାଳ, ବର୍ଷାକାଳ ।

ଗୋପୀନାଥ ମହାନ୍ତିଙ୍କ ସାହିତ୍ୟ ଆମକୁ ଶ୍ରଦ୍ଧା ଓ ସ୍ୱାଦର କଥା କହିଛି । ଜୀବନକୁ ପ୍ରସ୍ଥ ପ୍ରସ୍ଥ କରି ସେ ଆମକୁ ଦେଖାଇବାକୁ ଚ଼େଷ୍ଟା କରିଛନ୍ତି ।

ସାହିତ୍ୟ ଅନନ୍ତକାଳର ମୈତ୍ରୀ ଓ କରୁଣାର କଥା ଲେଖେ । ସଂପର୍କ ଓ ଚ଼େତନାର ଅଙ୍କୁର ସାହିତ୍ୟରେ ଅଙ୍କୁରିତ ହୁଏ ।

'ଅମୃତର ସନ୍ତାନ' ଉପନ୍ୟାସ ଗୋପୀନାଥ ମହାନ୍ତିଙ୍କର ଏକ ମାଷ୍ଟର ପିସ୍ । ତାଙ୍କ ସେ ଉପନ୍ୟାସରେ ଶ୍ରଦ୍ଧା ସନ୍ତାପ ସବୁ ଲେଖାଯାଇଛି । ଯେକୌଣସି ସଂରଚ଼ନା କ୍ରମଶଃ ପରିଣତି ଆଡ଼କୁ ମୁହାଁଏ । ଅମୃତର ସନ୍ତାନ ପରିଶେଷରେ ଅନୁଭବ କରିଛି କ'ଣ ? ହଜାରେ ଦୁଃସ୍ଥିତି ଓ ଦୁର୍ଭାଗ୍ୟସତ୍ତ୍ୱେ ଏ ଜୀବନ ସୁନ୍ଦର ବୋଲି ସେ ଅନୁଭବ କରିଛି ।

'ଅମୃତର ସନ୍ତାନରେ ପୁୟୁ ଚରମ ଭାଗ୍ୟ ବିଡ଼ମ୍ବନା ଭିତରେ ଘର ଛାଡ଼ି ଯିବାକୁ ଚାହିଁଛି— ଅଥଚ଼ ସେ କେଉଁଠିକି ଯିବ । ତା ବାପଘର ମିଟିଂ ଗାଁର ଆଉ କିଛି ନାହିଁ, କେହି ନାହାନ୍ତି । ଚ଼ରମ ଅସହାୟତା ଭିତରେ ତଥାପି ସେ ବଞ୍ଚିବାକୁ ଚ଼ାହେଁ ।

ଗୋପୀନାଥ ମହାନ୍ତିଙ୍କ ଭାଷାରେ :

'ଦର୍ତ୍ତନୀର କୋଡ଼ରେ ସବୁରି ଢିଅ ଅଛି, କାହିଁକି ଚ଼ିନ୍ତା । ଏଇ ଦି'ଦିନିଆଁ ଜନ୍ମ ତ, ତାପରେ ପୁଣି ପରିବର୍ତ୍ତନ । ଏତିକି ବେଳ କଟାଇ ହେବନାହିଁ ? ଠିକ୍ କହିଥିଲା ଦିସାରି, ମରଣ ନାହିଁ, ଦୁଃଖ ନାହିଁ । ଓହ୍ଲେଇ ପଡ଼ିଲା ତରତର ହୋଇ ଚ଼ାଲି ଚ଼ାଲିଲା । କିନ୍ତୁ ଏ କ'ଣ, କ'ଣ ହୋଇ ଯାଉଛି ନୂଆ ଯୁଗ ନୂଆ ଦୁନିଆ, ଯେତେ ଦମ୍ଭକରି ଧରିଲେ ପ୍ରାଣଭିତରେ ଥରି ଯାଉଛି, ଓଠ କମ୍ପିଯାଉଛି, ଆଖିରୁ ଲୁହ କେରା କେରା ହୋଇ ବୋହି ପାଟିରେ ପଶି ଯାଉଛି ।

ଉଦିଆନ୍ ସୂର୍ଯ୍ୟକୁ ଚ଼ାହିଁ ନିଠେଇ ନିଠେଇ ମନେ ମନେ କହି ଲାଗିଛି-'ଜୀବନରେ ସୁଆଦ ଅଛି, ମରଣ ନାହିଁ, ଦୁଃଖ ନାହିଁ ।'

ଏ ସଂସାରରେ ଦୁଃଖ ଦୁର୍ଭାଗ୍ୟ ସବୁକୁ ଡ଼େଇଁ ଯିବାତ ଜୀବନ ବଞ୍ଚିବାର ବଡ଼ କୌଶଳ । ଦୁଃସ୍ଥିତି ସତ୍ତ୍ୱେ ଅନାଗତ ପ୍ରତିଟି ମୁହୂର୍ତ୍ତ ଆଶା ଆଉ ଆନନ୍ଦର ବୋଲି ମଣିଷ ବିଶ୍ୱାସ କରେ ।

ଏମିତି ସ୍ୱପ୍ନ ସବୁ ଦୁଃଖ ଭୋଗୁଥିବା ମଣିଷମାନଙ୍କୁ ତଥାପି ଏ ସଂସାରରେ ବଞ୍ଚାଇ ରଖିଛି ।

ଜ୍ଞାତି ବନ୍ଧୁ କୁଟୁମ୍ବ ଓ ଏ ସଂସାରର ନାନା ଗହଳ ଚହଳ ସତ୍ତ୍ୱେ ଏକଲା ହେବା ତ ଅନିବାର୍ଯ୍ୟ ସତ୍ୟ । ଏହି ଏକୁଟିଆ ମଣିଷର ଉପସ୍ଥିତି ଏ ସଂସାରର ଏକ ବଡ଼ ବାସ୍ତବତା ।

ତା ଜୀବନର ମୂଳ ଆକାଂକ୍ଷା ହେଉଛି ମନର ମଣିଷ ସହିତ ସଂଯୋଗିତ ହେବା । ଅଥଚ଼ ଜୀବନ ସରିଯାଏ ଆଉ ଗୋଟେ ସମାନଧର୍ମା ମନ ମିଳେନାହିଁ ।

ଚରମ କଥାଟି ପରିଶେଷରେ କହିବା ପାଇଁ ଶିଳ୍ପୀ ଯାହା ଭାବିଥାଏ ତାହା ହେଉଛି, ମଣିଷର କଥା ଏବଂ ସେହି ମଣିଷଟି ଗୋଟେ ଏକଲା ମଣିଷ ନିଶ୍ଚୟ ।

ଗୋପୀନାଥ ମହାନ୍ତି ଯେଉଁ ମଣିଷର କଥା ଜୀବନ ତମାମ ଲେଖିଛନ୍ତି ସେହି ମଣିଷଟି ହୁଏତ ଦୁଃଖେ ପୀଡ଼ିତ; ଅଥଚ଼ ଆନନ୍ଦ ସନ୍ଧାନୀ ।

ସ୍ୱପ୍ନ ଦେଖିବା ଅର୍ଥ ଜୀବନ ପାଇବା । ଆନନ୍ଦ ସନ୍ଧାନୀ ମଣିଷଟି କେବଳ ସ୍ୱପ୍ନ ଦେଖିପାରେ । ଧନ ଦଉଲତ, କ୍ଷମତା ପ୍ରତିପତ୍ତି ପାଇଁ ସ୍ୱପ୍ନ ନୁହେଁ । ଯେଉଁ ସ୍ୱପ୍ନରେ ତା ଭିତରଟା କୁରୁଳି ଉଠେ । ଯେ ଦଣ୍ଡେ ଘଡ଼ିଏ ପୁଣି ବଞ୍ଚିଯାଏ ଆପଣାର ସ୍ୱପ୍ନରେ ।

ସ୍ୱପ୍ନର ବଳୟ ହେଉଛି ବିସ୍ତୀର୍ଣ୍ଣ । ମଣିଷ ଯେତେ ନିଭୃତ ସ୍ୱପ୍ନ ଦେଖୁପଛେ ସେଥିରେ ଥାଏ, ମାଟି, ଆକାଶ, ମହାଜୀବନ, ମହାକାଳର ସ୍ପର୍ଶ । ସେ ସବୁକୁ ବାଦଦେଇ ମଣିଷର ରସବୋଧ, ତାର ସୌନ୍ଦର୍ଯ୍ୟାନୁଭୂତି କଦାପି ସଂପୂର୍ଣ୍ଣ ହୁଏ ନାହିଁ ।

ମଣିଷ ସହିତ ମାଟିର ସଂପର୍କ, ଆକାଶର ସଂପର୍କକୁ ବୁଝାଇ କହିବା ନିଷ୍ପ୍ରୟୋଜନ ।

ଗୋପୀନାଥ ମହାନ୍ତିଙ୍କ ପରି ମହାନ ଶିଳ୍ପୀମାନେ ମଣିଷର ଅସ୍ତିତ୍ୱକୁ ମାଟି, ମହାକାଳ, ବିଶାଳ ପ୍ରକୃତି, ମହାବିବର୍ତ୍ତନ ସହିତ ସଂଯୋଗିତ କରି ସେହି ଚିରନ୍ତନ ପ୍ରକୃତି ଓ ମହାଜାଗତିକତା ଭିତରେ ଉପଲବ୍ଧି କରିଛନ୍ତି । ନିରବଧି କାଳ, ବିପୁଳ ପୃଥିବୀ, ଅସରନ୍ତି ଜୀବନ ପ୍ରବାହ, ବିବର୍ତ୍ତନ ପ୍ରକିୟା ଭିତରେ ମଣିଷର ବଞ୍ଚିରହିବାକୁ ଗୋପୀନାଥ ମହାନ୍ତି ନାନାଭାବରେ ରୂପାୟିତ କରିଛନ୍ତି । ତାରି ଭିତରେ ମଣିଷ ଜୀବନ ଆଉ ତାର ଅଖଣ୍ଡ ଆନନ୍ଦ । ସକାଳର ଉଦିତ ସୂର୍ଯ୍ୟ ସଂଜବେଳକୁ ଅସ୍ତଯାଏ । ଯୁବତୀ ନାରୀଟିଏ ଚାହୁଁଚାହୁଁ କେମିତି ବୁଢ଼ୀ ହୋଇଯାଏ । କାହାରି ବଡ଼ ପଣିଆ ଜୀବନସାରା ରହେନି ।

ମଣିଷର ସ୍ୱପ୍ନ ଉଜୁଡ଼ିଯାଏ । ସେ ଥକାମନ ହୋଇ ବସିଥାଏ । ସେ ନିଜକୁ ଓ ନିଜ ଜୀବନର ପ୍ରତିଟି ବାସ୍ତବତାକୁ ଓ ତାସହିତ ତାର ସକଳ ଅପୂର୍ଣ୍ଣତା, ଅସଫଳତାକୁ ବୁଝିପାରେ ।

ଏ ସବୁ ଅନୁଭୂତି ବେଦନାଦାୟକ ହେଲେବି ସେଥିରୁ ଗୋଟେ ପ୍ରକାର ଶୁଦ୍ଧ ଆଧ୍ୟାତ୍ମିକ ଆନନ୍ଦ ମିଳେ । ଧାର୍ମିକତା ଭିତରୁ ମଧ୍ୟ ସେମିତି ଆନନ୍ଦ ମିଳେ । ସେ ଦୃଷ୍ଟିରୁ ଏକୁଟିଆ ମଣିଷର ନିଃସଙ୍ଗ ଜୀବନ ମଧ୍ୟ କମ ଆନନ୍ଦଦାୟକ ନୁହେଁ । ଏଠି ଆନନ୍ଦର ସଂଜ୍ଞା ଅଲଗା ପ୍ରକାରର ।

ମଣିଷର ମନ ଓ ଆକାଂକ୍ଷା ଶୁଦ୍ଧ ହେବା ପାଇଁ ଏମିତି ବେଦନା ଦାୟକ ଅନୁଭବ ଆବଶ୍ୟକ । ଯୁବକ ଯୁବତୀ ମାନଙ୍କର ଆନନ୍ଦ ଗୋଟେ ପ୍ରକାରରତ ବୁଢ଼ାବୁଢ଼ୀ ମାନଙ୍କର ଆନନ୍ଦ ଆଉ ଗୋଟେ ପ୍ରକାରର ।

ପରଳ ପଡ଼ିଯାଇଥିବା ପେଚୁଆ ଆଖିରେ ଅତିକ୍ରାନ୍ତ ବୟସର ବୁଢ଼ାଟିଏ ଖାଲି ଆକାଶକୁ ଦେଖୁଥାଏ । ହାତ ଗୋଡ଼ ଚ଼ଳୁନଥାଏ । ପାଖରେ କେହି ନଥାନ୍ତି । ଦୂରନ୍ତ ଶୈଶବ, ମଲାହଜିଲା ଲୋକର ସ୍ମୃତି ଯା' ଖାଲି ମନକୁ ଆସୁଥାଏ ।

ଆଖିରୁ ତା'ର ନିଦ ହଜିଯାଇଥାଏ । ଯୌବନର ଦିନସବୁ ମନେ ପଡ଼ିଯାଇଥାଏ । ତା'ର ଆନନ୍ଦ ଗୋଟେ ପ୍ରକାର ।

ମେଘରାତି, ବଘେଇ ପାଗ, ନିଛାଟିଆ ଲାଗୁଥିବା ଜୀବନ ଭିତରେ ବି ଆନନ୍ଦର ଅନ୍ତରୀଣ ଝରସବୁ ପଡ଼ିଛି । ସେମିତି ବିରଳ ଶୁଦ୍ଧ ଆନନ୍ଦର ଝର ସବୁକୁ ବଣଭୂମିରେ ବାସ କରିଥିବା ମଣିଷଙ୍କ ଭିତରେ ଦେଖାଇ ଦେବା ପାଇଁ ଗୋପୀନାଥ ମହାନ୍ତି ତାଙ୍କ ଅଧିକାଂଶ ରଚ଼ନାରେ ଯୁଗ ଯୁଗ ଧରି ଆଦୌ ବଦଳୁନଥିବା ବଣ ପାହାଡ଼ ଦେଶର ଚ଼ିତ୍ରଣ କରିଛନ୍ତି ।

ସତ୍ୟଶିବ ସୁନ୍ଦରର ଶାଶ୍ୱତକୁ ଗୋପୀନାଥ ମହାନ୍ତି ତାଙ୍କ ରଚ଼ନାର ମୂଳ ଆର୍କିଟାଇପ କରିଛନ୍ତି ।

ମଣିଷର ଜୀବନବଞ୍ଚିବା ତାଙ୍କୁ ଅନୁପମ ଲାଗିଛି । ବାରବାର ବିପନ୍ନ ହେଉଥିବା ସତ୍ତ୍ୱେ ଟିକିଏ ଆନନ୍ଦ ପାଇଁ ବିଭୋର ହେଉଥିବା ମଣିଷ ଜୀବନ ପ୍ରତି ସେ କୌତୂହଳୀ ହୋଇ ପଡ଼ିଛନ୍ତି ।

ଖାଲି ଜୀବନ ଦୃଷ୍ଟି ନୁହେଁ ତାର ପ୍ରକାଶ ମାଧମ ଭାଷାକୁ ବି ସେ ସ୍ୱାଦିଷ୍ଟ ଜୀବନର ପ୍ରତୀକ କରି ଦେଇଛନ୍ତି । ଏହା ତାଙ୍କର କମ ପାରଦର୍ଶିତା ନୁହେଁ । ଗୋପୀନାଥ ମହାନ୍ତିଙ୍କ ଲେଖାସବୁ ମଣିଷ ଜୀବନର ବିଭୋରପଣିଆକୁ ହିଁ ଲେଖିଛି ।

ବାସ୍ତବ ଜୀବନର କର୍କଶ କଥା ସବୁକୁ ସେ ବରଂ କଳାଭିତରେ ରସସିକ୍ତ ଓ କୋମଳ କରି ଦେଇଛନ୍ତି ।

ଯେଉଁ ଶିଳ୍ପୀ ଯେତେ ଅଧିକ ଈଶ୍ୱର ବିଶ୍ୱାସୀ ସେ ସେତିକି ସୁନ୍ଦରକୁ ଭଲ ପାଇବତ ଜୀବନକୁ ଭଲ ପାଇବ । ଗୋପୀନାଥ ମହାନ୍ତିଙ୍କ ପ୍ରକୃତି ପ୍ରେମିକତା ତାଙ୍କ ସୌନ୍ଦର୍ଯ୍ୟ ପ୍ରୀତିର ନିଦର୍ଶନ ଯେପରି ।

ମଣିଷ ଜୀବନ ପ୍ରତିଟି ସଦ୍‌ଭାବନା ଓ କୋମଳତାରେ ଭରିଯାଉ ବୋଲି ସେ କାମନା କରୁଥିଲେ । ଅମଣିଷତାକୁ ସେ ସଇତାନି ବୋଲି ମନେ କରିଛନ୍ତି ଠିକ୍ ଦସ୍ତୋଭ୍‌ସ୍କିଙ୍କ ପରି । ମଣିଷ ଭିତରେ କେତେ ପୂର୍ଣ୍ଣତାର ସ୍ୱପ୍ନ ସେ ଦେଖିଛନ୍ତି । କେତେ ଆନନ୍ଦର କଳନା କରିଛନ୍ତି ।

ସବୁଥାଇ ଜୀବନର ସୁଆଦ ଯଦି ନାହିଁ ସେ ଜୀବନ ଜିଇଁବାର ଅର୍ଥ କ'ଣ ? ମଣିଷ ଭିତର ଆନନ୍ଦ ଝରଣାଟି ହିଁ ତାକୁ ଜୀବନର ସ୍ୱାଦ ଆଣି ଦେଇଥାଏ ।

ଜୀବନ୍ର ଭିତରକୁ ସଜାଡ଼ିବା, ଉଲ୍ଲାସରେ କୁରୁଳି ଉଠିବା ହଜାରେ ବଞ୍ଚନା ସତ୍ତ୍ୱେ ନିଜକୁ ଭାଗ୍ୟଧର ବୋଲି ମନେକରିବାତ ଜୀବନ ଜିଇଁବାର ସାର୍ଥକତା ।

ମଣିଷ ଯେତେ ନିଃସ୍ୱ ନିଃସମ୍ବଳ ହେଲେ ମଧ, ଯେତେ ଅବ୍ୟବସ୍ଥିତ ହେଲେ ମଧ ସେ ଭାଗ୍ୟହୀନ ନୁହେଁ; ବରଂ ଭାଗ୍ୟଧର ଏହି ବିଶ୍ୱାସ ହିଁ ଜଣକୁ ମହିମ୍ନ କରିଦିଏ ।

ସାରା ଜଗତର ସଂଯୋଗ ସବୁ ଯେମିତି ମଣିଷ ଜୀବନ ଭିତରେ ଛନ୍ଦାଛନ୍ଦି ହୋଇ ରହିଛି; ସାର୍ତ ଯେଉଁଥିପାଇଁ ଥରେ କହିଥିଲେ— 'The final aim of art is to reclaim the world by revealing it as it is but as if it has its sources in human life.'

ଗୋପୀନାଥ ମହାନ୍ତିଙ୍କ ରଚ଼ନାର ବିଷୟ ପିଣ୍ଡ ହେଉଛି ଅନନ୍ତ କାଳର ମଣିଷ ଜୀବନ ଓ ତାସହିତ ଶାଶ୍ୱତର ସ୍ପର୍ଶ । ଗୋପୀନାଥ ମହାନ୍ତିଙ୍କ ଶିଳ୍ପୀ ମାନସ ମଣିଷକୁ ଅଧିକ ବ୍ୟାପ୍ତ ଓ ପ୍ରସାରିତ ହେବା ପାଇଁ ପ୍ରୋତ୍ସାହିତ କରିଛି । ଖୋଲାମନ ନେଇ, ପ୍ରବୋଧିତ ଆତ୍ମା ଦେଇ ସେ ଜଗତକୁ ଦେଖୁ ବୋଲି ଗୋପୀନାଥ ମହାନ୍ତି ଇଚ୍ଛାପ୍ରକାଶ କରିଛନ୍ତି— ଏଥିପାଇଁ ଶିକ୍ଷାଦୀକ୍ଷା ନଥିଲେ ବି ସେ ମାଟି ଆକାଶକୁ ନିଷ୍କପଟ ଚ଼ିତ୍ତର ନିବିଡ଼ ଭାବେ ଦେଖେ ବୋଲି ଗୋପୀନାଥ ପରଜାର ପ୍ରଶଂସା କରି କହିଛନ୍ତି; ବଣୁଆ ଲୋକର ଆଖି ଖୁବ୍ ସଫା ।



# ଏକ ବିରଳ ସ୍ମୃତି କଥା

ମୋ ପାଇ ଏକାନ୍ତ ଅବିସ୍ମରଣୀୟ ସେଦିନ ସଞ୍ଜ ପହରୁ ସେ ରାତି କେତେଘଡ଼ି । ନିଖିଳ ଓଡ଼ିଆ ଅଧ୍ୟାପକ ସମ୍ମିଳନୀର ଉଦ୍‌ଘାଟନ ଉତ୍ସବ ସାରି ଓଡ଼ିଶାର ଅନନ୍ୟ କଥାଶିଳ୍ପୀ ଗୋପୀନାଥ ମହାନ୍ତି ଫେରୁଥାନ୍ତି ତାଙ୍କ ଭୁବନେଶ୍ୱରର ବାସଭବନକୁ ।

ବାଣୀବିହାରର ଓଡ଼ିଆ ବିଭାଗରୁ ବାହାରିଲା କ୍ଷଣି ତାଙ୍କ ସହିତ ଗାଡ଼ିରେ ବସିବା ପାଇଁ ସେ ମୋତେ ଇଙ୍ଗିତ ଦେଲେ ।

ମୁଁ ବାଧ୍ୟଛାତ୍ର ଭଳି ଅତି ସଂଭ୍ରମରେ ତାଙ୍କ ସହିତ ଗାଡ଼ିରେ ବ୍‌ସିଲି । କିଛି ସମୟ ପୂର୍ବରୁ ତାଙ୍କ ସହିତ ମୋତେ ପରିଚ଼ିତ କରାଇ ଦେଇ ଥିଲେ 'ଇସ୍ତାହାର' ପତ୍ରିକାର ସୁଧୀ ସଂପାଦକ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ।

ସେଦିନ ଓଡ଼ିଆ ବିଭାଗ ପରିସର ଭିତରେ ସଭା ଆରମ୍ଭର କିଛି ସମୟ ପୂର୍ବରୁ ମୋତେ ଗୋପୀନାଥ ମହାନ୍ତିଙ୍କ ସହିତ ପରିଚିତ କରାଇ ଦେବାକୁ ଯାଇ ପ୍ରଫେସର ଶତପଥୀ କହିଥିଲେ, 'ଏଇ ହେଉଛନ୍ତି ସେଇ ତରୁଣ ଅଧ୍ୟାପକ ଯେ 'ମାଟିମଟାଳ: ଗୋପୀନାଥ ମହାନ୍ତିଙ୍କ ଏକ ନିର୍ବୀର୍ଯ୍ୟ ସୃଷ୍ଟି' ବୋଲି ଲେଖିଛନ୍ତି ।

କିଛିଦିନ ପୂର୍ବରୁ ସେ ଲେଖାଟି ମୋର ପ୍ରକାଶ ପାଇଥିଲା ସ୍ୱର୍ଗତ ପ୍ରଫୁଲ୍ଲ କୁମାର ଜଗଦେବଙ୍କ ସଂପାଦିତ 'ମୂଲ୍ୟାୟନ' ପତ୍ରିକାରେ; ଯାହା ଏକଦା ଓଡ଼ିଶାର ଅନ୍ୟତମ ବିଶିଷ୍ଟ ସାହିତ୍ୟ ସମାଲୋଚନା ମୂଳକ ପତ୍ରିକା ଥିଲା ।

ସେ ଲେଖାଟିକୁ ପ୍ରଥମେ ମୁଁ ପଠାଇଥିଲି ସଚ୍ଚିରାଉତରାୟଙ୍କ ପାଖକୁ ତାଙ୍କ ସମ୍ପାଦିତ 'ଦିଗନ୍ତ'ରେ ଛାପିବା ପାଇଁ । ମାତ୍ର ଏପରି ଏକ ବିବଦମାନ ତଥା ବିରୋଧାତ୍ମକ ଲେଖାଟିକୁ ଦିଗନ୍ତରେ ନଛାପି ମୋତେ ଶ୍ରୀରାଉତରାୟ ଚିଠି ଲେଖି ଲେଖାଟିକୁ ଅନ୍ୟ ପତ୍ରିକାରେ ପ୍ରକାଶ କରିବା ପାଇଁ କହିଥିଲେ ।

ତଦନୁଯାୟୀ ମୁଁ ମୋର ସେ ଲେଖାଟିକୁ 'ମୂଲ୍ୟାୟନ'ର ସୁଯୋଗ୍ୟ ସମ୍ପାଦକ ସ୍ୱର୍ଗତ ଜଗଦେବ ବାବୁଙ୍କ ପାଖକୁ ପଠାଇଥିଲି ।

ଲେଖାଟିର ଗୁଣାଗୁଣ ପରୀକ୍ଷା କରି ଲେଖାଟିକୁ ସେ ତାଙ୍କ ମୂଲ୍ୟାୟନରେ ଛାପି ଦେଇଥିଲେ ।

ପ୍ରକାଶିତ ଲେଖାଟି ଶେଷରେ ଗୋପୀନାଥ ମହାନ୍ତିଙ୍କ ନଜରକୁ ଆସିଥିଲା । ଲେଖାଟି ପଢ଼ି ଗୋପୀନାଥ ମହାନ୍ତି କୁଆଡ଼େ ମୋ ଉପରେ ଟିକିଏ ଅପ୍ରସନ୍ନ ହୋଇଥିଲେ । ତାଙ୍କ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ 'ମାଟି ମଟାଳ' ଉପନ୍ୟାସରେ ବ୍ୟବହୃତ ପ୍ରତୀକର ଗୂଢ଼ ଇଙ୍ଗିତକୁ ମୁଁ ବୁଝି ପାରି ନାହିଁ ବୋଲି ସେ ଅଭିଯୋଗ କରିଥିଲେ ।

ବହୁଦ୍ଦିନ ତଳର କଥା ଏ ଘଟଣାଟି । 'ମାଟିମଟାଳ' ପାଇଁ ଗୋପୀନାଥ ମହାନ୍ତି ଜ୍ଞାନପୀଠ ପୁରସ୍କାର ପାଇବା ବର୍ଷ ।

ନଭେମ୍ବର କି ଡିସେମ୍ବର ମାସର କେଉଁ ଦିନ । ମୋର ଅତିପ୍ରିୟ କଥାକାରଙ୍କ ସହିତ ଦୀର୍ଘ ସମୟଧରି ଅତି ଅଭାବିତ ଭାବେ ଅନ୍ତରଙ୍ଗ ଆଳାପ ଆଲୋଚ଼ନା ହୋଇଥିଲା ତାଙ୍କ ଘରେ ।

ସେ ପିନ୍ଧିଥାନ୍ତି ସ୍ଥାନେ ସ୍ଥାନେ ଚିରି ଯାଇଥିବା ଗୋଟେ ପୁରୁଣା ଫୁଲ୍ ସୁଇଟର । ତା' ସହିତ ଗୋଟେ ନୀଳରଙ୍ଗର ଖୋର୍ଦ୍ଧା ଲୁଙ୍ଗି । ମୁଣ୍ଡରେ ପୁଣି ମଙ୍କି କେପ୍ ।

ସନ୍ଧ୍ୟା ପହରୁ ରାତି ଏଗାରଟା ପର୍ଯ୍ୟନ୍ତ ମୁଁ ତାଙ୍କ ସହିତ କଟାଇଲି । ସେଘର ଭିତରକୁ ଆଦୌ ଯାଉନଥିଲେ ।

ସେଇ ଡ୍ରଇଂ ରୁମରେ ହିଁ ଥାନ୍ତି ।

ବସିଥିଲେ କମ ସମୟ ।

ବେଶୀ ସମୟ ମୋ ଆଗରେ ଛିଡ଼ା ହୋଇ ଖୁବ୍ ଭାବପ୍ରବଣ ହୋଇ କଥାବାର୍ତ୍ତା କରୁଥିଲେ ।

ତାଙ୍କ ସହିତ ଏତେ ଅନ୍ତରଙ୍ଗ ଆଳାପର ଆନନ୍ଦଦାୟକ ଅନୁଭବକୁ ମୁଁ ଆଜି ଭାଷାରେ ବ୍ୟକ୍ତ କରି ପାରିବିନି ।

ଜଣେ ଶିଳ୍ପୀର ଆତ୍ମା ଏ ବ୍ରହ୍ମାଣ୍ଡରେ କେତେ ଅଧିକ ପ୍ରବୋଧିତ ହୋଇପାରେ ତା'ର ପ୍ରମାଣ ଥିଲା ସେଦିନ ତାଙ୍କର ପ୍ରତିଟି ଯୁକ୍ତି ।

କେତେ ଅଭିନିବିଷ୍ଟ ହୋଇପଡ଼ିଥିଲା ତାଙ୍କର ସୃଜନଶୀଳ ମନ ଓ ହୃଦୟ ସେତେବେଳେ କାହିଁ କେତେ କାଳରୁ ମଣିଷର ଅସରନ୍ତି ଜୀବନଧାରା ଲାଗି ରହିଥିବା ପ୍ରତିଟି ଗାଁ, ତା'ର ପଙ୍କଭରା ଦଳଗଡ଼ିଆ, ତା'ର ମନ୍ଦିର, ଚ଼ଉତରା, ମେଳନ ପଡ଼ିଆ, ଗାଁହାଟ, ବାଟ ବରଗଛ, ଗାଁ ପାଖ ଦେଇ ବହି ଯାଇଥିବା ସର୍ପିଳ ନଈ, ତା'ର ସୁନ୍ଦର ତୀରବଣ, ଆଦିଗନ୍ତ ଧାନବିଲ, ତାଙ୍କ ଉପନ୍ୟାସର ପ୍ରତିଟି ବିଷୟକୁ ସେ ଆଉଥରେ ତାଙ୍କ ଶୈଳୀ, ତାଙ୍କ ଭାଷାରେ କହୁଥିଲେ ।

ସେ ଦିନ ହୁଏତ ତାଙ୍କର ସନ୍ଦେହ ଥିଲା ଯେ, ଏ ସବୁକଥାକୁ ମୁଁ ହୃଦୟ ଦେଇ ବୁଝିପାରିନି; ଯେଉଁ ଗ୍ରାହକତା ଅଭାବରୁ ହୁଏତ ମୁଁ ତାଙ୍କ ଉପନ୍ୟାସ 'ମାଟିମଟାଳ'ର ଶିଳ୍ପ ପ୍ରସଙ୍ଗକୁ ନେଇ ଆପତ୍ତି ଉଠାଇଛି ।

ସେଦିନ ଗୋପୀନାଥ ମହାନ୍ତି ଏତେ ଭାବପ୍ରବଣ ହୋଇ ମଧ୍ୟରାତ୍ରୀ ପର୍ଯ୍ୟନ୍ତ ପ୍ରାୟ ଯେପରି ତାଙ୍କ 'ମାଟିମଟାଳ'ର ଶିଳ୍ପାୟନ ସପକ୍ଷରେ ଯୁକ୍ତି ବାଢ଼ିଲେ ମୁଁ ବିସ୍ମିତ ହୋଇ ଯାଇଥିଲି 'ମାଟିମଟାଳ'ର ବିଷୟ ଯୋଜନା ସହିତ ତାଙ୍କର ନିବିଡ଼ ଏକାତ୍ମବୋଧ ଦେଖି ।

ଗୋପୀନାଥଙ୍କ ଶିଳ୍ପୀ ପ୍ରାଣ ଯେପରି ମାଟିମଟାଳରେ ଚିତ୍ରିତ ଗାଁ ଭୂଇଁର ଅବିକଳ ନକ୍ସାଟିକୁ ଧରି ରଖିଥିଲା ।

ସବୁକଥା କହିଲା ବେଳେ ମୁଁ ତାଙ୍କ ଆତ୍ମହରା ହୋଇ ଯାଉଥିବା ଢଙ୍ଗଦେଖି ତାଙ୍କୁ ଭାବଭୋଳା କବିଟିଏ ବୋଲି ଭାବୁଥିଲି ।

ସେ ମୋ ଆଲୋଚନାର ବିରୋଧାତ୍ମକ ଯୁକ୍ତି ସବୁକୁ ଖଣ୍ଡନ କରୁଥିଲେ । ଅନ୍ୟ ପକ୍ଷରେ ମାଟିମଟାଳରେ ପ୍ରତୀକ ପ୍ରୟୋଗର ସଫଳତାକୁ ସାବସ୍ତ କରିଥିଲେ ।

ମାଟିମଟାଳରେ ଭାରତ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ଯୋଜନା ପ୍ରଚାର ହୋଇଥିବା କଥା ମୁଁ ମୋ ଆଲୋଚ଼ନାରେ ପ୍ରଶ୍ନ ଉଠାଇଥିଲି । ତାହା ଉପନ୍ୟାସର ଶିଳ୍ପସୁଷମାକୁ ବ୍ୟାହତ କରିଛି ବୋଲି ମଧ୍ୟ ଯୁକ୍ତି ବାଢ଼ିଥିଲି ।

ଗୋପୀନାଥ ମହାନ୍ତି କିନ୍ତୁ ତାହା ମୋ ସ୍ୱପ୍ନର ଗ୍ରାମ୍ୟଜୀବନ ବୋଲି କହିଲେ ଏମିତି ଗୋଟେ ସମବାୟ ଜୀବନର ଖସଡ଼ା ବରଂ ମାଟିମଟାଳରେ ପ୍ରସ୍ତାବିତ ହୋଇଛି ବୋଲି ସେ ସୂଚ଼ନା ଦେଲେ ।

ମୁଁ ତାଙ୍କୁ ପ୍ରଶ୍ନ ପଚାରି ଉସକେଇ ଦେଉଥିଲି ।

ମୋ ପ୍ରିୟ ଶିଳ୍ପୀ ମୁଗ୍ଧ ବଚନ କହିବାରେ ଆହୁରି ମୁଖର ହୋଇଯାନ୍ତୁ ବୋଲି ।

ତାଙ୍କ ଆତ୍ମା ସ୍ୱତଃ ତ ପ୍ରଗଲ୍‌ଭ, ତାଙ୍କ ଶବ୍ଦ ବସାଣତ ଗିରି ଝରଣାର ପ୍ରବାହ ଭଳି ।

ତାଙ୍କର ବିଭୋର ପଣିଆତ ବନସ୍ତର ବର୍ଷାକାଳ ପରି ।

ଓଡ଼ିଶାର ସେଦିନ ଜୀବିତ ଗଦ୍ୟପଦ୍ୟ ସବୁ ଲୋକଙ୍କ ଭିତରେ ସେଥିଲେ ପ୍ରକୃତରେ ମୋର ଏକାନ୍ତ ପ୍ରିୟତମ ।

ମାଟିମଟାଳର ଅତୁଳନୀୟ ଗ୍ରାମ୍ୟ ଜାବନ ବିଷୟରେ ସେ ଯେତେବେଳେ ପ୍ରଶ୍ନପ୍ରଶ୍ନ ଆଲୋଚନା କରୁଥାନ୍ତି ମୁଁ ସେତେବେଳେ ନିରନ୍ତର ଭାବୁଥିଲି, ମୁଁ ତାଙ୍କ ମନରେ କିପରି ପ୍ରତ୍ୟୟ ସୃଷ୍ଟି କରିପାରିବି, ସେ ମୋର ଶିଳ୍ପୀ ହିସାବରେ ଏକାନ୍ତ ପ୍ରିୟତମ ବୋଲି ।

ତାଙ୍କର ପ୍ରତ୍ୟେକଟି ଶବ୍ଦ ମୋତେ ପ୍ରବୋଧିତ କରେ ।

ଶବ୍ଦଟିଏ ତାଙ୍କର ପକ୍ଷୀର ଗୀତପରି ଲାଗେ ତ ।

ଆକାଶ ପରି ନିବିଡ଼ ଲାଗେ ।

ମିତଣୀର କାନ୍ଦଣା ପରି ଲାଗେ ତ ।

ଘୋର ବନସ୍ତର ବର୍ଷାକାଳ ପରି ଲାଗେ ।

ମୋତେ ଜୀବନରେ କେତେ ଆବିଷ୍ଟ କରି ଦେଇଛନ୍ତି, ସେ ମୋ ପ୍ରାଣକୁ କେତେ ଭରି ଦେଇଛନ୍ତି ମୋ ବ୍ୟତୀତ ଆଉ କିଏ ଜାଣି ପାରିବ ସେମିତି ।

ଶୀତରାତି କ୍ରମଶଃ ଶୂନଶାନ ହୋଇ ଯାଇଥିଲା ।

ସେ କିନ୍ତୁ ଟିକିଏ ବି କ୍ଳାନ୍ତି ଅନୁଭବ କରୁନଥିଲେ ।

ତାଙ୍କର ବିନୀତା ପତ୍ନୀ ସେଦିନ ସେ ଆସରରେ ମୋ ପରି ଜଣେ ନିରୀହ ଶ୍ରୋତାମାତ୍ର ଥିଲେ ।

ଶ୍ରୀମତୀ ମହାନ୍ତି ହୁଡୁମ ମିଶାଇ ନାଲି ଉଖୁଡ଼ା ଆଣି ଦେଇଥିଲେ ତ ମଝିରେ ଚ଼ା' ଆଣି ଦେଇଥିଲେ ।

ମାଟିମଟାଳରେ ସଂଯୋଜିତ ତାଙ୍କ ବିପୁଳ ଗ୍ରାମ୍ୟ ଜୀବନବୋଧର ପ୍ରତୀକ ସବୁକୁ ସେ ଯେତେଯେତେ ଭାବପ୍ରବଣ ହୋଇ ବୁଝାଉଥିଲେ ମୁଁ ସେତିକି ମୁଗ୍ଧ ହୋଇ ଶୁଣୁଥିଲି ।

ମୋ ପରି ଜଣେ ପାଠକ ଜୀବନରେ ତାହା ଥିଲା ପରମ ଭାଗ୍ୟର ବିଷୟ । ଯେ ତାଙ୍କ ରଚ଼ନାରେ ଅବିକଳ ବଣପାହାଡ଼କୁ ଆଙ୍କି ଦେଇଛନ୍ତି । ଯେ ଗିରି ଝରଣାକୁ ସେମିତି ବୁହାଇ ଦେଇଛନ୍ତି, ବଣ ପକ୍ଷୀର ଗୀତକୁ ଶୁଣେଇ ଦେଇଅଛନ୍ତି, ସୁରଭିତ ବଣ ଫୁଲକୁ ଫୁଟେଇ ଦେଇଛନ୍ତି । ଆଦିମ ମଣିଷର ଜୀବନକୁ ଅବିକଳ ଚ଼ିତ୍ରଣ କରି ଦେଇଛନ୍ତି ସେତ ପ୍ରକୃତରେ ଦ୍ୱିତୀୟଈଶ୍ୱର ।

ତାଙ୍କ ଉପନ୍ୟାସ ସବୁତ ବଣ ପାହାଡ଼, ନଦୀ ଝରଣା ପରିବେଷ୍ଟିତ ଛବିଳ ପ୍ରକୃତିର ଏକ ଏକ ବହୁରଙ୍ଗୀ ନକ୍‌ସା ।

ଆଦିମ କାଳରୁ ମଣିଷର ଅସରନ୍ତି ଜୀବନ ପ୍ରବାହକୁ ଲେଖିବାରେ ସେତ ଅନନ୍ୟ ଚିତ୍ରକର ।

ନିନ୍ଦାକରିବା ପାଇଁ ନୁହେଁ, ମୁଁ ତାଙ୍କର ଜଣେ ମୁଗ୍ଧ ପାଠକଭାବେ ତାଙ୍କ ରଚ଼ନାରେ ଆହୁରି ପୂର୍ଣ୍ଣତା ତାଙ୍କ ଜୀବନ ପ୍ରିୟତାର ଆହୁରି ତୁଙ୍ଗିମା ଲୋଡ଼ିବା କାରଣରୁ ମୁଁ ଏପରି ଲେଖାଟିଏ ଲେଖିଥିଲି ବୋଲି ତାଙ୍କୁ ବୁଝାଇବାକୁ ଚେଷ୍ଟାକଲି ।

ତାଙ୍କ ଅତି ପ୍ରିୟ ଉପନ୍ୟାସ ମାଟିମଟାଳର ଭାବଦର୍ଶନକୁ ବୁଝାଇବାରେ ସେଦିନ ରାତିରେ ସେ ଏତେ ବିଭୋର ହୋଇ ଯାଇଥିଲେ ଯେ କାହାର ନିନ୍ଦା ପ୍ରଶଂସାକୁ ବୁଝିବାର ଅବସ୍ଥାରେ ସେ ଆଉ ନଥିଲେ ।

ଆମ କଥା ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ଶିଳ୍ପୀ ଗୋପୀନାଥ ମହାନ୍ତି କଥା ପ୍ରସଙ୍ଗରେ କହିଲେ 'ମାଟିମଟାଳ' ଗାଁ ମଣିଷ ଜୀବନର ଲୀଳାଭୂମି ହୋଇଛି । ଅସରନ୍ତି ଜୀବନଧାରାର ରୂପକଟିଏ ଯେପରି ।

ସରକାରୀ ଜାତୀୟ ଯୋଜନାର ମୂଳ୍ ସଙ୍କଳ୍ପ ଗ୍ରାମାଭିମୁଖୀ ନହେବ କିପରି ? ଯେ କୌଣସି ମଣିଷ ଗାଁକୁ ତା ସ୍ମୃତିରେ ଧରି ନରଖିବ କିପରି ?

ଏ ଖିଅରୁ ସେ ଖିଅ ଏମିତି କଥା ଲମ୍ବୁଥିଲା ।

ରାତି ହେଲା ଏଗାରରୁ ବେଶୀ ।

ଶୀତ ରାତିର ନୀରବତା ଭୁବନେଶ୍ୱରର ସେକ୍‌ଟରକୁ ସେଦିନ ଛାଇ ଦେଇଥିଲା । ତାଙ୍କ ଘର କାଛରେ ଟଙ୍ଗା ହୋଇଥାଏ, ପ୍ରକାରେ ପ୍ରକାରେ ନାଉତୁମ୍ବା । ତା'ସହିତ କେତେ ରକମର ବଂଶୀ ଆଉ ଡୁଙ୍ଗଡୁଙ୍ଗା ।

ନିତିନିତି ଦି'ଘଡ଼ି ବଗିଚା କାମ କଲାବେଳେ ସେ ଗାଁର ନଈ ପୋଖରୀ ଧାନବିଲ, ଗାଁ ଲୋକଙ୍କର ଗଧ ଖଟଣୀ, କେତେ ରକମର ପର୍ବପର୍ବାଣୀ, ଭଙ୍ଗା ଗଢ଼ା ଦୁନିଆର ଆଉ କେତେ କଥା ମନକୁ ଆଣନ୍ତି । ତାଙ୍କ ପତ୍ନୀ ବି ତାଙ୍କ ସ୍ୱାମୀଙ୍କ ବଗିଚା କାମ କରିବା କଥାକୁ ଦୋହରାଇଲେ ।

ସେତେବେଳକୁ ଆମେ ଚ଼ାରଂଥର ପ୍ରାୟ ଚ଼ା ପିଇ ସାରିଲୁଣି ।

ବହୁମୂତ୍ର ରୋଗ କାରଣରୁ ତାଙ୍କ ଚ଼ା' ରେ ଚିନି ପଡୁନଥିଲା ।

ସେଦିନ ମୋ ପ୍ରିୟ ଶିଳ୍ପୀଙ୍କୁ ଦୀର୍ଘ ସମୟଧରି ନିବିଡ଼ ଭାବେ ପାଇଲି । ଭାଗ୍ୟର ବିଷୟ ଯେ, ଆଉ ଦ୍ଵିତୀୟ ଜଣେ କେହି ଆମ କଥୋପକଥନରେ ଆସି ବାଧାସୃଷ୍ଟି କରିନଥିଲେ ।

ତାଙ୍କ 'ଅମୃତସନ୍ତାନ', 'ମାଟିମଟାଳ', 'ପରଜା', 'ଲୟବିଲୟ', 'ରାହୁରଛାୟା', 'ହରିଜନ', 'ଦାଦିବୁଢ଼ା', 'ମନଗହୀରର ଚ଼ାଷ' ଆଦି ସେତେବେଳକୁ ଗୋପୀନାଥ ମହାନ୍ତିଙ୍କ ସବୁ ଉପନ୍ୟାସ ପ୍ରାୟ ମୁଁ ପଢ଼ି ସାରିଥିଲି ।

ମଣିଷ ଜୀବନର ହର୍ଷ ବିଷାଦ, ବ୍ୟଥା ବେପଥୁ ହଜାରେ ଦୁର୍ଭାଗ୍ୟ ସତ୍ତ୍ୱେ ତା ଜୀବନର ଅନ୍ତସ୍ଥଳରେ ଥିବା ସର୍ବୋତ୍ତମ ଉଲ୍ଲାସକୁ ସେ କାଳ କାଳକୁ ଯେମିତି ଜୀବନ୍ତ କରି ଆଙ୍କି ଦେଇଛନ୍ତି ।

ତାଙ୍କ ପରି ଭାବପ୍ରବଣତା ପ୍ରକୃତି ସହିତ ଏକାତ୍ମ ହୋଇଥିବା ଶିଳ୍ପୀଟିଏ ଓଡ଼ିଶାରେ ଆଉ କିଏ ଅଛି ?

ପ୍ରକୃତି ସହିତ ଏକାତ୍ମ ହେବାପାଇଁ ତାଙ୍କର ବିହ୍ୱଳ ତନ୍ମୟତାର ଗୁଣ ଯୋଗୁଁ ତାଙ୍କ ଗଦ୍ୟ ରଚ଼ନା ନୋବେଲ ପୁରସ୍କାର ବିଜେତା ବିଶ୍ୱ ବିଖ୍ୟାତ ସୋଲଝେନତସିଙ୍କ ଗଦ୍ୟ ପରି ଶୁଦ୍ଧ କବିତାର ଗୁଣ ଗ୍ରହଣ କରିଛି ।

ସେ ବର୍ଷ ଶୀତଋତୁର ସେ କେତେ ଘଣ୍ଟା ମୋର ପ୍ରିୟ ସାରସ୍ୱତ ପୁରୁଷଙ୍କ ସହିତ କଟାଇଥିବାରୁ ମୋ ଆୟୁଷରୁ ସେ ସମୟକୁ ମୁଁ ଏକାନ୍ତ ସଫଳ ଅମୃତ ଲଗ୍ନ ବୋଲି ଜ୍ଞାନ କରୁଥିଲି ।

ଜଣେ ଜିଜ୍ଞାସୁ ସାହିତ୍ୟଛାତ୍ର ଭାବେ ମୁଁ କେବଳ ସେତେବେଳେ ଭାବୁଥିଲି ସେ ଏପରି ପଲ୍ଲବିତ କରି ଲେଖନ୍ତି କିପରି ଯାହା ଏତେ ଜୀବନମୟ କଥାଗୁଡ଼ିକୁ ଆଶ୍ଚର୍ଯ୍ୟଜନକ ଭାବେ କବିତା ମୟ କରିଦିଏ ।

ସେଦିନ ବିଳମ୍ବିତ ଶୀତରାତିରେ ମୋ ପ୍ରିୟ ଲେଖକଙ୍କୁ ପ୍ରଣାମ କଲି ଆଉ ଏକା ଏକା ଭୁବନେଶ୍ୱରର ଅନ୍ୟ ଏକ ପ୍ରାନ୍ତକୁ ଚାଲି ଚାଲି ଆସିଲି, ଯାହା ଏତେବର୍ଷ ପରେବି ମୋ ଜୀବନରେ ଏକ ଅବିସ୍ମରଣୀୟ ସ୍ମୃତି କଥା ହୋଇ ରହିଛି ।

ସେହି ବିରଳ ଘଟଣାଟି ମୋର ଅନେକ ସମୟରେ ମନେପଡ଼େ ଆଉ ଅନେକ ସମୟରେ ମୁଁ ବି ସେ କଥା ମୋ ବନ୍ଧୁମାନଙ୍କ ଆଗରେ ଉଲ୍ଲେଖ କରିଛି । ସୁଦୂର ଆମେରିକାରେ ଗୋପୀନାଥ ମହାନ୍ତିଙ୍କ ମୃତ୍ୟୁ ହୋଇଯିବା କଥା ଯେମିତି ଆକାଶବାଣୀରେ ପ୍ରଚାରିତ ହେଲା ସେଦିନ ଓଡ଼ିଶାର ବଣଭୂମି ହଠାତ୍ ଶ୍ରୀହୀନ ହୋଇଗଲା ଭଳି ଲାଗିଥିଲା ।

ପାହାଡ଼ ମୂଳରେ ସେ ପଥୁରିଆ ସମୟକୁ ସେ ହିଁ ଶ୍ରୀମନ୍ତ କରି ଯାଇଥିଲେ ଯେମିତି । ବଣ ପାହାଡ଼ର ଖାଁ ଖାଁ ନୀରବତାକୁ ସେ ମଧୁର କବିତା କରି ଦେଇ ଯାଇଥିଲେ । ଅର୍ଥ ପୂର୍ଣ୍ଣ କରି ଦେଇ ଯାଇଥିଲେ ସେହି ନିଃସ୍ୱ ମଣିଷ ମାନଙ୍କର ଜୀବନ ବଞ୍ଚିବାକୁ ।

ଓଡ଼ିଶାର ଚମ୍ପା ଝରଣା, ଅଗନା ଅଗନି ବନସ୍ତ, ନିବିଡ଼ ବନସ୍ପତି, ପାହାଡ଼ ମୂଳ ଗାଁ ସବୁକାହିଁ କେତେ ଦୂରରେ ରହିଗଲା । କାହିଁ କେତେ ଦୂରରେ ରହିଗଲା ତାଙ୍କ ପ୍ରିୟ କୋରାପୁଟର ମାଲକାନଗିରି, ବଉଦ କନ୍ଧମାଳ ।

ତାଙ୍କ ମର ଦେହକୁ ସତ୍କାର କରିବା ପୂର୍ବରୁ ହୁଏତ ଥରେ ଓଡ଼ିଶାର ବଣ ପାହାଡ଼ ଉପରେ ବୁଲେଇ ଆଣି ହୋଇ ପାରିଥାଆନ୍ତା ।

ଏକାନ୍ତ ପ୍ରକୃତିପ୍ରାଣ ତାଙ୍କ ଆତ୍ମା ହୁଏତ ଶାନ୍ତି ଲାଭ କରି ଥାଆନ୍ତା ।

ହୁଏତ ତାଙ୍କ ମର ଶରୀରକୁ ଓଡ଼ିଶାର କେଉଁ ଚମ୍ପା ଝରଣା କୂଳରେ ଅବା ଦୂରପ୍ରାନ୍ତୀୟ କେଉଁ ମଣିଆପାୟୁ ଅବା ଶିରସୁପଦଗାଁରେ ମାଟିରେ ମିଶାଇ ଦିଆଯାଇଥାନ୍ତା ।

କାଳକାଳକୁ ଜଣେ ଶିଳ୍ପୀକୁ ହୁଏତ ତା ଜାତିର ଭଲ ପାଇବା ବିଷୟ ଏକାନ୍ତ ଅବିସ୍ମରଣୀୟ ହୋଇ ରହିଯାଇଥାନ୍ତା ।

ନିରବଧି-କାଳଗର୍ଭରେ ଯେଉଁଠି କିଛି ବଦଳେ ନାହିଁ; ଅଥଚ କାଳକାଳ ଧରି ମଣିଷର ଜୈତ୍ରଯାତ୍ରା ଅବ୍ୟାହତ ହୋଇ ରହିଛି ସେଇଠି କେତେ ଗୁମାନରେ ଅଳସୀ ଫୁଟିଛି । ମାଇଲ ମାଇଲ ଧରି ମକା ମାଣ୍ଡିଆର କ୍ଷେତ । ବଣପକ୍ଷୀର ଗୀତ, ନିରବଧି ବହୁଥିବା କୁଳୁ କୁଳୁ ଝରଣା ।

ତାଙ୍କ ଜୀବନଦୀପ ଲିଭିବା ପୂର୍ବରୁ ହୁଏତ ଏ ଛବିଳ ଉତ୍କଳକୁ ସେ ଆଖି ପୂରାଇ ଥରେ ଦେଖି ଯାଇଥାଆନ୍ତେ । ଆନନ୍ଦ ବିଭୋର ତାଙ୍କ ମନର ମଣିଷ ମାନଙ୍କ ସହିତ ଥରେ ମିଶି ଯାଇଥାନ୍ତେ ।

ଆମ ସମସ୍ତଙ୍କ ପ୍ରବଳ ଇଚ୍ଛାଶକ୍ତିର ଅଭାବ ହେଲା । ପ୍ରିୟ ଜନ୍ମମାଟି ସହିତ ତାଙ୍କ ଇପ୍‌ସିତ ମିଳନର ଗରିମାମୟ ଅନୁଷ୍ଠାନ ହୁଏତ ଆଉ ସମ୍ଭବ ହେଲା ନାହିଁ ।

ଆଉ କିଏ ସେ ତା'ର ଭରଣା କରିବ ?

ସେ ମାଳଞ୍ଚ ପୃଥିବୀର ଅପରିବର୍ତ୍ତନୀୟ ପୃଥିବୀକୁ ଶବ୍ଦରେ ବର୍ଣ୍ଣନା କରିବ ? ଯାହା ଯେଉଁଠି କିଛି ବଦଳୁନଥିଲା ଗୋପୀନାଥ ମହାନ୍ତି ପ୍ରକୃତରେ ତା'ର ଚିତ୍ରକର ଥିଲେ ।

ତାଙ୍କର ସେ ଚାରୁଚିତ୍ରରେ ଫୁଟି ଉଠିଥିଲା ଏକାନ୍ତ ଅପରିବର୍ତ୍ତନୀୟ ପାହାଡ଼ ମୂଳର ସେ ପଥୁରିଆ ସମୟ, ସଞ୍ଜ ସକାଳ, ଜହ୍ନରାତି, ବଣଭୂମିର ମହୁଲିଆ ବାସ୍ନା, ବଘେଇ ପାଗ ଆଉ ଆନନ୍ଦ ବିଭୋର ସେ ନିଦରବି ପାହାଡ଼ ମୂଳ ମଣିଷମାନଙ୍କ ବଞ୍ଚିବାର ଜୈତ୍ର ଯାତ୍ରା ।

ପାହାଡ଼ ମୂଳକର ଜୀବନ ବଞ୍ଚିବା ସହିତ ଏକାତ୍ମ ହୋଇଯିବାର ବିଲୋଳ ଅନୁଭବ ତାଙ୍କ ବର୍ଣ୍ଣନାକୁ ସୁନ୍ଦର କବିତା କରି ଦେଇଥିଲା । ଗୋଟେ ଆନନ୍ଦମୁଖର ଜୀବନର ଛନ୍ଦ ହିଁ

ଶାଶ୍ୱତକାଳର କବିତା । ପରଜା, କନ୍ଧ ଜୀବନ ଭିତରେ ଗୋପୀନାଥ ଆନନ୍ଦର ହିଲ୍ଲୋଳ ଦେଖିଛନ୍ତି । ଆନନ୍ଦର ମଧୁରିମାକୁ ସେ ନାନା ଭାବରେ ଲକ୍ଷ୍ୟ କରିଛନ୍ତି । ଏହି ତଦ୍‌ଗତ ହୋଇଯିବାର ମନସ୍ତାତ୍ତ୍ୱିକ ପାରଦର୍ଶିତା ଆଉ କେତେଜଣଙ୍କର ଅଛି ?

କେତେଜଣଙ୍କର ଅଛି ରେଖାକୁ ଶବ୍ଦ କରିଦେବାତ ଶବ୍ଦକୁ ପୁଣି ରେଖା କରି ଦେବା ?

ମହାବଳୀ ପର୍ବତକୁ ଆପଣା ଜୀବନ ପରିଧିରେ ଉପଲବ୍ଧ କରିବା, ତେର୍ଚ୍ଛା ତେର୍ଚ୍ଛା ବର୍ଷାରେ ପାହାଡ଼ମୂଳ କେମିତି ସେଠି ହାଉଳି ଖାଏ । ରାଉ ରାଉ ତୋଫାନ କେମିତି ଝଡ଼ରାତି ମାନଙ୍କୁ ରହସ୍ୟମୟୀ କରି ପକାଏ ପ୍ରେମର ଟିକେ ଆଘାତରେ ଆଖିର କେରା କେରା ଲୁହ କିପରି ସେ ଆନନ୍ଦ ବିଭୋର ମଣିଷର ଆତ୍ମାକୁ ଶୋକ ଜର୍ଜ୍ଜରିତ କରିଦିଏ । ତା'ର ବହୁ ସ୍ୱାକ୍ଷର ଓ ସନ୍ତକ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସରେ ଭରିଯାଇଛି । ଆଉ କିନ୍ତୁ ଆଟୋପ ବାପରିଚୟ ମଣିଷର ଆତ୍ମାକୁ ବନ୍ଧନ ମୁକ୍ତ କରିପାରେ ନାହିଁ । ମଣିଷକୁ ଟିକିଏ ଆନନ୍ଦ ବି ଦେଇପାରେ ନାହିଁ । ଯାହା ଆନନ୍ଦର ଉତ୍ସ ନୁହେଁ ଜୀବନ୍ ପାଇଁ ତାର ଅର୍ଥ କ'ଣ ?

ଆନନ୍ଦ ବିଭୋର ହୋଇ ଜୀବନ ବଞ୍ଚିବାପାଇଁ ଆମେ ସଭିଏଁ ବ୍ରହ୍ମାଣ୍ଡକୁ ଆସିଛୁଁ । ଏଠି ପ୍ରତିପତ୍ତି, କ୍ଷମତା ଜାତି ସବୁ ଅଳିକ ଅସାର କଥା ।

ଏଥିରେ ମଣିଷର ପେଟପୂରେ ନାହିଁକି ମନପୂରେ ନାହିଁ । ମହୁ ହେଉକି ମହୁଲଆ ମଦଟିକେ ହେଉ ସେଥିରେ ବଣ ଭୂମିର ମଣିଷ ବଣଭୂମିରେ ମାଦକଭରା ଜୀବନ ବଞ୍ଚେ ତାହାହିଁ କାମ୍ୟ । ଏହି ଉପଲବ୍‌ଧି ପ୍ରତି ଗୋପୀନାଥ ମହାନ୍ତିଙ୍କର କଲମ ଏତେଯେ ସତ୍ୟଶୀଳ ତା'ର ପ୍ରକୃତରେ ପଟ୍ଟାନ୍ତର ନାହିଁ ।

ହଜାରେ ବଞ୍ଚନା ସତ୍ତ୍ୱେ ଜୀବନ ସୁନ୍ଦର ଏହି ଉପଲବ୍‌ଧିଟି ଯେପରି ପ୍ରତିଟି ଆଦିବାସୀ କପାଳରେ ଲେଖାଯାଇଛି । ଗୋପୀନାଥ ତାହାକୁ ହିଁ ଚିହ୍ନଟ କରିଛନ୍ତି । ଯେ ଦିନସାରା ସବୁକରେ; ଅଥଚ ଆପଣାର ପ୍ରାଣକୁ ଟିକେ ଆନନ୍ଦରେ ବୁଡ଼େଇ ଦେଇପାରେ ନାହିଁ, ସେ କେବେ ଜୀବନବାଦୀ ନୁହେଁ । ସେ ଜୀବନ ସହିତ ବରଂ ଦ୍ରୋହ କରେ ।

ଆନନ୍ଦ ହେଉଛି ମୂଳ; ଆନନ୍ଦ ହେଉଛି ଜୀବନର ମୂଳ ଖସଡ଼ା । ଗୋପୀନାଥ ମହାନ୍ତି ସେଇ ଆନନ୍ଦର ପ୍ରସ୍ରବଣକୁ ହିଁ ମଜ୍‌ଗୁଲ୍ ହୋଇ ଲେଖିଛନ୍ତି ଯା । ଆଉ ସବୁ ଉପଲକ୍ଷ୍ୟ କିଏ କାହାକୁ ପାଇଲା ହଜାଇଲା କେଉଁଠି କିଏ ହାରିଲା ବା ଜିତିଲା ଏସବୁ ଗୌଣ ।

ଗୋପୀନାଥ ଗୋଟିଏ ଦର୍ଶନକୁ ହିଁ ଛିଡ଼ା କରେଇଛନ୍ତି । ତାହା ହେଉଛି ଜୀବନର ଆନନ୍ଦ । ସିଝା ବଣ କନ୍ଦାରେ ଯେ ତା'ର ଅନ୍ନ ସଂସ୍ଥାପନ କରେ ଆଉ କିଛି ଅଧିକ ଲୋଡ଼େ ନାହିଁ । ଅଥଚ୍ ଜହ୍ନରାତିରେ ବଂଶୀ ବଜାଏ । ମନର ମିତଣୀ ପାଇଁ ସେଇଠିତ ଆନନ୍ଦର ଫୁଆରା ।

ଜୀବନରେ ପ୍ରେମ ବଢ଼ିଲେ ଆନନ୍ଦ ବଢ଼େ । ପ୍ରେମର ଅନ୍ୟ କୌଣସି ବିକଳ୍ପ ନାହିଁ । ପ୍ରେମରେ ଦୁଃଖ ବେଶୀ, ଯନ୍ତ୍ରଣା ବି କମ୍ ନୁହେଁ । ଅପ୍ରାପ୍ତିର ଜ୍ୱାଳାବି ସେଇଠି; ଅଥଚ ଆନନ୍ଦର ବଡ଼ ଉତ୍ସ ହେଉଛି ପ୍ରେମ ।

ଆଦିବାସୀର ଜୀବନ ବଞ୍ଚିବାରେ ପ୍ରେମ ଏକ ବଡ଼ ଦିଗ; ଯେ ତାକୁ ପ୍ରମତ୍ତ କରି ରଖେ ତା'ର ବିଭୋର ପଣିଆର ମୂଳ ଉତ୍ସ ହେଉଛି ପ୍ରେମ ତା'ର ଜୀବନର ବଡ଼ ଉପାଦାନ ହେଉଛି ବି ପ୍ରେମ ।

ଏହା ହେଉଛି ଗୋଟିଏ ବଡ଼ ଜୀବନ ଦର୍ଶନ । ଏହି ଦର୍ଶନଟି ଗୋପୀନାଥ ମହାନ୍ତିଙ୍କ ପଲ୍ଲବିତ ଶୈଳୀ ମଧରେ ମାର୍ମିକ ଅଭିବ୍ୟକ୍ତି ଲାଭ କରିଛି ।

ଯେଉଁ ଶିଳ୍ପୀ ଜୀବନର ଆନନ୍ଦର ଉତ୍ସ ଖୋଜେ ନାହିଁ ସେ ଅସମର୍ଥ ଶିଳ୍ପୀ ନିଶ୍ଚୟ ।

ଯେଉଁ ଆକାଶ ଅନନ୍ତ କୋଟି ବର୍ଷ ପାଇଁ ନିରନ୍ତର ମଣିଷ ଉପରେ ସାମିଆନା ହୋଇଛି ନିରବଧି କାଳ ସ୍ରୋତ ବହି ଯାଉଛି ଯେଉଁଠି ପୃଥିବୀ ସେମିତି ପଡ଼ିରହିଛି ଯୁଗ ଯୁଗ ଧରି ତା'ରି ଭିତରେ ମଣିଷର ଯାବତୀୟ ଲୀଳା ଖେଳା ତାକୁ ତ ଗୋପୀନାଥ ମହାନ୍ତି ବେଶୀମନ ଦେଇ ଲେଖିଛନ୍ତି । ଜୀବନର ଲୀଳା ତ ଆମ ସାହିତ୍ୟର ସବୁଠାରୁ ବଡ଼ ବିଷୟପିଣ୍ଡ । ଜୀବନର ଲୀଳା ଯେତିକି ସରଳ ଲାଗେ ସେତିକି ବେଳେ ଅବୋଧ ଓ ରସମୟ ଲାଗେ ।

ମଣିଷ ତା'ର ସୁଖ ଦୁଃଖ ଭୋଗିବାର ଅନାଗତ ଲଗ୍ନ ସବୁକୁ ଜାଣିପାରେନା । ସେ ନାଇକକୁ ଡାକେ, ବେଜୁଣୀକୁ ଡାକେ, ଶୁଭ ଯୋଗ ଓ ଲଗ୍ନର ଠିକଣା କରେ । ସେଠି ବଣର ମଣିଷ ମନ୍ତ୍ର ପଢ଼େ ତା ଭାଷାରେ କାହାରି ପାଇଁ ଦୁର୍ଦ୍ଦିନ ନ ଆସୁ କାହାକୁ ମାଳଜର ନ ହେଉ, କିଏ ବାଘ ହାବୁଡ଼ରେ ନ ପଡୁ, ଭଲ ଫସଲ ହେଉ, ଭଲ ବର୍ଷାହେଉ । ମଣିଷ ଶୁଭ, ପ୍ରେମ ଖୋଜେ, ପ୍ରେମ ଲୋଡ଼େ ଏ ଅନନ୍ତ କାଳରଲୀଳା ଏହି ଅସରନ୍ତି ଲୀଳାର ଅନ୍ୟତମ ସଫଳ ଚିତ୍ରକର ହେଉଛନ୍ତି ଆମର ଗୋପୀନାଥ ମହାନ୍ତି; ଯେ ସୁବର୍ଣ୍ଣପୁରରେ ସୁମଧୁର ଶୈଶବ କଟାଇଥିଲେ ଏବଂ ଆମେରିକାରେ ଜୀବନ ବିସର୍ଜ୍ଜି ଦେଲେ ।

ତାଙ୍କ ଶୁକ୍ରୁଜାନି ସୂର୍ଯ୍ୟାସ୍ତର ବର୍ଣ୍ଣବିଭାକୁ ଦେଖି ବିସ୍ମୟରେ ପଚାରିଛି : 'କେଉଁ ଯାଦୁକର 'ତୁମା' ଏସବୁ ଗଢ଼ିଛି— ଆକାଶ ଆଉ ଜଙ୍ଗଲ । ସଞ୍ଜ ଆଉ ରାତି । କେଉଁ ତୁମା ଆଣିଦିଏ ସୌଭାଗ୍ୟ ଆଉ ଆନନ୍ଦ । କିଏ ଆଣିଦିଏ ଝଡ଼ି ତୋଫାନ, ଦୁଃଖ ଦୁର୍ଦ୍ଦଶା, କିଏ ?

ଯେମିତି ବିଭୋର ହେବା ସେମିତି ବିସ୍ମିତ ହେବା । ଏ ଜଗତ ମହାବିସ୍ମୟର । ଜଣେ ନିଷ୍କପଟ ମଣିଷ ଆଗରେ ଏ ଜଗତ ସେହି ମହାବିସ୍ମୟର ଗୋଲକ ।

ଗୋପୀନାଥ ଆମକୁ ଚିରନ୍ତନତା ସହିତ ଭେଟ କରାଇଛନ୍ତି । ଆମେ ତଦ୍‌ଗତ ହେଲେ ନିଜକୁ ବୁଝି ପାରିବା । ଜଗତର ଲୀଳାକୁ ବୁଝିପାରିବା । ମହାକାଳର ରହସ୍ୟକୁ ଭେଦି ପାରିବା ।

ଗୋପୀନାଥ ମହାନ୍ତି ବଣ ପାହାଡ଼, ଆକାଶ ପୃଥିବୀ ପ୍ରେମ, ଜୀବନ, କାରୁଣ୍ୟ ଶୃଙ୍ଗାର ସବୁକୁ ଲେଖିଛନ୍ତି । ସବୁରି ଭିତରେ ସେହି ବିସ୍ମୟ ସେହି ରହସ୍ୟର ଅବତାରଣା କରିଛନ୍ତି ।

ଆତ୍ମାର ମୁକ୍ତିପାଇଁ ମହାଜାଗତିକ ରହସ୍ୟକୁ ଗୋପୀନାଥ ଆମ ଆଗରେ ଆରୋପଣ କରିଛନ୍ତି । ବଡ଼ଶିଳ୍ପୀ ଜଣେ ପରିଶେଷରେ ସେହି ଶୀର୍ଷକୁ ଯାଏ । ସମତଳରେ କେବଳ ପଡ଼ି ରହେ ତା'ର ନିତିଦିନର ମାମୁଲି ଜୀବନ ବଞ୍ଚିବା ।

କେଉଁ ସିନେମାହଲ ଗଳିର ତରଳ ପ୍ରେମକୁ ନୁହେଁ ସମୁଦ୍ରକୁ, ବର୍ତ୍ତୁଳ ଆକାଶକୁ, ଜନ୍ମ ମୃତ୍ୟୁର ଲୀଳାକୁ ଗୋପୀନାଥ ମହାନ୍ତି କେତେଭାବରେ ଆଙ୍କିଛନ୍ତି ।

ସେ ମୋର ଅତି ପ୍ରିୟ ଶିଳ୍ପୀ ଏଇଥିପାଇଁ ଯେ, ସେ ମଣିଷ ଜୀବନର ତା ଜୀବନର ତା ଜୀବନପ୍ରିୟତାକୁ ତା'ର ଐଶ୍ୱର୍ଯ୍ୟ ବୋଲି ଜ୍ଞାନ କରିଛନ୍ତି । ମଣିଷ ଓ ପ୍ରକୃତିକୁ ଭଲ ପାଇଛନ୍ତି । ମଣିଷକୁ ପ୍ରକୃତିର ଆଧାର କିରିଛନ୍ତି । ସେଇ ଲଙ୍ଗଳା କଉପୁନୀପିନ୍ଧା ମଣିଷମାନଙ୍କୁ ସେ ହୃଦୟ ଦେଇ ଭଲପାଇ ବସିଛନ୍ତି ।

ଶୂନଶାନ ବଣଭୂମି, ନୀରବତା, ବ୍ୟାପ୍ତି ଓ ସମୟହୀନତାର ଦର୍ଶନକୁ ସେ ଚମତ୍କାର ରୂପକରେ ଲେଖିଛନ୍ତି । ତାଙ୍କ ଲେଖାର ସ୍ଥାନ କାଳ ପାତ୍ର ନୁହେଁ ତାଙ୍କ ଭାଷା ବି ରୂପକାତ୍ମକ ହୋଇ ଯାଇଛି ।

ସତ୍ୟାନୁସନ୍ଧାନ ହେଉଛି ତାଙ୍କ ରଚ଼ନା କର୍ମର ମୂଳ ଉଦ୍ଦେଶ୍ୟ । ତାଙ୍କ ରଚ଼ନାରେ ପ୍ରଚୁର କବିତାର ପ୍ରଭାବ । ସବୁ କିଛି ଉର୍ଦ୍ଧ୍ୱରେ ଅନୁଭବ ହେଉଛି ତାଙ୍କ ରଚନାର ବଡ଼ ଚମତ୍କାରିତା ।

ଚ଼ରମ ଦୁଃଖ ଓ ନୈରାଶ୍ୟ ସତ୍ତ୍ୱେ ଜୀବନ ଆନନ୍ଦର— ତାହାହିଁ ତାଙ୍କ ଶିଳ୍ପୀ ଜୀବନର ବଡ଼ ଉପଲବ୍ଧି । ତାଙ୍କ ଜୀବନପ୍ରିୟତାର ଦର୍ଶନ ସମସ୍ତଙ୍କୁ ପ୍ରବୋଧିତ କରି ପାରିଲେ ଆମେ ତାଙ୍କୁ ଆମ ହୃଦୟରେ ବଞ୍ଚାଇ ରଖି ପାରିବା ।



# ଉଜ୍ଜାଗ୍ରତ କବିଚିତ୍ତ

ଗୋଟିଏ ଦୃଷ୍ଟିରୁ ଦେଖିଲେ ସାହତ୍ୟର ନୂଆ ପୁରୁଣା ବୋଲି ପ୍ରକୃତରେ କିଛି ନଥାଏ । ପୁଣି ଗଦ୍ୟ ପଦ୍ୟର ପାର୍ଥକ୍ୟ ବି ଆମେ ଭୁଲିଯାଉଁ । ଗଦ୍ୟ ପଦ୍ୟ, ନୂଆ ପୁରୁଣା ଗଳ୍ପ, କବିତା ନିର୍ବିଶେଷରେ ଅତି ଚ଼ରମ ଭାବେ ସାହିତ୍ୟରେ ଆମେ ଆମକୁ ହିଁ ଖୋଜୁ । ଆମ ଜୀବନାନୁଭୂତି ଆଉ ତା'ର ପ୍ରାଣବାନ ଗତିଧାରା ସାହିତ୍ୟରେ କେତେ ବର୍ଣ୍ଣାଢ଼୍ୟ ଭାବରେ ବିନ୍ୟସ୍ତ ହୋଇଛି ତାକୁ ସବିଶେଷ ଭାବେ ଚ଼ିହ୍ନଟ କରିବା ଅପେକ୍ଷାରେ ରହୁ ।

ପୃଥିବୀର ସବୁଠାରୁ ଅତୀନ୍ଦ୍ରିୟ ଚେତନା ଆଧାରିତ ସାହିତ୍ୟରେ ବି ଜାଗତିକ ବାସ୍ତବତା ସବୁ ତଥାପି ପ୍ରତୀକିତ ହୋଇଥାଏ । ଓଡ଼ିଶାର ବିଶିଷ୍ଟ ରୋମାଣ୍ଟିକ କବି ମାୟାଧର ମାନସିଂହଙ୍କ କବିତାରେ ଯେତେ ପ୍ରେମ ପ୍ରଣୟର ଚ଼ିତ୍ର ଅଙ୍କିତ ହୋଇଥିଲେ ହେଁ ସେଥିରେ ତାଙ୍କର ଜୀବନ ପ୍ରତି ଏକ ସ୍ୱଚ୍ଛ ଦୃଷ୍ଟି ପ୍ରତିଫଳିତ ହୋଇଛି । ଜୀବନର ସ୍ୱପ୍ନ ହେଉ ବା ପ୍ରେମ ହେଉ, ଜୀବନର ବଞ୍ଚିରହିବା ହେଉ ବା ତଦ୍‌ଜନିତ ବ୍ୟଥା ବେଦନା ହେଉ ସବୁଥିରେ ସେହି ମଣିଷର କଥା ହିଁ କୁହାଯାଇଛି ।

ବିପୁଳ ପ୍ରଣୟର ଚିତ୍ର ଆଙ୍କିଥିବା ମାନସିଂହଙ୍କ କବିତା ଆଦୌ ଜୀବନ ବିମୁଖ ନୁହେଁ । ଜୀବନ ରୁକ୍ଷ ନହୋଇ କୋମଳ ହେଉ—ଏହାହିଁ ତାଙ୍କ ସ୍ୱପ୍ନ ସ୍ୱନିଷ୍ଠ ଅନୁଭବ; ଯାହା ତାଙ୍କ ବିପୁଳ ପ୍ରେମ କବିତାରେ ଉଦ୍ଭାସିତ ହୋଇଛି ।

ଈର୍ଷା ଓ ହତାଶା ଭିତରେ ବଞ୍ଚିଥିବା ମଣିଷମାନଙ୍କୁ କବି ଗଭୀର ପ୍ରତ୍ୟୟର ସହିତ ପ୍ରେମ ହେଉଛି ପରମ ବୋଲି ଶୁଣାଇଛନ୍ତି । ପ୍ରେମ ହେଉଛି ଜୀବନର ଅଭିଜାତ ଓ ସ୍ୱର୍ଗୀୟ ବିଷୟ; ଯାହା ମଣିଷ ଜୀବନକୁ କ୍ରମଶଃ ଏକ ଉତ୍ତୀର୍ଣ୍ଣ ଅନୁଭବ ଆଡ଼କୁ ନେଇଯାଏ ।

ନାରୀ ହେଉଛି ମାନସିଂହଙ୍କ ସାହିତ୍ୟର ଆଉ ଏକ ସ୍ୱର୍ଗୀୟ ବିଷୟ; ଯାହା ଓ ବ୍ରହ୍ମାଣ୍ଡକୁ ସୁନ୍ଦରରୁ ସୁନ୍ଦରତର କରିଛି । ମାନସିଂହ ଯେପରି କିରକେଗାର୍ଡ଼ଙ୍କ ପରି ମନେ କରିଛନ୍ତି ଯେ ନାରୀ ପ୍ରେମ ମଣିଷକୁ କବି କରିଦିଏ । କବିତ ତା ସ୍ପର୍ଦ୍ଧା ଓ ସ୍ୱାଭିମାନରେ ବୀର ପୁରୁଷ । ପ୍ରାଣରେ ଶ୍ରଦ୍ଧା, ପ୍ରେମ ତଦ୍‌ଜନିତ କୋମଳତା ତଥା ନିର୍ଭୀକତାକୁ ସେ ସମଭାବରେ ଉପଲବ୍ଧି କରିଛନ୍ତି ।

ନାରୀ ପ୍ରେମ ମହାନ । ତାହା ଜଣକୁ ମର୍ତ୍ତ୍ୟରୁ ଅମରାବତୀ ଆଡ଼କୁ ନେଇଯିବ ଓ ଶେଷରେ ମୃତ୍ୟୁଞ୍ଜୟୀ କରିଦେବ । ପ୍ରେମ ଓ ପ୍ରଣୟ ବିଷୟରେ ମାନସିଂହ ବଡ଼ ଶୁଭଗମନ୍ୟ ଥିଲେ । ପ୍ରେମରେ ପଡ଼ି ମାନସିଂହ ଯଥାର୍ଥରେ ନିଜକୁ ନାଗର ପରି ମନେ କରିଛନ୍ତି । ନାଗରର ରସିକତା ହେଉଛି ଏ ସଂସାରର ପ୍ରକୃତ ସୃଜନଶୀଳତା । ଏହାଦ୍ୱାରା ଅନ୍ତର ଦୀପ୍ତ ହୁଏ । ମନ ଓ ଆତ୍ମା ସିକ୍ତ ହୋଇଯାଏ । ମାନସିଂହଙ୍କ କବିତାସବୁ ଏହି ସମସ୍ତ ଉପଲବ୍ଧିର ଏକ ଏକ କଳାତ୍ମକ ପ୍ରତିପାଦନ ।

ସ୍ୱାର୍ଥପର ତଥା ସଙ୍କୁଚିତ ବ୍ୟକ୍ତି କେବେ ଅସଲ ସୃଜନଶୀଳ ଆବେଗର ଅଧିକାରୀ ହୋଇ ପାରେନା । ଜୀବନରେ ରସିକତା କରି ପାରେନା । ରସିକତା ହେଉଛି ଉତ୍ସର୍ଗ ବୋଧର ଆଉ ଏକ ପାର୍ଶ୍ୱ । ପ୍ରେମ ହେଉଛି ଏକ ନିଃସ୍ୱାର୍ଥ ତପସ୍ୟା । ଜୀବନର ସାର ଶାଶ୍ୱତକୁ ଭେଟିବାର ଏକ ମାର୍ଗ । ଏକ ବୌଦ୍ଧିକ ଜୀବନ ଲାଭର ବିକଳ୍ପ ହୀନ ଅବଲମ୍ବନ । ଶୃଙ୍ଗାର ହେଉଛି ମନୁଷ୍ୟର ସର୍ବୋତ୍ତମ ରସଚେ଼ତନା ଓ ସୌନ୍ଦର୍ଯ୍ୟବୋଧର ନିଦର୍ଶନ । ରାଜା ହେଉ ବା ପ୍ରଜା ହେଉ ଜୀବନକୁ ଏକାନ୍ତ ପରିବୋଧନୀୟ ବିରଳ ଅନୁଭବ ଆଣି ଦେବା ପାଇଁ ଶୃଙ୍ଗାରର ପରିଚ଼ର୍ଯ୍ୟା ଏକାନ୍ତ ଆବଶ୍ୟକ । ମାତ୍ର ଏ ସଂସାରରେ ଇତରମାନେ ପଶୁମାନଙ୍କ ପରି । ଶୃଙ୍ଗାର ଆଦୌ ଜାଣନ୍ତି ନାହିଁ । ଯେ ସୁନ୍ଦରର ଆରାଧନା କରିପାରେ ନାହିଁ ସେ ଶୃଙ୍ଗାର କାହୁଁ ଜାଣିବ ? ମଣିଷ ଜୀବନକୁ ଆହୁରି ସମୁନ୍ନତ ଅବସ୍ଥାରେ ଦେଖିବା ପାଇଁ ସେ ସତତ୍ ସ୍ୱପ୍ନ ଦେଖିଛନ୍ତି । ହୃଦୟ ଦେଇ ଦେଶ ଦଶ କଥା ଭାବିଛନ୍ତି । ସେ ନିଜେ ଲେଖିଛନ୍ତି, 'ଜୀବନର ଯାହା ସୁନ୍ଦର, ଯାହା ସତ୍ୟ ମୁଁ କେବଳ ତାହାର ଉପାସକ ଓ ଭକ୍ତ ।' (ଡଗର-୧୪ଶ ବର୍ଷ-୧ମ ସଂଖ୍ୟା) ।

ସ୍ୱାଭିମାନୀ, ନିର୍ଭୀକ ଲୋକଟିଏ କେବଳ ପ୍ରେମର ଉପାସନା କରିପାରେ ଓ ପ୍ରେମକବିତା ଲେଖିପାରେ । ମାନସିଂହଙ୍କ ମତରେ ପ୍ରେମ ଏକ ଅସ୍ୱର୍ଗୀୟ ଅମହତ ବିଷୟ ନୁହେଁ । ମାନସିଂହ ସେମାନଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି– 'ମୂର୍ଖ ଜନତା କରତା ବିଚ଼ାର/ପ୍ରଣୟକୁ ଦିଅ ତା'ର ଅଧିକାର/ନକହ ପୁରୁଣା ପୋଥି ଏଥେ କିବା କହିଲା/ମୋ ନୟନେ ସେତ ପରମ ପୂଜ୍ୟା ମହିଳା' ।

ମାନସିଂହ ପ୍ରେମ ପ୍ରଣୟ ପରି ଏକାନ୍ତ ଜୀବନ ନିଷ୍ଠ ପ୍ରବଣତା (ଲାଇଫ ଇନ୍‌ଷ୍ଟିଙ୍କଟ)କୁ କଦାପି ଆଦର୍ଶାୟିତ କରିନାହାନ୍ତି; ମାତ୍ର ପ୍ରଣୟ ଚେ଼ତନାର ଏକ ସମୁଚ୍ଚ ଉତ୍ତରଣକୁ ସେ ଚ଼ମତ୍କାର କାବ୍ୟାନୁଭବ ଭିତରେ ପ୍ରଦର୍ଶନ କରିଛନ୍ତି । ପ୍ରଣୟ ଚେ଼ତନା ମଣିଷ ଜୀବନର ଏକ ଶକ୍ତି ଶାଳୀ ଓ ସୃଜନଶୀଳ ଚେତନା । ମାନସିଂହ ଏକ ଇନ୍ଦ୍ରିୟଗ୍ରାହ୍ୟ ପ୍ରଣୟର ଭାଷ୍ୟ ଯେପରି ଲେଖିଛନ୍ତି; ଯେଉଁଥି ପାଇଁ ତାହା ଅଧିକ ଜୀବନ୍ତ ଓ ମର୍ମସ୍ପର୍ଶୀ ହୋଇ ପାରିଛି । ସବୁଜମାନଙ୍କ ପ୍ରଣୟ ଗୀତରେ ସେ ଜୈବିକ ତୃଷା ଓ ଉଷ୍ମତା ସେତିକି ଭାବରେ ହୁଏତ ନଥିଲା ।

ସେ ଇନ୍ଦ୍ରିୟ ଦେଇ ପ୍ରେମକୁ ଅନୁଭବ କରିଛନ୍ତି । ଯେଉଁଥିରେ ଜୀବନର ଗଭୀର ପ୍ରାଣ ପିପାସା ପ୍ରତୀକିତ ହୋଇଛି । ଜଣେ ବିଶିଷ୍ଟ ଇଂରେଜୀ କବି ତେଣୁ କହିଛନ୍ତି– 'Without human Passion everything is unreal.' । ସତରେ ଇନ୍ଦ୍ରିୟାନୁଭୂତି ବାହାରେ ଆଉ ଅନୁଭୂତି କାହିଁ ? ଜୀବନ ବଞ୍ଚିବା ବାହାରେ ଆଉ ଜୀବନ କାହିଁ । ଭାବ ଓ ଅତୀନ୍ଦ୍ରିୟ ବାଦୀ ମାନଙ୍କୁ ଆକ୍ଷେପ କରି ଜଣେ ବାସ୍ତବବାଦୀ କବି କହିଛନ୍ତି– ଯେଉଁ କବିର ଇନ୍ଦ୍ରିୟ ଯେତେ ଶକ୍ତ ସେ କବିର କବିତା ସେତେ ଶକ୍ତିଶାଳୀ । ମାନସିଂହଙ୍କ କବିପ୍ରାଣ ସେ ପାଇଁ ଏତେ ସୃଜନଶୀଳ, ତାଙ୍କ କଳାବୋଧ ସୁନ୍ଦର ଓ ତାଙ୍କ କର୍ତ୍ତା ଏତେ ଶକ୍ତିଶାଳୀ ।

ଏ ଦୃଶ୍ୟମାନ ସୁନ୍ଦର ବ୍ରହ୍ମାଣ୍ଡକୁ ମଣିଷ ଇନ୍ଦ୍ରିୟ ପରାୟଣତା ଭିତରେ ଭୋଗକର୍– ଏହାହିଁ ସତ୍ୟ । ଆଉ ସବୁ ମାୟା ଓ ବୌଦ୍ଧିକ କପଟାଚାର । ମାନସିଂହ ସାହିତ୍ୟର ଏହା ଏକ ଉଦ୍‌ଘୋଷଣା । ବୈଷ୍ଣବଟିଏ ପରି ସେ ଭାବଭୋଳା ଥିଲେ । ଏ ଜଗତକୁ ଅନୁଭବ କରିବା ପାଇଁ ସେ ଭାବକୁ ହିଁ ମାଧ୍ୟମ କରିଛନ୍ତି । ତାଙ୍କ ପାଠକମାନେ ପରମ ଗୋପୀଜନମାନଙ୍କ ପରି ତାଙ୍କ ମନ୍ମୟ ପ୍ରେମ ଜଗତକୁ ହିଁ ଉପଲବ୍ଧି କରିଛନ୍ତି । ପାଠକର ଚିତ୍ତ ମଧ୍ୟ ଉଦ୍‌ବେଳିତ ହେଉଛି ସେହି ଭାବରେ ।

ପ୍ରେମର ପରାଜୟକୁ ମାନସିଂହ ଗ୍ଲାନିର ବିଷୟ ବୋଲି ମନେକରି ନାହାନ୍ତି । କାରଣ ବିରହର ଗୋଟିଏ ଅପୂର୍ବ ସୌନ୍ଦର୍ଯ୍ୟ ଅଛି ବୋଲି ସେ ଉପଲବ୍ଧି କରିଛନ୍ତି । ନାରୀପ୍ରାଣ ମାନସିଂହଙ୍କ କବିଚିତ୍ତ ଆପେକ୍ଷିକ ଭାବେ ପ୍ରକୃତିପ୍ରାଣ ହୋଇଛି ।

ତାଙ୍କର ପ୍ରକୃତି ପ୍ରୀତି ଯଥାର୍ଥରେ ତାଙ୍କ ସୌନ୍ଦର୍ଯ୍ୟବୋଧର ପରିଚୟ ଦିଏ । ଜାଗତିକ ସୁଖଭୋଗ ତାଙ୍କ ସାହିତ୍ୟର ବାର୍ତ୍ତା ନୁହେଁ । ଆତ୍ମା ଅନ୍ତରକୁ କୋମଳ କରିବା ପାଇଁ ଜଣେ ନାରୀକୁ ଭୋଗ୍ୟବସ୍ତୁ ବୋଲି ଜ୍ଞାନ ନକରି ଦେବୀ ଜ୍ଞାନ କରୁ । ସେ ଅନୁଭବ ତାକୁ ତ୍ରାଣ କରି ଦେଇ ପାରିବ ।

ମାନସିଂହଙ୍କ କାବ୍ୟଜଗତ ମର୍ତ୍ତ୍ୟର ସାଧାରଣ ନରନାରୀଙ୍କୁ ନେଇ । ସେ ପାଠକମାନଙ୍କୁ ଆଦୌ ଗନ୍ଧର୍ବର ପ୍ରେମକଥା 'କହିନାହାନ୍ତି; କହିନାହାନ୍ତି ଅନ୍ତପୁରର ରାଜଜେମାଙ୍କ ରତି ଆକାଂକ୍ଷାର କଥା । ରାଧାନାଥ କାବ୍ୟଯୁଗ ପରେ ମାନସିଂହ ଯେଉଁସବୁ କାବ୍ୟ ଲେଖିଛନ୍ତି ତାର ନାୟକ ନାୟିକା ଅତି ସାଧାରଣ ନରନାରୀ । ମାନସିଂହ ସାହିତ୍ୟର ଏହା ଏକ ବିଶେଷତ୍ୱ; ଯେଉଁଥି ପାଇଁ ମାନସିଂହ ଲୋକଭାଷା ଓ ଲୋକଛନ୍ଦକୁ ଅନେକାଂଶରେ ଗ୍ରହଣ କରିଛନ୍ତି ।

ମାନସିଂହ ପୁରୁଷୋତ୍ତମ ମାନଙ୍କୁ ଦେବତା ଜ୍ଞାନ କରିଛନ୍ତି । ସଦାଚାରୀ ମଣିଷ ଜଣେ ହିଁ ସମସ୍ତଙ୍କର ପୂଜ୍ୟ ବା ନମସ୍ୟ ହେବା ଉଚିତ । ମାନସିଂହ ଗୋପବନ୍ଧୁଙ୍କ ସଂପର୍କରେ ଏମିତି ଦୃଷ୍ଟିଭଙ୍ଗୀ ହିଁ ପୋଷଣ କରିଛନ୍ତି । ତାଙ୍କର 'ଗୋପ ପ୍ରୟାଣ' କବିତା ମଣିଷକୁ ଦେବତା ଭାବେ ଦେଖିବାର ଏକ ନିଦର୍ଶନ୍ । ପ୍ରତିମା ନୁହେଁ ପ୍ରିୟତମାର ପୂଜାରୀ ସେ ଥିଲେ । ପିତୁଳା ପୂଜାକୁ ସେ କୁସଂସ୍କାର ବୋଲି ମନେ କରୁଥିଲେ । ବିନୀତ, ଦୟାର୍ଦ୍ର ପୁରୁଷୋତ୍ତମ ମାନଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦେବା ପାଇଁ ସେ ଯେପରି ଆହ୍ୱାନ କରିଛନ୍ତି ।

ତାଙ୍କର ଈଶ୍ୱର ବିଶ୍ୱାସ ହେଉଛି ପ୍ରକୃତି ପ୍ରାଣ ହେବା । ଛବିଳ ପ୍ରକୃତିର ଆରାଧନା କରିବା । ପ୍ରକୃତିର ବିଜନ ମାଧୁରୀ ପ୍ରତି ଆସକ୍ତ ହୋଇଯିବା । ତାଙ୍କ ପ୍ରେମ ପ୍ରଣୟ ଚେତନା ସହିତ ପ୍ରକୃତି ପ୍ରାଣ ହେବା ହେଉଛି ରୂପର ଆରାଧନା କରିବା । ମନୁଷ୍ୟ ହେଉଛି ଏକମାତ୍ର ପ୍ରାଣୀ ଯାହାର ଏକ ମୌଳିକ ସୌନ୍ଦର୍ଯ୍ୟଦୃଷ୍ଟି (ଏସ୍‌ଥେଟିକ୍ ଭ୍ୟୁ) ରହିଛି । ତାହା ସୁନ୍ଦରର ପରିଚର୍ଯ୍ୟା କରି ନପାରିଲେ ଏ ବ୍ରହ୍ମାଣ୍ଡରେ ଜୀବନ ଜିଇଁବା କେବେ ସାର୍ଥକ ହୁଏନା । ମାନସିଂହ ଏହି ଅନୁଭବ ପ୍ରତି ଯେପରି ସମଗ୍ର ଜୀବନରେ ଅଙ୍ଗୀକାର ବଦ୍ଧ ହୋଇ ରହିଥିଲେ । ମାନସିଂହଙ୍କ ସମଗ୍ର ସାହିତ୍ୟର ମୂଳ ଭାବନା ହେଉଛି ଏହିପରି । ଏସ୍‌ଥେଟିକସ୍‌ର ଶୀର୍ଷ

ଅନୁଭବ ବୋଧେ ଶେଷରେ ଅନାସକ୍ତ ହୋଇଯିବା । ପ୍ରାଣରେ ସମୁଚ୍ଚ ଏକ ଆଧ୍ୟାତ୍ମିକ ପ୍ରଶାନ୍ତି ଅନୁଭବ କରିବା ।

ମାନସିଂହ, ଧୂପ କବିତାର କବି ଉତ୍ତର ଜୀବନରେ କିପରି ପ୍ରାଜ୍ଞ ହୋଇ ଯାଇଛନ୍ତି ତାହା ହେଉଛି ତାଙ୍କ ଜୀବନର ସର୍ବୋତ୍କୃଷ୍ଟ ଆଧ୍ୟାତ୍ମିକ ଉପଲବ୍ଧି । ମାନସିଂହ ପରିଣତ ବୟସରେ ଗୀତା ମାହାତ୍ମ୍ୟ ଲେଖିଛନ୍ତି ଓ ଜୀବନର ଶୀର୍ଷ ଆଧ୍ୟାତ୍ମିକ ଅନୁଭବ ପାଇଁ ଜିଜ୍ଞାସା କରିଛନ୍ତି । ଅନ୍ତିମ ଜୀବନରେ ସେ ଗୈରିକ ବସ୍ତ୍ର ପରିଧାନ କରିଛନ୍ତି ଓ ବୌଦ୍ଧ ହୋଇ ଯାଇଛନ୍ତି । ଏହା ତାଙ୍କ ଜୀବନର ଏକ ଦର୍ପିତ ଉତ୍ତରଣ । ଜଣେ ମହାପୁରୁଷ ନହେଲେ ପ୍ରିୟାର ନିବିଡ଼ି ପ୍ରଣୟ ଆଶ୍ଳେଷ ଓ ତା'ର ମହାର୍ଘ ସଡ଼ି ଚ୍ୟନରୁ ଜଣେ ଜୀବନର ଶ୍ରେଷ୍ଠତର ଆଧ୍ୟାତ୍ମିକ ନିଷ୍କଳତା ଆଡ଼େ ଯାଇପାରି ନଥାନ୍ତା । ସ୍ୱୀକାର କରିବାକୁ ପଡ଼ିବ କେତେ ଗତିଶୀଳ ତାଙ୍କର ଜୀବନ ଥିଲା । ତା'ର ପ୍ରତିବଦ୍ଧତା ତାଙ୍କର ସମଗ୍ର ସାହିତ୍ୟରେ ହିଁ ପରିଦୃଷ୍ଟ ହୁଏ । ସୁଧୀ ଶ୍ରୋତାମାନଙ୍କୁ ଦୃଷ୍ଟାନ୍ତ ଦେଇ ତାଙ୍କର ବାର୍ତ୍ତା ବା ପ୍ରଫେସି ସବୁକୁ ବୁଝାଇ କହିବାକୁ ମୁଁ ନିଷ୍ପ୍ରୟୋଜନ ମନେ କରୁଛି ।

ବିଗଳିତ ହୋଇଯିବା ହିଁ ଜୀବନ । ନୀତି କହି ଜୀବନକୁ କାକୁସ୍ଥ କରି ନେଉଥିବା ମଣିଷ ମାନେହିଁ ଶବ ସଦୃଶ । ନାରୀପ୍ରେମ ସମଗ୍ର ପରୁଷ ପ୍ରାଣକୁ କେମିତି ଭାବରେ ପୁଲକରେ ଉଜ୍ଜାଗ୍ରତ କରିଦିଏ ତାହା ହିଁ ବୋଧେ ମାନସିଂହ ସାହିତ୍ୟର ଅନ୍ୟତମ ପ୍ରତିପାଦନ । ମାନସିଂହ ତାଙ୍କ ହେମଶସ୍ୟରେ ଲେଖିଛନ୍ତି—

'ତୁମର ପ୍ରଣୟ ଦାନେ ବୁଝିଛି ପ୍ରଥମେ
ନାରୀର ମହିମା ସଖି ! ନଉଁଛି ସରମେ
ମୋହର ପୁରୁଷ ଗର୍ବ ତବ ପଦ ତଳେ
ମନ୍ତ୍ର-ଶାନ୍ତ ସର୍ପସମ । ତବ କଟାକ୍ଷରେ
ଉଦ୍ଦାମ ବାସନା ମମ ମାନି ପରାଭବ
ହେଲା ଶାନ୍ତ ସଙ୍କୁଚିତ । ମଧୁ ସ୍ପର୍ଶେ ତବ
ପ୍ରସୁପ୍ତ ପୁରୁଷ ଆତ୍ମା-ମନ୍ଦାକିନୀ ଜଳ
ଉଚ୍ଛ୍ୱାସେ ଉଠିଛି ବହି; ଶାସନେ ତୁମର
ଜାଗ୍ରତ ଦେବତା ମୋର ହୃଦ ସିଂହାସନେ
ବହୁ ଦିନ ସୁପ୍ତି ପରେ । ଏବେ କ୍ଷଣେ କ୍ଷଣେ
ବୀର କରି ପଠାଉଛି ଜଗତର ରଣେ ।' (ନାରୀ)

କବି ଜାତି ନାଁରେ, ସାର୍ବଭୌମ ନାଁରେ କିମ୍ବା କୌଣସି ସଂଘୀୟ ଇସ୍ତାହାର ସପକ୍ଷରେ ସ୍ଲୋଗାନ ଦେଇନାହାନ୍ତି କି ପ୍ରଚାର କରିନାହାନ୍ତି । ନେତା ବା ଗୁରୁଜନଙ୍କ ପରି କାହା ପାଇଁ କିଛି ପରାମର୍ଶ ବା ବାର୍ତ୍ତା ଦେଇ ଯାଇନାହାନ୍ତି । ନିଜର ଅନୁଭବକୁ ଯାହା ସେ କପଟଶୂନ୍ୟ ଭାବେ ପ୍ରକାଶ କରି ଯାଇଛନ୍ତି । ସେ ସବୁକୁ ଆମେ ତାଙ୍କରି ବକ୍ତବ୍ୟ ବୋଲିପାରୁ ।

ସେ୍ କୌଣସି ବିଷୟରେ ଏକ ଦେଶଦର୍ଶୀ ନଥିଲେ । ଅଥଚ ସ୍ୱଦେଶ ପ୍ରୀତି ତାଙ୍କ କବିତା କବିତ୍ୱର ଏକ ବଡ଼ଦିଗ ଥିଲା । ଉତ୍କଳୀୟତାର ଅନୁଭବ ତାଙ୍କ କବ୍ୟଭାବନାକୁ ଅଧିକ ଆତ୍ମୀୟତା ଆଣି ଦେଇଛି । ତାଙ୍କର ଯଥେଷ୍ଟ ପ୍ରସାରିତ ଭାବ ଭାବନାର ସମୁଜ୍ଜ୍ୱଳ ବିଶ୍ୱଦୃଷ୍ଟି (Prospective world view) ଥିଲା । ଅଥଚ୍ ସେ ନିଜ ପ୍ରଦେଶର ଗୌରବୋଜ୍ଜ୍ୱଳ ତଥା ଯୋଦ୍ଧୃମାଣ ଅତୀତକୁ ଖୁବ ପ୍ରଭାବ ଦୀପ୍ତ କରି ଲେଖିଛନ୍ତି । ଲେଖିଛନ୍ତି କୋଣାର୍କ ଓ ବାରବାଟୀକୁ । ଲେଖିଛନ୍ତି । ମହାନଦୀର ମହିମ୍ନ ଶଯ୍ୟା ଓ ତାର ସୁନ୍ଦର ନୀରବତାକୁ । ତାଙ୍କ କବିତା ପାଇଁ ବିଷୟ ନିର୍ବାଚ୍‌ନରେ ସେ ନିହାତି ବିଦେଶୀ ହିଁ ନଥିଲେ ।

ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ ମାନସିଂହ ଯେପରି ରୋମାଣ୍ଟିକ ଥିଲେ ସେହିପରି ପ୍ରଚ଼ଣ୍ଡ ହେତୁବାଦ ବା ରେସନାଲିଷ୍ଟ ଥିଲେ । ତାଙ୍କର ଏକ ମହାଦେଶୀୟ ଦୃଷ୍ଟି ଭଙ୍ଗୀ ଥିଲା । ଯଥା ସମ୍ଭବ ସାଧମତେ ସେ ତାଙ୍କ ସାହିତ୍ୟରେ ତାର କର୍ଷଣ କରିଛନ୍ତି । ତାଙ୍କ ଗଦ୍ୟ ସାହିତ୍ୟ ତାଙ୍କ ସୁମହତ୍ ମେଦିନୀ ଦୃଷ୍ଟିର ପରିଚ଼ୟ ଦିଏ । ତାଙ୍କ ବୈଜ୍ଞାନିକ ମନୋଭାବ, ହେତୁବାଦୀ ଚ଼େତନା, ମାନବୀୟ ସମ୍ବେଦନଶୀଳତା ତଥା ଗଣତାନ୍ତ୍ରିକ ଚ଼େତନା ତାଙ୍କ ଗଦ୍ୟ ସାହିତ୍ୟରେ ପ୍ରତିବଦ୍ଧ ଅଭିବ୍ୟକ୍ତି ଲାଭ କରିଛି ।

ଜୀବନରେ କବି ଛଡ଼ା ଆଉ କିଛିହେବା ପାଇଁ ସେ ସ୍ୱପ୍ନ ଦେଖିନାହାନ୍ତି । ନାନା ସନ୍ତାପ ଓ ଦୁଃସ୍ଥିତି ସତ୍ତ୍ୱେ ସେ କବିତ୍ୱକୁ ଆଶୀର୍ବାଦ ଜ୍ଞାନ କରିଛନ୍ତି । ସମସ୍ତେ କବିପରି ବଞ୍ଚନ୍ତୁ । ଶ୍ରଦ୍ଧା ଓ ପ୍ରେମ ଭିତରେ ବଞ୍ଚନ୍ତୁ ଏହାହିଁ ଥିଲା ତାଙ୍କ ଅଭିଳାଷର ବିଷୟ । ରୂପର ଏ ବ୍ରହ୍ମାଣ୍ଡ । ରସର ଏ ବ୍ରହ୍ମାଣ୍ଡ । ବ୍ରହ୍ମାଣ୍ଡକୁ ଭୋଗ କରିବା ଅର୍ଥ ମାଧୁର୍ଯ୍ୟ ଲାଭ କରିବା । କବିପରି ଉଦାର ନହେଲେ, ପ୍ରକୃତିପ୍ରାଣ ନହେଲେ, ମହାକାଳ, ମହାଜୀବନ ପ୍ରତି ଉନ୍ମୁଖତା ନଥିଲେ ଜଣେ କେହି ଏ ବସୁନ୍ଧରାକୁ ଭୋଗ କରି ପାରିବନି ।

ମାନସିଂହ କବିପରି ବଞ୍ଚିବାକୁ ଚ଼ାହିଁଛନ୍ତି । ଜୀବନରେ ସେ ପ୍ରକୃତରେ ଆଉ କିଛି ହିଁ ଲୋଡ଼ି ନାହାନ୍ତି । ତାଙ୍କ କବିଜୀବନ ହିଁ ତାଙ୍କର ଦିବ୍ୟଜୀବନ । ସୁନ୍ଦର ଏ ଜୀବନକୁ ଅନୁଭବ କରିବା ପାଇଁ ସେମିତି ଗୋଟେ ହୃଦୟବତ୍ତ୍ୱ ଦର୍କାର । ମାନସିଂହ ସବୁରି ପାଇଁ ସତେ ଯେପରି ତାହା ହିଁ କାମନା କରିଛନ୍ତି । ନିଜର ମୃତ୍ୟୁପରେ ସମସ୍ତଙ୍କଠାରୁ ସବୁ ପ୍ରେମାସ୍ପଦଙ୍କଠାରୁ ସେ ପ୍ରେମର ପ୍ରତିଦାନରେ ପ୍ରେମହିଁ ଖୋଜିଛନ୍ତି :-

> 'ଛୋଟ ଏକ ସମାଧିଟି ଶ୍ୟାମ ଘାସ ପରେ/ଥାଇ ପାରେ ପଲ୍ଲୀ ବା ନଗରେ/
> ଏକମାତ୍ର ଚ଼ିହ୍ନ ରୂପେ/ଦୀନ ଏହି ପୃଥିବୀ-ବାସୀର/ମୃତ୍ୟୁରାଜ୍ୟେ ଯିବି ଯେବେ
> ଛାଡ଼ି କୋଳ ମାଆ ଧରିତ୍ରିର/ବସନ୍ତର ପୁଷ୍ପୋତ୍ସବେ/ଶାରଦ ଜ୍ୟୋତ୍ସ୍ନାରେ/
> ସ୍ମରି କେବେ, ମୋ ଦେଶର ଯୁବକ-ଯୁବତୀ/ଆସି ସେ ସମାଧିପରେ/
> ପୁଷ୍ପଡାଳି ପ୍ରୀତିଭରେ/କବିରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି/ସେହି
> ସେ ହୋଇବ, ମୋର ଶ୍ରେଷ୍ଠ ପୁରସ୍କାର/ସେହି ମୋର ମାନଦଣ୍ଡ ଜୀବନ
> ଯାତ୍ରାର ।'

ଜଗତକୁ ଭଲ ପାଉଥିବା ଲୋକଟି ନିରନ୍ତର ଅପରର କଲ୍ୟାଣ କାମନା କରୁ । ସେହି ଶିବ ସଙ୍କଳ୍ପ ତ ମନୁଷ୍ୟତାର ଲକ୍ଷଣ । ବେଦରେ କୁହାଯାଇଛି ଯେ ମନନ କିରପାରେ ନାହିଁ, ଯା'ର ଶିବ ସଙ୍କଳ୍ପ ନାହିଁ ସେ କି ମନୁଷ୍ୟ । ସେହିଁ ପ୍ରକୃତ କବିଟି୍ଏ ଯେ ନିଖିଳର କଲ୍ୟାଣ କାମନା କରେ । ସନ୍ଥ କବିଙ୍କ ଉର୍ଦ୍ଧ୍ୱଗ ଆତ୍ମା ଯେପରି ଦିନେ ଜଗତକୁ ଉଦ୍ଧାର କରିବା ପାଇଁ ନିଜକୁ ବଳି ଦେବାକୁ କାମନା କରିଥିଲା କବି ମାନସିଂହ ସେହିପରି ବିଶ୍ୱହିତ ପାଇଁ ନିଜକୁ ବିକ୍ଷତ କରିବା ପାଇଁ ଚ଼ାହିଁଛନ୍ତି ।

'ଜଗତରୁ ଦୁଃଖ ମୁହିଁ ପୋଛି ଦେବି କରେ/
ଦେଖିବ ଆନନ୍ଦରେଖା ନିଖିଳ ମୁଖରେ/
ଜୀବନେ ଜୀବନେ ଜନ୍ମି ଅବା ରକ୍ତ ମୋର ଦେଇ/
ମେଣ୍ଟିବି ମାନବ ଦୁଃଖ କ୍ଲୁଶ ଅଙ୍ଗେ ନେଇ'

ମାନସିଂହ କାବ୍ୟଭାବନାର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ ହେଲା ତାଙ୍କର ସ୍ୱଦେଶପ୍ରୀତି । ବିଦେଶୀ ସାହିତ୍ୟ, ବିଦେଶୀ ଭାଷା ଓ ସଂସ୍କୃତି ପ୍ରତି ଅନେକଙ୍କର ବିକାରଗ୍ରସ୍ତ ମନ ଯେପରି ଉନ୍ମୁଖ ହୋଇ ଉଠିଛି ସେଥିରେ ମାନସିଂହ କ୍ଷୁବ୍ଧ ହୋଇଛନ୍ତି । ନିଜ ମାଟିରଂ ସୌନ୍ଦର୍ଯ୍ୟକୁ ଦେଖି ନପାରିବା ଏକ ନିଶ୍ଚିତ ବିଡ଼ମ୍ବନା ବୋଲି ମାନସିଂହ ମନେ କରିଛନ୍ତି । ଯେଉଁଥି ପାଇଁ ସେ ଇଂରାଜୀ ସାହିତ୍ୟରେ ଛାତ୍ର ହୋଇଥିଲେହେଁ ତାଙ୍କର କଲମରୁ ତାଙ୍କର ଦୃଢ଼ ସଙ୍କଳ୍ପ ଯୋଗୁଁ ନିଜ ମାଟିର ସୁନ୍ଦର ଛବି ସନିର୍ବନ୍ଧ ଅଭିବ୍ୟକ୍ତ ଲାଭ କରିଛି । ମାନସିଂହ ଲେଖିଛନ୍ତି— 'ଏ ଦେଶରେ ଯେ କିଆ ପୋଲାଙ୍ଗ ଫୁଟି ଝିରି ପଡୁଛି, ସେ ଖବରନରଖି, ଏମାନେ ଚ଼ାମେଲି, ଗୋଲାପ, ହାସ୍ନା-ହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ । ସାଧବଝିଅ ନଈରେ ଗାଧୋଇବା ବେଳେ, ଛିଣ୍ଡି ପଡ଼ିଥିବା ବାରହାତ ଲମ୍ବ ବାଳକୁ ସୁନା ଫୁରଆରେ ପୂରାଇ, ପାଣିରେ ଭସାଇ ଦେଇ ଅନାଇ ରହିଛି, ସେ ଦୃଶ୍ୟ କବିମାନେ, ଦେଖି ପାରୁନାହାନ୍ତି; ସେମାନେ ସବୁଜ ପରୀ, ଆସମାନୀ ପରୀର ନୃତ୍ୟ ଆମକୁ ଦେଖାଇଛନ୍ତି ।'

ମାନସିଂହ ଆମକୁ ପ୍ରୀତିର ପରମ ଶ୍ଳୋକମାନ ଶୁଣାଇଛନ୍ତି । ଜୀବନ ସାମଗାନ ପରିଲାଗିବ ସେତେବେଳେ ଯେତେବେଳେ ଜଣେ ପ୍ରେମର ଏକାନ୍ତ ଉତ୍ସର୍ଗୀକୃତ ଅଞ୍ଚଳ ପ୍ରଶାନ୍ତି ଅନୁଭବ କରିପାରିବ । ଏ ଜୀବନର କେତେ ଯେ ସନ୍ତାପ, କେତେ ଯେ ବଞ୍ଚନା କହି ହେବନି । ପ୍ରେମର ପୁଲକ କେତେ ଯେ ନିସର୍ଗ ଓ ସ୍ୱର୍ଗୀୟ ତାହା କେବେ ବିଷୟରୁ ମିଳେ ନାହିଁ । ଭାରତୀୟ ତତ୍ୱବିଦମାନେ ତେଣୁ ଶୃଙ୍ଗାରର ବିପୁଳ ପରିଚ଼ର୍ଯ୍ୟା କରିଛନ୍ତି ।

ଅନେକ ଭାବନ୍ତି ମାନସିଂହ ତାଙ୍କର ପ୍ରଣୟ ଚ଼େତନାରେ ଅତିମାତ୍ରାରେ ବିଦେଶୀ । ମାତ୍ର ତାହା ସତ ନୁହେଁ । ଶୃଙ୍ଗାର ସହସ୍ରର ଖଣି ତ ଏ ଦେଶ । ଏଠି ଯାବତୀୟ ଶୁଦ୍ଧ ଶୃଙ୍ଗାରର ଗ୍ରନ୍ଥ ଲେଖା ଯାଇଛି ଯାହା ପୃଥିବୀର ଅନ୍ୟତ୍ର ଦୁର୍ଲଭ ପ୍ରାୟ । ମନୁଷ୍ୟ ହେଉଛି ଏ ସଂସାରରେ ଏକମାତ୍ର ପ୍ରାଣୀ ଯେ ଶୃଙ୍ଗାର ଜାଣେ । ଆମ ବିପ୍ରଲମ୍ଭ ଅନୁଭବର ସରସ

କାରୁଣ୍ୟ ବ୍ୟତୀତ ଶ୍ଳୋକ ସବୁତ ସେହି ବିପୁଳ ଶୃଙ୍ଗାର ପରିଚ଼ର୍ଯ୍ୟାର ବିଷୟ । ଭାରତୀୟମାନଙ୍କ ପରି ଏହି ଶୃଙ୍ଗାର ବିଷୟରେ ଅଧିକ କିଛି ଚ଼ର୍ଚ୍ଚା କରିଛନ୍ତି ସତରେ ଗ୍ରୀକ୍‌ଜାତି । ଯେଉଁଥିପାଇଁ ଯଥାର୍ଥରେ କୁହାଯାଇଛି, 'Eros creates Civilization' । ସଙ୍ଗୀତ, ନୃତ୍ୟ, ଚିତ୍ର, ସ୍ଥାପତ୍ୟ, କବିତା ଆଦି ବହୁବିଷୟ ସୃଷ୍ଟିର ପଶ୍ଚାତରେ ମଣିଷର ସୌନ୍ଦର୍ଯ୍ୟ ଦୃଷ୍ଟି ଓ ଶୃଙ୍ଗାର ଅନୁଷଙ୍ଗ ରହିଛି । ମଣିଷର ଭଦ୍ରତା ତାର ସଂସ୍କୃତି ସଂପନ୍ନତା ଏପରିକି ତା'ର ଆଧ୍ୟାତ୍ମିକ ଅଭିଳିପ୍‌ସାକୁ ତା'ର ଶୃଙ୍ଗାର ଚ଼େତନା ନିୟନ୍ତ୍ରଣ କରେ ଯେଉଁ ଶୃଙ୍ଗାରିକତା ଏକ ବିଶିଷ୍ଟତମ ବୌଦ୍ଧିକତାର କାରଣ । ଆଦିମ କାମକୁ ଯେ ଯେତେ ପରିଶୀଳିତ କରି ଦେଇ ପାରିବ ତାହା ଜଣକ ପାଇଁ ଶକ୍ତି ସମ୍ଭାବନାର ବିଷୟ ହେବ; ଯାହାକୁ ସିଗମଣ୍ଡ ଫ୍ରୟେଡ଼ 'ଚ଼େନାଲାଇ ଜେସନ' ବୋଲି କହୁଥିଲେ । ସେହି ଉତ୍ତୀର୍ଣ୍ଣ ଅନୁଭବ ବା ଟ୍ରାନ୍‌ସଫରମେସନ୍‌କୁ ମାନସିଂହ ନିଜର ସୁମହତ୍ କବି ଜୀବନରେ ନିବିଡ଼ ଭାବେ ଅନୁଭବ କରିଛନ୍ତି ଯେପରି ସେହି ଉପଲବ୍ଧି ଟିକକ ହିଁ ଅତି ମୂଲ୍ୟବାନ । ଜଣେ ଶିଳ୍ପୀ ବା ସାରସ୍ୱତ ପୁରୁଷଙ୍କ ଏବଂବିଧ ଉପଲବ୍ଧି ହିଁ ତାଙ୍କର ବାର୍ତ୍ତା । ପାଠକକୁ ପ୍ରଭାବିତ କରି ପାରିଲେ ଜଣେ କବି ବା ଲେଖକର ବାର୍ତ୍ତା ଅବଶ୍ୟ ପ୍ରଚ଼ାର ପ୍ରସାର ଲାଭ କରେ ।

ମାନସିଂହ କେବଳ ଅତୀତର ଉତ୍କଳର ଗୌରବ ଗାଥା ଗାଇ ନାହାନ୍ତି ଭବିଷ୍ୟ ପାଇଁ ମଧ୍ୟ ଉଦ୍‌ବୋଧନ ଦେଇଛନ୍ତି । ଏମିତି ଅନେକ ରୋମାଣ୍ଟିକ କବି ଅଛନ୍ତି ଯେଉଁମାନେ କଳ୍ପନା ଜଗତକୁ ବାସ୍ତବ ଜଗତଠାରୁ ସଂପୂର୍ଣ୍ଣ ଅଲଗା କରି ଦେଖନ୍ତି; ମାତ୍ର ଏହି ବାସ୍ତବ ଜଗତରେ ହିଁ କବି ମାନସିଂହ ତାଙ୍କ କଳ୍ପନା ଜଗତକୁ ମିଶାଇ ଦେଇଛନ୍ତି । ଏହି କ୍ଳେଦାକ୍ତ ପୃଥିବୀର ଅନେକ ଦୁଃଖ ଓ ବଞ୍ଚନା ତାଙ୍କ କବିତାରେ ରୂପାୟିତ ହୋଇଛି । ସେ ଖାଲି ସୁନ୍ଦରୀ ସାଧୁବାଣୀ ବା ଶାଳଭଂଜିକା ମାନଙ୍କୁ ଲେଖିନାହାନ୍ତି; ଲେଖିଛନ୍ତି ବହୁ ଅସହାୟା ଦୁଃଖିନୀ ନିରାଶ୍ରିତାମାନଙ୍କୁ ।

ମାନସିଂହଙ୍କର କେତେକ ପ୍ରବନ୍ଧ ଅଛି ଅତି ଚ଼ିତ୍ତ ପ୍ରବୋଧକ ତା'ର ବାର୍ତ୍ତା ସବୁ । ଶ୍ରମ କୌଶଳ ସଂପର୍କରେ ତାଙ୍କର ଯୁକ୍ତି ଗୁଡ଼ିକ ଅନେକ ନିଚ଼େଷ୍ଟ ନୈରାଶ୍ୟବାଦୀମାନଙ୍କୁ ଅବଶ୍ୟ ଆଶା ଓ କର୍ମ ପ୍ରେରଣାର ଆଲୋକ ଦେଖାଇବ । ତାଙ୍କର ଅଧ୍ୟବସାୟ ହେଉଛି ତାଙ୍କର ଭାଗ୍ୟଲକ୍ଷ୍ମୀ । ସେ ତାଙ୍କ ସାହିତ୍ୟରେ ତାଙ୍କର ଅଗଣିତ ପ୍ରିୟ ପାଠକମାନଙ୍କୁ ସେହି ବାର୍ତ୍ତା ଦେଇଛନ୍ତି ଯେ ଜଣେ ନିରନ୍ତର ଅଧ୍ୟବସାୟୀ ଓ କର୍ମକୁଶଳୀ ହେବା ଆବଶ୍ୟକ ।

ମାନସିଂହଙ୍କ ପ୍ରଦେଶପ୍ରୀତି ଥିଲା । ତା ସହିତ ଥିଲା ବିଶ୍ୱଦୃଷ୍ଟି । ତାଙ୍କ ପ୍ରେମ ଓ ଜୀବନଦୃଷ୍ଟି ସେହି ଭାବରେ ଭାବିତ ହୋଇଛି । ତାଙ୍କ ସମୟର ଆଉ ଜଣେ ରୋମାଣ୍ଟିକ କବିଙ୍କ ପରି ସେ ଦୂରନଈ, ଦୂରନଭର କଥା ଲେଖି ନାହାନ୍ତି । ତାଙ୍କ କବି ଚିତ୍ତକୁ ମତୁଆଲା କରିଛି ଏଇ ମାଟିର ନଈ, ଏଇ ପ୍ରଦେଶର କିଶୋରୀ । ଏ ଦେଶର ଇତିହାସ ତାଙ୍କ ସ୍ୱପ୍ନ ଓ କଳ୍ପନାକୁ ପୁଷ୍ଟ କରିଛି; ଏ ମାଟିର ପ୍ରୀତି ପାର୍ବଣ ତାଙ୍କ କବିଚିତ୍ତକୁ ଯଥାର୍ଥରେ ଗୀତିମୟ କରି ଦେଇଛି ।

ମାନସିଂହ ଥିଲେ ଯଥାର୍ଥରେ ଜାଗ୍ରତ ଚେତନାର କବି । ଯେଉଁ ସ୍ତରକୁ ଉନ୍ନୀତ ହେଲେ ଜଣେ ଗୋଟେ ବୃହତ୍ତର ଜନପଦକୁ ଚିତ୍ରଣ କରିବା ପାଇଁ ପ୍ରବୃତ୍ତ ହୁଏ ମାନସିଂହ ସେହି ସ୍ତରକୁ ଉନ୍ନୀତ ହୋଇ ଯାଇଥିଲେ ।

ମାନସିଂହ ସାର୍ବକାଳୀନତା ଓ ସାର୍ବଜନୀନତାକୁ ହିଁ ମୁଖ୍ୟତଃ ଚିତ୍ରଣ କରିଛନ୍ତି । ସେ ପ୍ରେମକୁ ଲେଖନ୍ତୁ ବା ଜୀବନକୁ ଲେଖନ୍ତୁ ସେ ମହାଜୀବନର ସ୍ପନ୍ଦନକୁ ସେଥିରେ ପ୍ରତୀକିତ କରିଛନ୍ତି ।

ପ୍ରଚଣ୍ଡ ଆବେଗର ଅଧିକାରୀ ମାନସିଂହ ସମଗ୍ରଜୀବନ ବିପୁଳ ହେତୁବାଦୀ ଚିନ୍ତନର ଲେଖାସବୁ ଛାଡ଼ି ଯାଇଛନ୍ତି । ସେ ଥିଲେ ସଜ୍ଜନ, ସାମାଜିକ, ହେତୁବାଦୀ, ମାନବବାଦୀ ତଥା ବହୁଭାବରେ ଜାତୀୟବାଦୀ ଜଣେ ପ୍ରଚଣ୍ଡ ପ୍ରତିଭାବାନ ଶିଳ୍ପୀ ।

ଗୋଟିଏ ଭୂଖଣ୍ଡର ପ୍ରିୟ ମଣିଷ ମାନଙ୍କୁ ଜୀବନର ବିକାଶ ଆଡ଼କୁ ମୁହାଇଁ ଦେବାର ଭାବନା ଓ ଆନ୍ତରିକତା ତାଙ୍କର ଥିଲା । ସେ କେବଳ ପ୍ରଣୟର ଲୀଳା ବର୍ଣ୍ଣନା କରିଥିବା ଜଣେ ବିଳାସୀ କବି ମାତ୍ର ନଥିଲେ; ଥିଲେ ବହୁ ଭାବରେ ଜଣେ ଉଜ୍ଜାଗ୍ରତ ଚେତନାର ମଣିଷ; ଯାହାଙ୍କଠାରେ ଏକ ପ୍ରସାରିତ ବିଶ୍ୱଦୃଷ୍ଟି (World view) ଥିଲା ।

ଜଣେ ତେଜସ୍ୱୀ ଶିଳ୍ପୀ ଓ ପଣ୍ଡିତ ଭାବରେ ସେ ଜୀବନର ପ୍ରଚଣ୍ଡ ସ୍ୱାଭିମାନ ଭିତରେ ବଞ୍ଚିଥିଲେ । ଜୀବନରେ କାହା ସହିତ କେଉଁ କଥାରେ କେବେ ସାଲିସ କରି ନାହାନ୍ତି । କେଉଁ ଅଧିକାରୀଙ୍କ ସହିତ ନୁହେଁତ, ପରିବାର ସହିତ କି ପତ୍ନୀ ସହିତ ମଧ୍ୟ ନୁହେଁ ।

ଆମ ପ୍ରଦେଶର ସୁଦୀର୍ଘ ସାରସ୍ୱତ ପରମ୍ପରାରେ ଏପରି ଉଜ୍ଜାଗ୍ରତ ଚେତନାର ଆଉ ଜଣେ ମଣିଷ ମିଳିବା କଠିନ ନିଶ୍ଚୟ ।



# ମୋ ମନ ପସନ୍ଦର ସ୍ରଷ୍ଟା କେତେଜଣ

## ଖଲିଲ ଜିବ୍ରାନ୍

ମହାଜୀବନର ଜଣେ ସଚ୍ଚା ରୂପକାର ଥିଲେ ମାଟି ଓ ଆକାଶର କବି ଖଲିଲ ଜିବ୍ରାନ । ସବୁକାଳରେ ସବୁଠି ମାଟି ମଣିଷକୁ କେତେ ଅଧିକ ସମ୍ମୋହିତ କରିଦିଏ ତା'ର ଚିତ୍ରୀ ଥିଲେ ପ୍ରକୃତରେ ଜିବ୍ରାନ । ମାଟି ସହିତ ମଣିଷର ମନ ଆତ୍ମା ଏ ବ୍ରହ୍ମାଣ୍ଡରେ ଯେତେ ଅଧିକ ଏକାକାର ହୋଇଯାଏ ତାର ପ୍ରାଣରେ ସେତେ ନିବିଡ଼ତାବଢ଼େ । ଏହି ନିବିଡ଼ତାହିଁ ବସ୍ତୁତଃ କବିତ୍ୱର ମୂଳଭୂମି ।

ଯେଉଁ ମଣିଷକୁ ମାଟି କେବେ ପ୍ରବୋଧିତ କରିପାରେ ନାହିଁ ତା ପ୍ରାଣରେ କେବେ କବିତ୍ୱ ଉଦୟ ହୋଇ ନାହିଁ ବୋଲି ବୁଝିବାକୁ ପଡ଼ିବ । ଆପଣା ପ୍ରାଣର କବିତ୍ୱ ବଳରେ ଜଣେ ସର୍ବୋତ୍ତମ ସୁଖ ଭୋଗ କରେ ବୋଲି ଜିବ୍ରାନ ଯେପରି ଉପଲବ୍ଧି କରିଥିଲେ ।

ସୁଖ ସଂସାରର ଅନ୍ୟ କେଉଁଠି ନଥାଏ, ଥାଏପ୍ରତି ମଣିଷର କବିତ୍ୱପୂର୍ଣ୍ଣ ହୃଦୟରେ । କବିର ହୃଦୟ ସବୁବେଳେ ପ୍ରବୋଧିତ ହୃଦୟ । ଯାହା ବ୍ରହ୍ମାଣ୍ଡର ସବୁକିଛି ଗ୍ରହଣ କରିବାକୁ ଆଦୌ କୁଣ୍ଠିତ ହୁଏନି ବୋଲି ଖଲିଲ ଜିବ୍ରାନ କହିଛନ୍ତି ।

ଖଲିଲ ଜିବ୍ରାନଙ୍କ 'ମହାମାନବ' ସେହିପରି ଜଣେ କବି, ଜଣେ ଉତ୍ତମ ପରିବ୍ରାଜକ, ସମର୍ଥ କଳାକାର, ମନ୍ତ୍ରଦ୍ରଷ୍ଟା ଋଷି, ସୁନ୍ଦରର ଆରାଧନା କରୁଥିବା ଜଣେ ପ୍ରେମିକ । ଏହି 'The Prophet' ହିଁ ଜିବ୍ରାନଙ୍କ ପ୍ରକୃତ ମାଷ୍ଟର ପିସ୍ ।

ଅପ୍ରେମ, ଅଶ୍ରଦ୍ଧାରେ ସଢ଼ି ଯାଇଥିବା ଗୋଟେ ଅବରୁଦ୍ଧ ଆତ୍ମା କେବେ କେଉଁଠି ଏ ବ୍ରହ୍ମାଣ୍ଡକୁ ଭୋଗ କରିପାରେ ନାହିଁ । ଏ ସଂସାରରେ ଯାହା ଜଣେ ବିତ୍ତଶାଳୀ ଧନୀ ସୌଦାଗର ପାରେ ନାହିଁ ତାହା ହୁଏତ ଜଣେ ନିହାତି କପର୍ଦ୍ଦକ ଶୂନ୍ୟ ବ୍ୟକ୍ତି ପାରେ । ଜୀବନ ଭୋଗର ଅସଲ ଚାବିକାଠି ହେଲା ପ୍ରକୃତିପ୍ରାଣ ହେବା; ଯାହା ଏକାନ୍ତ ଈଶ୍ୱରୀୟ । ଛବିଳ ବିଶ୍ୱ ବ୍ରହ୍ମାଣ୍ଡର ରୂପ, ରସ, ଗନ୍ଧ ଯାହାକୁ ମତୁଆଲା କରିପାରେ ନାହିଁ ତା ଆତ୍ମା ଅନ୍ତର କେବେ ବିମୋହିତ ହୋଇପାରେନା । ସେମାନେ ଇତର ପ୍ରାୟ ମୂଢ଼ ହୋଇ କେବଳ ଜୀବନ ସାରା ରହି ଯାଆନ୍ତି ।

ବଣ, ପାହାଡ଼, ସମୁଦ୍ର, ଗିରିଝରଣା, ପଦ୍ମପୋଖରୀ, ପୁଷ୍ପ ସ୍ତବକିତ ଲତାକୁଞ୍ଜ, ଫୁଲ ଫୁଟିବାର ମୁହୂର୍ତ୍ତକୁ ଲେବାନନର ନୋବେଲ ପୁରସ୍କାର ବିଜେତା ମୁସଲମାନ କବି ଖଲିଲ ଜିବ୍ରାନ ଏତେ ଉତ୍ତମ ଭାବରେ ଏତେ ମନୋମୁଗ୍ଧକର ସାଙ୍ଗୀତିକତା ଭିତରେ ଆଙ୍କିଛନ୍ତି ଯେ, ଯାହା ମନ୍ତ୍ରପରି ଶୁଦ୍ଧ କବିତାର ପରିଧିକୁ ସ୍ପର୍ଶ କରି ଯାଇଛି ।

ଗଦ୍ୟଧାଡ଼ି ଭିତରେ ରସିକ କବି ଜିବ୍ରାନ ସତେ ଯେପରି ସବୁଠାରୁ ସୂକ୍ଷ୍ମ ଆଉ ସଂକ୍ଷିପ୍ତ ଗଜଲ ବା ସାୟରୀ ଲେଖିଛନ୍ତି । ଏତେ ପ୍ରାଣସ୍ପର୍ଶୀ, ଏତେ ଅର୍ଥପୂର୍ଣ୍ଣ ତାଙ୍କର

ଅନୁଭବ ଏତେ ବିଶ୍ୱାସନୀୟ ତାଙ୍କ ଶ୍ରଦ୍ଧା ଓ ପ୍ରେମର ମଞ୍ଜିଲ ଯେ ତାହା ଅନନ୍ୟ ସାଂଗୀତିକତାର ସଂକ୍ରମଣତା ସୃଷ୍ଟି କରିଛି ।

ଜିବ୍ରାନଙ୍କ ନାୟକ ସେ ମହାପୁରୁଷ ଜଣକ ଏକ ଟାଙ୍ଗର ପାହାଡ଼ ଉପରେ ଦୀର୍ଘ ବାରବର୍ଷ କାଳ ନିଃସଙ୍ଗ ଓ ନିର୍ବାସିତ ଜୀବନ କଟାଇଛନ୍ତି । ଚାରିଆଡ଼େ ଖାଲି ଧୁ ଧୁ ସମୁଦ୍ରର ଢେଉ । ବହୁଦୂରରେ ନିଜର ଜନ୍ମଭୂମି । ଅଥଚ ଟାଙ୍ଗରା ପାହାଡ଼ଟି ତାଙ୍କୁ ଏହାଭିତରେ ଆକର୍ଷିତ କରିପାରିଛି । ସେ ମାଟିର ମଣିଷମାନେ ଏହାଙ୍କୁ ଦିବ୍ୟଦ୍ରଷ୍ଟା ବୋଲି ଜ୍ଞାନ କରିଛନ୍ତି ।

ନିର୍ବାସିତ ଜୀବନ ଶେଷ କରି ଗୋଟେ ଜାହାଜରେ ପୁଣି ନିଜ ଜନ୍ମ ଭୂମିକୁ ଫେରି ଆସିଲା ବେଳେ ତାଙ୍କୁ ସେ ନଗରର ଛାତ୍ର, ଗଣିକା, କୃଷକ, କୁମାରୀ କନ୍ୟା, ପ୍ରେମର ଅସରନ୍ତି ଦୁଃଖ ଭୋଗୁଥିବା ପ୍ରେମିକ ପ୍ରେମିକା ସାକ୍ଷାତ୍ କରି ସେମାନଙ୍କର ସଂଶୟ ମୋଚ଼ନ କରିବା ପାଇଁ ବହୁ ମୌଳିକ ପ୍ରଶ୍ନ ପଚ଼ାରିଛନ୍ତି ଓ ମହାମାନବ ଅଲମୁସ୍ତଫା ତାର ଯଥାଯଥ ଉତ୍ତର ପ୍ରଦାନ କରିଛନ୍ତି । ଏହା ହିଁ ମୋଟ ଉପରେ ଖଲିଲ ଜିବ୍ରାନଙ୍କ 'The Prophet' ଉପନ୍ୟାସର ବିଷୟ ବସ୍ତୁ ।

ଉପନ୍ୟାସଟିର ଅନେକ ଧାଡ଼ି ଶୁଦ୍ଧ କବିତାର ଧାଡ଼ି ପରି ନିତ୍ୟକାଳ୍ର ସତ୍ୟ ଓ ବାସ୍ତବତାକୁ ଯେପନି ପ୍ରଫେଟ୍ ମୁହଁରେ ଜିବ୍ରାନ ବୟାନ କରିଛନ୍ତି ।

ଖଲିଲ ଜିବ୍ରାନ ରସିକ ଯେପରି ଶୃଙ୍ଗାରିକ ସେହିପରି । ନାରୀ ତାଙ୍କ ରଚ଼ନାର ଗୋଟେ ବଡ଼ ପ୍ରସଙ୍ଗ ।

ନାରୀ ବିଷୟରେ ଜିବ୍ରାନ ବହୁ ଭାବରେ ଉତ୍ସୁକ ଓ ଅସ୍ତ୍ୟର୍ଥକ । ରହସ୍ୟମୟପ୍ରେମ ଓ ଏ ବିଚ଼ିତ୍ର ଜୀବନର ମହାନ ଭାଷ୍ୟକାର ହେଉଛନ୍ତି ଖଲିଲ ଜିବ୍ରାନ । ନାରୀ ପ୍ରେମ ପୁରୁଷର ହୃଦୟକୁ କିପରି ରସ ପ୍ଲାବିତ କରିଦିଏ ଜଣେ ସଚ୍ଚା ସୁପର କବି ପରି ତା'ର ଅତି ଭାବପୂର୍ଣ୍ଣ ବ୍ୟାଖ୍ୟା ସେ ଦେଇଛନ୍ତି ।

ତାଙ୍କ ରଚ଼ନା ଶୈଳୀ ହିଁ ଅତ୍ୟନ୍ତ ଚ଼ମତ୍କାର । ଅମାପ ରସିକତା ତାଙ୍କ ଶୈଳୀକୁ ସରସ ଓ ସୃଜନଶୀଳ କରିଛି ।

ଖଲିଲ ଜିବ୍ରାନଙ୍କୁ ଏକଦା ତାଙ୍କ ଲେବାନନ ସରକାର ଦେଶରୁ ବହିଷ୍କାର କରିଥିଲେ । ପଚିଶ ବର୍ଷ ବୟସରେ ସେ ଲେଖିଥିଲେ ଆଗ୍ନେୟ ବିପ୍ଳବର ମହାନ ଗ୍ରନ୍ଥ 'The Spirits Rebellious'; ଯେଉଁ ବହିଟିକୁ ରାସ୍ତାରେ ଗଦା କରି ଦିନେ ହୁଏତ ପୋଡ଼ି ଦିଆଯାଇଥିଲା ।

ଖଲିଲ ଜିବ୍ରାନ ଥିଲେ ଯଥାର୍ଥରେ ଫୁଲ ଓ ବାରୁଦର କବି । ପ୍ରେମ ଓ ବିପ୍ଳବର ବିଶିଷ୍ଟ ଚ଼ିତ୍ରକାର ।

୧୯୨୩ ଖ୍ରୀ:ରେ ସେ ଲେଖିଥିଲେ ଶୁଦ୍ଧ ଭାବମୟ ଓ ଏକାନ୍ତ କାବ୍ୟାତ୍ମକ 'The Prophet' । ସେ ମଣିଷ ଜୀବନକୁ ସମଗ୍ର ଭାବରେ ଦେଖିବା ପାଇଁ ଚାହିଁଥିଲେ । ମଣିଷ ଜୀବନ ଖାଲି କେବଳ ବିପ୍ଳବର ନୁହେଁ କି ଖାଲି ପ୍ରେମର ନୁହେଁ । ଏ ଜୀବନର କାରୁଣ୍ୟ ଅଛି । ଅନୁରାଗ ବି ଅଛି । ମିଶ୍ର ଓ ଯୌଗିକ ମୂର୍ଚ୍ଛନାରେ ଏ ଜୀବନ ସତରେ ଭରି ଯାଇଛି ।

ସମଗ୍ର ମଣିଷ ଜାତି ପାଇଁ ଜିବ୍ରାନଙ୍କ 'The Prophet' ଅନନ୍ତ ପ୍ରେରଣାର ଉତ୍ସ ହୋଇ ରହିଗଲା । ପ୍ରଫେଟକୁ କେତେଜଣ ଧର୍ମନିରପେକ୍ଷ ବିଶ୍ୱବାଦୀ ମଣିଷ 'ଅମୃତଭାଣ୍ଡ' ବୋଲି ଯଥାର୍ଥରେ ଅଭିହିତ କରି ଯାଇଛନ୍ତି । କେବଳ ଶବ୍ଦ ନୁହେଁ ସେ ରେଖାରେ ବି ଚିତ୍ରଶିଳ୍ପ ଅଙ୍କନ କରିଛନ୍ତି । ତାଙ୍କ ରେଖା ଓ ଶବ୍ଦ ଜଣେ ଛଳଛଳ ଏକାନ୍ତ ପ୍ରେମମୁଗ୍ଧ ସୁଫୀ କବିର ଆତ୍ମା ନିକଟରେ ତାଙ୍କ ପାଠକଙ୍କୁ ପହଞ୍ଚାଇ ଦିଅନ୍ତି ।

ଜିବ୍ରାନ କହନ୍ତି, ମଣିଷ ଜୀବନର ଶେଷ ମଞ୍ଜିଲ ହେଉଛି ଆନନ୍ଦ । ଆନନ୍ଦକୁ ବିସର୍ଜନ ଦେଇ ଜୀବନର ସତ୍ତା ଖୋଜିବା ଗୋଟେ କଳ୍ପିତ ଶୂନ୍ୟ ପର୍ବତ ଆଡ଼କୁ ଧାଇଁବା କେବଳ; ଯାହା ଅର୍ଥହୀନ ଓ ଅସାର ।

ତାଙ୍କ 'ମହାମାନବ' ଅନନ୍ତକାଳର ମଣିଷଙ୍କୁ ଅମୃତର ସ୍ୱାଦ ଚଖାଇବ । ଶ୍ରଦ୍ଧା ଓ ବିଶ୍ୱାସର ଅମରାବତୀ ଆଡ଼କୁ ନେଇଯିବ । ଜୀବନରେ କବିପରି ବଞ୍ଚିବା ପାଇଁ ସବୁ ମଣିଷଙ୍କୁ ପ୍ରୋତ୍ସାହିତ କରିବ ।

ମହାମାନବର ନାୟକ ଅଲ୍‌ମୁସ୍ତଫା, ଯେ ଥିଲେ ଈଶ୍ୱରଙ୍କର ପ୍ରିୟ ପ୍ରତିନିଧି ସେ ବାର ବର୍ଷ କାଳ ଅପେକ୍ଷା କରିଥିଲେ ଆପଣାର ଜନ୍ମଭୂମିକୁ ଫେରିଯିବା ପାଇଁ ।

ପରିଶେଷରେ ତାଙ୍କ ଜନ୍ମଭୂମିକୁ ଫେରିଯିବା ପାଇଁ ମୁହୂର୍ତ୍ତ ଉପଗତ ହେଲା; ମାତ୍ର ଏ କ'ଣ ହେଲା ? ମହାମାନବ (ଅଲମୁସ୍ତଫା) ପ୍ରାଣରେ ଅନୁଭବ କଲେ ଏ ବାର ବର୍ଷ ଭିତରେ ସେ ଏ ମାଟିର ଦୁଃଖ ଓ ବେଦନାକୁ ଆଉ ଛାଡ଼ି ଯାଇ ପାରିଲେ ନାହିଁ । ଗୋଟେ ମାଟି, ଗୋଟେ ଭୂଖଣ୍ଡ ତାଙ୍କୁ ପ୍ରବଳ ଭାବରେ ମୋହିଦେଲା ।

କ୍ଷୁଦ୍ର କ୍ଷୁଦ୍ର ସାଇରୀ ପରି ବେଦନାର୍ଦ୍ର ଗଜଲର ଧାଡ଼ି ପରି ଜିବ୍ରାନଙ୍କ ରଚନା । ମୁହୂର୍ତ୍ତଗୁଡ଼ିକ ସୁଖର ହେଉ ବା ଦୁଃଖର ହେଉ ସବୁ ଅମୃତଲଗ୍ନ ପରି ଜୀବନକୁ ଭରି ଦିଅନ୍ତି । ସେ ଅନୁଭବ ସବୁ ସ୍ୱତଃ ଜୀବନକୁ ପ୍ରସାରିତ କରିଦିଏ ।

ବର୍ଷର ସବୁଦିନ ଫସଲ କାଟିବାର ଦିନ । ସବୁ ଋତୁ ହେଉଛି କ୍ଷେତ କାଟିବାର ବେଳ । ପ୍ରେମର ସୁତୁଙ୍ଗ ମହଲ ତୋଳିବା ପାଇଁ ହୁଏତ ଜଣେ ନାରୀକୁ ବେଶୀ କିଛି ପରିଶ୍ରମ କରିବା ଦରକାର ନାହିଁ । ତା'ର ପ୍ରିୟ ପୁରୁଷଟିକୁ ସେ ପ୍ରଥମେ ବୁଝିବା ଆବଶ୍ୟକ । ଯେଉଁ ନାରୀ ପୁରୁଷକୁ ପ୍ରଥମେ ବୁଝିପାରେ ନାହିଁ ତା'ର ସେ ପୁରୁଷ ପ୍ରତି ବସ୍ତୁତଃ କୌଣସି ପ୍ରେମ ନ ଥାଏ କି ବିଶ୍ୱାସ ନଥାଏ । ପୁରୁଷର ଆତ୍ମାକୁ ଟିକିଏ ବି ନ ବୁଝି ଦେହଦାନ କରୁଥିବା ନାରୀଟିଏ ଦେହଜୀବୀ ବେଶ୍ୟା ନୁହେଁ ତ ଆଉ କ'ଣ ?

'ପ୍ରଫେଟ'ର ନାୟକ ନିଜେ ଯେପରି ଜିବ୍ରାନ; ଯେ ନିଜକୁ ମଣିଷର ଶୁଭଚିନ୍ତକ ଦେବଦୂତ ଜ୍ଞାନ କରିଛନ୍ତି ।

ପ୍ରେମ ସବୁବେଳେ ପ୍ରେମରେ ହିଁ ପରିପୂର୍ଣ୍ଣ ହୋଇ ରହିଥାଏ । ଜିବ୍ରାନ କହିଛନ୍ତି; ସୌନ୍ଦର୍ଯ୍ୟ ଏକ ମନ୍ତ୍ରମୁଗ୍ଧ ଚିତ୍ତ । ସୌନ୍ଦର୍ଯ୍ୟ ଏପରି ଏକ ପ୍ରତିମା ଆଖି ବନ୍ଦ କରିଥିଲେ ବି ଜଣେ ପ୍ରତିମାକୁ ଦେଖି ପାରୁଥିବ ।

ସୌନ୍ଦର୍ଯ୍ୟ ହେଉଛି ପୁଣି ଜୀବନ ।

ପ୍ରଫେଟ୍ ତାଙ୍କର ପ୍ରିୟ ନଗରବାସୀମାନଙ୍କୁ ପ୍ରବୋଧନା ଦେଇ କହୁଛନ୍ତି, କୌଣସି ଅନ୍ୱେଷଣ କଦାପି କାହାର ବିଫଳ ହୁଏନାହିଁ ।

ସୁଖର ଲାଳସା ପ୍ରକୃତରେ ଆତ୍ମାର ମହାନ ଆକାଂକ୍ଷାକୁ ପ୍ରାଣରୁ ମାରିଦିଏ । ଆକାଂକ୍ଷା ନ ଥିବା ସେମିତି ଘର ଯେପରି କାହାର କବରଖାନା ନ ହେଉ ।

ଖଲିଲ ଜିବ୍ରାନ ଜୀବନର ଅନେକ କାଳ ଦେଶାନ୍ତରୀ ହୋଇ ରହିଥିଲେ । ଦାରୁଣ ନିର୍ବାସିତ ଜୀବନଯାପନ କରୁଥିଲେ ।

ଦୀର୍ଘକାଳ ଧରି ଆମେରିକାରେ ଅବସ୍ଥାନ କରିଥିଲେ । ସେ ମାତ୍ର ଜୀବନରେ ବଞ୍ଚିଥିଲେ ୪୮ ବର୍ଷ । ୧୮୮୩ ଖ୍ରୀ:ରୁ ୧୯୩୧ ଖ୍ରୀ: ପର୍ଯ୍ୟନ୍ତ । ଏଇ ମାତ୍ର ଜୀବନ କାଳ ଭିତରେ ସେ ଜଣେ ହିବ୍ରୁଋଷି ପରି ଜୀବନ ବଞ୍ଚିଥିଲେ । ମୁକ୍ତିର ସ୍ୱାଦ ଖୋଜିଥିଲେ । ମାନବାତ୍ମାର ଜୟ ଜୟକାର କରିଥିଲେ ।

ଜୀବନର ଗୌରବକୁ କିନ୍ତୁ ସବୁବେଳେ ପ୍ରତିପାଦନ କରିଥିଲେ । ପ୍ରେମ ବିଷୟରେ ଜିବ୍ରାନ ଠାଏ ଲେଖିଛନ୍ତି, 'For even as love crowns you so shall he crucify you, even as he is for your growth so is he for your Priming. (The Prophet— Khalil Gibran)' ।

ତାଙ୍କ ପୁସ୍ତକ ଗୁଡ଼ିକର ଇଂରାଜୀ ଅନୁବାଦ ହେଲେ ଏହିପରି ହେବ । ଦି ପ୍ରଫେଟ୍, ଦି ୱାଣ୍ଡରର, ସେଣ୍ଡ ଏଣ୍ଡ ଫୋମ୍, ଦି ମେଡ଼ମେନ, ଦି ଭେଲି, ଟିଅର ଏଣ୍ଡ ଲାଫଟର, ବିଟୁଇନ ନାଇଟ ଏଣ୍ଡ ମୋରଜ, ସିକ୍ରେଟସ୍ ଅଫ ଦି ହାର୍ଟ, ସ୍ପିରିଟ ରିବେଲିୟସ, ଦି ବ୍ରୋକ ନ ୟୁଇଙ୍ଗସ୍ ଇତ୍ୟାଦି ଖଲିଲ ଜିବ୍ରାନଙ୍କ ଚିନ୍ତାପ୍ରବୋଧକ ପୁସ୍ତକ ।

ପବିତ୍ର ବିବାହ ବିଷୟରେ ଜିବ୍ରାନ ତାଙ୍କ ନାୟକ ମୁହଁରେ କୁହାଇଛନ୍ତି-ପ୍ରେମକୁ ଏକ ବନ୍ଧନ କରି ପକାଇବ ନାହିଁ ।

'ତୁମେ ପରସ୍ପର ପରସ୍ପରର ପାତ୍ରକୁ ପୂର୍ଣ୍ଣ କରିଦିଅ । କିନ୍ତୁ ଗୋଟିଏ ପାତ୍ରରୁ ପାନ କରିବାର ଲାଳସା ରଖନାହିଁ ।'

ଜିବ୍ରାନ ଗଳ୍ପ କବିତା, ନାଟକ ଉପନ୍ୟାସ ଆଜି ଯେଉଁ ରଚନା ତାଙ୍କ ପ୍ରିୟ ପାଠକମାନଙ୍କ ପାଇଁ ଛାଡ଼ି ଦେଇଯାଇଛନ୍ତି ସେ ସବୁ ବସ୍ତୁତଃ ଉତ୍ତମ ଜୀବନ ଚର୍ଯା ପାଇଁ ମୂଲ୍ୟବାନ ଅନୁଜ୍ଞାର ଏକ ଏକ କୋଷ ।

ତାଙ୍କ ଲେଖାରେ ସତରେ ପର୍ବତ ଆଡୁ ସମୁଦ୍ର ଆଡ଼କୁ ଯେମିତି ପବନ ବହି ଯାଉଥାଏ । ଜଳସ୍ଥଳ ସବୁ ଦିଗ୍‌ବଳୟରେ ଯେମିତି ବହୁ ବର୍ଣ୍ଣିଳ ଫୁଲ ସବୁ ଫୁଟି ଯାଉଥାଏ । ବାଧା ବନ୍ଧନ ନମାନି ଅବାଧରେ ଆକାଶରେ ପକ୍ଷୀମାନେ ଯେପରି ଉଡ଼ିଯାଉଥାନ୍ତି ।

ଜିବ୍ରାନଙ୍କର ଲେଖାରେ ମନୁଷ୍ୟମାନେ କେଉଁଠି କିପରି ଦୁଃଖ ଭୋଗୁଥାନ୍ତି ତ ଗୋଟେ ସୁନ୍ଦର ସମୟ, ସୁନ୍ଦର ପରିବେଶ ପାଇଁ ପରିଶ୍ରାନ୍ତ ନ ହୋଇ ପୁଣି ଆଗକୁ ଚାଲୁଥାନ୍ତି ।

—o—

# ଦସ୍ତୟୋଭସ୍କି

ବିଶ୍ୱ ସାହିତ୍ୟର ମହାନ ଜୀବନବାଦୀ ଶିଳ୍ପୀ ଦସ୍ତୟୋଭସ୍କିଙ୍କ ଜୀବନ ଥିଲା ପଙ୍କ ଓ ପଙ୍କଜର । ପଙ୍କିଳ ଜୀବନ ଭିତରକୁ ସେ ଓହ୍ଲାଇ ଯାଇଥିଲେ; ଅଥଚ୍ କୋଟି ଲାବଣ୍ୟର ଅମୃତମୟ ପଦ୍ମକୁ ସେ ତୋଳି ପାରିଥିଲେ ।

ଜୀବନର ଅତଳ ଗହ୍ୱରକୁ ଦସ୍ତୟୋଭସ୍କି ଦେଖି ପାରିଥିଲେ । ଏତେ ସଚ୍ଚା ଜୀବନବାଦୀ ଶିଳ୍ପୀ ସତରେ ତାଙ୍କ ପରି ପୃଥିବୀରେ ଆଉ କାହାନ୍ତି ?

ଦସ୍ତୟୋଭସ୍କି ଯେଉଁ ପରିବେଶ ଭିତରେ ବଞ୍ଚିଥିଲେ ତାହା ଥିଲା ତାଙ୍କ ଜୀବନଦୃଷ୍ଟି ନିର୍ମାଣର ଏକୁଡ଼ିଶାଳ । ଯେଉଁ ପରିବାରରେ ପିତାଙ୍କ ହାତରେ ନିରୀହ ମଣିଷଙ୍କ ପିଠିରେ ଚ଼ାବୁକ ମାରିବା ପାଇଁ ଚ଼ମଡ଼ାର ଚ଼ାବୁକ ସବୁବେଳେ ମହଜୁତ ଥାଏ ଯେଉଁଠି ମାଆଙ୍କ ଚ଼ରିତ୍ରକୁ ନେଇ ବାପର ସନ୍ଦେହ ସେଠି ଅମାପ ସୃଜନଶୀଳ ମନନେଇ ଜନ୍ମ ହୋଇଥିବା ଶିଶୁଟି କିପରି ବଞ୍ଚିଥିଲା ତାହା ଅନୁମେୟ ।

ଦସ୍ତୟୋଭସ୍କିଙ୍କ ଜୀବନ ବଞ୍ଚିବାର ଚ଼ତୁର୍ଦ୍ଦିଗରେ ଥିଲା ପୁଞ୍ଜିଭୂତ ଘୃଣା, ଅତ୍ୟାଚ଼ାର, ଲାମ୍ପଟ୍ୟ, ଶୋଷଣ, ଜୁଲମ ଆଉ ଅପରାଧୀମାନଙ୍କର ଆଡ଼୍ଡ଼ା । ସମସ୍ତଙ୍କ ଜାଣତରେ ଦସ୍ତୟୋଭସ୍କିଙ୍କ ପିତା ପରଦାରାସକ୍ତ ଥିଲେ । ବେଶ୍ୟାଳୟରେ ରାତି ପୁହାଉଥିଲେ । ପାରିବାରିକ ଶୃଙ୍ଖଳା ଓ ଶୁଚ଼ିତା ଦେ ·  କିଛି ତାଙ୍କର ନ ଥିଲା ।

ଯେଉଁ ଭୂମିଦାସମାନେ ବର୍ଷ ବର୍ଷ ଧରି ଅତ୍ୟାଚ଼ାରିତ ହେଉଥିଲେ ସେମାନେ ଦିନେ ଦସ୍ତୟୋଭସ୍କିଙ୍କ ପିତାଙ୍କୁ ସଂଗଠିତ ହୋଇ ନିର୍ମମ ଭାବରେ ହତ୍ୟାକଲେ ।

ଏହି ବିଭତ୍ସ ହତ୍ୟା କାହାଣୀ ହିଁ ଦସ୍ତୟୋଭସ୍କିଙ୍କ ବିଶ୍ୱପ୍ରସିଦ୍ଧ ଉପନ୍ୟାସ 'ଦି ବ୍ରଦର୍ସ କର୍ମାଯୋବ'ର ବିଷୟ ପିଣ୍ଡ ।

ଫିଓଦର ନିଖାଇଲୋଭିଚ୍ ଦସ୍ତାୟୋଭସ୍କି ମସ୍କୋରେ ୧୮୨୧ ମସିହା ଅକ୍ଟୋବର ୩୦ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ବାଲ୍ୟ ଜୀବନ ଗୋଟେ ଡାକ୍ତରଖାନା ପରିବେଶ ଭିତରେ ହିଁ କଟିଥିଲା । ମାଆଙ୍କ ବିକ୍ଷତ ଜୀବନ  ପ୍ରତି ଦସ୍ତୟୋଭସ୍କି ଅତ୍ୟନ୍ତ ସମ୍ବେଦନଶୀଳ ଥିଲେ ।

ସେ ଥିଲେ ଜୀବନ ଆରମ୍ଭରୁ ଏକାନ୍ତ ନିଃସଙ୍ଗ ଓ ଏକାକୀ । ତାଙ୍କର କୌଣସି ବାଲ୍ୟ ବନ୍ଧୁଙ୍କୁ ଦସ୍ତୟୋଭସ୍କି ପିତାଙ୍କ ଡରରେ ଘରକୁ ନିମନ୍ତ୍ରଣ କରି ଆଣିପାରୁ ନ ଥିଲେ । ସବୁବେଳେ ଭୟ ଓ ହତାଶା  ଭିତରେ ଜୀବନ ବଞ୍ଚିଥିଲେ ।

ଦସ୍ତୟୋଭସ୍କିଙ୍କ ମହାନ ଉପନ୍ୟାସ 'ପୋର ଫୋକ୍' ହେଉଛି ସୋଭିଏତ୍ ଦେଶର ଅଗଣିତ ନିରନ୍ନଙ୍କ ପ୍ରତି ସମ୍ବେଦନଶୀଳତାର ଅଭିଲିପି; ଯେଉଁଥିରେ ଦସ୍ତୟୋଭସ୍କି ତାଙ୍କ ପ୍ରାଣର ଭାଷାକୁ ହିଁ ପ୍ରକାଶ କରିଛନ୍ତି ।

ଦସ୍ତୟୋଭସ୍କି ଥିଲେ ଏପରି ଜଣେ ଶିଳ୍ପୀ ଯେ ମନୁଷ୍ୟର ଅନ୍ତଃସ୍ଥଳର ସହଜାତ ପ୍ରାଣପିପାସାକୁ ହିଁ ଲେଖିଥିଲେ; ଯାହାଙ୍କ ଲେଖାରେ ବଞ୍ଚିଥିବା ମଣିଷର ଜୀବନ ଛବି ଅଙ୍କିତ

ହୋଇଥିଲା । ବଞ୍ଚିଥିବା ମଣିଷମାନେ ହିଁ ଥିଲେ ଦସ୍ତୟୋଭସ୍କିଙ୍କ ଉପନ୍ୟାସର ଚରିତ୍ର । ତାଙ୍କ ଉପନ୍ୟାସ ସବୁ ଯେପରି ସଂଗ୍ରାମଶୀଳ ଜୀବନର ଏକ ଏକ ଦୁଃଖଦ କାହାଣୀ ।

ଦସ୍ତୟୋଭସ୍କି ଥିଲେ ଜଣେ ଅନନ୍ୟ ନାରୀ ପ୍ରେମୀ; ଯାହା ତାଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ତୃଷିତ କରି ରଖିଥିଲା । ଦସ୍ତୟୋଭସ୍କି ଯେତିକି ଶ୍ରଦ୍ଧା ଓ ପ୍ରେମ ପାଇଥିଲେ ଜୀବନରେ ସେତିକି ନିନ୍ଦା ଓ ଘୃଣା ବି ପାଇଛନ୍ତି । ସେ ମଣିଷର ଜୀବନକୁ ଲେଖିବାର ସାଧନାର ଶିଖର ଆରୋହଣ କରିପାରିଥିଲେ । ମଣିଷ ଜୀବନର ବ୍ୟଥା ଓ ବଞ୍ଚନାକୁ ଲେଖିବାରେ ସେ କେବଳ ସୋଭିଏତ୍ ଦେଶରେ ନୁହେଁ ସମଗ୍ର ବିଶ୍ୱରେ ହିଁ ଜଣେ ଅଗ୍ରଣୀ ଶିଳ୍ପୀ ଥିଲେ ।

ଜୀବନର ବ୍ୟର୍ଥତା ଓ ପ୍ରଣୟଜୀବନର ବିଫଳତା ତାଙ୍କୁ ପ୍ରକୃତରେ ନୈରାଶ୍ୟବାଦୀ କରିଥିଲା । ତାଙ୍କର ଗଭୀର ପ୍ରାଣପିପାସା ତାଙ୍କୁ ସର୍ବଦା ଉଦ୍‌ବେଳିତ କରି ରଖିଥିଲା । ଠିକ୍ ବିକ୍ଷୁବ୍ଧ ସାଗର ପରି ତାଙ୍କ ଜୀବନ ସବୁବେଳେ ଅଶାନ୍ତ ହୋଇଥିଲା । ଚରମ ମାନସିକ ବିପର୍ଯ୍ୟୟରୁ ରକ୍ଷା ପାଇବା ପାଇଁ ସେ ଦିନ ଦିନ ରାତି ରାତି ଧରି କେବଳ ବହି ପଢ଼ିଛନ୍ତି ଓ ନିଶା ଖାଇଛନ୍ତି; ଅଥଚ ବ୍ୟର୍ଥତା ଆଉ ହତାଶାରୁ ରକ୍ଷା ପାଇପାରିନାହାନ୍ତି । ଦସ୍ତୟୋଭସ୍କି ଥିଲେ ଆଜନ୍ମ ଜଣେ ଅପସ୍ମାର ରୋଗୀ । ମଦ ପିଇ ଜୁଆ ଖେଳି ସେ ସବୁବେଳେ ସଇତାନ ହେଉଥିଲେ । ଦସ୍ତୟୋଭସ୍କିଙ୍କ ଜୀବନ ତାଙ୍କ ପରିବାରର ସମସ୍ତଙ୍କୁ ଯେପରି ଆତଙ୍କିତ କରି ରଖିଥିଲା । ଗୋଟେ ଅନମନୀୟ ଜୀବନ ଯାପନ ଥିଲା ତାଙ୍କ ଜୀବନର ବିଚିତ୍ର ବିଳାସ ।

ଦସ୍ତୟୋଭସ୍କି ବିଶ୍ୱସାହିତ୍ୟର ଜଣେ ଅନନ୍ୟ କଥାକାର । ବିଶ୍ୱର ଅଗଣିତ ପାଠକମାନଙ୍କ ଆଗରେ ସେ ଯେଉଁ ଉପନ୍ୟାସ ସବୁ ଛାଡ଼ିଯାଇଛନ୍ତି ତାହା କାଳ କାଳକୁ ଦୁର୍ଲଭ ସାହିତ୍ୟ ସମ୍ପଦ ରୂପେ ଗୃହୀତ ହେଉଥିବ । 'ଦି ବ୍ରଦର୍‌ସ କର୍ମାଯୋଭ୍', 'ଦି ପୋର ଫୋକ୍', 'ଦି ହାଉସ ଅଫ ଦି ଡେଡ୍', 'ଇନସଲ୍‌ଟେଡ୍ ଏଣ୍ଡ ଦି ଇନ୍‌ଜିଓଡ୍', 'ଦି ଗେମ୍ବଲର', 'ଦି କ୍ରାଇମ ଏଣ୍ଡ ପନିସ୍‌ମେଣ୍ଟ', 'ଦି ଇଡିୟଟ୍', 'ଦି ଇଟରନାଲ ହଜବେଣ୍ଡ୍', 'ଦି ପୋଜେଷ୍ଟ', 'ଦି ନୋଟ୍‌ସ ଫ୍ରମ ଦି ଅଣ୍ଡରଗ୍ରାଉଣ୍ଡ' ଆଦି ଉପନ୍ୟାସ ସବୁ ଦସ୍ତୟୋଭସ୍କିଙ୍କ ଏକ ଏକ ଅମରକୃତି । ତାଙ୍କ ଉପନ୍ୟାସର ମଣିଷ ଭିତରେ ଥିବା ଅମାପ ସାଧୁତା ଓ ଅନିବାର୍ଯ୍ୟ ସଇତାନୀ ସମାନ ଭାବରେ ଚିତ୍ରିତ ହୋଇଛି । ଦସ୍ତୟୋଭସ୍କିଙ୍କ ଦୃଷ୍ଟିରେ ପାପପୁଣ୍ୟ, ଭଲମନ୍ଦ, ପ୍ରେମଘୃଣା ସବୁର ସମ୍ମିଶ୍ରିତ ଆଲେଖ୍ୟ ହେଉଛି ଏଇ ମଣିଷର ଜୀବନ୍ ।

ଦସ୍ତୟୋଭସ୍କି ମଣିଷ ବିଷୟରେ ନିହାତି ନୀତିବାଦୀ ନୁହନ୍ତି କି ପ୍ରକୃତରେ ମଣିଷ ଜୀବନ ସମ୍ପର୍କରେ ସେ ଆଦୌ ନୈରାଶ୍ୟବାଦୀ ବି ନୁହନ୍ତି । ଜୀବନ ସବୁମତେ ସୁନ୍ଦର ବୋଲି ସେ ନିଜେ ଉପଲବ୍ଧି କରିଛନ୍ତି । ସେ କେତେବେଳେ ବି ଆତ୍ମବିଳାସୀ ଲେଖକ ନ ଥିଲେ । ତାଙ୍କ ଲେଖାସବୁ ନ ଥିଲା କଳ୍ପନାର କୁଞ୍ଜବନ । ସେ ଦୁଃଖରେ ଭାଙ୍ଗି ପଡ଼ିଛନ୍ତି ତ ଈର୍ଷା କ୍ରୋଧରେ ଅସମ୍ଭାଳ ହୋଇପଡ଼ିଛନ୍ତି । ସେ ଗତାନୁଗତିକ ଘଷରା ଜୀବନଠାରୁ ନିଜର ମନ ଓ ଆତ୍ମାକୁ ଯେପରି ଘୁଞ୍ଚାଇ ନେଇଛନ୍ତି । ଏହି ଘଷରା ଜୀବନରୁ ମୁକ୍ତି ପାଇଁ ସେ ଦାମ୍ପତ୍ୟ ପ୍ରଣୟକୁ ପଛ କରି ଦେଇଛନ୍ତି । ଗୋଟିଏ ନୂଆ ଜନପଦର ନୂତନ ସକାଳ

ଯେପରି ଜଣକର ମନ ମୋହିଦିଏ ଜଣକ ପରେଜଣେ ତରୁଣୀ ଦସ୍ତୟୋଭସ୍କିଙ୍କୁ ସେହିପରି ପ୍ରବୋଧିତ କରି ଦେଇଥିଲେ । ନିଷିଦ୍ଧ ପ୍ରେମ ତାଙ୍କୁ ବାରବାର ଆକୃଷ୍ଟ କରିଥିଲା । ସୁଖ ହେଉ କି ଦୁଃଖ ହେଉ ଅନାଗତ ମୁହୂର୍ତ୍ତକୁ ଭେଟିବାର ଦୁର୍ବାର ଅଭିଯାନ ତାଙ୍କୁ ସବୁବେଳେ ଉତ୍ସୁକ କରି ରଖିଥିଲା ।

ଗୋପନ ପ୍ରେମର ବ୍ୟାକୁଳତା ତେଣୁ ତାଙ୍କ ଉପନ୍ୟାସର ବହୁ ସ୍ଥଳରେ ଫୁଟି ଉଠିଛି ।

ଊନବିଂଶ ଶତାବ୍ଦୀର ତିନିଜଣ ଜ୍ଞାନୀ, ଚିନ୍ତାନାୟକ ତଥା ସାରସ୍ୱତ ପୁରୁଷ ଭାବେ ଅନେକେ କିରକେଗାର୍ଡ୍, ଫେଡ୍‌ରିକ୍ ନିତ୍‌ଶେଙ୍କ ସହିତ ଦସ୍ତୟୋଭସ୍କିଙ୍କ ନାମ ଯୋଗ କରିଥାଆନ୍ତି ।

ଦସ୍ତୟୋଭସ୍କିଙ୍କ ମୃତ୍ୟୁର ବହୁ ବର୍ଷ ପରେ ସାମ୍ବାଦିକମାନେ ଦିନେ ଯେତେବେଳେ ତାଙ୍କ ସ୍ତ୍ରୀଙ୍କୁ ଦସ୍ତୟୋଭସ୍କିଙ୍କ ଜୀବନୀ ଲେଖିବା ପାଇଁ ଅନୁରୋଧ କଲେ ସେତେବେଳେ ତାଙ୍କ ସ୍ତ୍ରୀ ଚିତ୍କାର କରି କହିଥିଲେ, "ଏବେ ବି ତାଙ୍କ ମୁହଁ ମନେ ପଡ଼ିଲେ ମୁଁ ଭୟରେ ଚିତ୍କାର କରି ପକାଉଛି" । ସତରେ ମଦଖାଇ ଜୁଆଖେଳି ଫେରିଲାବେଳେ ସେ ଭୟଙ୍କର ଦିଶୁଥିଲେ । ତାଙ୍କ ଚେହେରା ଓ ଆଚରଣକୁ ସହ୍ୟ କରିବା ତାଙ୍କ ପ୍ରତି ସବୁଠାରୁ ବେଶୀ ସହାନୁଭୂତିଶୀଳ ବ୍ୟକ୍ତି ପକ୍ଷେ ବି ସମ୍ଭବ ହେଉ ନ ଥିଲା ।

ନିତି ନିତି ସଇତାନ ହେଉଥିବା ଦସ୍ତୟୋଭସ୍କିଙ୍କ ପରି ଜଣେ ଲୋକ କେତେ ପୁଷ୍ପ କୋମଳ ସୌନ୍ଦର୍ଯ୍ୟର କଥା ଲେଖିଛନ୍ତି ସତରେ; ବିଶ୍ୱ ସାହିତ୍ୟରେ ଯାହାର ତୁଳନା ନାହିଁ । ତାଙ୍କ ସାହିତ୍ୟରେ ପୋଲା କଥା କିମ୍ବା ଧାର୍ମିକ ସ୍ଲୋଗାନ ଟିକିଏ ବି ନ ଥିଲା । ଜୀବନ ସଂପର୍କିତ ନିରୁତା ବାସ୍ତବତାକୁ ହିଁ ସେ ଲେଖିଛନ୍ତି ।

ପଙ୍କରୁ ପଦ୍ମ ଜାତ ହେଲା ପରି କ୍ଳେଦାକ୍ତ ଜୀବନ ଭିତରୁ ଗୋଟେ ଅନନ୍ୟ ଉତ୍ତରଣର ସମ୍ଭାବନାକୁ ଦସ୍ତୟୋଭସ୍କି ଯେପରି ଦେଖି ପାରୁଥିଲେ ।

ପ୍ରତ୍ୟେକ ମଣିଷ ଭିତରେ ଯେଉଁ ପବିତ୍ର କାରୁଣ୍ୟ ଅଛି ବୌଦ୍ଧିକ ଜୀବନ ଲାଭ ପାଇଁ ସମସ୍ତେ ତାକୁ ନିଜ ଭିତରେ ସଞ୍ଚାଳିତ କରିବା ଆବଶ୍ୟକ ବୋଲି ଦସ୍ତୟୋଭସ୍କି ତାଙ୍କ ସାରସ୍ୱତ ବାର୍ତ୍ତାରେ କହିଛନ୍ତି ।

ଜୀବନରେ ନିରନ୍ତର ସେ ଯନ୍ତ୍ରଣା ହିଁ ଭୋଗୁଥିଲେ । ଅଥଚ ନୂଆ ସ୍ୱପ୍ନ, ନୂଆ ପ୍ରଣୟରେ ମଜଗୁଲ ହୋଇଯିବା ପାଇଁ ସେ ଅଧୀର ହୋଇ ଉଠୁଥିଲେ । ତାଙ୍କ ଜୀବନ ବଞ୍ଚିବାର ବୈଚିତ୍ର୍ୟ ହିଁ ଏଇଠି ।

ଦସ୍ତୟୋଭସ୍କି ବାରବାର ପ୍ରଣୟର ବ୍ୟର୍ଥତା ସହିବା ସହିତ ରାଜନୀତିକ ଆକ୍ରୋଶର ଶିକାର ହୋଇଥିଲେ । ଅନ୍ଧକାର କାରାଗୃହ ଭିତରେ ସେ ମାସ ମାସ ବର୍ଷ ବର୍ଷ ଧରି ମୃତ୍ୟୁ ପାଇଁ ଯେପରି ଅପେକ୍ଷା କରିଛନ୍ତି ।

ପ୍ରେମରେ ଅସହ୍ୟ ଦୁଃଖ ଦେଇଥିବା ଦସ୍ତୟୋଭସ୍କିଙ୍କ ପ୍ରଣୟିନୀମାନେ କିନ୍ତୁ ତାଙ୍କ ଉପନ୍ୟାସର ନାୟିକା ହୋଇଛନ୍ତି ।

ମାରିୟାଭଙ୍କୁ ଦସ୍ତୟୋଭସ୍କ ଜୀବନର ସାଥୀ କରି ପାଇଥିଲେ ସତ ନିମିଷକେ ତାହା ପୁଣି ମରୀଚିକା ପାଲଟି ଗଲା ।

ସତ କହିଲେ, ତାଙ୍କୁ ଏ ପୃଥିବୀରେ କୌଣସି ନାରୀ ଖୁସି କରି ପାରି ନାହାନ୍ତି କି ସେ ବି କେଉଁ ନାରୀର ଜୀବନ ପାତ୍ର ଭରି ଦେଇ ପାରି ନାହାନ୍ତି । ଅଥଚ୍ ଯେତେ ଈଶ୍ୱରଙ୍କ ପ୍ରତି ନୁହେଁ ସେତେ ଅଧିକ ନାରୀଙ୍କ ପ୍ରତି ତାଙ୍କର ଅସରନ୍ତି ଲାଳସା ସୃଷ୍ଟିହୋଇଛି ।

ନିଜର ଅସୁସ୍ଥ ଶରୀର, ଶେଷହୀନ ବ୍ୟର୍ଥତା ଆଉ ବିଡ଼ମ୍ବିତ ଦାମ୍ପତ୍ୟକୁ  ନେଇ ସେ ଯେପରି ବଞ୍ଚୁଥିଲେ ।

୧୮୬୪ ମସିହା ଏପ୍ରିଲ ୧୬ରେ ତାଙ୍କର ପତ୍ନୀ ମାରିୟା ମରିଗଲେ ତ ବନ୍ଧୁ ପ୍ରତିମ ତାଙ୍କର ଏକାନ୍ତ ଶୁଭାନୁଧ୍ୟାୟୀ ବଡ଼ଭାଇଙ୍କର ମୃତ୍ୟୁ ହେଲା ପାଖାପାଖି ୧୮୬୪ ମସିହା ଜୁଲାଇ ୧୦ ତାରିଖରେ ।

ତାଙ୍କର ଏକାଧିକ ପତ୍ନୀଙ୍କ ଆଡ଼କୁ ଦସ୍ତୟୋଭସ୍କି ଶ୍ରଦ୍ଧା ଓ ଅକଳନ୍ତି ବିଶ୍ୱାସର ହାତ ବଢ଼ାଇ ଥିଲେ ବି ତାଙ୍କ ବ୍ୟକ୍ତିଗତ ସ୍ୱାଧୀନତା ଅପହରଣ କରି ତାଙ୍କ ସାହିତ୍ୟ ସାଧନାରେ ବାଧା ସୃଷ୍ଟି କରିବାରେ ତାଙ୍କ ପତ୍ନୀମାନେ କିନ୍ତୁ ଓସ୍ତାଦ୍ ଥିଲେ । ଦସ୍ତୟୋଭସ୍କିଙ୍କ ଭିତରେ ଥିବା ନଭଶ୍ଚୁମ୍ବୀ ସୃଜନଶୀଳତାକୁ ସେମାନେ ଉପଲବ୍ଧି କରିବା ପାଇଁ ଅସମର୍ଥ ଥିଲେ।

ସେ ଦୃଷ୍ଟିରୁ ପତ୍ନୀମାନେ କାଳ କାଳ ଧରି ସ୍ୱାମୀମାନଙ୍କର ସ୍ୱାଭାବିକ ଶତ୍ରୁ— ଏହା ଥିଲା ଦସ୍ତୟୋଭସ୍କିଙ୍କ ଜୀବନରେ ଦାରୁଣ ଉପଲବ୍ଧି ।

ସାରାଜୀବନ ଶୋକ ଭୋଗିଥିବା ମଣିଷ ଆତ୍ମା ଓ ଅନ୍ତରରେ ସଚ୍ଚା ଖ୍ରୀଷ୍ଟିଆନ ପାଲଟିଯାଏ; ଯେ ମୁକ୍ତି ଓ ଗଭୀର ଚିତ୍ତ ପ୍ରଶାନ୍ତିକୁ କେବଳ ଉପଲବ୍ଧି କରିପାରେ ।

ସବୁ ଉପନ୍ୟାସରେ, ସବୁ ଚରିତ୍ରଙ୍କ ଭାଗ୍ୟରେ ଦସ୍ତୟୋଭସ୍କି ଯେପରି କରୁଣାନ୍ତକ ଉପସଂହାର ଆଙ୍କିଛନ୍ତି । ସବୁ ଜୀବନର ଅନ୍ତିମ ବାସ୍ତବତା ବୋଧେ ତାହା ।

ଆଜନ୍ମ ମୂର୍ଚ୍ଛାରୋଗ, ଅସହ୍ୟ ଦାରିଦ୍ର୍ୟ, ନାହିଁ ନ ଥିବା ମାନସିକ ଅବସନ୍ନତା ଭିତରେ ବଞ୍ଚିଥିବା ଦସ୍ତୟୋଭସ୍କିଙ୍କର ଜୀବନ ଦୀପ ଲିଭିଗଲା ୧୮୮୧ ମସିହା ଜାନୁୟାରୀ ୨୬ ତାରିଖରେ । ଗଭୀର ନିଶିଥରେ ତାଙ୍କ ହାତରେ କଲମ ଥିଲା ବେଳେ ।

ତାଙ୍କ ମୃତ୍ୟୁରେ ବିଶ୍ୱର ଏକ ମହାନ ସାରସ୍ୱତ ଜୀବନର ଅବସାନ ଘଟିଲା । ସବୁ ଜୀବନପ୍ରିୟ ପାଠକ ହୃଦୟରେ ଦସ୍ତୟୋଭସ୍କି କାଳ କାଳ ଧରି ଅବଶ୍ୟ ଅଭିଷିକ୍ତ ହୋଇ ରହିଥିବେ ।

—୦—

# ମାର୍ଟିନ୍ ହାଇଡ଼ିଗାର

ହାଇଡ଼ିଗାର ଏହି ସମୟ ଖଣ୍ଡର ଜଣେ ବିଶ୍ୱ ବିଖ୍ୟାତ ଦାର୍ଶନିକ । ସେ ଅସ୍ତିତ୍ୱବାଦୀ ଦାର୍ଶନିକଙ୍କ ପରି ପ୍ରବଳ ଭାବରେ ବିଚାର ବିରୋଧୀ । ବିଚାର ମଣିଷର ସହଜାତ ଆବେଗକୁ ମାରିଦିଏ ବୋଲି ସେ ଯୁକ୍ତି କରିଛନ୍ତି ।

ହାଇଡ଼ଗାର ଜଣେ ତେଜସ୍ୱୀ ଦିବ୍ୟ ଦ୍ରଷ୍ଟା । ମଣିଷ ଭିତରେ ଅମାପ ଶକ୍ତିକୁ ସେ ସ୍ୱୀକାର କରିଛନ୍ତି । ଈଶ୍ୱର ଅଛନ୍ତି, ଈଶ୍ୱର ନାହାନ୍ତି— ଏ ବିବାଦ ଭିତରେ ସେ ପଶି ନାହାନ୍ତି । ମଣିଷ କ'ଣ ଓ କାହିଁକି ଏ ପୃଥିବୀକୁ ଆସିଛି ବୋଲି ସେ ପ୍ରଶ୍ନ କରିଛନ୍ତି ।

ହାଇଡ଼ିଗାର ମଣିଷ ଶବ୍ଦ ପରିବର୍ତ୍ତେ ଡାସାଇନ (Dasein) ଶବ୍ଦ ବ୍ୟବହାର କରିଛନ୍ତି । ମଣିଷ ତାର ଯାବତୀୟ ଜଞ୍ଜାଳ ଓ ସାଂସାରିକ ଅଭିପ୍ରାୟ ଭିତରେ ଇତସ୍ତତଃ ବୁଲୁଥାଏ । 'Man is already out of doors is the open air of the world.' ହାଇଡ଼ିଗାର କହିଛନ୍ତି ମଣିଷର ଅଭିପ୍ରାୟ ଅଛି ବୋଲି ତାର ସଚେତନତା ଅଛି ।

ପ୍ରତିଟି ମଣିଷ ଅନୁପମ । ମଣିଷକୁ ଗୋଟିଏ ଜାତିରେ ଅନ୍ତଭୁକ୍ତ କରାଯାଇ ପାରିବ ନାହିଁ । ହାଇଡ଼ିଗାର ମଣିଷ କହିଲେ ଜୀଅନ୍ତା ମଣିଷକୁ ହିଁ ବୁଝିଛନ୍ତି, ଯେ ନିଜ ଇଚ୍ଛାରେ ଚଳ ପ୍ରଚଳ କରେ । ଜଗତରେ ମଣିଷ ଅଛନ୍ତି । ପର୍ବତମାନେ ବି ଅଛନ୍ତି । ମାତ୍ର ମଣିଷର ଅସ୍ତିତ୍ୱ ଅଛି । ମାତ୍ର ପର୍ବତମାନଙ୍କର ନାହିଁ । ହାଇଡ଼ିଗାର କିରକେଗାର୍ଡ଼ଙ୍କ ପରି କହୁଥିଲେ ଯେ; ମଣିଷ ବ୍ୟତୀତ ଜଗତ ନାହିଁ ।

ଜଗତ ହାଇଡ଼ିଗାରଙ୍କ ମତରେ ଗୋଟିଏ ଶୃଙ୍ଖଳାକୁ ବୁଝାଏ । ତାହା ସର୍ବଦା ଏକକ ବିଷୟ । ମଣିଷ ଏକ ନିବୁଜ ସତ୍ତା । ସର୍ବଦା ପୁଣି ଏକୁଟିଆ । ମଣିଷ ତା'ର ଅସ୍ତିତ୍ୱ ସଂପର୍କରେ ବିଶେଷ ସଚେ୍ତନ ବୋଲି ସେ ଉଦ୍‌ବିଗ୍ନ ହୋଇଥାଏ ।

ହାଇଡ଼ିଗାରଙ୍କ ମତରେ ସଂସାର ଏକ ବନ୍ଦୀଶାଳା । ମଣିଷ ମୁକ୍ତି କାମନାକୁ ସଂସାର ଅବରୁଦ୍ଧ କରି ରଖିଥାଏ ।

ପୃଥିବୀର ବହୁ ପ୍ରାକ୍ତନ ଧର୍ମ ଏଇକଥା ପ୍ରଚାର କରିଛି । ଅସଂଖ୍ୟ ସମ୍ଭାବ୍ୟ ପରିସ୍ଥିତି ଭିତରେ ମଣିଷ ବଞ୍ଚୁଥିବାରୁ ମଣିଷର ସ୍ୱାଧୀନତା ଅପେକ୍ଷା ବରଂ ସୀମାବଦ୍ଧତା ବେଶୀ । କାରଣ ତା ଇଚ୍ଛା ବିରୋଧରେ ସେ ଗୋଟିଏ ପରିସ୍ଥିତିରେ ବଞ୍ଚେ ।

ମଣିଷ ତା'ର ସୁଖ ଦୁଃଖକୁ କେବଳ ଗୋଟିଏ ଦିଗରୁ ବା ପାଖରୁ ଦେଖିପାରେ । ମଣିଷ ପାଇଁ ବିପଦ ସବୁ ଏମିତି । ତା'ର ସବୁ ପାର୍ଶ୍ୱକୁ ମଣିଷ ଦେଖି ପାରେ ନାହିଁ । ପ୍ରୟୋଜନୀୟତା ହେଉଛି ତା ଦେଖିବାର ମାପକାଠି ।

ହାଇଡ଼ିଗାରଙ୍କ ଦୃଷ୍ଟିରେ ଅତୀତ ବର୍ତ୍ତମାନ ଅପେକ୍ଷା ଭବିଷ୍ୟତ ହେଉଛି ମଣିଷ ଜୀବନରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାଳ । ନଶ୍ୱରତା (Temporality) ହାଇଡ଼ିଗାରୀୟ ଦର୍ଶନର ଅନ୍ୟ ଏକ ପ୍ରସ୍ଥ । ଡାସାଇନ ହେଉଛି କେୟାର । ପତନଶୀଳତା, ସମ୍ଭାବନା ଓ ଫାକ୍‌ଟିସିଟିକୁ ନେଇ କେୟାର ଗଢ଼ା ହୋଇଛି ।

ମଣିଷ ସବୁ କିଛି ଉର୍ଦ୍ଧ୍ୱରେ ଏକ କାଳ ପୀଡ଼ିତ ପ୍ରାଣୀ । ମୃତ୍ୟୁ ତା ଜୀବନର ଦାରୁଣ ପରିସମାପ୍ତି ଆଣେ । ମଣିଷ ଭବିଷ୍ୟତ ଆଡ଼କୁ ମୁହାଁଇଛି ବୋଲି ଭବିଷ୍ୟତ ତା ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ।

ନିତ୍ସେ ଓ କିଅରକେଗାର୍ଡଙ୍କ ପରି ହାଇଡିଗାର ବିଚାରର ପରମ ଶତ୍ରୁଥିଲେ । ୧୮୮୯ ଖ୍ରୀ: ରେ ତାଙ୍କର ଜନ୍ମ । ହାଇଡିଗାରଙ୍କୁ ପୃଥିବୀର ସମସ୍ତେ ବିଇଂ (Being) ର ଦାର୍ଶନିକ ବୋଲି କହନ୍ତି ।

ଦେକାର୍ତେ ଯେପରି ଥରେ କହିଥିଲେ, " I think, therefore I am," ହାଇଡିଗାର ସେହିପରି ମଣିଷର ସଚେ଼ତନତାକୁ ମଣିଷ ଜୀବନର ଗୁରୁତ୍ୱପୂର୍ଣ୍ଣ ଅଂଶ ବୋଲି ବିଚ଼ାର କରିଛନ୍ତି ।

ସତ୍ୟ ମଣିଷ ଜୀବନକୁ ନେଇ ପ୍ରକଟିତ ହୁଏ । ମଣିଷ ବ୍ୟତିରେକ ସତ୍ୟ ଉପଲବ୍ଧି ଆଉ କିଏ କରିବ । ସଚ୍ଚା ସ୍ଥିତିବାଦୀମାନଙ୍କ ପରି ହାଇଡିଗାର ମାନବକେନ୍ଦ୍ରିକ ଦର୍ଶନ ପ୍ରଚ଼ାର କରିଛନ୍ତି । ମହାକାଳ, ପ୍ରକୃତି, ଈଶ୍ୱର ସବୁ ମଣିଷକୁ କେନ୍ଦ୍ର କରି ଏତେ ଅର୍ଥପୂର୍ଣ୍ଣ ହୋଇଛି । ପଶୁର କାଳ, ପ୍ରକୃତି ବା ଈଶ୍ୱର ଚେ଼ତନା ବୋଲି କିଛି ନାହିଁ ।

ହାଇଡ଼ିଗାରଙ୍କ ଚି଼ନ୍ତନ ବିଶ୍ୱର ଧର୍ମ, ଦର୍ଶନ, ସାହିତ୍ୟ ତଥା ସୌନ୍ଦର୍ଯ୍ୟ ବିଜ୍ଞାନକୁ ପ୍ରଭାବିତ କରିଛି । ଶବ୍ଦମାନଙ୍କ ପ୍ରତି ହାଇଡ଼ିଗାରଙ୍କ ସମ୍ମାନ ଅତୁଳନୀୟ । ଶବ୍ଦମାନଙ୍କ ଭିତରେ ସତ୍ୟ ଲୁଚିରହିଥାଏ ବୋଲି ହାଇଡ଼ିଗାର ବିଶ୍ୱାସ କରିଛନ୍ତି । ତାଙ୍କ ମତରେ ଶବ୍ଦ ହିଁ ଈଶ୍ୱର ବ୍ରହ୍ମ । ଶବ୍ଦ ହେଉଛି ମଣିଷର ଅପୂର୍ବ ଶକ୍ତି । ମଣିଷ ଶବ୍ଦ ଜରିଆରେ ତା'ର ପ୍ରେମ, ଶ୍ରଦ୍ଧା, ଈଶ୍ୱର ବିଶ୍ୱାସ ଓ ସୌନ୍ଦର୍ଯ୍ୟାନୁଭୂତିକୁ ପ୍ରକାଶ କରେ ।

ମଣିଷ ଜୀବନରେ ଶବ୍ଦର ଗୁରୁତ୍ୱକୁ ହାଇଡ଼ିଗାର ସ୍ୱୀକାର କରିଛନ୍ତି । ହାଇଡ଼ିଗାର ଗ୍ରୀକ୍ ଭାଷା ଭିତରେ ଶକ୍ତି ଓ ସୌନ୍ଦର୍ଯ୍ୟର ପରାକାଷ୍ଠା ଦେଖିଛନ୍ତି । ମଣିଷଟିଏ ଜନପୁଞ୍ଜ ସହିତ ସାମିଲ ହେବାକୁ ବାଧ୍ୟ । କାରଣ ମଣିଷ ବାସ କରେ ଗୋଟିଏ ସର୍ବସାଧାରଣ ଜଗତରେ । ମଣିଷର ସାଧାରଣ ଜୀବନ କେତେବେଳେ ବି ବ୍ୟକ୍ତିଗତ ନୁହେଁ । ହାଇଡ଼ିଗାର କହନ୍ତି କୌଣସି ବ୍ୟକ୍ତି ଜଗତଠାରୁ କଦାପି ଅଲଗା ନୁହେଁ; ବରଂ ଜଗତ ତା'ର କର୍ମଶାଳା ।

ଜଗତ ବହୁ ପ୍ରକ୍ଷେପଣ ଦ୍ୱାରା ଗଢ଼ା । ମଣିଷ ନିରନ୍ତର ନିଜକୁ ତା'ର ଚ଼ତୁଃପାର୍ଶ୍ୱରେ ଅନନ୍ତ ସମ୍ଭାବନା ଭିତରକୁ ଫିଙ୍ଗୁଥାଏ । ଜଣେ ବସ୍ତୁଟିକୁ ବ୍ୟବହାର କରି ଯେପରି ତାର ଯାନ୍ତ୍ରିକତା ତଥା ତାର ପ୍ରୟୋଜନୀୟତାକୁ ବୁଝେ ଜଣେ ମଣିଷ ସେହିପରି ଜଗତରେ ବଞ୍ଚିରହି ନିତ୍ୟକାଳର ଜାଗତିକତାକୁ ବୁଝେ । ମଣିଷ ଜଗତରେ ଏକୁଟିଆ ନାହିଁ । ସର୍ବଦା ଅନ୍ୟମାନଙ୍କ ସହିତ ଅଛି । ନିଜତ୍ୱ ଭୁଲିବା ମଣିଷର ସବୁଠାରୁ ବଡ଼ ଭୁଲ । ନିଜତ୍ୱ ଭୁଲିଲେ ନିରର୍ଥକ ଭାବେ ସେ ଅନ୍ୟର ଖୋସାମତ କରେ ଯାହା ତା'ର ଆତ୍ମାକୁ କଳୁଷିତ କରିଦିଏ ।

ଭାଷା ସଂପର୍କରେ ହାଇଡ଼ିଗାରଙ୍କ ବକ୍ତବ୍ୟ ତାଙ୍କ ଦାର୍ଶନିକ ମତବାଦର ଏକ ବଡ଼ ଅଂଶ । ଭାଷା ଜରିଆରେ ମଣିଷ ସବୁକିଛିକୁ ସାଇତି ରଖେ ବୋଲି ହାଇଡ଼ିଗାର କହିଛନ୍ତି ।

ସେ ଆହୁରି ଚ଼ରମ ଭାବରେ କହିଥିଲେ ଯେ, ଭାଷା ଭିତରେ ମଣିଷର ଅସ୍ତିତ୍ୱ ନିହିତ ଅଛି । କବିତାରେ ଭାଷାର ଚ଼ରମ ପ୍ରକାଶ ହୋଇଥାଏ ବୋଲି ସେ କହିଛନ୍ତି । ହାଇଡ଼ିଗାର କବିତାର ଭାଷା ସଂପର୍କିତ ଆଲୋଚ଼ନା ପ୍ରସଙ୍ଗରେ କହିଛନ୍ତି : 'In poetry man is reunited on the foundations of his existence,' ।

ସବୁମତେ ଡରୁଆ, ଅଳସୁଆ ଓ ଇତର ଭାବରେ ଖୋସାମତ କରି ବଞ୍ଚିବାକୁ ଚେଷ୍ଟା କରୁଥିବା ମଣିଷଟି ହେଉଛି 'das man' ହାଇଡ଼ିଗାର ଏହି 'das man' ବିଷୟରେ ବ୍ୟାପକ ଚ଼ର୍ଚ୍ଚା କରିଛନ୍ତି । କ୍ରମଶଃ ଏକୁଟିଆ ମଣିଷର ତେଜ ଓ ସଙ୍କଳ୍ପ କିପରି କମିଯାଉଛି ସେ ବିଷୟରେ ସୋପେନ ହାଓ୍ୱାରଙ୍କ ସମେତ ସବୁ ଅସ୍ତିତ୍ୱବାଦୀମାନେ ଉଦ୍‌ବେଗ ପ୍ରକାଶ କରିଛନ୍ତି ।

ଗୋଟେ କାରଖାନାରୁ ଏକାଭଳି ଲକ୍ଷଲକ୍ଷ ପ୍ଲାଷ୍ଟିକ ତାଟିଆ ବାହାରିଲା ପରି କୋଟି କୋଟି ଡାସମେନରେ ଏ ଜଗତ ଭରି ଗଲାଣି । କାହାର କୌଣସି ତେଜ ନାହିଁ । 'Every supremacy is silently suppressed, every original thought is glossed over as well-known, every triumph is ungarised, every misery loses its power.' (ବିଇଙ୍ଗ୍ ଆଣ୍ଡ ଟାଇମ୍) ।

ହାଇଡ଼ିଗାର ନିତ୍ୟକାଳର ମଣିଷ ସମ୍ପର୍କରେ ବାସ୍ତବ ବିଶ୍ଲେଷଣ ଉପସ୍ଥାପନ କରି ମଣିଷ ଜୀବନର ଅମାପ ଶକ୍ତି ତା'ର ଅନନ୍ୟ ସମ୍ଭାବନାକୁ ଯଥାର୍ଥରେ ଆମନ୍ତ୍ରଣ କରିଛନ୍ତି ।



# ଲାଇବନିସ୍ଜ

'ମୋର ରାଶି ରାଶି ସମ୍ପଦ ମୋତେ ଦରିଦ୍ର କରିଛି' । ଅନନ୍ୟ ଭାବ ସଂପତ୍ତିର ଅଧିକାରୀ ଲାଇବନିସ୍ଜ ନିଜକୁ ବିଶାଳ ଭାବ ଜଗତରେ ଦରିଦ୍ର ଜ୍ଞାନ କରିଛନ୍ତି ।

ଲାଇବନିସ୍ଜ ଥରେ କହିଥିଲେ, ଯେ ମୋତେ ମୋ ଲେଖା ମାଧ୍ୟମରେ ଜାଣେ ସେ ମୋତେ ଆଦୌ ଜାଣେ ନାହିଁ ।

ନିଜ ଭିତରେ ସର୍ବୋତ୍ତମ ଅନୁଭବଟିକୁ କେହି ଭାଷା ଜରିଆରେ ଅନ୍ୟମାନଙ୍କ ପାଖରେ ପହଞ୍ଚାଇ ପାରେ ନାହିଁ, ତାହା ସବୁଦିନ ପାଇଁ ଅନୁଚ୍ଚାରିତ ହୋଇ ରହିଯାଏ ବୋଲି ଲାଇବନିସ୍ଜ କହିଛନ୍ତି ।

ଦେହ ହେଉଛି ମାତ୍ର ଶୁଦ୍ଧ ବିସ୍ତୃତିର ପ୍ରକାର ବିଶେଷ, ମନ ହେଉଛି ଶୁଦ୍ଧ ଭାବନାର ବିଶେଷ ।

ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ସବୁବେଳେ ବଞ୍ଚୁ— ଏହାହିଁ ଥିଲା ଲାଇବନିସ୍ଜଙ୍କର ସବୁଠାରୁ ବଡ଼ ଇଚ୍ଛା । ଜାତି ବା ସମଷ୍ଟି ଦ୍ୱାରା ବ୍ୟକ୍ତି କବଳିତ ନହେଉ ବୋଲି ସେ ଯୁକ୍ତି କରୁଥିଲେ ।

ବିଶ୍ୱ ପ୍ରକୃତିର ଅନ୍ତରଙ୍ଗ ସତ୍ତା ଖୋଜିବା ଲାଇବନିସ ଦର୍ଶନରଏକ ବଡ଼ ଦିଗ । ଲାଇବନିସ୍ଜଙ୍କ ମତରେ, ବିସ୍ତୃତି ହେଉଛି ବସ୍ତୁର ଅନ୍ତରଙ୍ଗ ସକ୍ରିୟ ସତ୍ତାର ପ୍ରକାଶ ।

ସରଳ ଓ ସ୍ୱଷ୍ଟ ଭାବନାମାନଙ୍କୁ ମନୁଷ୍ୟଙ୍କ ଚିନ୍ତାର ବର୍ଣ୍ଣାବଳୀ ବୋଲି ଲାଇବନିସ୍ଜ ଭାବୁଥିଲେ ।

ଦାର୍ଶନିକ ସମସ୍ୟାମାନଙ୍କୁ ଗାଣିତିକ ସାଙ୍କେତିକ ପଦ୍ଧତିରେ ସମାଧାନ କରିବା ପାଇଁ ପରବର୍ତ୍ତୀ ଯୁଗରେ ଯେଉଁ ବିପୁଳ ଉଦ୍ୟମମାନ ହୋଇଛି ଲାଇବନିସ୍ଜ ସେହି ଉଦ୍ୟମର ଅଗ୍ରନାୟକ ଥିଲେ । ତାଙ୍କ ଦର୍ଶନର ଅବୟବୀ-ଅବୟବ ସମ୍ବନ୍ଧ ମୁଖ୍ୟ ସ୍ଥାନ ଅଧିକାର କରିଛି ।

ଯାନ୍ତ୍ରିକ ଅଭିବୃଦ୍ଧିକୁ ସେ ଅଭିବୃଦ୍ଧି ବୋଲି ସ୍ୱୀକାର କରି ନାହାନ୍ତି । ଅଭିବୃଦ୍ଧି (Growth) କହିଲେ ସେ ଜୀବନ୍ତ ପଦାର୍ଥର ଅଭିବୃଦ୍ଧିକୁ ବୁଝିଛନ୍ତି ।

ଏ ବିଶ୍ୱ ଏକମାତ୍ର ବିଶ୍ୱ ଓ ଏହା ଏକ ନିରୁଦ୍ଧ ବିଶ୍ୱ (Closed Universe) ବୋଲି ସ୍ପିନୋଜା କହୁଥିଲେ କିନ୍ତୁ ଲାଇବନିସ୍ଜଙ୍କ ଦୃଷ୍ଟିରେ ଏ ବିଶ୍ୱ ହେଉଛି ଅସଂଖ୍ୟ ବିଶ୍ୱମାନଙ୍କ ମଧ୍ୟରୁ ଏକତମ ଓ ପ୍ରତ୍ୟେକ ବିଶ୍ୱ ସର୍ବାଂଶରେ ନିରୁଦ୍ଧ ହେଲେ ହେଁ ସମୁଦାୟ ଭାବରେ ଉନ୍ମୁକ୍ତ (Opened) ।

ମୋନାଡ଼ବାଦ (Monadism) ହେଉଛି ଲାଇବନିସ୍ଜଙ୍କ ଏକ ବଡ଼ ତତ୍ତ୍ୱ । ଲାଇବନିସ୍ଜଙ୍କ ପ୍ରସିଦ୍ଧ ଗ୍ରନ୍ଥର ନାମ ହେଉଛି ମୋନାଡ଼ ବିଦ୍ୟା (Monadology) ।

ଏହି ମୋନାଡ଼ର ଅର୍ଥ ହେଉଛି ଆଧ୍ୟାତ୍ମିକ ଅଣୁ । ଆଧ୍ୟାତ୍ମିକ ଅଣୁବାଦର ପ୍ରତିଷ୍ଠା ହେଉଛି ଲାଇବନିସ୍ଜଙ୍କର ଦର୍ଶନର ମୂଳ ଲକ୍ଷ୍ୟ ।

ଗ୍ରୀକ୍ ଭାଷାରେ ମୋନାଡ଼ର ଅର୍ଥ ହେଉଛି ପାଟିଗଣିତ ଗତ ଏକକ । ପ୍ଲାଟୋ ଏହାକୁ ସଂଖ୍ୟାଗତ ଏକକ ବୋଲି ଗ୍ରହଣ କରିଛନ୍ତି ।

ମୋନାଡ଼ମାନେ ବିଶ୍ୱର ସରଳତମ ଏକକ । ସରଳତମ ଶବ୍ଦର ଅର୍ଥ ହେଉଛି ଅଂଶ ରହିତ; ଯେଉଁ ଏକକକୁ କୌଣସି ଭାବରେ ଆଉ ଖଣ୍ଡ ଖଣ୍ଡ କରି ହେବ ନାହିଁ ।

ଏହି ଚେତନ ଅଣୁ ବା ମୋନାଡ଼ମାନେ ସ୍ୱରୂପତଃ ଦ୍ୱାର ଓ ଗବାକ୍ଷ ଶୂନ୍ୟ (The monads have no windows) ।

ଲାଇବନିସ୍ ଯୁକ୍ତି କରି କହିଛନ୍ତି ପୃଥିବୀର ଏହି ସବୁ ଏକକମାନଙ୍କ ମଧ୍ୟରେ ଅବିକଳ ସମାନତା ନାହିଁ । ଗୋଟେ ଗଛର ପତ୍ରମାନଙ୍କ ମଧ୍ୟରେ ମଧ ସମାନତା ନାହିଁ ।

ଅସାଦୃଶ୍ୟ ହେଉଛି ବସ୍ତୁସ୍ୱରୂପ । କେହି କାହା ଭଳି ହେବା ସମ୍ଭବ ନୁହେଁ । ଲାଇବନିସ୍ଙ୍କ ଦର୍ଶନର ଅନ୍ୟ ଏକ ମୌଳିକ ବିଧି ହେଉଛି ଅନୁବନ୍ଧ ନିୟମ (Law of Continuity) ।

ପ୍ରକୃତି ହେଉଛି ଏକ ଅବିରଳ ସ୍ଥିତି (Continum) । କେଉଁଠି ପତିତ ଭୂମି (ପଡ଼ିଆ) ବୋଲି କିଛି ନାହିଁ । ଅନୁର୍ବର ବନ୍ଧ୍ୟାସ୍ଥିତି ହୋଇ କିଛି ନାହିଁ । ବିଶ୍ୱରେ ମୃତବସ୍ତୁ ହୋଇ କିଛି ନାହିଁ । ଅବ୍ୟବସ୍ଥା ବା ବ୍ୟସ୍ତତା ବୋଲି କିଛି ନାହିଁ ।

ଲାଇବନିସ୍ଙ୍କ ମତରେ ମୋନାଡ଼ମାନେ ଅଜଡ଼ । ତେଣୁ ଚେତନ, ଅବିସ୍ତୃତ, ତେଣୁ ଭାବନାମୟ; ଅପାର୍ଥିବ ତେଣୁ ଆଧ୍ୟାତ୍ମିକ ।

ଦର୍ଶନ କ୍ଷେତ୍ରରେ ଲାଇବନିସ୍ ଜଣେ ସୁପ୍ରସିଦ୍ଧ ବହୁ ତତ୍ତ୍ୱବାଦୀ (Pluralist) ।

କୌଣସି ଦୁଇଟି ମୋନାଡ଼ର ଦୃଷ୍ଟି କୋଣ ଏକ ହୋଇ ନ ପାରେ । ଏ ବିଶ୍ୱ ହେଉଛି ଅସଂଖ୍ୟ ମୋନାଡ଼ଙ୍କ ସମଷ୍ଟି । ଗୋଟିଏ ମୋନାଡ଼ ଗର୍ଭରେ ବି ବିଶ୍ୱର ପ୍ରତିଛବି ନିହିତ ଥାଏ । ମୋନାଡ଼ ମାନେ ହିଁ ବିଶ୍ୱର ଏକ୍‌ମାତ୍ର ଉପାଦାନ ।

ଲାଇବନିସ୍ କହନ୍ତି ଯେ ମୋନାଡ଼ମାନେ ଏପରି ଭାବରେ ସୃଷ୍ଟି ହୋଇଅଛନ୍ତି ଯେ ସେମାନଙ୍କର ସ୍ୱଭାବରେ ସେମାନେ ପରସ୍ପର ସହିତ ସମତାଳ ଅଟନ୍ତି । ଗୋଟିଏ ମୋନାଡ଼ ମଧ୍ୟରେ ଯେଉଁ ଯେଉଁ ପରିବର୍ତ୍ତନ ସଂଘଟିତ ହୋଇଥାଏ, ତାହାର ଅନୁରୂପ ପରିବର୍ତ୍ତନ ଅନ୍ୟ ସମସ୍ତ ମୋନାଡ଼ମାନଙ୍କ ମଧ୍ୟରେ ସଂଘଟିତ ହୋଇଥାଏ ।

ଶରୀର ଆତ୍ମାକୁ ଦୁଇଟି ଘଡ଼ି ସହିତ ତୁଳନା କରି ଲାଇବନିସ୍ କହିଛନ୍ତି ଯେ, ଦୁଇଟି ଘଡ଼ିରେ କିପରି ଏକ କାଳୀନ ଏକ ସମୟ ନିରୂପିତ ହୋଇପାରେ ।

ମଣିଷମାନଙ୍କ ମଧ୍ୟରେ ଶାରୀରିକ ସଂପର୍କ ବା ବହିଃ ପ୍ରଭାବ ଦ୍ୱାରା ବ୍ୟକ୍ତିମାନଙ୍କ ମଧ୍ୟରେ ଯଥାର୍ଥ ସଂହତି ଅଣା ଯାଇପାରିବ ନାହିଁ ।

ଲାଇବନିସ୍ ମୁଖ୍ୟତଃ ଜଣେ ଗାଣିତିକ ।

ଲାଇବନିସ୍ ବିଚାରର ଦୁଇଟି ଦିଗ ଘୋଷଣା କରିଛନ୍ତି । ଗୋଟିଏ ହେଲା ବିରୋଧ ନିୟମ (The Principle of Contradiction) ଓ ଅନ୍ୟଟି ହେଲା ହେତୁକ ନିୟମ (The Principles of Sufficient Reason) ।

ଲାଇବନିସ୍ କହନ୍ତି ଜ୍ଞାନ ରାଜ୍ୟରେ ମଧ ଦୁଇ ପ୍ରକାର ସତ୍ୟ ବିଦ୍ୟମାନ । ଗୋଟିଏ ହେଉଛି ତର୍କ ବା ଯୁକ୍ତିନିଷ୍ଠ ସତ୍ୟ ଓ ଅନ୍ୟଟି ହେଉଛି ବିଷୟ ବା ବସ୍ତୁନିଷ୍ଠ ସତ୍ୟ ।

ଲାଇବନିସ୍‌ଙ୍କ ଜ୍ଞାନ ମୀମାଂସା ଓ ଈଶ୍ୱର ମୀମାଂସା ଜ୍ଞାନରାଜ୍ୟରେ ଅତ୍ୟନ୍ତ ଉପାଦେୟ ପ୍ରସଙ୍ଗ । ସେ କହିଛନ୍ତି, ଈଶ୍ୱର ହେଉଛି ପୂର୍ଣ୍ଣତା ପୁଣି ହେତୁ ।

ଲାଇବନିସ୍ କହିଛନ୍ତି ଦୁଃଖରେ ପଡ଼ି ପଡ଼ି ଆମେ ଦୀପ୍ତ ହୋଇଉଠୁ । ଦୁଃଖ ଆମକୁ ଉଜ୍ଜ୍ୱଳ କରିଦିଏ । ଦୁଃଖ ଓ ଦୁର୍ଗତି ଆମର ଆତ୍ମାର ବିକାଶ ଓ ଶୁଦ୍ଧତା ଲାଗି ପ୍ରୟୋଜନ ।

ତେଣୁ ଶାରୀରିକ ଓ ମାନସିକ ପୀଡ଼ାକୁ ଅମ୍ଳାନ ବଦନରେ ସହ୍ୟ କରିବାକୁ ଲାଇବନିସ୍ ଉପଦେଶ ଦେଇ ଯାଇଛନ୍ତି ।

ସାଧୁ ବ୍ୟକ୍ତିମାନଙ୍କର ନିର୍ଯ୍ୟାତନାଜନିତ ବ୍ୟଥା କଥା ଉଲ୍ଲେଖ କରି ଲାଇବନିସ୍ କହନ୍ତି ଯେ, ଏହି ବ୍ୟଥା ଦ୍ୱାରା ସେମାନଙ୍କର ମହତ୍ତ୍ୱ ଅଧିକରୁ ଅଧିକ ସ୍ପଷ୍ଟ ହୋଇଉଠେ । ବିଲରେ ବୁଣା ହୋଇଥିବା ଶସ୍ୟ ଫଳ ବହନ କଲା ପୂର୍ବରୁ ବହୁ ଦୁଃଖ ଭୋଗ କରେ । ଦୁଃଖ ଯାତନା ଆପାତତଃ ଦୁର୍ଗତି ପରି ବୋଧ ହେଉଥିଲେ ହେଁ ପରିଶେଷରେ ତାହା ଶୁଭଙ୍କର ହୋଇଥାଏ । ପୂର୍ଣ୍ଣତର ସ୍ଥିତି ଲାଭ ଲାଗି ଦୁଃଖ ଓ ଯାତନା ଅଦୀର୍ଘ ମାର୍ଗ ବୋଲି ଲାଇବନିସ୍ ଘୋଷଣା କରିଛନ୍ତି ।

ଦୁଃଖ ସୁଖ ଭୋଗର ନିବିଡ଼ତା ଆଣିଦିଏ । ସୁଖ ଭୋଗକୁ ତୀବ୍ରତର କରିଥାଏ । ଜିଭରେ ଅମ୍ଳର ଆସ୍ୱାଦନ କାରଣରୁ ମିଠାର ମାଧୁର୍ଯ୍ୟ ଏତେ ସ୍ପଷ୍ଟ ଭାବରେ ବାରି ହୋଇଥାଏ ।

ଲାଇବନିସ୍‌ଙ୍କ ମତରେ 'ତିକ୍ତ ହେଉ କି ମଧୁର ହେଉ, ଦୁର୍ଗତି ହେଉ କି ସୁଗତି ହେଉ ପ୍ରତ୍ୟେକର ସ୍ୱପ୍ନ ମହିମା ଓ ମୂଲ୍ୟ ଅଛି । ପ୍ରତ୍ୟେକ ନିଜସ୍ୱ ସ୍ଥିତିରେ ଅପରିହାର୍ଯ୍ୟ, ଅନୁପମ ଓ ଅଦ୍ୱିତୀୟ । ପ୍ରତ୍ୟେକର ନିଜସ୍ୱ ମହିମା ଅଛି । ଦୁଃଖକୁ ଅଭିସଂପାତ ବୋଲି ସବୁବେଳେ ତେଣୁ ଜ୍ଞାନ କରାଯାଇପାରେ ନ ପାରେ' ।

ଲାଇବନିସ୍‌ଙ୍କ ଦର୍ଶନରେ ଜର୍ମାନ ଭାବବାଦର ଆଦ୍ୟ ଭିତ୍ତି ସ୍ଥାପିତ ହୋଇଛି । ହିଗେଲ, ସୋପେନ ହାଓ୍ୱାର ପ୍ରମୁଖ ବହୁ ଦାର୍ଶନିକ ପରବର୍ତ୍ତୀ ସମୟରେ ଲାଇବନିସ୍‌ଙ୍କ ଭାବବାଦୀ ଦର୍ଶନ ଓ ମୋନାଡ଼ ତତ୍ତ୍ୱ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଛନ୍ତି ।

ଲାଇବନିସ୍ ସେ କାଳରେ ଜଣେ ବିଚକ୍ଷଣ ରାଜନୀତିଜ୍ଞ ଓ କୂଟନୀତି ବିଶାରଦ ଥିଲେ । ଛାତ୍ର ଜୀବନରୁ ତାଙ୍କର ଅଧ୍ୟୟନ ଲିପ୍‌ସା ପ୍ରବଳ ଥିଲା । ତାଙ୍କ ପିତାଙ୍କ ମୃତ୍ୟୁପରେ ସେ ତାଙ୍କ ପାଠାଗାରର ଉତ୍ତରାଧିକାରୀ ହୋଇପାରିଥିଲେ ।

ସେ ନୂଆ ବହି ପାଇଲେ କେଉଁ ନିର୍ଦ୍ଦିଷ୍ଟ ବିଷୟ ଶିକ୍ଷା କରି ପାରିବେ ତାହା କଳନା କରି ସେହି ବିଷୟ ଶିକ୍ଷାକୁ ତାଙ୍କ ଜୀବନର ଉପାର୍ଜ୍ଜନ ବୋଲି ମନେ କରୁଥିଲେ ।

ଦୁଃଖକୁ କୋଟିନିଧି ଜ୍ଞାନ କରୁଥିବା ଲାଇବନିସ୍‌ଙ୍କ ପ୍ରବୋଧିତ ଆତ୍ମା ଆମ ସମସ୍ତଙ୍କୁ ମୁକ୍ତି ଓ ଆଲୋକର ପଥ ଦେଖାଉ ।

—o—

## ହେନ୍‌ରୀ ବର୍ଗସଁ

ବର୍ଗସଁ ଥିଲେ ମୁଖ୍ୟତଃଜଣେ ଦାର୍ଶନିକ; ଅଥଚ ୧୯୨୭ ଖ୍ରୀଷ୍ଟାବ୍ଦରେ ସାହିତ୍ୟ ପାଇଁ ସେ ନୋବେଲ ପୁରସ୍କାର ପାଇଥିଲେ । ସେ ଥିଲେ କଲେଜ ଦି ଫ୍ରାନସ୍‌ର ଦର୍ଶନ୍ ବିଭାଗର ମୁଖ୍ୟ ।

କେବଳ ଉଚ୍ଚମାନର ଦାର୍ଶନିକ ଗ୍ରନ୍ଥ ରଚନା କରି ସେ ଜଗତ ବିଖ୍ୟାତ ହୋଇ ପାରିଥିଲେ । ବର୍ଗସଁ ଥିଲେ, ଆଧୁନିକ ବୁଦ୍ଧିବାଦର ଘୋର ବିରୋଧୀ । ସେ ବରଂ ସବୁ କିଛି ପରିଚୟ ଉର୍ଦ୍ଧ୍ୱରେ ଥିଲେ କୁହୁକ ପରି ପ୍ରଭାବ ସୃଷ୍ଟି କବିପାରୁଥିବା ଜଣେ ସ୍ରଷ୍ଟା । ଜୀବ ବିଜ୍ଞାନର ତଥ୍ୟ ସବୁକୁ ମଧ୍ୟ ସେ ତାଙ୍କ ରଚ଼ନା ଶୈଳୀରେ ସଙ୍ଗୀତମୟ ଅଭିବ୍ୟକ୍ତି ଦେଇଥିଲେ ।

ବର୍ଗସଁ ଥିଲେ ଫରାସୀ ମାଟିର ସନ୍ତାନ । ବର୍ଗସଁ ୧୮୫୯ ଖ୍ରୀ: ଅକ୍ଟୋବର ୧୮ ତାରିଖରେ ଫ୍ରାନସ୍‌ର ରାଜଧାନୀ ପେରିସରେ ଜନ୍ମ ଗ୍ରହଣ କରିଥିଲେ । ଗଣିତ, ପଦାର୍ଥ ବିଜ୍ଞାନ, ପ୍ରାଣୀ ବିଜ୍ଞାନ, ଦର୍ଶନ ପ୍ରତି ତାଙ୍କର ପିଲାଟି ଦିନରୁ ଅଧିକ ଆଗ୍ରହ ଥିଲା ।

ଜୀବନକୁ ବୃଦ୍ଧି ଓ କ୍ଷୟର ଏକ ବିଚିତ୍ର ଆଲବମ ବୋଲି ସେ ମନେ କରୁଥିଲେ । ତାଙ୍କୁ ନାସ୍ତିକ ଓ ଆତ୍ମାହୀନ ବୈଜ୍ଞାନିକ ବୋଲି କହୁଥିଲେ । କାରଣ ଜୀବନକୁ ସେ ଉଦ୍ଦେଶ୍ୟହୀନ ବୋଲି ବଚାରୁଥିଲେ ।

ବର୍ଗସଁ ତାଙ୍କ ଅଧ୍ୟାପକ ଜୀବନରେ ଜିଜ୍ଞାସୁ ହୋଇ ପଡ଼ିଥିଲେ ଓ ଓଭାରେନ ପ୍ରଦେଶର ଛବିଳ ପ୍ରକୃତି ତାଙ୍କୁ ଆତ୍ମହରା କରି ଦେଇଥିଲା । ବର୍ଗସଁ ଅତ୍ୟନ୍ତ ଧୀର ଓ ସଂଯତଭାଷୀ ଥିଲେ । ସେ ପ୍ରକୃତରେ ଜ୍ଞାନର ସମୁଦ୍ର ଥିଲେ । ପ୍ରତ୍ୟେକ ଶବ୍ଦ ତାଙ୍କର ଅର୍ଥପୂର୍ଣ୍ଣ ଥିଲା । ସେ ତାଙ୍କ ସମକ୍ଷରେ ଥିବା ବିରାଟ ଶ୍ରୋତୃମଣ୍ଡଳୀକୁ ମନ୍ତ୍ରମୁଗ୍ଧ କରି ଘଣ୍ଟା ଘଣ୍ଟା ରଖି ଦେଇ ପାରୁଥିଲେ ।

ବର୍ଗସଁ ଜର୍ମାନୀମାନଙ୍କୁ ସ୍ୱାଧୀନତାର ବିରୋଧୀ ବୋଲି ବର୍ଣ୍ଣନା କରିଛନ୍ତି । ସେମାନଙ୍କର ଜଡ଼ବାଦୀ ଦୃଷ୍ଟିଭଙ୍ଗୀକୁ ବର୍ଗସଁ ସମାଲୋଚ଼ନା କରିଛନ୍ତି । ସେ ଥିଲେ କଳ୍ପନା ବିଳାସୀ । ମାତ୍ର ବାସ୍ତବ ପୃଥିବୀ ପ୍ରତି ତାଙ୍କର କୌଣସି ଘୃଣା ନଥିଲା 'Matter & Memory' ରଚନା କରି ବର୍ଗସଁ ବିଶ୍ୱ ବିଖ୍ୟାତ ହୋଇ ପାରିଥିଲେ । ହସ (Laughter) ଶୀର୍ଷକ ଏକ ଦୀର୍ଘ ଅଥଚ ଚମତ୍କାର ପ୍ରବନ୍ଧ ସେ ଲେଖିଥିଲେ । ତାଙ୍କର ସବୁଠାରୁ ବଡ଼ କୃତି ହେଲା ସୃଜନଶୀଳ ବିବର୍ତ୍ତନ (Creative Evolution) । ଏହି ପୁସ୍ତକଟି ହିଁ ତାଙ୍କୁ ମୁଖ୍ୟତଃ ନୋବେଲ ପୁରସ୍କାର ବିଜେତା କରାଇଥିଲା । ବିବର୍ତ୍ତନର ପ୍ରତିଟି ବିଷୟ ସୃଜନଶୀଳ ବୋଲି ବର୍ଗସଁ ମନେ କରୁଥିଲେ ।

ସାହିତ୍ୟ ଶୁଦ୍ଧ ଓ କରୁଣାକୁ ନେଇ ସଂଚରଣଶୀଳ ହୋଇଥାଏ ବୋଲି ବର୍ଗସଁ ମନେ କରୁଥିଲେ । ସାହିତ୍ୟ ସୃଷ୍ଟି ପଶ୍ଚାତରେ ସାହିତ୍ୟିକଙ୍କ ମୂଳ ସଙ୍କଳ୍ପକୁ ବୁଝିବା ଆବଶ୍ୟକ । କାରଣ ସେ ମନେ କରୁଥିଲେ ଯେ ସାହିତ୍ୟ ସୃଷ୍ଟି ପଶ୍ଚାତରେ ଏକ ଉଦ୍ଦେଶ୍ୟ ଥାଏ ।

ସାହିତ୍ୟ ଓ ଦର୍ଶନ ମଧ୍ୟରେ ଯଥେଷ୍ଟ କିଛି ବ୍ୟବଧାନ ନାହିଁ ବୋଲି ବର୍ଗସଁ କହିଛନ୍ତି । ବର୍ଗସଁ କିରକେଗାର୍ଡ଼ଙ୍କ ପରି ଅବିକଳ କହନ୍ତି ଯେ, ପରମତତ୍ତ୍ୱ କେତେବେଳେ ବି ବୁଦ୍ଧିଗ୍ରାହ୍ୟ ନୁହେଁ । ଦୈହିକ ଓ ମାନସିକ ଅନୁଭୂତିକୁ ବୁଦ୍ଧି ଅସାର ଓ ଅପ୍ରୟୋଜନ ବୋଲି ମନେକରେ ।

ତାଙ୍କ ମତରେ ପ୍ରାଣପ୍ରବାହ ହେଉଛି ପରମତତ୍ତ୍ୱ । ଏହି ବିଶ୍ୱ ବିଖ୍ୟାତ ଦାର୍ଶନିକ ଓ ନୋବେଲ ପୁରସ୍କାର ବିଜେତା ସାହିତ୍ୟିକ ୧୯୪୧ ଜାନୁଆରୀ ୪ ତାରିଖରେ ପ୍ୟାରିସ ନଗରୀରେ ମୃତ୍ୟୁବରଣ କରିଥିଲେ ।

ବର୍ଗସଁଙ୍କ ପରି ଜଣେ ବୁଦ୍ଧିବାଦ ବିରୋଧୀ ପ୍ରାଣରେ ଅଧିକ ମାତ୍ରାରେ ସାହିତ୍ୟିକ । ତାଙ୍କ ସାହିତ୍ୟ ତତ୍ତ୍ୱ ଓ ଦାର୍ଶନିକ ମତବାଦ ମଧ୍ୟରେ ବିଶେଷ କିଛି ଅମେଳ ନାହିଁ । ରସ ଅବବୋଧ ମଣିଷକୁ ପ୍ରକୃତି ସହିତ ନିବିଡ଼ ହେବାପାଇଁ ପ୍ରୋତ୍ସାହିତ କରେ ।

ବର୍ଗସଁଙ୍କ ମତରେ କାଳର ଲକ୍ଷ୍ୟ ସତ୍ୟ ଅନ୍ୱେଷଣ । କଳାକାର ହିଁ ସତ୍ୟ ଦର୍ଶନର ଯୋଗ୍ୟତମ ବ୍ୟକ୍ତି । ଯେ ସତ୍ୟ ସନ୍ଧାନୀ ନୁହେଁ ସେ କବି ବା କଳାକାର ହେବା ପାଇଁ ଅଯୋଗ୍ୟ ।

ଜର୍ମାନର ପ୍ରସିଦ୍ଧ ଦାର୍ଶନିକ ଲାଇବନିସ୍‌ଙ୍କୁ ବର୍ଗସଁ ତୀବ୍ର ସମାଲୋଚନା କରିଛନ୍ତି । ଯନ୍ତ୍ରବାଦୀମାନଙ୍କୁ ବି ବର୍ଗସଁ ବଡ଼ ଅପସନ୍ଦ କରିଛନ୍ତି ।

ବର୍ଗସଁଙ୍କ ରଚନାଶୈଳୀ ବହୁ ଭାବରେ କାବ୍ୟିକ ଓ ଭାବନିଷ୍ଠ । ତାଙ୍କ ସୃଜନଶୀଳ ରଚନାଶୈଳୀ ପାଇଁ ସେ ବିଶ୍ୱର ଅଗଣିତ ପାଠକଙ୍କ ଶ୍ରଦ୍ଧା ଓ ସ୍ୱୀକୃତି ଲାଭ କରିଛନ୍ତି । ପ୍ରାଣପିପାସାର ଚରମ ପ୍ରକାଶକୁ ବର୍ଗସଁ ସ୍ୱାଗତ କରିଛନ୍ତି ।

ସେ ନୋବେଲ ପୁରସ୍କାର ବିଜେତା ଏତେ ବଡ଼ ଦାର୍ଶନିକ । ଅଥଚ ତାଙ୍କ ରଚନାରେ କ୍ୱଚିତ ଦାର୍ଶନିକ ଆଟୋପ ରହିଛି । ସେ ଦାର୍ଶନିକ ଥିଲେ ସତ ତାଙ୍କର କୌଣସି ଦାର୍ଶନିକ ବିଳାସ ନଥିଲା । ସେ ଥିଲେ ଅଧିକ ସାହିତ୍ୟିକ; ଭାବରେ ଓ ଭାଷାରେ ।

କହିବା ଓ ଲେଖିବାରେ ବର୍ଗସଁ ଯେଉଁ ଭାଷା ବ୍ୟବହାର କରୁଥିଲେ ତାହା ପ୍ରକୃତରେ ଅନନ୍ୟ ଥିଲା । ସେ ଭାଷା ସମସ୍ତଙ୍କୁ ମୋହି ଦେଉଥିଲା ।

ତାଙ୍କ ଦର୍ଶନ ଯୁକ୍ତିନିଷ୍ଠ ନୁହେଁ । ବହୁ ଭାବରେ କାବ୍ୟିକ । କିରକେଗାର୍ଡ଼ଙ୍କ ପରି ଆବେଗ ତାଙ୍କ ଜୀବନର ଐଶ୍ୱର୍ଯ୍ୟ ।

ସେକ୍‌ସପିୟର ବା ଶେଲୀଙ୍କ ପରି ସେ ଜୀବନକୁ ଏକ ସ୍ୱପ୍ନିଳ ଛାୟାଘର ବା ରଙ୍ଗୀନ କାଚ଼ଘର ବୋଲି କହି ନ ଥିଲେ ହେଁ ସେ ଜୀବନର ଚେ଼ତନାକୁ ଏକ ବହୁରଙ୍ଗୀ ଶାମୁକା ସହିତ ତୁଳନା କରିଛନ୍ତି ।

ବର୍ଗସଁ ତର୍କଶାସ୍ତ୍ରକୁ ପରିହାର କରିଛନ୍ତି । ସ୍ୱପ୍ନ ଓ ଚେ଼ତନାକୁ ଅବଲମ୍ବନ କରିଛନ୍ତି । ରସେଲ କିନ୍ତୁ ବର୍ଗସଁଙ୍କ ବୁଦ୍ଧିବାଦ ବିରୋଧୀ ଦର୍ଶନକୁ ପସନ୍ଦ କରି ପାରିନାହାନ୍ତି । ସେ

କହିଛନ୍ତି, ବୁଦ୍ଧିବାଦର ବିରୋଧ ହେଉଛି ଜୀବନ ବିରୋଧୀ । ବର୍ଗସଁ କହିଛନ୍ତି, ସୃଷ୍ଟିରେ ଶ୍ରେଷ୍ଠ ଜୀବ ମନୁଷ୍ୟ ଯେପରି ଏ ଜଗତକୁ ଭୋଗ କରୁଛି ସେଥିରୁ ସ୍ରଷ୍ଟାଙ୍କ ପ୍ରତି ତା'ର କୃତଜ୍ଞତା ଜାତ ହେଉଛି । ତାଙ୍କ ମତବାଦର ମୁଖ୍ୟ ପ୍ରାମାଣ୍ୟ ହେଉଛି ମହିମାମୟ ଈଶ୍ୱର । ଏ ଜଗତ ହେଉଛି ତାଙ୍କ ଲୀଳାକ୍ଷେତ୍ର ।

ବର୍ଗସଁଙ୍କ 'Creative Evolution'ର ଅନୁଭବ ସବୁ ଯେତିକି ଦାର୍ଶନିକ ତା'ଠାରୁ ଅଧିକ କାବ୍ୟିକ ।

ସୃଷ୍ଟିତତ୍ତ୍ୱକୁ ଗଭୀର ଭାବେ ଅନୁଧ୍ୟାନ କଲେ ଦେଖାଯିବ ଯେ ଏହା ମୂଳତଃ ସ୍ରଷ୍ଟାଙ୍କ ପ୍ରତି ମନୁଷ୍ୟର କୃତଜ୍ଞତା ସ୍ୱୀକାର ବ୍ୟତୀତ ଅନ୍ୟ କିଛି ନୁହେଁ । ମଣିଷର ରମ୍ୟବୋଧ ଓ ବିସ୍ମୟବୋଧ ସେହି ସହଜାତ କୃତଜ୍ଞତା ବୋଧର ଅଂଶ ବିଶେଷ ।

ବିଶେଷ ରୂପେ ପରିବର୍ତ୍ତିତ ହେବାକୁ ବର୍ଗସଁ ବିବର୍ତ୍ତନ ବୋଲି ଅଭିହିତ କରିଛନ୍ତି । ବିବର୍ତ୍ତନ ପୁଣି ନୂତନତ୍ୱର ପ୍ରକାଶ ବା ପ୍ରକଟନ ଘୋଷଣା କରେ । ପୁରାତନ ଓ ନୂତନତ୍ୱର ସମନ୍ୱୟ ବିବର୍ତ୍ତନ ପ୍ରକ୍ରିୟାର ମୂଳଧର୍ମ ।

ରସେଲ କିନ୍ତୁ ବିବର୍ତ୍ତନ ଓ ସୃଷ୍ଟି ପ୍ରକ୍ରିୟାକୁ ଦେଖି ବର୍ଗସଁଙ୍କ ପରି ତଟସ୍ଥ ହୋଇ ନାହାନ୍ତି କି ବିହ୍ୱଳ ହୋଇ ନାହାନ୍ତି । ବର୍ଗସଁ ବିବର୍ତ୍ତନକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିଛନ୍ତି ।

୧ - ପ୍ରାକୃତିକ ବିବର୍ତ୍ତନ ।

୨ - ସାମାଜିକ ବିବର୍ତ୍ତନ ।

ଦାର୍ଶନିକ ହର୍ବଟ ସ୍ପେନସର୍ (୧୮୨୦ ଖ୍ରୀ:-୧୯୦୩ ଖ୍ରୀ:) ଯାନ୍ତ୍ରିକ ବିବର୍ତ୍ତନବାଦର ଜଣେ ମୁଖ୍ୟ ପ୍ରବକ୍ତାରୂପେ ବିଶ୍ୱରେ ପରିଚିତ ଯେ ବିବର୍ତ୍ତିତ ପ୍ରକ୍ରିୟାର ନିମ୍ନୋକ୍ତ ତିନୋଟି ବୈଶିଷ୍ଟ୍ୟ ଦେଖିଛନ୍ତି । ୧- ଘନୀକରଣ, ୨-ବିଭେଦୀକରଣ, ୩- ପରିଣତି ଲାଭ । ସେହିପରି ଡାରଉଇନଙ୍କ ବିବର୍ତ୍ତନ ତତ୍ତ୍ୱ ମୁଖ୍ୟତଃ ଜୈବିକ ବିବର୍ତ୍ତନବାଦ । ତାହା ବର୍ଗସଁଙ୍କ ସୃଜନାତ୍ମକ ବିବର୍ତ୍ତନଠାରୁ ଅପେକ୍ଷାକୃତ ସ୍ଥୁଳ ଓ ଜଡ଼ ।

ବର୍ଗସଁ ବିବର୍ତ୍ତନରେ ଆଧ୍ୟାତ୍ମିକତାକୁ ଲକ୍ଷ୍ୟ କରିଛନ୍ତି । ତାଙ୍କ ବିବର୍ତ୍ତନୀୟ ଅନୁଚିନ୍ତାରେ ଜୀବନର ପ୍ରାଣପ୍ରବାହର ଉତ୍ତରଣକୁ ସେ ଅନ୍ତର୍ଭୁକ୍ତ କରିଛନ୍ତି । ବର୍ଗସଁଙ୍କ ବିବର୍ତ୍ତନବାଦୀ ଚିନ୍ତାଧାରା ଉତ୍ତର ବୈଜ୍ଞାନିକ ଓ ଦାର୍ଶନିକମାନଙ୍କୁ ଅବଶ୍ୟ ପ୍ରୋତ୍ସାହିତ କରିବ ।

ବିଶ୍ୱ ବ୍ରହ୍ମାଣ୍ଡରେ ସୃଷ୍ଟି ପ୍ରକ୍ରିୟାକୁ କଳ୍ପନାଶକ୍ତି ଦ୍ୱାରା ଲକ୍ଷ୍ୟକରିବା ବର୍ଗସଁଙ୍କର ଏକ ସୃଜନଶୀଳ ଶକ୍ତି ନିଶ୍ଚୟ ।

ବର୍ଗସଁଙ୍କର ଚିନ୍ତାଧାରାର ସବୁଠାରୁ ଉଲ୍ଲେଖଯୋଗ୍ୟ ପ୍ରସ୍ଥ ହେଉଛି ତାଙ୍କ ପ୍ରଚାରିତ ସାହିତ୍ୟତତ୍ତ୍ୱ । ବର୍ଗସଁଙ୍କ ସାହିତ୍ୟ ତତ୍ତ୍ୱରେ ତାଙ୍କ ଦାର୍ଶନିକ ଅନୁଚିନ୍ତା ଓ ସୌନ୍ଦର୍ଯ୍ୟାନୁଭୂତି

ବିଶେଷ ଭାବରେ ସମିଶ୍ରିତ ହୋଇ ରହିଛି । ଉନ୍ନତତର କଳାବୋଧ ସମ୍ପର୍କରେ ସଚେତନ କରାଇବା ବର୍ଗସଁଙ୍କର ଲକ୍ଷ୍ୟଥିଲା ।

ବର୍ଗସଁଙ୍କ ଦ୍ୱାରା ରଚିତ 'Laughter' ପୁସ୍ତକରେ ତାଙ୍କ କମେଡ଼ି ତତ୍ତ୍ୱ ଅଭିବ୍ୟକ୍ତି ଲାଭ କରିଛି ।

କମେଡ଼ିକୁ ସେ ଭ୍ରଷ୍ଟ କଳାର ଆଖ୍ୟା ଦେଇଛନ୍ତି । ତାହା ଟ୍ରାଜେଡ଼ି ପରି ପାଠକ ପ୍ରାଣକୁ ଦୟା ଓ କାରୁଣ୍ୟରେ ଆକୃଷ୍ଟ କରିପାରେ ନାହିଁ । ଯୁଗେଯୁଗେ ସାହିତ୍ୟ ଦାର୍ଶନିକ ଚିନ୍ତାଧାରାର ବାହକ ବୋଲି ବର୍ଗସଁ କହିଛନ୍ତି । ଆଗ ଦର୍ଶନ ତାପରେ କବିତା ।

ଟ୍ରାଜେଡ଼ିକୁ ବହୁଦୃଷ୍ଟିରୁ ଏକ ଉଚ୍ଚତମ କଳାର ନମୁନା ଭାବେ ବର୍ଗସଁ ବର୍ଣ୍ଣନା କରିଛନ୍ତି । ବର୍ଗସଁଙ୍କ ସୃଷ୍ଟିଧର୍ମୀ ଚେତନା ପାଇଁ ସେ ସମସ୍ତଙ୍କର ପ୍ରିୟ କବି ଓ ସୃଜନଶୀଳ ଚିନ୍ତାନାୟକ ଭାବେ ସ୍ମରଣୀୟ ହୋଇ ରହିବେ ।



## ଉଇଟ୍‌ଗେନଷ୍ଟାଇନ୍

ଡାକ୍ତରମାନେ ଯେତେବେଳେ ତାଙ୍କୁ ଜଣାଇ ଦେଲେ ଯେ ତାଙ୍କ ମରଣ ଆଉ କେତେ ଦିନ ମାତ୍ର ବାକି ଅଛି ସେତେବେଳେ ଉଇଟ୍‌ଗେନଷ୍ଟାଇନ୍ ତାଙ୍କ ବନ୍ଧୁମାନଙ୍କୁ କହିଦେବାକୁ ଅନୁରୋଧ କରିଥିଲେ ଯେ ସେ ଏକ ସୁନ୍ଦର ଜୀବନ ବଞ୍ଚିବା ପାଇଁ ସ୍ୱପ୍ନ ଦେଖିଥିଲେ ।

ତାଙ୍କ ତମାମ ଜୀବନ ଗୋଟେ ବିଚିତ୍ର ଦୁଃଖାନ୍ତକ ଉପନ୍ୟାସ ପରି ଲାଗେ । ଏତେ ବଳିଦାନ— ତାଙ୍କ ଜୀବନ ବଞ୍ଚିବା ସମକ୍ଷରେ ଜଣେ ତଟସ୍ଥ ହୋଇ ଯିବ ସତରେ । ଗତ ଶତାବ୍ଦୀର ମହାନ୍ ଦାର୍ଶନିକ ବିଶିଷ୍ଟ ସୌନ୍ଦର୍ଯ୍ୟଶାସ୍ତ୍ରୀ ଉଇଟ୍‌ଗେନଷ୍ଟାଇନ୍ କେବଳ ଜ୍ଞାନ ମାର୍ଗରେ ରହିବା ପାଇଁ ଜୀବନର ସବୁ କିଛି ବଳିଦାନ କରି ଯାଇଛନ୍ତି ।

ଚରମ ବାର୍ଦ୍ଧକ୍ୟରେ ନିଜ ପ୍ରିୟତମ ଛାତ୍ର ଘରେ ଆଦର୍ଶ ଦୃଷ୍ଟିରୁ ବାସନ ମଜା କାର୍ଯ୍ୟ କରିଛନ୍ତି । ନିଜ ହାତରେ ନିଜ କାମ କରିବାର ସଙ୍କଳ୍ପ ଯୋଗୁଁ ସେ ସମଗ୍ର ଜୀବନ ଜଣେ ପରିଶ୍ରମୀ ମଣିଷ ଭାବେ କଟାଇଛନ୍ତି ।

ଧନ ଦଉଲତ କାଳେ ବିଦ୍ୟା ଅର୍ଜ୍ଜନରେ ବାଧକ ହେବ ସେ ପାଇଁ ତାଙ୍କର ବିପୁଳ ପୈତୃକ ସମ୍ପତ୍ତିକୁ ସେ ଅକାତରେ ତାଙ୍କ ଭାଇ ଭଉଣୀଙ୍କ ମଧ୍ୟରେ ବିତରଣ କରି ଦେଇଥିଲେ ଓ ନିଜେ ନିଃସ୍ୱ ନିଃସମ୍ବଳ ଭାବେ ଆଜନ୍ମ ଜଣେ ବିଦ୍ୟାର୍ଥୀର ଜୀବନ ବଞ୍ଚିଥିଲେ ।

ସତେ ଯେପରି ହୃଦୟରେ ବିଦ୍ୟାନୁରାଗ ବଢ଼ାଇବା ପାଇଁ ସେ ଧନହୀନ ହୋଇ ବଞ୍ଚିବାକୁ ଈଶ୍ୱରଙ୍କୁ ପ୍ରାର୍ଥନା କରିଥିଲେ ।

ସେ ଜ୍ଞାନ ଚର୍ଚ୍ଚା କରୁ କରୁ ମୃତ୍ୟୁବରଣ କରିବାକୁ ନିଜର ପରମ ଭାଗ୍ୟ ବୋଲି ବିଚାରିଛନ୍ତି ।

୧୯୩୯ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଉଇଟ୍‌ଗେନଷ୍ଟାଇନ୍ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ଭାବେ ନିଯୁକ୍ତି ପାଇଥିଲେ । ସରଳ ନିରାଡ଼ମ୍ବର ଭାବେ ବଞ୍ଚିବା ପାଇଁ ସେ ଅଧ୍ୟାପକ ଚାକିରୀ ଛାଡ଼ିଦେଇ ଆୟାରଲ୍ୟାଣ୍ଡର ସମୁଦ୍ର ବେଳାଭୂମି ସନ୍ନିକଟ ଏକ କ୍ଷୁଦ୍ର ମତ୍ସ୍ୟଜୀବୀ ଗ୍ରାମରେ ବସବାସ କରିଥିଲେ । ସରଳ ଭାବରେ ପ୍ରକୃତି କୋଳରେ ବଞ୍ଚିବା ପାଇଁ, ଜ୍ଞାନ ଆହରଣ ପାଇଁ ଉଇଟ୍‌ଗେନଷ୍ଟାଇନ୍‌ଙ୍କ ପରି ଜଣେ ବ୍ୟକ୍ତିଙ୍କର ଏପରି ପାଗଳାମି ସତରେ ବିଶ୍ୱ ଇତିହାସରେ ଏକାନ୍ତ ବିରଳ ।

କିଏ ଧନ ମାଗେ ସିନା— ସେ ନିର୍ଦ୍ଧନ ଭାବେ ବଞ୍ଚିବା ପାଇଁ ସକଳ ଆୟୋଜନ କରିଥିଲେ । ଧନୀର ଜୀବନରେ ବିଦ୍ୟା ପ୍ରତି ଅନୁରାଗ ନ ଥାଏ ଓ ଶାନ୍ତି ନଥାଏ ବୋଲି ସେ ଧନିକର ଜୀବନକୁ ଏକ ଅନୁରାଗ ବିହୀନ ବଞ୍ଚିବାର ଜୀବନ ବୋଲି ମନେ କରୁଥିଲେ । ଧନୀର ଜୀବନକୁ ସେ କଠିନ ଜୀବନ ବୋଲି କହୁଥିଲେ ।

୧୯୩୪ ଓ ୧୯୩୫ ଖ୍ରୀ:ରେ ସେ ଦୁଇଖଣ୍ଡ ବହି ପ୍ରକାଶ କରିଥିଲେ । ଖଣ୍ଡିଏ ହେଲା ବ୍ଲୁ ବୁକ୍ (Blue Book) ଓ ଆଉ ଖଣ୍ଡିଏ ହେଲା ବ୍ରାଉନ୍ ବୁକ୍ (Brown Book) । ଭାଷା ବିଶ୍ଳେଷଣ ରୂପକ ଏକ ନୂତନ ପଦ୍ଧତିକୁ ଅବଲମ୍ବନ କରି ଉଇଟ୍‌ଗେନଷ୍ଟାଇନ୍ ଦେଖାଇ

ଦେଇଛନ୍ତି ଯେ ଭାଷାର ଗୁଣ ତତ୍ତ୍ୱ ଉନ୍ମୋଚନ ନୁହେଁ; ବରଂ ପ୍ରୟୋଗ ମଣ୍ଡଳରେ ଜୀବନ ପ୍ରବନ୍ଧକୁ ଆଗେଇ ନେବା ଭାଷାର କାର୍ଯ୍ୟ ।

ଆଧୁନିକ ପାଶ୍ଚାତ୍ୟ ଜଗତରେ ସେ ସବୁଠାରୁ ବଡ଼ ଦାର୍ଶନିକ ଥିଲେ । ୧୮୮୯ ମସିହା ଅପ୍ରେଲ ୨୬ ତାରିଖ ଅଷ୍ଟ୍ରିଆ ରାଜଧାନୀ ଭିଏନା ନଗରୀରେ ଏକ ଅଭିଜାତ ଧନୀ ପରିବାରରେ ଉଇଟ୍‌ଗେନଷ୍ଟାଇନଙ୍କର ଜନ୍ମ ହୋଇଥିଲା । ଶିଳ୍ପପତି ପରିବାରରେ ସେ ଲାଳିତ ପାଳିତ ହୋଇଥିଲେ ବି ସଙ୍ଗୀତ ଚର୍ଚ୍ଚା ଓ ସୌନ୍ଦର୍ଯ୍ୟ ଅନୁଶୀଳନ ସେ ପରିବାରର ବିଶେଷ ପ୍ରତିଷ୍ଠା ଲାଭ କରିଥିଲା, ଯାହା ଉଇଟ୍‌ଗେନଷ୍ଟାଇନ୍‌ଙ୍କୁ ବାଲ୍ୟକାଳରୁ ବିଶେଷ ଭାବେ ପ୍ରୋତ୍ସାହିତ କରିଥିଲା ।

ସେ ବର୍ଲିନ୍‌ରେ ବ୍ୟୋମ-ଯାନ୍ତ୍ରିକ ବିଦ୍ୟା ଅଧ୍ୟୟନ କଲେ । ବାଟ୍ରାଣ୍ଡ ରସେଲଙ୍କ ଗଣିତ ଶାସ୍ତ୍ରର ମୌଳିକ ନିୟମାବଳୀ ତାଙ୍କୁ ଗଭୀର ଭାବରେ ଆକୃଷ୍ଟ କରିଥିଲା । ନରଓ୍ୱେର ବର୍ଗେନ ନିକଟବର୍ତ୍ତୀ ଏକ ନିର୍ଜନ ସ୍ଥାନରେ ୧୯୧୩ ମସିହାରେ ସେ ଏକ ନିରାଡ଼ମ୍ବର ସାଧନ କକ୍ଷ ମଧ୍ୟରେ ବାସ କରି ଗଭୀର ଚିନ୍ତାରେ ମଗ୍ନ ହେଲେ ।

ଦର୍ଶନର ତାର୍କିକ ଭିତ୍ତି (Tractatus Logico-Philosophicus) ଗ୍ରନ୍ଥଟିକୁ ସେ ପ୍ରଥମେ ଦକ୍ଷିଣ ଇଟାଲୀର ଏକ ବନ୍ଦୀଶାଳାରେ ରଚନା କରିଥିଲେ । ନୂତନ ଶିକ୍ଷା ପଦ୍ଧତି ଜରିଆରେ ତାଙ୍କର ଦାର୍ଶନିକ ଜ୍ଞାନ ସବୁକୁ ଛାତ୍ରଛାତ୍ରୀମାନଙ୍କୁ ବିତରଣ କରିବା ପାଇଁ ଉଇଟ୍‌ଗେନଷ୍ଟାଇନ୍ ଅଧିକ ଯତ୍ନ କରୁଥିଲେ । ସେ ଅଧିକ ଛାତ୍ରବତ୍ସଳ ଥିଲେ ।

ଉଇଟ୍‌ଗେନଷ୍ଟାଇନ୍ ଶିକ୍ଷାୟତନରେ କଠୋର ଶୃଙ୍ଖଳାର ପ୍ରବର୍ତ୍ତନ କରିଥିଲେ । ଅଥଚ ସେ ଶିକ୍ଷକତାରୁ ଅବ୍ୟାହତି ନେଇ ଏକ ମଠ-ବଗିଚାରେ ସାଧାରଣ ମାଳୀରୂପେ କାର୍ଯ୍ୟ କଲେ । ସେ ତାଙ୍କ ଗରିବ ଭଉଣୀ ପାଇଁ କୋଠାଘର ତିଆରି କରି ଦେଇ ଥିଲେ ହେଁ ନିଜେ ଅତ୍ୟନ୍ତ ଦରିଦ୍ର ପରି ଜୀବନ କଟାଉଥିଲେ ।

ଧନସମ୍ପତ୍ତି ଥିଲେ ଅନେକ ଛଳନାକାରୀ ବନ୍ଧୁ ଆସି ପହଞ୍ଚନ୍ତି । ସେମାନେ କାହାର ବୌଦ୍ଧିକ ଜୀବନ ବିକାଶରେ ସହଯୋଗ କରି ପାରନ୍ତିନି । ଯୁଦ୍ଧକ୍ଷେତ୍ର ଓ ବନ୍ଦୀଶାଳା ହିଁ ସବୁଠାରୁ ଅଧିକ ପ୍ରଶସ୍ତ କ୍ଷେତ୍ର ଯେଉଁଠି ଜଣେ ମଣିଷ ଚରମ ଦୁର୍ଗତି ଓ ଅସହାୟତାକୁ ଆବିଷ୍କାର କରେ ।

ସେ କର୍କଟ ରୋଗାକ୍ରାନ୍ତ ହୋଇଛନ୍ତି ଜାଣି ଶୀଘ୍ର ଶୀଘ୍ର ତାଙ୍କ ଦାର୍ଶନିକ ଅନୁସନ୍ଧାନ ବହିଟି ଶେଷ କରିଥିଲେ । ତାଙ୍କର ସବୁଠାରୁ ବଡ଼ ପ୍ରଶଂସକ ଥିଲେ ତାଙ୍କର ଛାତ୍ର ମାଲକମ୍ । ଉଇଟ୍‌ଗେନଷ୍ଟାଇନ୍ ବିଜ୍ଞାନ ଓ ଦର୍ଶନର ସମ୍ପର୍କକୁ ଅଧିକ ବିଶ୍ଳେଷଣ କରିଛନ୍ତି । ବିଜ୍ଞାନ ବୃକ୍ଷରେ ଦର୍ଶନ ଏକ କୀଟ ବା ଯୋକ ପରି, ଯାହା ତାଙ୍କୁ ନିରନ୍ତର ଶୋଷଣ କରି କୃଶ୍ କରିଦିଏ ।

୧୯୫୧ ମସିହା ଅପ୍ରେଲ ୨୯ ତାରିଖରେ ଏହି ମହାନ୍ ଜୀବନର ଅବସାନ ଘଟିଥିଲା । ସେ ମୃତ୍ୟୁପୂର୍ବରୁ ତାଙ୍କ ବନ୍ଧୁମାନଙ୍କ ଉଦ୍ଦେଶ୍ୟରେ ବାର୍ତ୍ତା ଦେଇ କହିଥିଲେ ଯେ,

''ମୁଁ ଏକ ଚମତ୍କାର ଜୀବନ ବଞ୍ଚିଥିଲି ।'' ତାଙ୍କ ଜୀବନ ଏକ ବିୟୋଗାନ୍ତକ ନାଟକର ଅଂଶ ପରି ମନେହୁଏ । ବୌଦ୍ଧିକ ଜୀବନ ବଞ୍ଚିବା ପାଇଁ ତାଙ୍କର ଏତେ ଅଭିଳାଷ ଜାଣି ପ୍ରକୃତରେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ରୋଗ, ଶୋକ, ଦାରିଦ୍ର୍ୟ, ଚରମ ଅସହାୟତା, ଏକାକୀତ୍ୱ ଉଇଟ୍‌ଗେନଷ୍ଟାଇନ୍‌ଙ୍କୁ ବିଚଳିତ କରି ଦେଇ ପାରିନି । ବିପୁଳ ଧନସମ୍ପତ୍ତି ତାଙ୍କୁ ଆସକ୍ତ କରି ପାରିନି ।

ଜ୍ଞାନ ପାଇଁ ସେ ସ୍ୱେଚ୍ଛାରେ ଏକାକୀତ୍ୱକୁ ବରଣ କରି ନେଇଛନ୍ତି । ଯୁଦ୍ଧକ୍ଷେତ୍ର, ବନ୍ଦୀଶାଳା ତଥା ନିର୍ଜନ ସ୍ଥାନକୁ ସେ ଜ୍ଞାନ ଆହରଣ ପାଇଁ ଲେଖାଲେଖି କରିବା ପାଇଁ ଆବୋରି ନେଇଛନ୍ତି ।

ପିତାଙ୍କ ମୃତ୍ୟୁପରେ ଉଇଟ୍‌ଗେନଷ୍ଟାଇନ୍ ଜୀବନରେ ଏକଲା ହୋଇ ଯାଇଛନ୍ତି । ଜ୍ଞାନ ଚର୍ଚ୍ଚା କରିବାକୁ ତାଙ୍କୁ ତପସ୍ୟା କଲା ଭଳି ଲାଗୁଥିଲା । ଟ୍ରାକ୍‌ଟାଟସ୍ ପୁସ୍ତକରେ ଉଇଟ୍‌ଗେନଷ୍ଟାଇନ୍ ଯେପରି ଓ ଯେଉଁ ସବୁ ମତ ପ୍ରକାଶ କରିଥିଲେ ପରିଣତ ବୟସରେ ସେ ସବୁକୁ ସେ ପ୍ରାୟ ପ୍ରତ୍ୟାଖ୍ୟାନ କରିଛନ୍ତି । ତାଙ୍କ ମନ ସର୍ବଦା ସୃଜନଶୀଳ ଥିଲା । ପ୍ରସାରଣଶୀଳ ଥିଲା ମଧ୍ୟ । ତାଙ୍କ ମନ ଓ ଚେତନା କେବେ ଆବଦ୍ଧ ନ ଥିଲା । ପ୍ରାଥମିକ ବୟସରେ ଲେଖିଥିବା ସମସ୍ତ ଗ୍ରନ୍ଥ ତ୍ରୁଟିପୂର୍ଣ୍ଣ ବୋଲି ସେ ସ୍ପଷ୍ଟ ଭାବରେ ଘୋଷଣା କଲେ । ଜୀବନ ସାରା ପ୍ରତିଯୁକ୍ତି ସବୁକୁ ସେ ପରୀକ୍ଷା କରୁଥିଲେ ।

ଭାଷାକୁ ଉଇଟ୍‌ଗେନଷ୍ଟାଇନ୍ ସୌନ୍ଦର୍ଯ୍ୟତାତ୍ତ୍ୱିକ ଆଲୋଚନାର ମୂଳ ବୋଲି ପ୍ରତିପାଦନ କରି ଯାଇଛନ୍ତି । ଭାଷା ଏକ ଜଟିଳ ସମ୍ପର୍କାତ୍ମକ ବିଷୟ ବୋଲି ଉଇଟ୍‌ଗେନଷ୍ଟାଇନ୍ ବର୍ଣ୍ଣନା କରିଛନ୍ତି । ଉଇଟ୍‌ଗେନଷ୍ଟାଇନ୍ ନୀତିଶାସ୍ତ୍ର ଆଲୋଚନା କରିନାହାନ୍ତି କି କଳ୍ପନାର କୁଞ୍ଜବନ ନିର୍ମାଣ କରି ନ ଥିଲେ । ସେ ଭାଷାର ବାସ୍ତବତାକୁ ପରୀକ୍ଷା କରିଥିଲେ । ଭାଷାର ଭାବ ବଳୟ ଭିତରେ ମଣିଷର ସମସ୍ତ ଚେତନା ପ୍ରକଟିତ ହୁଏ ବୋଲି ଉଇଟ୍‌ଗେନଷ୍ଟାଇନ୍ ଉପଲବ୍ଧି କରିଥିଲେ । ଦର୍ଶନ ଚର୍ଚ୍ଚା ପାଇଁ ତାଙ୍କର ଶକ୍ତି ଓ ସାମର୍ଥ୍ୟ ଅଛି କି ନାହିଁ ସେ ବିଷୟରେ ସବୁବେଳେ ସନ୍ଦିହାନ ହୋଇଥିଲେ । କାରଣ ବୌଦ୍ଧିକବ୍ୟାପାର ଭିତରେ ଦର୍ଶନ ଚର୍ଚ୍ଚା ସବୁଠାରୁ କଠିନ ବୋଲି ସେ ମନେ କରୁଥିଲେ ।

ପ୍ଲାଟୋ, ପ୍ଲୋଟିନସ୍, ସ୍ପିନୋଜା, କାଣ୍ଟ, ନିତ୍‌ସେ, ବ୍ରାଡଲେ, କିର୍କେଗାର୍ଡ, ହାଇଡ୍‌ଗାରଙ୍କ ପରି ଉଇଟ୍‌ଗେନଷ୍ଟାଇନ୍ ଦର୍ଶନ ଜଗତରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଛନ୍ତି । ଗତ ଦଶନ୍ଧିମାନଙ୍କରେ ସମଗ୍ର ବିଶ୍ୱରେ ତାଙ୍କ ଦର୍ଶନ ସବୁଠାରୁ ବେଶି ଆଲୋଚ୍ୟ ଦର୍ଶନ ଥିଲା । ବାଲ୍ୟଶିକ୍ଷା ପରେ ସେ ନିଜକୁ ସଙ୍ଗୀତ ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ କରିବା ପାଇଁ ଅଭିଳାଷ ପୋଷଣ କରିଥିଲେ, ଯଦିଓ ଏକ ବିରାଟ ଶିଳ୍ପପତି ପରିବାରର ପ୍ରଚୁର ଐଶ୍ୱର୍ଯ୍ୟ ଭିତରେ ସେ ବଢ଼ିଥିଲେ । ବିଳାସିତା, ଧନର ପ୍ରାଚୁର୍ଯ୍ୟ, ଆଡ଼ମ୍ବରପୂର୍ଣ୍ଣ ଜୀବନ ତାଙ୍କ ମନ ଓ ଚେତନାକୁ କଦାପି କବଳିତ କରିପାରି ନ ଥିଲା ।

ଜଣେ ମୁକ୍ତ ମନର ଅଧିକାରୀ ନ ହେଲେ ସୌନ୍ଦର୍ଯ୍ୟ ଚର୍ଚ୍ଚା କରିପାରିବନାହିଁ ବୋଲି ସେ ଅନୁଭବ କରୁଥିଲେ । ଉଇଟ୍‌ଗେନଷ୍ଟାଇନ୍ ଗଣିତଶାସ୍ତ୍ରରେ ବିଚକ୍ଷଣ ଥିଲେ; ଅଥଚ

ତାଙ୍କର ବ୍ୟକ୍ତିଗତ ଆଗ୍ରହ ଯୋଗୁଁ ସେ ବିଶ୍ବର ଜଣେ ମହାନ୍ ସୌନ୍ଦର୍ଯ୍ୟଶାସ୍ତ୍ରୀ ହୋଇ ପାରିଥିଲେ । ଉଇଟ୍‌ଗେନଷ୍ଟାଇନ୍ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଗଣିତ ପ୍ରଫେସର ହେଲେ ପୁଣି ଦର୍ଶନ ଅଧ୍ୟାପକ ହେଲେ; ଅଥଚ୍ ସେ ଏପରି ସମ୍ମାନଜନକ ପଦପଦବୀ ଛାଡ଼ି ବଗିଚାର ମାଳିରୂପେ କାର୍ଯ୍ୟ କଲେ । ଏପରି ଉତ୍ସର୍ଗୀକୃତ ଜୀବନ ବିଶ୍ୱର ବହୁବନ୍ଦିତ ମହାପୁରୁଷମାନଙ୍କ ମଧ୍ୟରେ ବିରଳ ।

ନିରାଡ଼ମ୍ବର ଜୀବନକୁ ସେ ସାଧନାର ସୁଯୋଗ ବୋଲି ମନେ କରୁଥିଲେ ନହେଲେ ସେ ତାଙ୍କ ଛାତ୍ରଙ୍କ ଘରେ ଝାଡୁକରି, ବାସନ ମାଜି ଜୀବନ ବଞ୍ଚି ନ ଥାନ୍ତେ । ଗଣିତର ଛାତ୍ର ହୋଇଥିବା କାରଣରୁ ତାଙ୍କ ଦର୍ଶନର ଯୁକ୍ତିନିଷ୍ଠତା (Logical Core) ଅଧିକ । ତାଙ୍କ ସୌନ୍ଦର୍ଯ୍ୟଶାସ୍ତ୍ରୀୟ ବିଶ୍ଳେଷଣ ସବୁ ପୁଣି ଯେପରି ଭାଷାତାତ୍ତ୍ୱିକ ସେହିପରି ଗାଣିତିକ ସୂତ୍ର ବା ଅନୁବନ୍ଧନ ଉପର ପର୍ଯ୍ୟବେକ୍ଷିତ ।

ଉଇଟ୍‌ଗେନଷ୍ଟାଇନ୍ କହିଥିଲେ, ''ମୁଁ ପଦର କୌଣସି ତାତ୍ପର୍ଯ୍ୟଗତ ସ୍ଥିତି ନାହିଁ । ଭାଷା ବେଳେ ଅନ୍ତରୀଣ ଉଦ୍ଦେଶ୍ୟକୁ ବ୍ୟକ୍ତ କରିପାରେ ନାହିଁ ।'' ଉଇଟ୍‌ଗେନଷ୍ଟାଇନ୍ ତାଙ୍କ ଦାର୍ଶନିକ ଆଲୋଚ଼ନାର ମାଧ୍ୟମରୂପେ ଭାଷାକୁ ହିଁ ମୁଖ୍ୟତଃ ବିଶ୍ଳେଷଣ କରିଛନ୍ତି । ଏଠାରେ ଭାଷାକୁ ପରିବ୍ୟାପ୍ତ ଅର୍ଥରେ ଗ୍ରହଣ କରାଯାଇପାରେ । ଉଇଟ୍‌ଗେନଷ୍ଟାଇନ୍‌ଙ୍କ ମତରେ ଭାଷା ଯଦିଓ ଭାବ ପ୍ରକାଶର ମାଧ୍ୟମ ତଥାପି ତାହା ସମ୍ପୂର୍ଣ୍ଣ ଭାବପ୍ରକାଶ କରିପାରେ ନାହିଁ ।

ଯେତେବେଳେ ସମଗ୍ର ବିଶ୍ୱରେ ନିର୍ମଳ ବୌଦ୍ଧିକ ଚିନ୍ତାଧାରାର ଅଭାବ ଘଟେ ସେତେବେଳେ ନାନା ଆବେଗିକ କଳ୍ପନାର ପ୍ରଭାବ ଅଧିକ ହୋଇଥାଏ । ଉଇଟ୍‌ଗେନଷ୍ଟାଇନ୍‌ଙ୍କ ଦର୍ଶନର 'ତାତ୍ତ୍ୱିକ ଭିତ୍ତିଭୂମି' ପୁସ୍ତକଟି ପ୍ରକୃତରେ ବିଶ୍ୱର ଅନନ୍ୟ ଦାର୍ଶନିକ ଗ୍ରନ୍ଥ; ଯାହା ଭାଷା, ମଣିଷର ମନ, ଆବେଗ, ତା'ର ବୌଦ୍ଧିକ ଜୀବନ ଓ ସୌନ୍ଦର୍ଯ୍ୟାନୁଭୂତିକୁ ପ୍ରକଟନ କରିଛି ।

ପୃଥିବୀର ଜ୍ଞାନରାଜ୍ୟରେ ଉଇଟ୍‌ଗେନଷ୍ଟାଇନ୍ ଏକାନ୍ତ ଅବିସ୍ମରଣୀୟ ହୋଇ ରହିବେ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ; ଯେ ଆପଣା ପ୍ରାଣରେ ସୃଜନଶୀଳ ବିଦ୍ୟାନୁରାଗକୁ ବଞ୍ଚାଇ ରଖିବା ପାଇଁ ଚିର ଦରିଦ୍ରଭାବେ ନିଃସମ୍ବଳ ହୋଇ ରହିବା ପାଇଁ ଅଭିଳାଷ ପୋଷଣ କରିଥିଲେ ।



# ନବ ଧ୍ରୁପଦୀର ନାନ୍ଦିକାର

ଆଜକୁ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ବର୍ଷ ତଳେ ଆମେ କବି ସଚ୍ଚିରାଉତରାୟଙ୍କୁ ଯେଉଁ ଭାବରେ ଜାଣିଥିଲେ ଓ ତାଙ୍କୁ ଜଣେ ନବଚେ଼ତନା ଓ ନୂଆ ଆଙ୍ଗିକର ପ୍ରୟୋଗବାଦୀ କବିର ଆଖ୍ୟା ଦେଇଥିଲେ ହୁଏତ ଆଜି ଆମେ ତାଙ୍କୁ ଏତେ ବର୍ଷପରେ ଠିକ୍ ସେହିଭାବରେ ଗ୍ରହଣ କରି ପାରୁନୁ । ନୂଆ ପୀଢ଼ିର ପାଠକ ପାଠିକାମାନେ ତାଙ୍କୁ ତାଙ୍କର ପୂର୍ବବର୍ତ୍ତୀମାନଙ୍କ ସହିତ ହୁଏତ ଆଉ ତୁଳନାକରି ତାଙ୍କୁ ନବଚେ଼ତନାର ଅଗ୍ରଗାମୀ କବିରୂପେ ବର୍ଣ୍ଣନା କରିବାକୁ ଉତ୍ସାହିତ ହେଉ ନାହାନ୍ତି ।

ନାନାଦି ହଟଚ଼ମଟ ସୃଷ୍ଟି କରିଥିବା, କବିତା ଧାରାରେ ନାନା ଆଟୋପ ପ୍ରଦର୍ଶନ କରିଥିବା ଜଣେ କବି ସମୟ କ୍ରମେ କେବଳ ଜଣେ କବିହିଁ ହୋଇଯାଇଥାଏ । ନବଚେତାନର ଧ୍ରୁପଦୀ ଗାଇଥିବା ଆଧୁନିକ ବୋଲି ପ୍ରଖ୍ୟାତ ସଚ୍ଚିରାଉତରାୟ ଆଜି ଅର୍ଦ୍ଧ ଶତାବ୍ଦୀ ବର୍ଷ ପରେ ଜଣେ ଶୁଧୁକବି କେବଳ ।

ତାଙ୍କୁ ତେଣୁ ଆଧୁନିକ କହିବା, ପ୍ରଗତିବାଦୀ ବୋଲି କହିବା କିମ୍ବା ଇଲିୟଟୀୟ ନୈର୍ବ୍ୟକ୍ତିକତାର କବି ବୋଲି କହିବା ଆଜି ଆଦୌ ଯଥାର୍ଥ ନୁହେଁକି ଅର୍ଥପୂର୍ଣ୍ଣ ବି ନୁହେଁ ।

ଜଣେ କବିର ସାର୍ବକାଳୀନ ପରିଚ଼ୟ ହେଉଛି ସେ ଜଣେ କବି ଜଣେ ରୋମାଣ୍ଟିକ ହେଉ କି ରହସ୍ୟବାଦୀ ହେଉ, ଜଣେ ବୈଧୀ ହେଉ କି ବୁଦ୍ଧିବାଦୀ ହେଉ, ଜଣେ ଭକ୍ତ କବି ହେଉକି ଆଳଙ୍କାରିକ କବିହେଉ ଏପରି ବିଚାର ଓ ବର୍ଗୀକରଣ ଊର୍ଦ୍ଧ୍ୱରେ ଜଣେ କବି ତା କବିତାର ଶକ୍ତି ଓ ସୌନ୍ଦର୍ଯ୍ୟ ବଳରେ କେବଳ କବିହିଁ ହୋଇଥାଏ ।

ଆଜି ଦୀର୍ଘ ପାଞ୍ଚ ଦଶନ୍ଧିପରେ ସଚ୍ଚିରାଉତରାୟଙ୍କୁ ଆଧୁନିକ କିମ୍ବା ପ୍ରଗତିବାଦୀ ବୋଲି କହିବା ନିହାତି ପ୍ରାଥମିକ ଓ ମାମୁଲି । ଗୋଟେ କବିତା ବା କବିତ୍ୱର ପରିଚ଼ୟ ଏମିତି ମାମୁଲି ଓ ନିହାତି ସ୍ଥୂଳ ହେବା ଅନୁଚିତ । ସଚ୍ଚିରାଉରାୟଙ୍କ କବିତା ସତରେ କେତେ ସୁନ୍ଦର, କେତେ ପ୍ରାଣପୂର୍ଣ୍ଣ ଓ ଚିତ୍ତପ୍ରବୋଧକ ତା'କୁ ସେ ପୁରୁଣା ବର୍ଗୀକରଣ ଊର୍ଦ୍ଧ୍ୱରେ ବସ୍ତୁତଃ ଉପଲବ୍ଧି କରିବାହିଁ ତାଙ୍କ କବିତା ଓ କବିତ୍ୱକୁ ନିସର୍ଗ ଭାବେ ହୃଦୟଙ୍ଗମ କରିବା ।

ସେ କେତେ ଅଧିକ ଆଧୁନିକ, କେତେ ଅଧିକ ପଦ୍ୟମୟ ତାଙ୍କ କବିତା କିମ୍ବା ସେ କେତେ ସଚ୍ଚା ମାର୍କ୍ସବାଦୀ କେତେ ପୁଣି ସ୍ଥିତିବାଦୀ ବା ମାନବତାବାଦୀ ଏମିତି ବିଚାର କରିବା, ତାଙ୍କ ପରିଚୟ ଦେବାରେ ଟଣାଓଟରା ହେବା ଆଜି ଅପ୍ରାସଙ୍ଗିକ କେବଳ ନୁହେଁ, ନିରର୍ଥକ ମଧ୍ୟ ।

ତେଣୁ ନିସର୍ଗ ଓ ନିଷ୍କପଟ ଭାବେ ଆଜି ଆମେ ତାଙ୍କ କବିତାର ପୁର୍ନମୂଲ୍ୟାୟନ କରିବା ଉଚ଼ିତ । ତାଙ୍କ କବିତାରେ କେତେ ଉଷ୍ମ ମାନବୀୟ ସମ୍ବେଗ ଅଛି ଅଖିଳ ମାନବାତ୍ମାର ଗୀତ ଗାଇବାରେ ତାଙ୍କ କବିତା କେତେ ସୁନ୍ଦର ତା'ର ମୂଲ୍ୟାୟନ କରିପାରିଲେ ଯାଇ

ଆମେ ସଚ୍ଚିରାଉତରାୟଙ୍କ କାବ୍ୟ ସୌଧର ଚିତ୍ତ ଉଲ୍ଲାସକ ସୌନ୍ଦର୍ଯ୍ୟ ଓ ଚୁଙ୍ଗିମାକୁ ଉପଲବ୍ଧି କରି ପାରିବା ।

ଅନ୍ୟ କୌଣସି ଆଙ୍ଗିକ ଆଟୋପ ଚିରନ୍ତନ କଳା ଶକ୍ତ ହୋଇ କାଳ ଗର୍ଭରେ ବଞ୍ଚେନି । ବଞ୍ଚେ ବରଂ ମଣିଷର ମୌଳ ସମ୍ବେଗ ପୁଷ୍ଟ ବିଷୟ ପିଣ୍ଡ- ଯାହା ଚିରନ୍ତନ ଓ ବହୁଭାବରେ ଅପରିବର୍ତ୍ତନୀୟ । ଆର୍କିଟାଇପ୍ ସମାଲୋଚକ ନର୍ଥପ ଫ୍ରେ ଯଥାର୍ଥରେ ଯେଉଁଥି ପାଇଁ କହିଛନ୍ତି ଯେ, ସାହିତ୍ୟର ଭାବପ୍ରସ୍ଥ ଏକାନ୍ତ ଅପରିବର୍ତ୍ତନୀୟ ଏବଂ ଏହି କାରଣରୁ ସାହିତ୍ୟର ଇତିହାସ ନାହିଁ; ଯଦି ଅଛି ତାହା ଆମ୍ବିକର ଇତିହାସ ନୁହେଁ, ସତତ ପରିବର୍ତ୍ତନଶୀଳ ଆଙ୍ଗିକର ଇତିହାସ ମାତ୍ର । ସେ କହିଛନ୍ତି— 'There is nothing as the history of literature. It was that is history of the form; not of the content.'

ସଚ୍ଚିରାଉତରାୟଙ୍କ ସାହିତ୍ୟର ବିଷୟ କେତେ ଶକ୍ତିଶାଳୀ ତାହାଉପରେ ତାଙ୍କ କବିତ୍ୱ ନିର୍ଭର କରେ । ସେ ଗଦ୍ୟଛନ୍ଦର ପ୍ରବର୍ତ୍ତକ, କବିତାକୁ ଉଲ୍ଲେଖଯୋଗ୍ୟ ସଂକ୍ଷିପ୍ତତା ପ୍ରଦାନ କରିଛନ୍ତି । ରୂପକ କବିତା ବା କଂକ୍ରିଟ ପୋଏଟ୍ରି ପ୍ରଥମକରି ଲେଖିଛନ୍ତି ଏମିତି ସବୁ ଆଙ୍ଗିକ ବିଷୟ ପାଇଁ ତାଙ୍କ ସାହିତ୍ୟ ସାର୍ବଜନୀନ, ସାର୍ବକାଳୀନ ହୋଇ ରହିବ ନାହିଁ । ଆଙ୍ଗିକର ଚଳମାନ ନୂତନତା ସର୍ବଦା ସବୁକାଳରେ ଏକ ଅସ୍ଥିର ଧର୍ମ । ଦୀର୍ଘ ପଚାଶ ବର୍ଷ ପରେ ସଚ୍ଚିରାଉତରାୟ ଗଦ୍ୟଛନ୍ଦର ପ୍ରବର୍ତ୍ତକ ବୋଲି ଗୁରୁତ୍ୱ ଦେଇ କହିବା ପ୍ରକୃତରେ ସେତେ ଗୁରୁତ୍ୱପୂର୍ଣ୍ଣ ବିଷୟ ନୁହେଁ । ତାଙ୍କୁ ନୂତନ ଗଦ୍ୟଛନ୍ଦର ପ୍ରବର୍ତ୍ତକ ବୋଲି କହିବା ଯେପରି ଏକ ସାରସ୍ୱତ ସମ୍ବାଦ ସେହିପରି ଜଗନ୍ନାଥଦାସଙ୍କୁ ନବାକ୍ଷରୀର ଆଦିସ୍ରଷ୍ଟା କିମ୍ବା ସାରଳା ବା ବଳରାମ ଦାସଙ୍କୁ ଦାଣ୍ଡିବୃତ୍ତର ରଚୟିତା ବୋଲି କହିବା ।

ସଚ୍ଚିରାଉତରାୟଙ୍କ 'ଭାନୁମତୀର ଦେଶ' ହେଉ କିମ୍ବା 'ବାଜିରାଉତ' ହେଉ ତା'ର ଭାବଚେ଼ତନା ମଣିଷର ସ୍ୱପ୍ନ ଓ ଆବେଗକୁ କେତେ ଦୀପ୍ତ ତଥା ସୃଜନଶୀଳ କରି ପ୍ରକଟନ କରିପାରିଛି ତାହାକୁ ବସ୍ତୁତଃ ଆମର ଲକ୍ଷ୍ୟ କରିବାର ଅଛି ।

ଜଣେ କବି ପୁଣି କେତେ ଅଧିକ ଉଦାର ମାନବବାଦୀ ଓ ଏ ମୃର୍ତ୍ତିକାର ରୂପକାର, କେତେ ବିରଳ ଅନୁଭବର ସ୍ଥପତି, ମଣିଷର ବ୍ୟଥା ଓ ବେଦନାର କଥା କହିବାରେ ତାଙ୍କ ଭାଷା କେତେ ପୁଣି ଆନ୍ତରିକତାପୂର୍ଣ୍ଣ ସେସବୁ ହୁଏତ ଗୋଟେ କାଳଜୟୀ ଉଚ୍ଚମାନ ସାହିତ୍ୟର ନିୟାମକ ।

ତା'ପରେ ଅନେକ ସଚ୍ଚିରାଉତରାୟଙ୍କ ଅଣରୋମାଣ୍ଟିକ୍ କାବ୍ୟ ଚେ଼ତନାକୁ ବହୁ ପ୍ରଶଂସା କରି ତାଙ୍କ କବିତାକୁ ନବଚେ଼ତନାର ଧ୍ରୁପଦୀବୋଲି କହିଥାନ୍ତି । ସାହିତ୍ୟର ଆଧୁନିକ ପର୍ବର ଆଖଡ଼ାଘରେ ତାଙ୍କୁ ଏ ସମୟର କେତେ଼କ ଦ୍ରୋଣଗୁରୁ ବୋଲି ମଧ କହିଥାନ୍ତି । ମାତ୍ର କବି ସଚ୍ଚିରାଉ୍ତରାୟ ରୋମାଣ୍ଟିକ୍ କବିମାନଙ୍କୁ ଆକ୍ଷେପ କରିବାକୁ ଯାଇ ଅଧିକ ରୋମାଣ୍ଟିକ୍ ହୋଇ ଯାଇଛନ୍ତି ଯେପରି । ଜଣେ ଉତ୍ତମ ସାହିତ୍ୟ ଛାତ୍ର ସଚ୍ଚିରାଉତରାୟଙ୍କ ନବଚେ଼ତନାର ଇସ୍ତାହାର ତାଙ୍କ 'ପାଣ୍ଡୁଲିପି'କୁ ଏ ଦୃଷ୍ଟିରୁ ଭିନ୍ନ ଏକ ସର୍ବୋତ୍ତମ ରୋମାଣ୍ଟିକ୍ କବିତା ଗ୍ରନ୍ଥ

ବୋଲି ଜ୍ଞାନ କରିବ ଅବଶ୍ୟ । ତାଙ୍କ ସମୟର ଓଡ଼ିଆ ସାହିତ୍ୟରେ ଜଣେ ପ୍ରତିସ୍ପର୍ଦ୍ଧୀ ସ୍ୱୈରବାଦୀ କବି ହେଉଛନ୍ତି ମାନସିଂହ । ତାଙ୍କ କବିତାକୁ ଆକ୍ଷେପ କରିବାକୁ ଯାଇ ସଚ୍ଚିରାଉତରାୟ ସତରେ କମ୍ ରୋମାଣ୍ଟିକ୍ ହୋଇନାହାନ୍ତି ? କମ୍ ତନ୍ଦ୍ରାମଗନ ଅଳସ ସପନର କଥା କହିନାହାନ୍ତି ? ରସର ଝର୍ଣା, ଚାରୁମନ୍ଦିର ପ୍ରେମ ଓ ପୀୟୂଷର କଥା ବଖାଣିଛନ୍ତି । ମାନସିଂହଙ୍କଠାରୁ ଶ୍ରୀରାଉତରାୟ କେହି କମ୍ ରୋମାଣ୍ଟିକ୍ ନଥିଲେ । 'ପାଣ୍ଡୁଲିପି'ରୁ ଗୋଟେ ଉଦାହରଣ ଏଠାରେ ଦିଆଯାଇ ପାରେ ।

'କେ ରସିକ କହେ- ସୁନ୍ଦରୀ ନଟୀ
ଲୀଳାୟିତ ନୀବୀ ବନ୍ଧ
ସ୍ୱତଃଶ୍ଳଥ ତାର କାଞ୍ଚୁଲି ତଳେ
ପଦ୍ମ କୋରକ ଛନ୍ଦ
କିଏ ଦେଖେ ନାଗକନ୍ୟାର ଗଳେ
ରତି-ଚ୍ୟୁତ ବନମାଳା
ଯକ୍ଷ ବଧୂର କବରୀରେ କିଏ
ଶତରାତ୍ରିର ଜ୍ୱାଳା
ଅନୁଭବେ ନିରନ୍ତର
ଜାଣିବାକୁ କିଏ ଲୋଡ଼ିବକି କେବେ
ଇତିହାସ ମଣିଷର ?'

ସଚ୍ଚିରାଉତରାୟଙ୍କ କବିତାର ଏହି ଧାଡ଼ିସବୁ କେତେ ସରସ ଶୃଙ୍ଗାରିକ ସତରେ ? କେତେ ଚିତ୍ତ ଉଲ୍ଲାସକ । ଏମିତି କେତେ ଜହ୍ନରାତି, କେତେ ଫଗୁଣର ପାହାନ୍ତି, କେତେ ରତିକାଂକ୍ଷିଣୀ ନାରୀର ଶ୍ଳଥ କାଞ୍ଚୁଲି, କେତେ ପ୍ରମିଳାର ପ୍ରଣୟାଭିସାର, ପ୍ରିୟତମାକୁ କେତେ ପ୍ରଣୟ ଚିଟାଉର କଥା ସଚ୍ଚିରାଉତରାୟଙ୍କ କବିତାକୁ ଏକ ଉଷ୍ମ ସ୍ପର୍ଶାତୁରତା ଆଣି ଦେଇଛି । ପଦ୍ମଭୁକ ସ୍ୱୈରବାଦୀମାନଙ୍କ ବିରୋଧରେ ମାୟୋକୋଭସ୍କିୟ ସ୍ଲୋଗାନ୍ ଦେଇଥିବା ସତ୍ତ୍ୱେ ଚୋରାବାଲି କ୍ରମଶଃ ବାଟୋଇର ପାଦକୁ ଟାଣିନେଲାପରି ସଚ୍ଚିରାଉତରାୟ ଅଧିକ ରୋମାଣ୍ଟିକ୍ ହୋଇ ଯାଇଛନ୍ତି ।

ସୁରମ୍ୟ କୋଣାର୍କର ପ୍ରସ୍ତର ଗାତ୍ରରେ କୃଷକ କନ୍ୟାର ଛବି ଅଙ୍କାଗଲା ନାହିଁ ବୋଲି ସଚ୍ଚିରାଉତରାୟ ଖେଦ ପ୍ରକାଶ କରିଛନ୍ତି । ଏମିତି ପ୍ରାଚୀନ ଓ ପ୍ରଚଳିତ କଳାବୋଧ ବିରୋଧରେ ସେ ସହସ୍ର ଖେଦ ପ୍ରକାଶ କରିଛନ୍ତି; ମାତ୍ର ନିଜେ ନିଜ ଆଦର୍ଶ ଓ ସ୍ୱପ୍ନର ଚାରୁଛବିଟିଏ ଆଙ୍କିପାରି ନାହାନ୍ତି । ଜଣେ ଓଡ଼ିଆ ଲଳନାକୁ ସଚ୍ଚିରାଉତରାୟ ଜୀବନ୍ତ କରି କେଉଁଠି ଚିତ୍ରିଛନ୍ତି ନାଁ ତାଙ୍କ ପଦ୍ୟରେ ନାଁ ଗଦ୍ୟରେ । ସତରେ ତାଙ୍କ ପାଣ୍ଡୁଲିପି ଯୁବଚେତନାକୁ ପ୍ରବୋଧିତ କଲାଭଳି କିଛି ସ୍ଲୋଗାନ୍‌ର ସରସ ସମଷ୍ଟି କେବଳ । 'କବିତା ୧୯୬୨' ନୂତନ ଆଙ୍ଗିକ ପ୍ରଦର୍ଶନର ଏକ ଗଦ୍ୟମୟ ଇସ୍ତାହାର ଯେପରି ତାଙ୍କର 'ବାଜିରାଉତ' ଓ 'ଅଭିଯାନ'

ସେହିପରି କମରେଡ୍‌ଙ୍କ ସୁରଚିତ ମେନିଫେଷ୍ଟୋ କେବଳ । ତାଙ୍କର ଅନେକ କବିତା କିଛି ଅଧିକ ଆଗ୍ନେୟ ଓ ପ୍ରଗତିଶୀଳ; ମାତ୍ର କ୍ବଚିତ କବିତା ସ୍ନିଗ୍‌ଧ କଳାତ୍ମକ (elegant) ।

ଯେଉଁ କବିତା ସ୍ଲୋଗାନ୍‌ଧର୍ମୀ ନୁହେଁ ବରଂ ଏକ ନିଷ୍କପଟ ଜୀବନ ଛବି କେବଳ, ତା'ର ମହିମା ଅଲଗା ପ୍ରକାରର । ସଚ୍ଚିରାଉତରାୟଙ୍କ ବିପୁଳ କବିତା ସୃଷ୍ଟିରେ ସେ ଚିତ୍ତପ୍ରବୋଧକ ଛବିଗୁଡ଼ିକ କାହିଁ ? ପ୍ରତିମାନାୟକ ବା ଅଳକା ସାନ୍ୟାଲ ପରି କବିତା ଏକ ଏକ ବିକଳ ଓ ବିପନ୍ନ ଛବି; ଯାହା ଆପାତତଃ ଦୈନ୍ୟ, ଦୁର୍ଭିକ୍ଷ, ବ୍ୟଥା ବେଦନା ଭିତରୁ କ୍ରମଶଃ ଆଶା ଓ ଆନନ୍ଦର ଅନୁଭବ ଆଡ଼କୁ ଉତ୍ତାନ୍ତରିତ ହୋଇ ଆସୁନି ।

ବ୍ୟଥା ଓ ସନ୍ତାପ ଏ ସଂସାରରେ କେବଳ ମାତ୍ର ବାସ୍ତବତା ନୁହେଁ; ସେଥିରେ, ସେ ସକଳ ଦୁଃସ୍ଥିତିର ଅନ୍ତସ୍ଥଳରେ ତଥାପି ପୁଲକ ରହିଛି ଏମିତି ଅନୁଭବ ପ୍ରତି କବିଙ୍କର ପ୍ରଗାଢ଼ ଅନୁରକ୍ତି କାହିଁ ? ହୁଏତ ଯାହା ତାଙ୍କ ସମୟର ଆଉ ଜଣେ ବିଶିଷ୍ଟ ସାରସ୍ୱତ ପୁରୁଷ ଗୋପୀନାଥ ମହାନ୍ତିଙ୍କ ଗଦ୍ୟ ରଚନାବଳୀରେ ପରିଲକ୍ଷିତ ହୁଏ । ହୁଏତ ଯାହା ଖଲିଲ ଜିବ୍ରାନଙ୍କ 'The Prophet' ପରି କ୍ଷୁଦ୍ରତମ ଗ୍ରନ୍ଥରେ ଉଦ୍ଭାସିତ ହୋଇଛି ।

ତାବାଦ ସଚ୍ଚିରାଉତରାୟଙ୍କ କବିତାବଳୀ ପୁଣି କେତେ ଅଧିକ କାବ୍ୟିକ ବା ସୌନ୍ଦର୍ଯ୍ୟତାତ୍ତ୍ୱିକ, କେତେ ଅଧିକ ରାଜନୀତିକ ଅବା ବାସ୍ତବ ତାହା ମଧ୍ୟ ଏହି ପୁନର୍ମୂଲ୍ୟାୟନର ଅନ୍ୟ ଏକ ଦିଗ । ଅନୁପାତ ଅନୁସାରେ ଜଣ ଜଣଙ୍କର ସାହିତ୍ୟ କୃତି ଗୁଡ଼ିକ ଅଧିକ ରାଜନୀତିକ କିମ୍ବା ସାମାଜିକ ବାସ୍ତବତାମୂଳକ ହୋଇଥାଏ । ସେ ପ୍ରକାର ସାହିତ୍ୟକୁ ସମାଜବିଜ୍ଞାନୀମାନେ ଅଧିକ ଇଙ୍ଗିତଧର୍ମୀ ବୋଲି ଭାବନ୍ତି ।

ପାଣ୍ଡୁଲିପି, କବିତା ୧୯୬୨, ଅଭିଯାନ ବାଜିରାଉତ ଆଦି କବିତାଗ୍ରନ୍ଥ ବିଚିତ୍ର ଓ ବର୍ଣ୍ଣାଢ୍ୟ ଜାଗତିକ ଚିତ୍ରାବଳୀ ବା ସ୍କେଚ୍ ନୁହେଁ·ବରଂ ଅଧିକାଂଶରେ ଇସ୍ତାହାର ଧର୍ମୀ । କିଛି· ଅଧିକ ୟୁରୋପୀୟ ସ୍ଲୋଗାନ ପ୍ରତି ଅବଶ୍ୟ ସଚ୍ଚିରାଉତରାୟଙ୍କ ଉନ୍ମୁଖତା ବେଶୀ ଥିଲା ପରି ମନେହୁଏ । ତାଙ୍କର ହିଟଲର୍, ବର୍ଲିନ୍, ହିଟଲରର ଦୁଃସ୍ୱପ୍ନ, ଆଦି କବିତାର ଶିରୋନାମା ତାଙ୍କ ମେଦିନୀ ଦୃଷ୍ଟିରେ ପ୍ରଖ୍ୟାପକ । ଅଥଚ୍ ସୁନ୍ଦର ଭୂଗୋଳର ଶାଶ୍ୱତ ଛବି ଯାହା ସର୍ବଦା ସବୁକିଛି ଊର୍ଦ୍ଧ୍ୱରେ ମନମୁଗ୍ଧକର ସେଥିପ୍ରତି ହୁଏତ ତାଙ୍କର କବିଚିତ୍ତ ସେତିକି ବଶମ୍ବଦ ନୁହେଁ ।

ଗୋଟେ ଗତିଶୀଳ ପୃଥିବୀକୁ ଚିତ୍ରଣ କରିବାର କିଛି ପ୍ରଭାବିତ ପ୍ରବଣତା କବି ସଚ୍ଚିରାଉତରାୟଙ୍କର ରହିଛି, ଅଥଚ୍ ସେହି ଅନୁପାତରେ ତାଙ୍କ କବିତାରେ ଉତ୍କଳୀୟତାର ଚିତ୍ର କମ୍ ଅଛି । ତାଙ୍କ କବିତାର ପ୍ରୀତିପ୍ରଦ ଛନ୍ଦ, ସରସ ଶବ୍ଦଯୋଜନା, ଆଗ୍ନେୟ ବାଣୀ, କିଛି ଅଗ୍ରଗାମୀ ସୂଚନା ସତ୍ତ୍ୱେ ପାଠକକୁ ତାଂକ କବିତା ସେପରି ଆବିଷ୍ଟ କରିପାରେନା, ଯେଉଁଠି ହୁଏତ ପରିଚିତ ମାଟି ଓ ଆକାଶର ଚିତ୍ର ଫୁଟି ଉଠିନି । ସେତେ ଆତ୍ମୀୟ, ସେତେ ପରିଚିତ ଲାଗେନି ଦୂରତମ ଭୂଗୋଳର ଚିତ୍ର । ଦୂରତମ ଜନପଦର ଗୀତ । ଆପଣାର ଛୋଟ ଅଗଣା, ମେଞ୍ଚୁଆତି, କନିଅର ଗଛର କଞ୍ଚାବାଡ଼ ଥିବା ବାଡ଼ିବଗିଚା ଯେଉଁଥି ପାଇଁ ଏତେ ପ୍ରିୟଲାଗେ ସେ ମାନସିକତା ପ୍ରତି ହୁଏତ ସେ ସଚେତନ ଭାବରେ ବିମୁଖ ହୋଇଛନ୍ତି ।

'ପଲ୍ଲୀଶ୍ରୀ' କବିତା ଗ୍ରନ୍ଥରେ ଯଦିଓ ନିଜଗାଁ, ନିଜ ଗାଁର ନଈ, ନିଜନିଜ ମଣିଷଙ୍କ କଥା ଚିତ୍ରିତ ହୋଇଛି; ମାତ୍ର ତାହା ବିଶେଷ ପରିଚ଼ୟରେ କିଛି ଅଧିକ ଯୋଗ କରେନି । ସେ ଯେତେ ଓ ଯେପରି ଭାବେ ପାଣ୍ଡୁଲିପି, କବିତା ୧୯୬୨ କିମ୍ବା 'ବାଜିରାଉତ'ର କବି ଭାବେ ସ୍ୱୀକୃତ ସେହି ସ୍ୱୀକୃତି ହୁଏତ ଜଣେ 'ପଲ୍ଲୀଶ୍ରୀ' କବିତାମାନଙ୍କରୁ ପାଏନା ।

କବି ସଚ୍ଚିରାଉତରାୟ ସମର୍ଥ, ଶକ୍ତିମାନ । ତାଙ୍କର କ୍ଲାସିକ୍ ଦୃଷ୍ଟିଭଙ୍ଗୀ ଅଛି । ଇତିହାସ ଜ୍ଞାନ ବି ଅଛି । ସାମାଜିକ ବିବର୍ତ୍ତନ ବିଷୟରେ ବି ସେ ବେଶ ସଚ଼େତନ । ମାତ୍ର ଏ ସବୁ ଉପରେ ଆଉ କେତେକ ବିଶ୍ୱବିଖ୍ୟାତମାନଙ୍କ ପ୍ରଭାବ ରହିଛି ବୋଲି ମନେହୁଏ । ଏହି ବିଦେଶୀ କବିମାନଙ୍କ ପ୍ରଭାବକୁ ଧରିରଖିବାର ପ୍ରବଣତା ତାଙ୍କ ନିକଟରେ କିଛି ଅଧିକ ବୋଲି ମନେକରିବା ଅଯଥାର୍ଥ ନୁହେଁ ।

କବି ଶ୍ରୀ ରାଉତରାୟ ଆଗାମୀ ଦିନ ପାଇଁ ସ୍ୱପ୍ନ ଦେଖିଥିଲେ ହେଁ ସେ କିଛିଟା ଅଧିକ ନେତିବାଦୀ । ତାଙ୍କ କବିତାରେ ସର୍ବହରା, ମେହନତି ମଣିଷର ଅପମାନ, ଶୋଷଣ, ସଇତାନି ସବୁ ବର୍ଣ୍ଣିତ ହୋଇଛି । ମାତ୍ର ସେସବୁ ବେଶୀ ସ୍ଲୋଗାନ୍ ଓ ଇସ୍ତାହାର ସର୍ବସ୍ୱ ହୋଇଛି । ଏସବୁକୁ ଚିତ୍ରଣକରିବା ପାଇଁ ସେ ଏ ବ୍ରହ୍ମାଣ୍ଡର ସୁଖଦୁଃଖ, ସ୍ନେହସ୍ୱପ୍ନ, ଶୋଷଣ କିମ୍ବା ସଇତାନିର ନିରୁତା ଛବି ସବୁ ଆଙ୍କି ପାରିନାହାନ୍ତି । ଭଲ ଗପ କବିତାତ ପରିଶେଷରେ ପ୍ରଭାବ ବା ଆବେଦନ ଦୃଷ୍ଟିରୁ ଚ଼ିତ୍ର ପାଲଟି ଯାଏ ।

ପୂର୍ବରୁ ସୂଚ଼ିତ ହୋଇଛି ଯେ ସଚ୍ଚିରାଉତରାୟଙ୍କ କବିତାର ନୂତନତାରେ ପ୍ରଭାବ ବେଶୀ ପରିଲକ୍ଷିତ । ଯେମିତି ତାଙ୍କର ଏବଂ 'ରାଜକେମା' କବିତାର ଅତି ଲୋକପ୍ରିୟ ଧାଡ଼ିଗୁଡ଼ିକ । ମୁଁ ସଚ୍ଚିରାଉତରା/(ନୁହେଁ ଟାଗୋର ବା ଶେଲୀ)/ମୁଁ ଏଇ ମାଟିର ଧରା/ଆଉ ଆକାଶର କବି/କାମ ନୁହେଁ ମୋ ଖାଲି ଆଙ୍କିବା କାଗଜରେ ଛବି/ପେଷାଦାର ଗାୟକ ମୁଁ ନୁହେଁ/ତୁମେ ମୋର ଛପା ବହି ଯେତେବେଳେ ଛୁଅଁ/ଛୁଅଁ ନୂଆ ମଣିଷର ଛାତି/ଏଇ ପୃଥିବୀର ସବୁ ମଣିଷ ଜାତି/ତା'ର ପ୍ରତିଟି ଖବର/ରୂପପାଏ କବିତାରେ ମୋର ।

ସଚ୍ଚିରାଉତରାୟଙ୍କ ଏମିତି କବିତା ଉପରେ ବିଶିଷ୍ଟମାନଙ୍କର କିଛି ପ୍ରଭାବ ରହିଛି । ଓଡ଼ିଆ କବିତା ଧାରାରେ ସେପାଇଁ ସେଦିନ ଏହି ସବୁ ଧାଡ଼ି ପାଠକଙ୍କ ଭିତରେ କିଛିଟା ଅଧିକ ଆଲୋଡ଼ନ ସୃଷ୍ଟି କରିପାରିଥିଲା ।

ଏତଦ୍‌ଭିନ୍ନ ସଚ୍ଚିରାଉତରାୟଙ୍କ କେତେକ କବିତା କେତେକାଂଶରେ ଏତେ ବକ୍ତୃତାପ୍ରଧାନ ଯେ ସତେ ଯେପରି ତାଙ୍କ କବିତା ସବୁ ଜଣେ ମାର୍କସବାଦୀ ବକ୍ତାର ପଦ୍ୟବଦ୍ଧ ସଂଳାପ । ତାଙ୍କ କବିତାରେ ଏତେ ଆନ୍ତର୍ଜାତିକ ଧାରଣା (Concept) ସବୁରହିଛି ଓ ବିଶ୍ୱର ବହୁ ଚ଼େତନା ଆନ୍ଦୋଳନ ସହିତ ତାଙ୍କର ବୌଦ୍ଧିକ ଓ ଆବେଗିକ ସମ୍ପର୍କମାନ ରହିଛି ଯେ ତାଙ୍କ କବିତା ସେସବୁର ଏକ ରାସାୟନିକ ଓ ଯୌଗିକରୂପ ବୋଲି ମନେହେବ । ବିଶେଷଜ୍ଞ ପାଠକମାନେ କେବଳ କବିତାର ଅନ୍ତସ୍ଥଳରେ ତାଙ୍କର ଏକ ବିଶେଷ କାରିଗରୀକୁ ଅବଶ୍ୟ ଲକ୍ଷ୍ୟ କରିପାରିବ ।

ତାଙ୍କର 'ଅସମାପିକା' କବିତା ଚେତନା ଓ ଶିଳ୍ପାୟନ ଦୃଷ୍ଟିରୁ ଏକ ପୁନର୍ସଂସ୍ଥାନ (Re-Projection)ର ନିଦର୍ଶନ। ଏହିପରି ତାଙ୍କ ପାଣ୍ଡୁଲିପି ଓ କବିତା ୧୯୬୨ର ଅନେକ କବିତା ରହିଛି । ମାତ୍ର ଯେକୌଣସି ଦୃଷ୍ଟିରୁ ସେ କବିତାଗୁଡ଼ିକର ରୋମାଣ୍ଟିକ ଧର୍ମ ଆଦୌ କମ ନୁହେଁ । କବି ସଚ୍ଚିରାଉତରାୟ ତାଙ୍କର ସ୍ୱୈରବାଦୀ ମନ ଓ ଚେତନା ସହିତ ଗୋଟେ ସୁସଂହତ ଇତିହାସ ଜ୍ଞାନ, ଗୋଟେ ରୁଚିପୂର୍ଣ୍ଣ ବୈପ୍ଳବିକ ପ୍ରବଣତା, ଗୋଟେ ବହୁଦେଶୀୟ ଦୃଷ୍ଟିଭଙ୍ଗୀ (Cosmopolitan attitude)ର ଚମତ୍କାର ସମନ୍ୱୟ ଅବଶ୍ୟ କରିପାରିଛନ୍ତି ଯେଉଁଥି ପାଇଁ ତାଙ୍କ କବିତାଗୁଡ଼ିକର ସବୁଦୃଷ୍ଟିରୁ ଏକ Poetic height ରହିଛି । ସ୍ୱୈରବାଦୀ ଅନର୍ଗଳତା (Romantic Verbosity) ସହିତ କବିତାଗୁଡ଼ିକ ବସ୍ତୁତଃ ଭାରି ଶାସ୍ତ୍ରୀୟ ଓ ସିରିଏସ ମନେହୁଏ ।

ତାଙ୍କ କବିତାର ଅନ୍ୟ ଏକ ସଫଳ ଦିଗ ହେଲା ଚିତ୍ରକଳ୍ପ ପ୍ରୟୋଗର ସର୍ବୋତ୍ତମ ସଫଳତା; ଯାହା ତାଙ୍କ ସମୟର ଓ ପରବର୍ତ୍ତୀ ବହୁ କବିଙ୍କୁ ପ୍ରୋତ୍ସାହିତ କରିଛି । ପୁରୁଣା ସାଇତା ଶବ୍ଦସବୁ ନୂଆ ଭାବରେ ପୁଣି ତାଙ୍କ କବିତାରେ ପ୍ରାଣବନ୍ତ ହୋଇଛନ୍ତି । ପରୀକ୍ଷା ପ୍ରବଣତା ତାଙ୍କ ନିକଟରେ ଅଧିକ ଥିଲା । ଓଡ଼ିଆ କବିତାର ଏକମୁଖୀ ରୋମାଣ୍ଟିକ୍ ଆଦର୍ଶକୁ ସେ ଉଲ୍ଲେଖଯୋଗ୍ୟ ଭାବେ ବଦଳାଇ ଦେଲେ । ଓଡ଼ିଆ କବିତାର ଭାବ୍‌ଚେତନା ଓ ଆଙ୍ଗିକ ଆଦର୍ଶ ଜାତୀୟ ଓ ଆନ୍ତର୍ଜାତୀୟ ଆଦର୍ଶର ନିକଟତମ ହେଲା ।

ଦିନେ ରୀତି ଆଦର୍ଶକୁ ବର୍ଜନ କରି ରାଧାନାଥ ତାଙ୍କ ସମୟ ଖଣ୍ଡରେ ଯେପରି ଉଗ୍ର ଆଧୁନିକ ହୋଇଯାଇଥିଲେ ସଚ୍ଚିରାଉତରାୟ ସେମିତି ତାଙ୍କ ସମୟ ଖଣ୍ଡରେ ପାରମ୍ପରିକ କବିତାଦର୍ଶର ବୈପ୍ଳବିକ ପରିବର୍ତ୍ତନ ଆଣିଲେ । ପ୍ରତିମାନାୟକ, ନିମଗଛରେ ଫୁଲ ଫୁଟିଛି, ରାଜଜେମା, ମାଟିଆ ବୁରୁଜର ଜହ୍ନ ଆଦି ସଚ୍ଚିରାଉତରାୟଙ୍କ କବିତା ରାଧାନାଥଙ୍କ ଶିବାଜୀଙ୍କ ଉତ୍ସାହବାଣୀ, ଗଙ୍ଗାଧରଙ୍କ ଅର୍ଘ୍ୟଥାଳି, ନନ୍ଦକିଶୋରଙ୍କ ନାନାବାୟାଗୀତ, କିମ୍ବା ଗୋଦାବରୀଶଙ୍କ ତୁଙ୍ଗଶିଖରୀଚୂଳ, ଗୋପବନ୍ଧୁଙ୍କ ନଚିକେତା ଉପାଖ୍ୟାନ କିମ୍ବା ସବୁଜମାନଙ୍କ ପରୀ କବିତାଠାରୁ କେତେ ଅଲଗା ପ୍ରକାରର । ଏପରି ପରିବର୍ତ୍ତନ ପଶ୍ଚାତରେ ରହିଛି ତାଙ୍କର ଆନ୍ତର୍ଜାତିକତା ପ୍ରତି ବିଶେଷ ଉନ୍ମୁଖତା ।

ସଚ୍ଚିରାଉତରାୟଙ୍କ ଏବଂବିଧ ଅଭିଜାତ ପ୍ରତିଷ୍ଠା ସତ୍ତ୍ୱେ ତାଙ୍କ କବିତାରେ ଜୀବନ ପ୍ରତି ଗୋଟେ ସୁନ୍ଦର ସଦୟ ଆବେଗାୟିତ ଦୃଷ୍ଟିଭଙ୍ଗୀ ନାହିଁ । ମନ ଓ ଆବେଗଠାରୁ ଯୁକ୍ତି ଓ ଜ୍ଞାନର ଆଧିକ୍ୟକୁ ଜଣେ ସହଜରେ ଲକ୍ଷ୍ୟ କରିପାରିବ । ମଣିଷ ଜୀବନର ସାର ଓ ଶାଶ୍ୱତ ହେଉଛି ଜ୍ଞାନ ଲାଭକରିବା ନୁହେଁ, କୌଣସି ସଂଘ ବା ସାର୍ବଭୌମ ପାଇଁ ପ୍ରାଣପାତ୍ କରିବା ନୁହେଁ; କୌଣସି ଆଦର୍ଶ ସପକ୍ଷରେ ସ୍ଲୋଗାନ୍ ଦେଉଁ ଦେଉଁ ଶହୀଦ ହୋଇଯିବା ନୁହେଁ । ଗୋଟେ ନିଷ୍କପଟ ଜୀବନ ଜିଇଁବା ହେଉଛି ପ୍ରକୃତରେ ଏ ବ୍ରହ୍ମାଣ୍ଡକୁ ଭୋଗ କରିବା । ମଣିଷର ଏହି ଜୀବନଭୋଗ ହିଁ ସବୁଠାରୁ ବଡ଼ ଏସ୍‌ଥେଟିକସ୍ । ଏମିତି ନିଃସର୍ତ୍ତ ଜୀବନଭୋଗ ସମ୍ପର୍କିତ ସ୍ୱଚ୍ଛ ଏସ୍‌ଥେଟିକ୍ ଦୃଷ୍ଟିଭଙ୍ଗୀ ସଚ୍ଚିରାଉତରାୟଙ୍କ କବିତାରେ ପ୍ରାୟ ନାହିଁ ।

ସ୍ଥିତିବାଦୀମାନଙ୍କ ପରି ସଚ୍ଚିରାଉତରାୟ ଅବଶ୍ୟ ଏସ୍ଥେଟିକ୍ ଦୃଷ୍ଟିଭଙ୍ଗୀକୁ ଜୀବନର ଏକମାତ୍ର ଦୃଷ୍ଟିଭଙ୍ଗୀ ବୋଲି ଗ୍ରହଣ କରି ନାହାନ୍ତି ।

ପୁଣି ଗୋଟେ ଶୁଦ୍ଧ ନୈତିକତା ଓ ନିର୍ମଳ ପ୍ରେମର ଚିତ୍ର ମଧ୍ୟ ତାଙ୍କ କବିତାରେ ବିରଳ ପ୍ରାୟ । ସେ ପୁରାତନର ସଂଶୟ, ନାନା ଭ୍ରାନ୍ତି ଓ ଅନ୍ଧ ଆସ୍ତିକତାକୁ ଆକ୍ଷେପ କରିଛନ୍ତି ସତ; ମାତ୍ର ତାଙ୍କ ପରିକଳ୍ପିତ ପୃଥିବୀକୁ ସେ ରୂପାୟିତ କରି ପାରିନାହାନ୍ତି । ସେ ରୂପାୟନର ଅୟମାରମ୍ଭ ହୋଇନି ।

ସଚ୍ଚିରାଉତରାୟଙ୍କ କାବ୍ୟସମ୍ଭାରରେ ଯେଉଁ ଗୋଟିଏ ଦିଗ ସବୁଠାରୁ ଉଜ୍ଜ୍ୱଳ ତାହା ହେଉଛି ମଣିଷକୁ ଗୌରବାନ୍ୱିତ କରିବା । ପୀଡ଼ିତ ମଣିଷକୁ ତାର ହଜାରେ ଦୁଃସ୍ଥିତି ସତ୍ତ୍ୱେ ଶ୍ରଦ୍ଧା ଓ ସ୍ୱୀକୃତି ପ୍ରଦାନ କରିବା । ସୁଇନବର୍ଣ୍ଣ ଯେପରି କହିଥିଲେ—'Glory to man in the highest for man is the master of things' । ସଚ୍ଚିରାଉତରାୟ ସେମିତି ପୀଡ଼ିତ ମଣିଷର ଜୟଗାନ କରି ଯେଉଁ ସ୍ୱର୍ଦ୍ଧିତ ଇସ୍ତାହାର ଜାରି କରିଛନ୍ତି ତାହାହିଁ ଏହି ଉଜ୍ଜ୍ୱଳ ମାନବକୈନ୍ଦ୍ରିକ ଉଦ୍‌ଘୋଷଣାର ନୂତନ ପାଣ୍ଡୁଲିପି ।

'ଧରଣୀର ରାଜପଥେ ଚାଲୁଚାଲୁ ପଥଚାରୀ ମୁହିଁ
ଯେ ବ୍ୟଥା ବାଜିଛି ବୁକେ ମଣିଷର ଅପମାନ ଛୁଇଁ
ତାକୁଇ ଦେଇଛି ବାଣୀ, କହିଛି ସେ ସାଧାରଣ କଥା
ଭାଷାର କପଟ ଜାଲେ ରଚିନାଇ ମାୟାଜାଲ ତଥା ।

x x x

ମାନବର ପାଦତଳେ ବାଡ଼ିଗଲି ଯେତେକ ମମତା ।
ମଣିଷର ଅପମାନେ, ନିରନ୍ତର ନିଷ୍ଠୁର ଶୋଷଣେ ।
ପ୍ରତିବାଦ ଯେତେ କଲି ଅର୍ଥହୀନ ଶିଶୁର କ୍ରନ୍ଦନେ ।
ମୂଲ୍ୟ ତା'ର କିଛି କହେ ନାଇ ?'

କବି ସଚ୍ଚିରାଉତରାୟ ମାଟିମଣିଷ, ଜନ୍ମମୃତ୍ୟୁ, ନାରୀ, ମହାକାଳ ଆଦି ବିଷୟରେ ଯେତେ ତଟସ୍ଥ ନୁହଁନ୍ତି, ସେତେବେଶୀ ଅଧିକ ସଚେତନ ଆଧୁନିକ କବିତାର ଗୁଣ ଓ ଲକ୍ଷଣ ବିଷୟରେ । ସେ ତାଙ୍କ 'କବିତା-୧୯୬୨' ଗ୍ରନ୍ଥରେ 'ନୂତନ କବିତାର ଭୂମିକା-ଏକ ଦୃଷ୍ଟିପାତ' ଶୀର୍ଷକ ଏକ ଦୀର୍ଘ ଆଲୋଚନା ଯୋଡ଼ି ଆଧୁନିକ କବିତା ସମ୍ପର୍କିତ ତାଙ୍କ ବିଚକ୍ଷଣତାର ପରିଚୟ ଦେଇଛନ୍ତି । 'କବିତା-୧୯୬୨'ର ଅଧିକାଂଶ କବିତା ନୂତନ ଆଙ୍ଗିକ ସର୍ବସ୍ୱ । ସେ ସମସ୍ତ କବିତାର କାବ୍ୟାତ୍ମକତା ତଥା ତଦ୍‌ଜନିତ କଳାପକ୍ଷ ଅତ୍ୟନ୍ତ ଅସ୍ପଷ୍ଟ । ସତେ ଯେପରି ସେଠି ବହୁପ୍ରସ୍ଥଯୁକ୍ତ ସଚେତନତା (Composite Consciousness) ରହିଛି; ମାତ୍ର ସ୍ୱତଃସ୍ଫୂର୍ତ୍ତ ସୃଜନଶୀଳତା ସେହି ଭାବରେ ନାହିଁ ।

ଗୋଟେ ପରିବ୍ୟାପ୍ତ ଚିନ୍ତନ, କିଛି କର୍ବତାର ବିରଳ ଅନୁଭବ, କିଛି ମଣିଷର କଥା, କିଛି ବିମୋହିତ ହେବାର ସରସ ଭାବ ଆଉ କିଛି ସମୁନ୍ନତ ଶୃଙ୍ଗାର ଏମିତି ଅବଶ୍ୟ ସଚ୍ଚିରାଉତରାୟଙ୍କ କବିତାରେ କେଉଁଠି କିପରି ଇତସ୍ତତଃ ଭାବେ ରହିଛି । ମାତ୍ର ସେସବୁର ଉତ୍ତରଣ ନାହିଁ । ସେସବୁ ଉଭାସିତ ହୋଇପାରିନି । ଗୋଟେ ପ୍ରଶାନ୍ତ ମହାକାବ୍ୟିକ ପ୍ରଭାବ ତେଣୁ ସମ୍ଭବ ହୋଇନି । କବି ସଚ୍ଚିରାଉତରାୟଙ୍କ କବିତ୍ୱର ବହୁଦିଗ ଅତ୍ୟନ୍ତ ତୀକ୍ଷ୍ଣ । ଆବେଗ ସହିତ ବୋଧ ଓ ଜ୍ଞାନର ସମନ୍ୱୟ ହୋଇଛି । ଏସବୁ ସତ୍ତ୍ୱେ କବିତାଗୁଡ଼ିକର ପ୍ରଭାବ ବା ଆବେଦନ ଗୋଟେ ଚିତ୍ତପ୍ରବୋଧକ ଅନନ୍ୟ ଭଙ୍ଗିମା ଲାଭ କରିପାରିନି ।

ବୋଧହୁଏ ସେ ଯାହା କବିତାରେ ବ୍ୟକ୍ତ କରି ପାରିନାହାନ୍ତି, ତାହାକୁ ସେ ଗଳ୍ପରେ ଲେଖିବାକୁ ଚେଷ୍ଟା କରିଛନ୍ତି । ତାଙ୍କ ଗଳ୍ପ ଓଡ଼ିଆ ଗଳ୍ପ ଧାରାରେ ବହୁଦୃଷ୍ଟିରୁ ଏକାନ୍ତ ଉଲ୍ଲେଖଯୋଗ୍ୟ । ତାଙ୍କ କବିତା ଅପେକ୍ଷା ଗଳ୍ପଗୁଡ଼ିକ ଅଧିକ ଲୌକିକ ଓ ଜାନପଦିକ ହୋଇଛି । ଜଣେ ଜୀବନବାଦୀ ଶିଳ୍ପୀର ଭାବଚେତନା ବେଶୀ ତାଙ୍କ ଗଳ୍ପଗୁଡ଼ିକରେ ବିନ୍ୟସ୍ତ ହୋଇଛି; ତାଙ୍କ କବିତାରେ ଅବଶ୍ୟ ଏହାର ଆଭାସ ରହିଛି । ତାଙ୍କ କବିତାର ଭାଷା ଓ ପରିବେଶ, ଚିତ୍ରଣଗତ ପ୍ରଭାବ ଅଧିକାଂଶରେ ନଗରକେନ୍ଦ୍ରିକ ଓ ସାମନ୍ତୀୟ । କେତେବେଳେ କେଉଁଠି ଅତି ଇତସ୍ତତଃ ଭାବେ ପଲ୍ଲୀ ଓ ନଗର ଜୀବନର କଣ୍ଟ୍ରାଷ୍ଟ ତାଙ୍କ କବିତାରେ ଦେଖିବାକୁ ମିଳେ ଯେମିତି ତାଙ୍କର ଏକ ଅତି ଚମତ୍କାର କବିତାଗ୍ରନ୍ଥ 'ଭାନୁମତୀର ଦେଶ' ।

ତରଙ୍ଗ କହେ, ସେମାନଙ୍କ ଗାଁ/ସୁନ୍ଦର ଗଡ଼/ଏଇ ନାଁର/ଜୀବନ୍ତ ପ୍ରତୀକ/ଏ ଗ୍ରାମର ସରୁ ସରୁ ପଥ/ପାହାଡ଼ର ଧାରେ ଧାରେ/ଭାନୁମତୀର ଶସ୍ୟାୟିତ ତୀରେ/ନାଲି କନିଅର ଆଉ ସୁନାରି ଫୁଲର/ନାଲ୍ ନାଲ୍ ହଳଦିଆ ଛକ/x x x ସେ ଏଇ ଗ୍ରାମର ପ୍ରଥମ ଦର୍ଶନରେ କହି ଉଠିଚି/ସତରେ କିନ୍ତୁ ଚମତ୍କାର/ଭାରି ଚମତ୍କାର ତମ ଗାଁ/ସାର୍ଥକ ହେଉଚି ତାର ନାଁ/ସୁନ୍ଦରଗଡ଼ । ଗାଁ ଓ ସହରର ତୁଳନା ହୋଇଛି ଅତ୍ୟନ୍ତ ସୁସ୍ପଷ୍ଟ ଭାଷାରେ । କବି ଭାନୁମତୀର ଦେଶକୁ ବେଶ୍ ଚମତ୍କାର ଭାବେ ବର୍ଣ୍ଣାଢ଼୍ୟ କରି ଆଙ୍କି ଦେଇ ପାରିଛନ୍ତି । କବି ଏଠାରେ ତାଙ୍କ ସହଜାତ ରୋମାଣ୍ଟିକ୍ ଆବେଗ ଦେଇ 'ଭାନୁମତୀର ଦେଶ'କୁ ଲେଖିଥିବାରୁ ଗ୍ରନ୍ଥଟି ସତରେ ଏତେ ସୁନ୍ଦର ଓ ମାର୍ମିକ ହୋଇଛି ।

ଯେ କୌଣସି କବିର ରୋମାଣ୍ଟିକ୍ ଆବେଗ ଏକ ଅନ୍ତସଲିଳ ଭଳି ଆପାତତଃ ଦୃଶ୍ୟମାନ ହୁଏନି । କିନ୍ତୁ ଅନ୍ତସ୍ଥଳରେ ଥାଏ । ଆଜି ଅନେକେ ସଚ୍ଚିରାଉତରାୟଙ୍କୁ ଜଣେ ବୁଦ୍ଧିବାଦୀ ଇଲିୟଟୀୟ ଚେତନାର ପ୍ରୟୋଗବାଦୀ କବି ଭାବେ ଯେପରି ଜାଣନ୍ତି ସେ ପରିଚୟ ଊର୍ଦ୍ଧ୍ୱରେ ତାଙ୍କୁ କେତେକାଂଶରେ ରୋମାଣ୍ଟିକ୍ କହିବା କେମିତି ଗୋଟେ ବେଖାପ ଓ ଆକସ୍ମିକ ଲାଗୁଛି ।

ସେମିତି ବୁଝିଲେ ଇଲିୟଟ୍‌ବି କେତେକାଂଶରେ ରୋମାଣ୍ଟିକ୍ । କିଛି ଅତୀନ୍ଦ୍ରିୟ (Metaphysical) ରହସ୍ୟବାଦୀ ଚେତନା ବିଜଡ଼ିତ ହୋଇ ରହିଛି ବି ତାଙ୍କ କବିତା ।

ସଚ୍ଚିରାଉତରାୟଙ୍କ ସମୟର ଆଉ ଜଣେ ବିଶିଷ୍ଟ ଆଧୁନିକ ଓଡ଼ିଆ କବି ହେଉଛନ୍ତି ଗୁରୁପ୍ରସାଦ; ଯାହାଙ୍କ 'ସମୁଦ୍ର ସ୍ନାନ' ଆଧୁନିକ ନବଚେ଼ତନାର ପ୍ରକଟନ ସତ୍ତ୍ୱେ ବହୁଭାବରେ ରୋମାଣ୍ଟିକ୍ ।

ସଚ୍ଚିରାଉତରାୟଙ୍କୁ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ବର୍ଷ ପରେ ମାତ୍ରାଧିକ ରୋମାଣ୍ଟିକ୍ କବି ବୋଲି କହିବା ହିଁ ଯଥାର୍ଥରେ ଏକ ନବ ମୂଲ୍ୟାୟନ । ମାତ୍ର ନୂତନ ଛନ୍ଦ, ଆଙ୍ଗିକ ନୂତନ ଚିତ୍ରକଳ୍ପ ସୃଷ୍ଟିକରିବାରେ ସଚ୍ଚିରାଉତରାୟ ହେଉଛନ୍ତି ସୂତ୍ରଧର । ତାଙ୍କୁ ନବଧ୍ରୁପଦୀର ନାନ୍ଦୀକାର ବୋଲି ଅଭିହିତ କରାଯାଇପାରେ ।

ତାଙ୍କ କବିତା ସାମଗ୍ରିକ ଭାବେ ଏକ ନୂତନ କ୍ଲାସିକ୍ ଶୃଙ୍ଖଳାର କବିତା । ପୁରୁଣା ଇତିହାସକୁ ବଦଳାଇ ଦେବାର ଅଗ୍ନିଶପଥ ତାଙ୍କ କବିତାରେ ରହିଛି । ସାମନ୍ତବାଦୀ ବ୍ୟବସ୍ଥାକୁ-ଇତିହାସର ଅନ୍ଧକାର ଭିତରେ ଲୀନ ହେବାକୁ ଦେଇ ଶ୍ରୀ ରାଉତରାୟ ଗଣତନ୍ତ୍ରର ବନ୍ଦନାଗୀତି ଗାଇଛନ୍ତି । ନୂତନ ଅଭ୍ୟୁଦୟର ଜୟଗାନ କରିଛନ୍ତି । ସେ ମାଟିର କବି । ନିପୀଡ଼ିତ କୋଟି ମଣିଷପ୍ରତି ତାଙ୍କ କବିଆତ୍ମାର ସମର୍ଥନ ଏକ କ୍ଲାସିକ୍ ଆଭିଜାତ୍ୟ ନିଶ୍ଚୟ ।

କବିତା ତାଙ୍କ ପାଇଁ ମାମୁଲି ବିଳାସର ବିଷୟ ନୁହେଁ । ଗୋଟେ ନୂଆସକାଳ ମୁକୁଳି ଉଠିବାର ଇଙ୍ଗିତ ତାଙ୍କ କବିତାରେ ରହିଛି । ପୁରୁଣା ଅନ୍ଧ ମକଦ୍ଦମୀ ସବୁକୁ ବିସର୍ଜି ଦେବାର ସ୍ପଷ୍ଟ ଉଦ୍‌ଘୋଷଣା ତାଙ୍କ କବିତାକୁ ବେଶ୍ ବଳଶାଳୀ କରିଛି ।

ସେ କେତେ ଆଧୁନିକ ଓ କେତେ ରୋମାଣ୍ଟିକ୍ ସେ ବିଚ଼ାର ଊର୍ଦ୍ଧ୍ୱରେ ତାଙ୍କୁ ନବଧ୍ରୁପଦୀର ନାନ୍ଦୀକାର ବୋଲି ଅଭିହିତ କରିବା ଉଚି଼ତ୍ ।



# ପରାର୍ଥ ପଥିକ

ସେ ଲୋକ ଜଣକ ସବୁବେଳେ ସେମିତି । ଏଣୁତେଣୁ ଖଣ୍ଡେ ଖଦଡ଼ ଧୋତି ଆଉ ଖଣ୍ଡେ ଜାମା । ତା ସାଙ୍ଗକୁ ହୁଏତ ଗୋଟେ ଶାନ୍ତି ନିକେତନୀ ବେଗ୍ । ତାଙ୍କ ବେଶ ପୋଷାକରେ ସେମିତି କିଛି ଚାକଚକ୍ୟ ନଥାଏ ।

ଖାଇବା ପିଇବାବି ସେମିତି । ଯେଉଁଠାନେ ଯେମନ୍ତ ମିଳଇ । ବସିବାରେ ମିଶିବାରେ କିଛି ଖାସ ବାରଣ ନଥାଏ ସେମିତି । ପିଲା ବୁଢ଼ା ସମସ୍ତଙ୍କ ସହିତ ମିଶନ୍ତି । ଶିକ୍ଷିତ ଅଶିକ୍ଷିତ ବି ବାରନ୍ତି ନାହିଁ ।

ସହର ମଫସଲ ତାଙ୍କ ପାଇଁ ସବୁବେଳେ ସମାନ ।

ଆଜି ସମୁଦ୍ରକୂଳରେ ତ କାଲି ପୁଣି ପାହାଡ଼ ମୂଳରେ ।

ଯେଉଁଠି ରହିଲେ ବି ତାଙ୍କ ଲେଖା ଚାଲିଥାଏ ।

ଲେଖାଲେଖି କେତେବେଳେ ବନ୍ଦ ହୁଏନି ବୋଧେ, ନହେଲେ ଏତିକି ଆୟୁଷ ଭିତରେ ଶତାଧିକ ବହି ଲେଖିଥାନ୍ତେ କିପରି ?

ତାଙ୍କ ଲେଖାଲେଖି ଦେଖିଲେ ସତରେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ତାଙ୍କୁ ଯେ ସଭାସମିତିରେ ପୁଣି ଶୁଣିବ ସେ ଆହୁରି ଆଶ୍ଚର୍ଯ୍ୟ ହେବ । କୌଣସି ଦୃଷ୍ଟିରୁ ତାଙ୍କୁ ମାପି ହେବନି । ଅକଳନ୍ତି ସତରେ ତାଙ୍କ ବ୍ୟକ୍ତିତ୍ୱ, ତାଙ୍କର ପଢ଼ାପଢ଼ି ।

ସଭାସମିତି ଭିତରେ ଦେଖିଛି ସମସ୍ତଙ୍କ ପଛରେ ସେ ଚାଲିଥିବେ । ଆଗଧାଡ଼ିରେ ବସିବାକୁ ସେ କେବେ ପ୍ରାୟ ବାହାରନ୍ତିନି । କୁହାଳିଆ ପ୍ରବୀଣମାନଙ୍କ ମେଳ ବି ତାଙ୍କୁ ସେମିତି ଭଲ ଲାଗେନି ବୋଧେ ।

ସେ ଅଧିକାଂଶ ବେଳେ ତରୁଣମାନଙ୍କ ମେଳରେ ଥାନ୍ତି ।

ସେମାନଙ୍କୁ ଛିଗୁଲଉ ଥାନ୍ତି ।

ଆଗକୁ ଯିବାପାଇଁ ସବୁବେଳେ ଉସକଉ ଥାନ୍ତି ।

ସବୁବେଳେ ନୂଆନୂଆ ବହିକଥା କହନ୍ତି ।

ଥଟ୍ଟା ନକଲ ହୁଅନ୍ତି ।

ଅଳପ ଅଳପ ହସୁଥାନ୍ତି ।

ଅଳପ ଅଳପ ରସୁଥାନ୍ତି ।

ଅନେକ ସମୟରେ ଉଦାସ ହୋଇ ବସିଥାନ୍ତି ।

ମୋତେ ସବୁବେଳେ ସେ ବଡ଼ ଅଦ୍ଭୁତ ଲାଗନ୍ତି । ତାଙ୍କ ବ୍ୟକ୍ତିତ୍ୱ ଅପହଞ୍ଚ ହୋଇ ରହିଗଲା ଭଳି ଲାଗେ ।

ମୋର ହେତୁ ହେଲା ଦିନଠାରୁ ଖାସ ମୁଁ ତାଙ୍କ ପ୍ରେମରେ ପଡ଼ିଛି ।

ତିରିଶ ବର୍ଷରୁ ବେଶୀ ହେବଣି ତାଙ୍କ ସହିତ ମୋର ସମ୍ପର୍କ ।

କେତେ ମନେ ରଖି ପାରନ୍ତି ସେ ? ଅଦ୍ଭୁତ ସ୍ମରଣ ଶକ୍ତି । ଅତୁଳନୀୟ ଆତ୍ମୀୟତା ।

ତାଙ୍କୁ ସତରେ ମୁଁ ବହୁତ ଭଲ ପାଏଁ । ଯଥେଷ୍ଟ ସମ୍ମାନ ଦେଖାଏଁ । ମୋର ମନେହୁଏ ସେ ବି ମୋ ପ୍ରତି ସମଧିକ ଶ୍ରଦ୍ଧାଶୀଳ । ମୋ ବୌଦ୍ଧିକ ଜୀବନ ବିକାଶର ସବୁଖବର ସେ ରଖନ୍ତି । କେଡ଼େ ଶୁଭାନୁଧ୍ୟାୟୀ ସତରେ ମୋର ସେ । ଯେଉଁଠି ଯେପରି ଭାବରେ ଦେଖାହେଲେ ବି ପରମ ଅନ୍ତରଙ୍ଗ ଭାବେ କଥା ହୁଅନ୍ତି । କୁଶଳ ଜିଜ୍ଞାସା କରନ୍ତି । ଏତେ ଆତ୍ମୀୟତା, ଶ୍ରଦ୍ଧା ବାଣ୍ଟିବାର ଏତେ ପ୍ରବଣତା ମୁଁ କ୍ବଚିତ ଲୋକଙ୍କ ପାଖରେ ଦେଖେ ।

ସେ ମୋ ସମକ୍ଷରେ ସବୁଦୃଷ୍ଟିରୁ ଅନନ୍ୟ ସତରେ ।

ଏତେ ପଢ଼ାପଢ଼ି ମୋ ପ୍ରଦେଶର ଆଉ କାହାର ଅଛି ?

ଏତେ ଅନ୍ତର୍ମୁଖୀନତା ?

ଏତେ ଗ୍ରାହକତା, ଏତେ ଗ୍ରହଣଶୀଳତା ?

ଏତେ ଶ୍ରଦ୍ଧା, ଏତେ ସ୍ୱାଭିମାନ ?

ମୁଁ ତାଙ୍କୁ ଦେଖି ସର୍ବଦା ମୁଗ୍ଧ ହୋଇଛି । ଚ଼କିତ ହୋଇଛି । ତାଙ୍କର ଗରିମାମୟ ହେତୁବାଦୀ ଚ଼ିନ୍ତନର ତୁଳନା ନାହିଁ ।

ତାଙ୍କ ହେତୁବାଦୀ ଭାବଧାରା ମୋତେ ପ୍ରଭାବିତ କରିଛି । ଜଣେ ଲେଖକର ସର୍ବୋତ୍ତମ ପ୍ରଭାବକୁ ମୁଁ ଉପଲବ୍ଧି କରିଛି । ସେ ଦୃଷ୍ଟିରୁ ତାଙ୍କ ଲେଖାର ଗୋଟେ ଧାଡ଼ିବି ମୂଲ୍ୟବାନ ହୋଇ ଉଠିଛି ମୋ ପାଇଁ ।

ଇଚ୍ଛାଶକ୍ତି ପ୍ରବଳ ଥିଲେ ଉପାୟ ସୃଷ୍ଟି ହୁଏ ବୋଧେ ।

ଅବଶେଷରେ ତାଙ୍କ ସହିତ ମୋର ଦେଖାହେଲା ଉତ୍ତର ଶ୍ରାବଣର ଗୋଟେ ମଧ୍ୟାହ୍ନରେ ଦୂର ପ୍ରାନ୍ତୀୟ ଗୋଟିଏ ପଲ୍ଲୀରେ ।

ସେ ଘଟଣା ଗୋଟେ ନାଟକୀୟ କାହାଣୀ ପରି ଲାଗେ ।

ସେ ଆଗେ ଆଗେ ଚାଲିଛନ୍ତି ତ ମୁଁ ପଛେ ପଛେ । ସାରା ସକାଳ ପହରୁ ଏମିତି ଲୁଚକାଳି ଖେଳ । ଶ୍ରାବଣ ମାସର ଅସରା ଅସରା ବର୍ଷା । ମଝିରେ ଟିକିଏ ଟିକିଏ ଖରା ।

ଚମ୍ପତି ମୁଣ୍ଡାର ତାଙ୍କର ଜଣେ ପ୍ରିୟ ଛାତ୍ର ଶ୍ରୀ ଶଶିଭୂଷଣ ପାଣିଗ୍ରାହୀଙ୍କ ଠାରୁ ଖବର ପାଇଲି ଯେ ସେ ନିକଟସ୍ଥ ଗୋଡ଼ଭଗାକୁ ଆସିଛନ୍ତି ବୋଲି । ମୁଁ ତାଙ୍କୁ ଦେଖିବା ପାଇଁ ଏତେ ବ୍ୟାକୁଳ ହୋଇ ପଡ଼ିଲି ଯେ ହଠାତ୍ ମୁଁ ଡିପାର୍ଟମେଣ୍ଟରୁ ଛୁଟୀ ନେଇ ମୋ ମୋଟର ସାଇକେଲ ଯୋଗେ ଗୋଡ଼ଭଗା ଗଲି ।

ଇପ୍‌ସିତ ବ୍ୟକ୍ତିଙ୍କ ସହିତ ସହଜରେ ବୋଧେ ସାକ୍ଷାତ୍ ହୁଏନି କେତେବେଳେ । ପୂର୍ବରୁ ସେ ସମ୍ବଲପୁରର ଅଇଁଠାପାଲି ନିକଟସ୍ଥ କାଇଁଶିରି ଗ୍ରାମ ଅଭିମୁଖେ ବସରେ ଚାଲି

ଯାଇଥିଲେ । ମୁଁ ଆଉ କାଳବିଳମ୍ବ ନକରି ମୋଟର ସାଇକେଲ ଯୋଗେ ବର୍ଷାରେ ଭିଜିଭିଜି ପୁଣି କାଇଁଶିର ବାହାରିଲି ।

ଅଇଁଠାପାଲିରୁ କିଛିଟା ଗଲାପରେ ଦୁର୍ଗମ କାଦୁଅରାସ୍ତା ପଡ଼ିଲା । ପାଣିଭର୍ତ୍ତି ଶ୍ରାବଣ ମାସର ଧାନକିଆରୀ । ରାସ୍ତାପାଖ ଜଣକ ଘରେ ମୋଟର ବାଇକ୍‌ଟିକୁ ରଖିଦେଇ ମୁଁ କାଦୁଅରେ ଚାଲିଚାଲି ଶେଷରେ କାଇଁଶିର ଗଲି ।

ମୋର ପ୍ରିୟତମ ଲେଖକଙ୍କ ସହିତ ସାକ୍ଷାତ୍ ହେବ—ଏହା ଥିଲା ସେଦିନ ମୋର ପ୍ରଶସ୍ତ ଅଭିଳାଷର ବିଷୟ ।

ତାଙ୍କ ପ୍ରବନ୍ଧ ସମାଲୋଚନାର ଯୁକ୍ତିସବୁ ମୋ ଯୁବପ୍ରାଣରେ ସେଦିନ ଗଭୀର ରେଖାପାତ୍ କରିଥିଲା । ସବୁଠାରୁ ବେଶୀ ମୁଗ୍ଧ କରିଥିଲା ମୋତେ ତାଙ୍କର ଅତି ମାର୍ମିକ ରଚନାବଳୀ ଓ ଏକାନ୍ତ ବୈଜ୍ଞାନିକ ହେତୁବାଦୀ ବିଚାରଧାରା ।

ମୁଁ ସର୍ବଦା ତାଙ୍କର ଜଣେ ମୁଗ୍ଧ ପାଠକ । ପାଠକତା ବେଳେ ପ୍ରେମଠାରୁ ବି ପ୍ରଗାଢ଼ । ଲେଖା ପଢ଼ିବା ଭିତରେ ମଜିଯିବା ବିହ୍ୱଳ ହେବା ଗୋଟେ ପ୍ରକାରର ଅଲଗା ଆନନ୍ଦ । ଭାରି ସାତ୍ତ୍ୱିକ । ଗୋଟେ ଭଲ ଲେଖା ଏତେ ପୁଲକମୟ ପୃଥିବୀକୁ ନେଇଯାଏ ସତରେ ସେ ପାଠକୀୟ ଅନୁଭବକୁ କୌଣସି ତରାଜୁରେ ମାପି ହେବନି ।

ମୋର ସେଇ ପ୍ରିୟ ଲେଖକ ଜଣକ ଗାଳ୍ପିକ ନଥିଲେ କି ଔପନ୍ୟାସିକ ନଥିଲେ । ମାତ୍ର ତାଙ୍କ ବ୍ୟକ୍ତିନିଷ୍ଠ ନିବନ୍ଧ ସବୁ ମୋତେ ଆଶ୍ଚର୍ଯ୍ୟଜନକ ଭାବେ ଗଳ୍ପ ଉପନ୍ୟାସଠାରୁ ଅଧିକ ଆନନ୍ଦ ଦେଇଛି । ତାଙ୍କ ଲେଖା ପଢୁପଢୁ ମୁଁ ଏପରି ଭାବାବିଷ୍ଟ ହୋଇ ଯାଇଛି ଯେ ମୁଁ ତାଙ୍କ ବହିଛାଡ଼ି କୁଆଡ଼କୁ ଆଉ ଯାଇ ପାରିନି । ସ୍ଥିର ହୋଇ ରହି ପାରିନି ।

ଗୋଟେ ସୁନ୍ଦର ଜୀବନ ବଞ୍ଚିବା ପାଇଁ ଏତେ ବଳଶାଳୀ ଯୁକ୍ତି ତାଙ୍କ ଲେଖାମାନଙ୍କରେ ଥାଏ ଯେ ତା'ର ମୋହ ତୁଟେଇ ହୁଏନି । ମଣିଷଟିଏ ତା ନିଜ ବାଟରେ ବଞ୍ଚିବା ପାଇଁ କେତେ ଗୁଡ଼ିଏ ଲଜିକ୍‌କୁ ହୁଏତ ଆପଣେଇ ନିଏ । ସେଇ ଲଜିକ୍ ସବୁ ତା'କୁ ସନ୍ଦିଗ୍ଧ ହେବାକୁ ହୁଏତ ଦିଏ ନାହିଁ ।

ନିଜ ସ୍ୱାର୍ଥର ବଳୟ ଭିତରେ ବଞ୍ଚୁଥିବା ଜଣେ ଜୀବନରେ କେତେ ଅଧିକ ବିଶ୍ୱମୁଖୀ ହୋଇପାରେ ଏବଂ ହେବା ଉଚିତ୍ କିମ୍ବା ବ୍ରହ୍ମାଣ୍ଡ ଭୋଗର ମୂଳ ସର୍ତ୍ତ ସବୁ କ'ଣ ଏ ବିଷୟ ତାଙ୍କ ଲେଖାରେ ପ୍ରାୟ ସୂଚିତ ହୋଇଥାଏ ।

ଜଣେ ଲେଖକର ବଡ଼ ବୁନିଆଦି ହେଉଛି ତା'ର ବିଶ୍ୱଦୃଷ୍ଟି (World view) । ଗୋଟେ ଲେଖାର ସେହିପରି ସର୍ବୋତ୍ତମ ଗୁଣ ହେଉଛି ସାର୍ବଜନୀନତା ଓ ସାର୍ବକାଳୀନତାର ଆବେଦନ । ଉତ୍ତମ ଲେଖାଟିଏ ହାତଧରି ସବୁବେଳେ ଆଗକୁ ନେଇଯିବ । ଆଲୋକର ପଥ ଦେଖାଇବ । ଚେତନାର ବିକାଶ ଘଟାଇବ ।

ମୁଁ ତାଙ୍କ ଲେଖା ପଢ଼ି ପ୍ରାୟ ମୋ ଜୀବନର କିଛିଟା ବିଶ୍ୱାସକୁ ତିଆରି କରିଛି । ମୋ ନିଜପାଇଁ ଗୋଟେ ବାଟବି ବାଛିଛି । ନାନା ପ୍ରତିବନ୍ଧକ ସତ୍ତ୍ୱେ ମନକୁ ସୃଜନଶୀଳ କରି ରଖିଛି ।

ତାଙ୍କ ଲେଖାସବୁ ପଢ଼ିବା ଦ୍ୱାରା ବୌଦ୍ଧିକ ଜୀବନ ପ୍ରତି ମୋର ଉନ୍ମୁଖତା ବଢ଼ିଛି । ମୁଁ ସଂସାରର ନିହାତି ଇତର କଥାରେ ଆଉ ମନଦେଇନି । ପୁସ୍ତକ ସବୁକୁ ଉତ୍ତମ ବନ୍ଧୁବୋଲି ଜ୍ଞାନ କରିଛି ।

ଅତି ମାତ୍ରାରେ ସାଂସାରିକ ହେବାକୁ ବି ଚାହିଁନି ।

ଖାଲି କଉଡ଼ି ଗଣାରେ ମନ ଦେଇନି

ସଂସାରର ଅସାର କଥା ଆଉ ମୋତେ କବଳିତ ମଧ କରିପାରିନି ।

ମୋ ନିଜପାଇଁ ମୁଁ ଗୋଟେ ଏସଥେଟିକ୍ସ ତିଆରି କରିପାରିଛି ।

ତାଙ୍କ ଲେଖାସବୁ ସତରେ ଜୀବନରେ ମୋତେ ବହୁତ ପ୍ରଭାବିତ କରିଛି । ମୋ ଦୁଃସ୍ଥିତିରେ ମୋତେ ପ୍ରବୋଧନା ବି ଦେଇଛି । ଗୋଟେ ଶୁଦ୍ଧ ବୌଦ୍ଧିକ ଜୀବନ ବଞ୍ଚିବା ପାଇଁ ନାନାଭାବରେ ଅନୁପ୍ରେରିତ କରିଛି ।

ବିଦ୍ୟାର ପୃଥକ୍ ପୃଥକ୍ କୋଠରୀ ସବୁକୁ ସେ ତାଙ୍କ ଲେଖାରେ ଭାଙ୍ଗି ଦେଇଛନ୍ତି । ସବୁ ବିଦ୍ୟାର ଚେତନା ଗତ ବିଷୟ ଗୋଟେ ଉଚ୍ଚତର ଶୀର୍ଷରେ ଯେପରି ମିଶି ଏକ ହୋଇଯାଇଛି । ଏତେ ଆନ୍ତର୍ବିଦ୍ୟାମୂଳକ ଏକମୁଖୀନତା ମୁଁ କ୍ୱଚିତ୍ ଲେଖକଙ୍କ ଲେଖାରୁ ପାଇଛି ।

ମନୁଷ୍ୟର ଜୀବନଧାରା ଓ ତା'ର ସୁଦୀର୍ଘ ସାମାଜିକ ବିବର୍ତ୍ତନ ଇତିହାସ ପରପିଢ଼ିର ମଣିଷକୁ ସଫଳ ଜୀବନ ବଞ୍ଚିବା ପାଇଁ ହୁଏତ ମାର୍ଗ ନିର୍ଦ୍ଦେଶ କରେ ।

ତାଙ୍କ ଲେଖା ଗୋଟେ ସୀମିତ ସମୟ, ଖଣ୍ଡିତ ଭୂଗୋଳ ଅବା ଗୋଟେ ସଂକୀର୍ଣ୍ଣ ବିଚାରର ଚିତ୍ର ନୁହେଁ ।

ବିଶାଳତା ପରିପକ୍ୱତାର ଗୋଟେ ଆପେକ୍ଷିକ ଅଂଶ ।

ସେତେବେଳକୁ ବହୁଗ୍ରନ୍ଥ ତାଙ୍କର ଛପାହୋଇ ଲୋକଲୋଚନକୁ ଆସିଲାଣି । ସେ ସେତେବେଳକୁ ଜଣେ ବେଶ ଜଣାଶୁଣା ପ୍ରତିଷ୍ଠା ସମ୍ପନ୍ନ ଲେଖକ ହୋଇଗଲେଣି । ବିଦେଶ ଯାଇ ବହୁ ବିଶ୍ୱବିଦ୍ୟାଳୟରେ ପରିଦର୍ଶୀ ଅଧ୍ୟାପକ ଭାବେ ଭାଷଣ ଦେଇ ଆସିଲେଣି ।

ସେ ବି ପାଞ୍ଚ ପ୍ରକାରର ଗ୍ରନ୍ଥ ଲେଖିଛନ୍ତି । ମାତ୍ର ପ୍ରତିଟି ଗ୍ରନ୍ଥରେ ମୋଟାମୋଟି ଭାବେ ଗୋଟେ ଅନ୍ତର୍ମୁଖୀ ମଣିଷର ଜୀବନଦୃଷ୍ଟି ପ୍ରତୀକିତ ହୋଇଥାଏ । ବିଶ୍ୱର ଜ୍ଞାନବିଜ୍ଞାନର ଯେଉଁ ଦିଗକୁ ସେ ଅବତାରଣା କରିଥାନ୍ତୁ ନା କାହିଁକି ସେଥିରେ ତାଙ୍କ ସମ୍ବେଗ ଓ ସ୍ୱାଭିମାନ ପ୍ରକଟିତ ହୋଇଥାଏ ।

ଲେଖକୀୟ ସତ୍ତାର ଏହି ପ୍ରକଟନ ତାଙ୍କ ଲେଖାର ସବୁଠାରୁ ଉଜ୍ଜ୍ୱଳତର ଦିଗ । ଲେଖା ଭିତରେ ଲେଖକ ଯେତେ ଅଧିକ ମାତ୍ରାରେ ରହିବେ ଲେଖାର ପ୍ରଭାବ ସେତେ ବଢ଼ିବ । ପାଠକ ଲେଖକର ପ୍ରତିମାଟିକୁ ବରାବର ନିଜ ପାଖରେ ପାଆନ୍ତି ।

ସେତେବେଳକୁ ମୁଁ ତାଙ୍କ ଜୀବନ ବଞ୍ଚିବା ସମ୍ପର୍କରେ ବେଶ କିଛି କଥା ଜାଣି ସାରିଥିଲି ।

ମୋତେ ସେ ଜଣେ ପରିବ୍ରାଜକ ପରି ଲାଗୁଥିଲେ । ତାଙ୍କ ଜୀବନ ଢାଞ୍ଚା ପ୍ରତି ମୋର ଅହେତୁକ ଭଲପାଇବା ସୃଷ୍ଟି ହୋଇ ସାରିଥିଲା । ସେ ସାଂସାରିକ ଜୀବନ ବଞ୍ଚିଥିଲେ ବି କିଛି ଅଧିକ ନିର୍ଜ୍ଜନତା ତାଙ୍କ ଜୀବନ ପରିଧି ଭିତରେ ଥିଲା । ବୌଦ୍ଧିକ ଜୀବନ ପ୍ରତି ପ୍ରାଣର ଉନ୍ମୁଖତା ବଢ଼ିଲେ ତା'ସହିତ ବେଳେ ଏକାକୀତ୍ୱବୋଧ ଓ ସନ୍ୟାସର ବାସନା ହୁଏତ ବଢ଼ିଥାଏ ।

ତାଙ୍କ ବ୍ୟକ୍ତିତ୍ୱ ଓ ତାଙ୍କର ଲେଖକ ଜୀବନ ମୋତେ ସେତେବେଳକୁ ବହୁଭାବରେ ଆକୃଷ୍ଟ କରିସାରିଥିଲା ।

ପ୍ରସ୍ତାବିତ ପଲ୍ଲୀ ବିଶ୍ୱବିଦ୍ୟାଳୟରେ ବିଦେଶୀ ଫେରନ୍ତା ଯୁବଶିକ୍ଷକ ଭାବେ ତାଙ୍କର ଯୋଗଦାନ ଓ ଜୀବନ ବିଦ୍ୟାଳୟର ଦର୍ଶନ ମୋତେ ଭାରି ଅଦ୍ଭୁତ ଲାଗୁଥିଲା । ଥରେ ଯାଇ ଚମ୍ପରିମୁଣ୍ଡାର ସାରା ପରିବେଶ, ଭାଙ୍ଗିପଡ଼ିଥିବା ସେ ଆବାସିକ ବିଦ୍ୟାଳୟର ପ୍ରତିଟି ପରିତ୍ୟକ୍ତ କୁଟୀରକୁ ଆଖିରେ ଦେଖି ଆସିଥିଲି ।

ସେଠାକାର ଲୋକମାନଙ୍କୁ ପଚାରି ବୁଝିଥିଲି ଯେ, ମୋର ପ୍ରିୟ ଲେଖକ କେଉଁଠି କିପରି ରହୁଥିଲେ । କେଉଁ ଜାଗାରେ ବସି କେତେବେଳେ ଲେଖୁଥିଲେ ।

ସେ ଛାତ୍ରଛାତ୍ରୀମାନଙ୍କୁ ପ୍ରତିଦିନର ସମ୍ବାଦ ପଢ଼ି ଶୁଣାଉଥିଲେ ତ ଜୀବନ ଗଢ଼ିବାପାଇଁ ଉପଦେଶ ଦେଉଥିଲେ । ଆବାସିକ ବିଦ୍ୟାଳୟଟିର ପରିଚାଳନା ଦେଖୁଥିଲେ ତ ଗୋଡ଼ରେ କାଦୁଅ ଚକଟି, ଇଟାବହି ଶ୍ରେଣୀଗୃହ ଓ ଛାତ୍ରାବାସ ପାଇଁ ନୂଆ ନୂଆ ବଖରାମାନ ତିଆରି କରୁଥିଲେ ।

ତାଙ୍କୁ କିପରି ମୁଁ ଦେଖିବି ଆଉ ସେ ମୋତେ କିପରି ଗ୍ରହଣ କରିବେ ଏହି ଭାବନାରେ ସେଦିନ ଶ୍ରାବଣ ମାସର କାଇଁଶିର ଗାଁର କର୍ଦ୍ଦମାକ୍ତ ରାସ୍ତା ପାରି ହେଉଥିଲି । ଚାରିକଡ଼େ ଅସୁମାରି ଧାନବିଲ, ଦୂରସ୍ଥ ବିଶ୍ୱବିଖ୍ୟାତ ହୀରାକୁଦ ଜଳଭଣ୍ଡାର, ଶୋଭାବନ୍ତ ଦିଗ୍‌ବଳୟ ମୋର ମନହରଣ କରୁଥିଲା ।

ମୁଁ ବାଟସାରା ସବୁବେଳେ ତାଙ୍କ କଥା ହିଁ ଭାବୁଥିଲି । ତାଙ୍କ ହୃଦୟର ଭାବତରଙ୍ଗସବୁ ତାଙ୍କୁ ସର୍ବଦା କିପରି ଉଦ୍‌ବେଳିତ କରୁଥିଲା ସେ କିପରି ବିଶ୍ୱ ପର୍ଯ୍ୟଟନରେ ଯାଇ ଦିନ କଟାଇଛନ୍ତି ସେ ସବୁ ବିଷୟ ମୋ ମନକୁ ଆସୁଥିଲା ।

ମୋର ପ୍ରିୟ ଲେଖକ ଜଣକ ରବୀନ୍ଦ୍ରନାଥଙ୍କ ସ୍ୱପ୍ନ ସଦନ ବିଶ୍ୱବିଖ୍ୟାତ ଶାନ୍ତିନିକେତନରେ କିପରି ଗବେଷକ ଭାବେ ଜୀବନ କଟାଇଥିଲେ ସେ କଥା ମୁଁ ନାନାମତେ ପଢ଼ିଥିଲି ।

ସେଇଠି ତାଙ୍କ ମନ ଓ ଚେ଼ତନା ପ୍ରସାରିତ ହୋଇ ଯାଇଥିଲା । ସେଇଠି ସେଇ ବିଶ୍ୱଭାରତୀରେ ତାଙ୍କ ଚେ଼ତନା ବଢ଼ିଥିଲା । ସଙ୍କଳ୍ପ ସୁନିର୍ଦ୍ଦିଷ୍ଟ ହୋଇଥିଲା । ନୃତତ୍ତ୍ୱ, ସମାଜତତ୍ତ୍ୱ, ଦର୍ଶନ, ସାହିତ୍ୟ ସଂସ୍କୃତି ସବୁବିଷୟରେ ତାଙ୍କର ପଢ଼ାପଢ଼ି ଆରମ୍ଭ ହୋଇ ଯାଇଥିଲା ।

ସେ ବହି ପଢ଼ିବାରେ ନିଜକୁ ହଜାଇ ଦେଇଥିଲେ ।

ବିଶ୍ୱଦୃଷ୍ଟି ତାଙ୍କର ଆହୁରି ତୀକ୍ଷ୍ଣ ଓ ମାର୍ମିକ ହୋଇଥିଲା ।

ଶାନ୍ତି ନିକେତନ ତାଙ୍କ ପାଇଁ ମହାନ ତୀର୍ଥ ହୋଇଗଲା ।

ତାଙ୍କ ସ୍ୱପ୍ନର ବଳୟ ଅଧିକ ପରିବ୍ୟାପ୍ତ ହେଲା ।

ପ୍ରାଣର ସୃଜନଶୀଳତା ବଢ଼ିଲା ।

ବିଶ୍ୱଭାରତୀର ନାନା କାର୍ଯ୍ୟକ୍ରମରେ ସେ ଅଂଶ ଗ୍ରହଣ କଲେ ।

ଶାନ୍ତିନିକେତନର ମହାନ ମହାନ ଗ୍ରନ୍ଥ ସବୁ ତାଙ୍କୁ ଆଲୋକର ପଥ ଦେଖାଇଲା । ସେ ପଢ଼ିଲେ ପାସ୍କାଲ, ସ୍ପିନୋଜା, ଦେକାର୍ତ ଓ ଆହୁରି ଅନେକଙ୍କୁ । ପ୍ରାଚ଼ୀନ ଭାରତୀୟ ସାହିତ୍ୟ ପଢ଼ିଲେ । ବହୁ ସନ୍ଥ କବିମାନଙ୍କୁ ପଢ଼ିଲେ । ମହିମା ଧର୍ମ ସମ୍ପର୍କରେ ଚ଼ର୍ଚ୍ଚା କଲେ ।

ତରୁଣ ଚି଼ତ୍ତରଞ୍ଜନଙ୍କ ଭିତରୁ ବହୁ ସମ୍ଭାବନାମୟ ଝଲକ ଉକୁଟି ଉଠିଲା । ତାଙ୍କ ଲେଖାର ତୀକ୍ଷ୍ଣତା ଓ ମାର୍ମିକତା ପ୍ରକଟିତ ହେଲା ।

ତାଙ୍କ ଲେଖକୀୟ ପ୍ରତିଷ୍ଠାକୁ ସମସ୍ତେ ଅନେଇ ରହିଲେ ।

ଯାହା ଜୀବନର ମୂଳ ଚେ଼ତନା ସମ୍ବନ୍ଧିତ ନୁହେଁ, ଯାହା ସମାଜଗଠନର ମନୋଭାବଠାରୁ ଦୂରବର୍ତ୍ତୀ ସେ ପ୍ରକାର ଏସଥେଟିକ୍‌ସକୁ ସେ ହୃଦୟ ଦେଇ ଗ୍ରହଣ କରି ନାହାନ୍ତି ।

ମାର୍କସବାଦୀ ଚି଼ନ୍ତନରେ ଯାହା ସାର, ଯାହା ପୁଣି ଅର୍ଥପୂର୍ଣ୍ଣ ଓ ବାସ୍ତବ ତା'କୁ ଅସ୍ତିତ୍ୱବାଦୀ ଭାବ ଚେ଼ତନାରୁ ସେ ଗ୍ରହଣ କରିଛନ୍ତି । ଯେତେବଡ଼ ଆକର୍ଷଣୀୟ ସ୍ଲୋଗାନ୍ ହେଉ ପଛେ ସେ ପ୍ରଥମେ ତା'ର ମନ୍ଦ ସ୍ଥୂଳକୁହିଁ ଦେଖିଛନ୍ତି । ବଡ଼ବଡ଼ ତତ୍ତ୍ୱ ଓ ଦର୍ଶନ ସବୁକୁ ସେ ସେପାଇଁ ପ୍ରତ୍ୟାଖ୍ୟାନ କରିଛନ୍ତି । ବିଶ୍ୱର ଭାବପରିଧିରୁ ସେ ନିଜର ରୁଚିନେଇ ବାଛିଛନ୍ତି ।

ସମାଜ ତାତ୍ତ୍ୱିକ ବିଚାରଦଣ୍ଡ ବୋଧେ ତାଙ୍କ ଚେ଼ତନାର ଖୁଣ୍ଟ ହୋଇଛି । ସେହି ଖୁଣ୍ଟଟିକୁ ଧରି ସେ ଆଉ ସବୁ ବିଷୟକୁ ତଉଲିଛନ୍ତି । ଯେତେ ଆପାତତଃ ଦିବ୍ୟଲାଗୁପଛେ କୌଣସି ଶୂନ୍ୟଗର୍ଭ ଏକାନ୍ତ ଭାବମୟ ବିଷୟ ପ୍ରତି ସେ ଉଷ୍ମତା ପ୍ରକାଶ କରି ନାହାନ୍ତି ।

ଆଳଙ୍କାରିକତା ତଥା ରଚ଼ନାଗତ ଅନ୍ୟାନ୍ୟ ଆଟୋପସବୁକୁ ଯଥା ସମ୍ଭବ ହୁଏତ ସେ ପରିହାର କରିଛନ୍ତି । ଯୁକ୍ତି ସମ୍ମତଭାବେ ସବୁକଥାକୁ କହିବାପାଇଁ ସେ ଚେ଼ଷ୍ଟା କରିଛନ୍ତି । ତାଙ୍କ ବହିର ନାମକରଣ ସବୁତାଙ୍କ ଯୁକ୍ତି ଓ ବିଶ୍ୱାସର ନିଦର୍ଶନ । ସେ ଥିଲେ ନିଜ ଦେଶରେ ବିଦେଶୀ । କୌଣସି ଭାବପ୍ରବଣତାର ବଶବର୍ତ୍ତୀ ହୋଇ ସେ ସ୍ୱଦେଶୀ ପ୍ରସଙ୍ଗ ଅବତାରଣା କରି ନାହାନ୍ତି ।

ସେଦିନ ମୁଁ ତାଙ୍କ ବିଷୟରେ ସବୁକଥା ଭାବି ଭାବି ତାଙ୍କୁ ଦେଖା କରିବାକୁ ଯାଇଥିଲି । ମଧ୍ୟାହ୍ନ ଗଡ଼ି ଯାଇଥିଲା ।

କାଇଁଶିର ଗାଁ ମୁଣ୍ଡରେ ପହଞ୍ଚିଲି । କେଉଁଠି କିଛି ଆସର ହେଉଛିକି ବୋଲି ପଚାରିଲି । ଗାଁ ଲୋକମାନେ କେହି କିଛି କହି ପାରିଲେନି ।

ଶେଷକୁ ପଚାରି ପଚାରି ଯାହାଙ୍କ ଘରେ ପହଞ୍ଚିଲି ସେ ଆଗରୁ ମୋର ଅତି ପରିଚିତ ଥିଲେ । ଆମ ବିଶ୍ୱବିଦ୍ୟାଳୟର ବରିଷ୍ଠ ଅମଲା ଶ୍ରୀ ଗୁଣନିଧି ବଡ଼ାଇ । ତାଙ୍କରି ଘରେ ସେ ଅବସ୍ଥାନ କରୁଥିଲେ ।

ଖଦଡ଼ ଧୋତି ଖଣ୍ଡେ ପିନ୍ଧି ସେ ଗୋଟେ ଖଟିଆରେ ଶୋଇଥିଲେ । ତାଙ୍କ ଆଖିରେ ପତଳା ନିଦ ଥିଲା ।

ତାଙ୍କୁ ଖବର ଦିଆଗଲା ଯେ ମୁଁ ତାଙ୍କୁ ସାକ୍ଷାତ୍ କରିବାକୁ ଚାହେଁ ବୋଲି ।

ବିଶ୍ୱବିଦ୍ୟାଳୟରୁ ଜଣେ ଅଧ୍ୟାପକ ଆସିଛନ୍ତି ଶୁଣି ସେ ତାଙ୍କୁ ସାକ୍ଷାତ୍ କରିବା ପାଇଁ ମୋତେ ଅନୁମତି ଦେଲେ ।

ମୁଁ ଭିତରକୁ ଗଲି । ନମସ୍କାର ଜଣାଇଲି ।

ଆପଣଙ୍କୁ ଖାଲି ସାକ୍ଷାତ୍ କରିବାକୁ ଆସିଛି ବୋଲି କହିଲି । ସେ ସବୁକଥା ଶୁଣିଲେ ।

ମୋତେ ପ୍ରଶଂସା ନକରି ରହି ପାରିଲେ ନାହିଁ ।

ସେ ମୋର ଅତି ପ୍ରିୟ ଲେଖକ ବୋଲି ମୁଁ ତାଙ୍କୁ ଜଣାଇ ଦେଲି ।

ଏଣୁତେଣୁ ବହୁତ କଥା ଆଲୋଚନା କଲୁ । ତା'ପରେ ସେ ମୋପାଇଁ ଖାଇବାର ବନ୍ଦୋବସ୍ତ କରିବାପାଇଁ କହିଲେ ।

ତାଙ୍କ କଥାବାର୍ତ୍ତା ଅତ୍ୟନ୍ତ ପ୍ରୀତିପୂର୍ଣ୍ଣ ଓ ନରମ ଥିଲା । ସେ ଦିନର ତାଙ୍କର ଶ୍ରଦ୍ଧାଶୀଳତାକୁ ମୁଁ କେବେ ଭୁଲି ପାରିବିନି ।

ସେ ବୋଧେ ଊଣେଇଶ ଛଅସ୍ତରି ମସିହାର କଥା । ମୁଁ ସେହିବର୍ଷ ଗଙ୍ଗାଧର ମେହେର ମହାବିଦ୍ୟାଳୟ ଛାଡ଼ି ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗଦାନ କରିଥିଲି ।

ଏତେବର୍ଷ ଏହା ଭିତରେ ଚାଲି ଗଲାଣି । ଅଥଚ ମୁଁ ସେ ପ୍ରୀତିପୂର୍ଣ୍ଣ ସାକ୍ଷାତ୍କାର ଘଟଣାଟିକୁ ଗୋଟି ଗୋଟି କରି ମନେ ରଖିଛି । ମୋ ପ୍ରାଣରେ ବେଶ ପୁଲକ ସଞ୍ଚାର କରିଥିଲା ସେଦିନର ସେ ସୌଜନ୍ୟପୂର୍ଣ୍ଣ ସାକ୍ଷାତ୍କାର ।

ସେ ସାକ୍ଷାତ୍କାର ଆଦୌ ବ୍ୟାବହାରିକ ନଥିଲା । ସେ ସାକ୍ଷାତ୍କାର ଥିଲା କେବଳ ମୋ ପ୍ରିୟ ଲେଖକଙ୍କୁ ଭେଟିବା ।

ବହୁଦିନତଳେ ତାଙ୍କ ଲେଖା ମୋତେ ବିଶେଷ ଭଲ ଲାଗିଥିବା କାରଣରୁ ତାଙ୍କ ଲେଖାର ଶୈଳୀ ସମ୍ପର୍କରେ ମୁଁ ବି ତିନିଟି ଆଲୋଚନାମୂଳକ ଲେଖା ଲେଖିଥିଲି ।

ସେହି ଘଟଣାର ବହୁଦିନ ପରେ ମୁଁ ତାଙ୍କୁ ବହୁବାର ସଭାସମିତିରେ ଶୁଣିଛି ଓ ଭେଟିଛି । ଥରେ ମନେଅଛି ଓଡ଼ିଶାକୁ ଗବେଷଣା ପରିଷଦ ତରଫରୁ କଟକରେ ଗବେଷଣା ପ୍ରବିଧି ଉପରେ ଏକ ସଂପାନ ହେଉଥିଲା ।

ଓଡ଼ିଶାରୁ ବହୁ ପ୍ରତିଷ୍ଠିତ ବ୍ୟକ୍ତି ଆଲୋଚନାରେ ଅଂଶଗ୍ରହଣ କରିଥିଲେ । ବହୁପଦ୍ଧତି ସମ୍ପର୍କରେ ବିଶଦଭାବେ ଚର୍ଚ୍ଚା ହୋଇଥିଲା । ଅପରାହ୍ଣରେ ଉଦ୍‌ଯାପନୀ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ମୁଖ୍ୟବକ୍ତା ଭାବେ ଯୋଗଦେଇ ସେ କହିଥିଲେ ଆକାଶଟା ଯଦି ଖାଲି ଆଖିକୁ ସ୍ୱଚ୍ଛ ଦିଶୁଛି ଆଉ ଗୋଟେ ନଳୀର ପ୍ରୟୋଜନ କ'ଣ ? ତାଙ୍କର ସେଦିନ ଏହି ଗୋଟିଏ ବାକ୍ୟରେ ପଦ୍ଧତିତତ୍ତ୍ୱ ସମ୍ପର୍କରେ ସାରାଦିନର ଚର୍ଚ୍ଚା ପବନରେ ଉଡ଼ି ଯାଇଥିଲା ଯେମିତି । ସଭାସ୍ଥଳରେ ସମସ୍ତେ ତାଙ୍କ ମନ୍ତବ୍ୟରେ ହସି ପକାଇଥିଲେ ।

ସବୁ କଥାକୁ କାଟିଦେବା ତାଙ୍କର ଗୋଟେ ଅଭ୍ୟାସର ବିଷୟ । ଗୋଟେ ବଡ଼ ବ୍ୟବସ୍ଥାକୁ, ଗୋଟେ ପ୍ରଚଳିତ ପ୍ରଥାକୁ ପ୍ରତିଯୁକ୍ତି ଦେଇ ବିଚାର କରିବା ହେଉଛି ତାଙ୍କ ଶୈଳୀର ଏକ ବଡ଼ ଅଂଶ ।

ଆମ ପ୍ରଦେଶର ଏମିତି କେତେକ ବିଶିଷ୍ଟ ଅଛନ୍ତି ଯେଉଁମାନେ ନିରର୍ଥକ ଭାବପ୍ରବଣତାରେ ଖାଲି ଭାଷିଯାଆନ୍ତି । ଗୁଡ଼ାଏ ଜନଶ୍ରୁତି ଓ କିମ୍ବଦନ୍ତୀକୁ ଘୋଷିଥାନ୍ତି । ସବୁବେଳେ ସବୁକଥାରେ ଗୁଡ଼ାଏ ଗର୍ଜନ କରି ସେ ସବୁକୁ ବଖାଣୁ ଥାଆନ୍ତି ।

ସେ କିନ୍ତୁ ଆଦୌ ସେମିତି ନୁହନ୍ତି । ଏମିତି ଧର୍ମ ନାମରେ, ଜାତି ନାମରେ ତୁଚ୍ଛା ଭାବପ୍ରବଣତା ପ୍ରଦର୍ଶନ କରିବା ସପକ୍ଷରେ ସେ ଆଦୌ ନୁହନ୍ତି । ଗୋଟିଏ ବାସ୍ତବ ତଥା ବୃହତ୍ତର ସାମାଜିକ ପ୍ରକ୍ରିୟା ସିଦ୍ଧ ବିଷୟକୁ ଆଧାର କରି ସେ ଯେ କୌଣସ ପ୍ରସଙ୍ଗକୁ ବିଚାର କରନ୍ତି ।

ତାଙ୍କ ଶୈଳୀ, ତାଙ୍କ ଶବ୍ଦ ସଜା, ତାଙ୍କ ବାକ୍ୟଗଠନରୀତି ତାଙ୍କର ଅନ୍ତର୍ମୁଖୀ ଦୃଷ୍ଟିଭଙ୍ଗୀ ସବୁବେଳେ ଅଲଗା ପ୍ରକାରର । ତାଙ୍କର ଯେ କୌଣସି ରଚନାରୁ ଦି'ଧାଡ଼ି ପଢ଼ିଲେ ତାହା ସହଜରେ ଜାଣିହେବ ।

ସେ ଗୋଟେ ଶୈଳୀ ପାଇଛନ୍ତି । ସେମିତି ଶୈଳୀର ଲେଖିବା ଓସ୍ତାଦି ତାଙ୍କର ରହିଛି ।

ମୋ ପ୍ରଦେଶର ପାଠକମାନେ ଅବଶ୍ୟ ଜାଣି ପାରିଥିବେ ସେ ଅତି ପ୍ରିୟ ଲେଖକ ଜଣକ କିଏ ବୋଲି । ତାଙ୍କ ନାମ ମୁଁ ଏ ଯାବତ୍ ଉଲ୍ଲେଖ କରିନାହିଁ ପ୍ରାୟ । ସେଇ ମୋର ଅତିପ୍ରିୟ ଲେଖକ ହେଲେ ଓଡ଼ିଶାର ସ୍ୱନାମଧନ୍ୟ ଲେଖକ ଓ ଦାର୍ଶନିକ ଶ୍ରୀ ଚିତ୍ତରଞ୍ଜନ ଦାସ; ଯାହାଙ୍କ ଲେଖାସବୁ ବର୍ଷବର୍ଷ ଧରି ମୁଁ ଅତ୍ୟନ୍ତ ଆଗ୍ରହର ସହିତ ପଢ଼ି ଆସିଛି ।

ସେତ ଚିତ୍ତରଞ୍ଜକ ଚିତ୍ତରଞ୍ଜନ । ସଂସାର କରିଛନ୍ତି ସତ । ରାଜଧାନୀ ଭୁବନେଶ୍ୱରରେ ଘର ଖଣ୍ଡେ ତାଙ୍କର ଅଛି । ହେଲେ ସେ ଏକ ପରିବ୍ରାଜକ; ସବୁକଥାକୁ ଆହୁରି ପରିବ୍ୟାପ୍ତ

ଭାବେ ଜାଣିବା ପାଇଁ ସେ ଅବିଶ୍ରାନ୍ତ ଭାବେ ଭ୍ରମଣ କରିଛନ୍ତି ଦେଶ ଓ ବିଦେଶ । ଦୂର ପ୍ରାନ୍ତୀୟ ଗ୍ରାମାଞ୍ଚଳ ବି ସେଥିରୁ ବାଦ ଯାଇନି ।

ଜୀବନ ତମାମ ସେ ଲେଖି ଚାଲିଛନ୍ତି ଆଉ ଯାଯାବର ପରି ଖାଲି ବୁଲିଛନ୍ତି । କୌଣସି ବ୍ୟବସ୍ଥା କିମ୍ବା ସ୍ଲୋଗାନ ନିକଟରେ ସେ ଅଟକି ଯାଇ ନାହାନ୍ତି । କେଉଁ ସଂଘର ପତାକା ଟେକି ଧରି ନାହାନ୍ତି । କାହାର ଜିନ୍ଦାବାଦ କରି ନାହାନ୍ତି ।

ମିଥ୍ୟା ଭାକ୍ତିକତା ତାଙ୍କୁ ଟିକିଏ ବି କେତେବେଳେ କେମିତି ସ୍ପର୍ଶ କରିନି । ଶ୍ରୀଅରବିନ୍ଦ ଦର୍ଶନ ତାଙ୍କ ପାଇଁ ଏକ ସୌନ୍ଦର୍ଯ୍ୟ ଜିଜ୍ଞାସା ।

ତାଙ୍କୁ କେତେଜଣ ଇଣ୍ଟେଲେକ୍‌ଚୁଆଲ ବୋହେମୋନିଆନ ବୋଲି କହନ୍ତି ।

ପ୍ରତ୍ୟେକ ଦୃଷ୍ଟିରୁ ସେ ଜଗତର ଅନେକ କଥାକୁ ବ୍ୟାଖ୍ୟା କରିଛନ୍ତି; କିନ୍ତୁ କାହାକୁ ଆବୋରି ବସି ନାହାନ୍ତି ।

ଓଡ଼ିଶାର ସମସ୍ତେ ଏପରି ଜଣେ ପରିବ୍ରାଜକଙ୍କୁ ଚିତ୍ତ ଭାଇ ବୋଲି ଡାକନ୍ତି; ଯାହାଙ୍କୁ ବେଶୀ ପ୍ରେମ କି ବେଶୀ ଘୃଣା ଆଦୌ ଘାରି ଦେଇନି ।

ସେ ଅତି ବସ୍ତୁନିଷ୍ଠ ଭାବରେ ଯେପରି ଜଗତର ବିପୁଳ ବିବର୍ତ୍ତନକୁ ବର୍ଣ୍ଣନା କରିଛନ୍ତି; ଅବଶ୍ୟ ବିଶ୍ୱଦୃଷ୍ଟି ଦେଇ ।

ଆଞ୍ଚଳିକ ଦୃଷ୍ଟିଭଙ୍ଗୀ ତାଙ୍କୁ କେତେବେଳେ ବି ସଙ୍କୀର୍ଣ୍ଣ କର ଦେଇନି ।



# ଆଉ ଜଣେ ସେମିତି ଆସକ୍ତ ଚେତନାର ସନ୍ୟାସୀ

ସନ୍ୟାସୀ ଜଣେ ଆସକ୍ତ ହେଲେ ଅବା ଆସକ୍ତ ଜଣେ ସନ୍ୟାସୀ ପ୍ରକାରେ ଆଚରଣ କଲେ ବଡ଼ ବିଚିତ୍ର ଲାଗେ । ମୋର ଅନ୍ୟତମ ପ୍ରିୟ ଶିଳ୍ପୀ ମହାପାତ୍ର ନୀଳମଣି ସାହୁ ସେହିପରି ଜଣେ ଅତ୍ୟନ୍ତ ସନ୍ୟାସୀ; ଯାହାଙ୍କ ବିଶୁଦ୍ଧ ଉଚ୍ଛ୍ୱାସ ସବୁ ମୋତେ ବଡ଼ ବିଚିତ୍ର ଲାଗେ ।

ଯେ କୌଣସି ଶିଳ୍ପୀର ଜୀବନ ଦୃଷ୍ଟି ତା'ର କଳାଦୃଷ୍ଟିକୁ ପ୍ରଭାବିତ କରେ । ଜଣେ ଆନନ୍ଦବାଦୀ ଶିଳ୍ପୀର ଭାଷା, ଶୈଳୀ, ତା'ର ବିମ୍ବନିର୍ମାଣ ଅଲଗା ପ୍ରକାରର । ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସର କଳାପକ୍ଷ ଯେମିତି ବାରି ହୋଇପଡ଼େ । ଜଣେ ସ୍ରଷ୍ଟାର ସୃଜନଶୀଳ ରସିକତା ତା ଶୈଳୀକୁ ଗୋଟେ ବିଭୋରମୟ ସ୍ପର୍ଶ ଓ ପ୍ରଭାବ ବିସ୍ତାରର ଶକ୍ତି ଆଣି ଦେଇଥାଏ ।

ଯାହା ପୁଣି ଜୀବନମୟ ନୁହେଁ ତାହା କାହାକୁ ପୁଲକିତ କରେ ନାହିଁ । ଯେ କୌଣସି ପ୍ରକାର ସାହିତ୍ୟ ସୃଷ୍ଟି ପାଇଁ ଏହି ଜୀବନମୟତାର ଗୁଣଟି ଏକାନ୍ତ ଜରୁରୀ । ମହାପାତ୍ର ନୀଳମଣି ସାହୁ କାଳକାଳ ଧରି ବଞ୍ଚିଥିବା ଏଇ ମଣିଷ ଜୀବନ ବିଷୟରେ ଯେମିତି କୌତୂହଳୀ ସେମିତି ଜିଜ୍ଞାସୁ ରସିକଟିଏ ।

ସାତତାଳ ପଙ୍କ ତଳେ ଜୀବନର ଆନନ୍ଦ ଟିକକ ଲୁଚି ହୋଇ ରହିଥିଲେ ବି ସେ ତା'କୁ ଖୋଜି ପାଇବା ପାଇଁ ପ୍ରୟାସ କରିଛନ୍ତି । ଗୋଟେ କୁତ୍ସିତ ଦିଶୁଥିବା ବୁଢ଼ୀ ଅସୁରାଣୀର ଜୀବନ ଫରୁଆ ଭିତରେ ଗୋଟେ ସୁନ୍ଦରୀ ଜେମାର ଜୀବନକୁ ସେ ଯେପରି ଖୋଜିଛନ୍ତି । ଆପାତତଃ ଭାଗ୍ୟହୀନ ମନେ ହେଉଥିବା ମଣିଷଟି ଯେ ଭାଗ୍ୟଧର ଏଇକଥା କହିବା ପାଇଁ ଗାଳ୍ପିକ ନୀଳମଣି ଯେପରି ବାରି ବ୍ୟଗ୍ର ଓ ପ୍ରଗଲ୍‌ଭ ହୋଇ ପଡ଼ିଛନ୍ତି ।

ମଣିଷର ଏଇ ଭାଗ୍ୟ ଆଉ ଆନନ୍ଦର କଥା କହିବା ପାଇଁ ଗାଳ୍ପିକ ଏତେ ଉତ୍ସାହୀ ହୋଇପଡ଼ିଛନ୍ତି ଯେ ସ୍ୱତଃ ତାଙ୍କ ଶୈଳୀ କଥାର ଗୋଟେ କ୍ଷିପ୍ର ସ୍ରୋତ ଭଳି ଲାଗେ ।

ତାଙ୍କ ଗଳ୍ପ ରଚନା ଭିତରେ ସେ ପଚାରିବାକୁ ଚାହିଁଛନ୍ତି- ମୋ ପରି ଜୀବନ ବଞ୍ଚିଥିବା ହେ ମୋର ସତୀର୍ଥ ପ୍ରିୟ ପାଠକ ମାନେ ! ମଣିଷର ମନ ଓ ହୃଦୟ କେଉଁଠି କ'ଣ ପାଇଲେ କୁରୁଳି ଉଠେ । ସେଇ ବିମଳ ପୁଲକ ଟିକକ ତ ଜୀବନର ଅସଲ ପ୍ରାପ୍ତି । କଉଡ଼ି ଗଣାରେ ରାତିଦିନ କଟାଇଲେ ସେଇ ଆନନ୍ଦାନୁଭୂତିର ଭାବ ମିଳିବ କେମିତି ?

ନୀଳମଣିଙ୍କ ଗଳ୍ପ ସବୁ ଟିକିଏ ବଡ଼ ଆଉ ବର୍ଣ୍ଣନାତ୍ମକ । ଏହି ବର୍ଣ୍ଣନାତ୍ମକତା ବରଂ ତାଙ୍କ ଜୀବନବୋଧର ପ୍ରତୀକ ହୋଇଛି । ତାଙ୍କ ଆନନ୍ଦବିଭୋର ରସିକତାକୁ ପ୍ରମାଣିତ କରିଛି ।

ନୀଳମଣିଙ୍କ ଗଳ୍ପର ଶୈଳୀ ତାଙ୍କ ରଚନାରେ ଆତ୍ମା ସହିତ ମିଶାମିଶି ହୋଇ ରହିଛି । ତାହା ସଂରଚନାଜନିତ ସଂଯୁକ୍ତ ଶିଳ୍ପାୟନର ବିଷୟ ନୁହେଁ । ନୀଳମଣିଙ୍କ ଗଳ୍ପର ଶୈଳୀ ପ୍ରସଙ୍ଗରେ ଗୋଟିଏ ବିଷୟକୁ ଏଠାରେ ଗୁରୁତ୍ୱ ଦିଆଯାଇ ପାରେ ଯେ, ଜଣେ ସମର୍ଥ ଶିଳ୍ପୀର ରଚନା ତା ପ୍ରବୋଧିତ ଆତ୍ମାର ମୂଳ ଉତ୍ସ ସହିତ ସମ୍ବନ୍ଧିତ । ରଚନା କରିବା ଏକ ପ୍ରବୋଧିତ ଅନ୍ତରର ପ୍ରକ୍ରିୟା । ଯୁକ୍ତି ତଥା ଆବଶ୍ୟକୀୟ ବିବରଣୀ ସବୁକୁ ସଜାଇ ରଖିବାର ଏକ ଶୃଙ୍ଖଳା କସରତ ମାତ୍ର ନୁହେଁ । ନୀଳମଣୀଙ୍କ ଗଳ୍ପଟିଏ ଜଣେ ପଢିଦେଲେ ସେ ପ୍ରକୃତରେ ଆବିଷ୍ଟ ହୋଇପଡ଼େ । ଗଳ୍ପଟି ଗୋଟେ କଥା ପ୍ରଧାନ କାହାଣୀ ଭଳି ତା'କୁ ମନେ ହୁଏନି । ବରଂ ମଣିଷ ଜୀବନର ଗୋଟେ ମାର୍ମିକ ଦୃଶ୍ୟପଟ୍ଟ ଭଳି ଲାଗେ ।

ନୀଳମଣୀଙ୍କ ଅଧିକାଂଶ ଗଳ୍ପରେ ଗୋଟେ ପ୍ରବହମାନ କଥକତା ଶୈଳୀ ପରିଦୃଷ୍ଟ । ତାଙ୍କ ଶିଳ୍ପୀ ଜୀବନ ସହିତ ତାହା ଏତେ ମାତ୍ରାରେ ମିଶି ଯାଇଛି ଯେ ସେ ପ୍ରକାର ବର୍ଣ୍ଣନା ପ୍ରଧାନ ତଥା ଭାବନିଷ୍ଠ ଶୈଳୀକୁ ସେ ଚେଷ୍ଟାକଲେବି, ସେଥିପ୍ରତି ଯଥେଷ୍ଟ ସତର୍କ ହେଲେ ବି ପରିହାର କରି ପାରିବେନି । ମଣିଷର ଜୀବନ ବଞ୍ଚିବା ତାଙ୍କୁ ମତୁଆଲା କରିଛି । ତାଙ୍କ ରଚନା ସବୁ ମାତିଯିବା, ତରଳିଯିବା, ବିଗଳିତ ହୋଇଯିବା, ଭାବ ସମୁଦ୍ରରେ ବୁଡ଼ିଯିବାର ଏକ କଥା ପ୍ରଧାନ ଅଭିବ୍ୟକ୍ତି ।

ଜଣେ ବୈଷ୍ଣବ ଭକ୍ତ ପରି ସେ ଭାବପ୍ରବଣ । ସତେ ଯେମିତି ଟିକିଏକୁ ତାଙ୍କ ଦି ଆଖିରୁ ଦିଧାର ତତଲା ଲୁହ ବହିଯିବ । ସତେଯେମିତି ସେ ଟିକିଏକୁ ଭାବ ବିହ୍ୱଳ ହୋଇ କ୍ରନ୍ଦନ କରିବେ । ତାଙ୍କ ଭାବନିଷ୍ଠ ବର୍ଣ୍ଣନାସବୁ ତାଙ୍କ ଆତ୍ମାର ପ୍ରେମିକତା କରୁଥିବା ତାଙ୍କ ଅଗଣିତ ପାଠକଙ୍କ ମନରେ ଉଲ୍ଲିଖିତ ଭ୍ରମ ସୃଷ୍ଟିକରେ । ତାଙ୍କ ଗଳ୍ପର ଭାବ ବଳୟରେ ଆଉ ଟିକିଏକୁ କେହି ସୁନାଗରୀ ନର୍ତ୍ତନ କରିବ କି ? କିଏ କାହାକୁ କେଉଁ ପରିବୋଧନୀୟ ବିରଳ ଲଗ୍ନରେ ଯାଦୁକରୀ ସ୍ପର୍ଶରେ କିଣି ନେବ କି ? ଏ ସଂସାରରେ ସନ୍ଦିଗ୍ଧଚିତ୍ତ ଅର୍ଜ୍ଜୁନ ମାନଙ୍କୁ ପରମେଶ୍ୱର ବିଶ୍ୱରୂପ ଦେଖାଇ ତଟସ୍ଥ କରିଦେବେକି ? କେଉଁଠି କେଉଁ ସୁନୟନା ଶୋଭାବତୀ ପ୍ରେମରେ କିଏ କାଳକାଳକୁ ଆଉ ଆବିଷ୍ଟ ହୋଇଯିବ କି ?

ନୀଳମଣୀଙ୍କ ଗଳ୍ପସବୁ ପଢ଼ିଲେ ପାଠକଙ୍କୁ ଏମିତି ଲାଗେ, ପାଠକଙ୍କ ଉପରେ ତାଙ୍କର ଭାରି ଭରଷା । ସେମାନଙ୍କ ସମୀପକୁ ଯାଇ ନୀଳମଣୀ ତାଙ୍କ ଗଳ୍ପର ପ୍ରକଟିତ ତାଙ୍କ ବିଶ୍ୱାସ, ତାଙ୍କ ପ୍ରେମ, ତାଙ୍କ ଆକାଂକ୍ଷା ସପକ୍ଷରେ ପାଠକଙ୍କ ସମର୍ଥନ ଲୋଡ଼ିଛନ୍ତି । ପ୍ରଭାବ ଓ ଆବେଦନ ସୃଷ୍ଟି ଦୃଷ୍ଟିରୁ ତାଙ୍କ ଗଳ୍ପ ସବୁ ପ୍ରଥମପୁରୁଷ ଓ ଦ୍ୱିତୀୟ ପୁରୁଷଙ୍କ ମଧ୍ୟରେ ଏକ ଏକ ସହଜ ସଂଳାପ ପରି ମନେହୁଏ ।

ସବୁକିଛି ଊର୍ଦ୍ଧ୍ୱରେ ଆତ୍ମନିଷ୍ଠତା ହିଁ ତାଙ୍କ ଗଳ୍ପ ରଚନାର ସବୁଠାରୁ ବଡ଼ଗୁଣ । ତାଙ୍କ ଗଳ୍ପର ଏହି ଆତ୍ମନିଷ୍ଠତାର ଗୁଣ ଓ ତଦ୍‌ଜନିତ ଅନୁଷଙ୍ଗ ବିଷୟରେ ସେ ବେଶ୍ ସଚେତନ । ତାଙ୍କ ଗଳ୍ପର ପ୍ରତିଟି ସିମ୍ବଲ, ଶିଳ୍ପାୟନ ସହିତ ତାଙ୍କ ରସିକତା ବିଷୟରେ ସେ ବି ବେଶ୍ ସଚେତନ ।

ସାଧାରଣ ପାଠକ ତାଙ୍କ ସୃଜନରସିକତାକୁ ସେହିପରି ଗ୍ରହଣ କରି ପାରିବେ ନାହିଁ ବୋଲି ସେ ମଧ୍ୟ ଜାଣିଥାନ୍ତି । ତାଙ୍କ ଗଳ୍ପସବୁ ତାଙ୍କ ଚତୁଃପାର୍ଶ୍ୱର କାହାଣୀ । ସେ ଆମକୁ ଜଣାଇଛନ୍ତି ଯେ ତାଙ୍କ ଗଳ୍ପ ସବୁକୁ ସେ ଆଦୌ ମନରୁ ଫାନ୍ଦିକି ଲେଖିନାହାନ୍ତି । ସେ ସବୁ ଅଧିକାଂଶରେ ସତ ଘଟଣା; ଯାହାକୁ ସେ ଶୈଶବ ସ୍ମୃତିରୁ ସାଉଁଟି ଆଣିଛନ୍ତି । ତାଙ୍କ ଗଳ୍ପର ଚରିତ୍ର ସବୁ ଅଧିକାଂଶରେ ଗୋଟେ ସାଂସ୍କୃତିକ ପ୍ରବାହ ଭିତରୁ ଆସିଛନ୍ତି । ନଗର ଜୀବନ ଅପେକ୍ଷା ଗ୍ରାମ୍ୟ ଜୀବନକୁ ହିଁ ନୀଳମଣୀ ତାଙ୍କ ଗଳ୍ପ ପାଇଁ ବେଶୀ ଆଧାର କରିଛନ୍ତି । ସହର ସତରେ ବହୁ ଭାଷମାନ ବିଷୟର ଗୋଟେ ନିହାତି ଅସଂଲଗ୍ନ ସମଷ୍ଟି ସେଠି କାହାର ଚଳଣୀ ନାମରେ ଗୋଟେ ଦୃଢ଼ମୂଳ ଐତିହ୍ୟ ନଥାଏ । ଗୋଟେ ଜାନପଦିକ ଉତ୍ସବମୟତା ବୋଲି ସେଠି କିଛି ନଥାଏ । ଆପଣାର ସଂସ୍କୃତିବୋଧ ଉପରେ ଆସ୍ଥା ନଥାଏ ।

ନୀଳମଣୀଙ୍କ ଉତ୍ସୁକତା ମଣିଷର ସଂସ୍କୃତି ସଂପନ୍ନତାକୁ ଚିହ୍ନଟ କରିବା ପାଇଁ ନାନା ପ୍ରଚେଷ୍ଟା କରିଛି । ତାଙ୍କ ଗପସବୁ ଅଧିକାଂଶରେ ଜାନପଦିକ ସେହି ଐତିହ୍ୟ, ସେହି ସଂସ୍କୃତିର ଏକ ଏକ ଭାବମୟ ଚିତ୍ର । ତାଙ୍କ ଭାବପ୍ରବଣତା ଅତୀତ ପ୍ରତି ଅଧିକ ସମ୍ମୋହିତ । ଭାରି ପ୍ରବୋଧିତ ହୋଇଯାଆନ୍ତି ଗାଁରେ ବିତାଇଥିବା ମଧୁର ଶୈଶବର ସ୍ମୃତିରେ । ତାଙ୍କର ଏହି ନଷ୍ଟାଲଜିକ୍ ମନ ବରଂ ତାଙ୍କ ସୃଷ୍ଟିଶୀଳତାର ମୂଳ ଉତ୍ସ ।

ଜଣେ ଶିଳ୍ପୀ ଯାହା ଲେଖନ୍ତୁ, ଯେପରି ଭାବରେ ଲେଖନ୍ତୁ ସେ ବୈଭିନ୍ନ୍ୟ ଊର୍ଦ୍ଧ୍ୱରେ ତାଙ୍କ ଭାବଚେତନାର ପରିପକ୍ୱତାହିଁ ସବୁଠାରୁ ବଡ଼କଥା । ସାରସ୍ୱତ ମାନ ନିର୍ଣ୍ଣୟର ନିୟାମକ । ସେ ଦୃଷ୍ଟିରୁ ନୀଳମଣୀଙ୍କୁ କୌଣସି ମତେ ଦ୍ୱିତୀୟ ଶ୍ରେଣୀର ପ୍ରତିଭା ବୋଲି କହୁଯାଇ ପାରିବନି । ଭାବସିଦ୍ଧି ଦୃଷ୍ଟିରୁ ତାଙ୍କ ଗଳ୍ପ ସବୁ ପାଠକକୁ ଯେଉଁ ଉନ୍ନତତର, ଅପେକ୍ଷାକୃତ ପ୍ରଶାନ୍ତିର ବଳୟ ଆଡ଼କୁ ନେଇଯାଏ ତାହା ସୃଜନଶୀଳତା ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ ନିଶ୍ଚୟ । ଗୋଟେ ଉଚ୍ଚତର ଆଧ୍ୟାତ୍ମିକତା ଆଡ଼େ ଗୋଟେ ପ୍ରଗାଢ଼ ଅନ୍ତରଙ୍ଗତା ଆଡ଼େ, ଗୋଟେ ନିଚ୍ଛିଦ୍ର ସନ୍ୟାସର ଆମନ୍ତ୍ରଣଆଡ଼େ ଅବା ଗୋଟେ ପୁଲକମୟ କାରୁଣ୍ୟ ଆଡ଼େ ନେଇଯିବାର ପରିଚ୍ଛନ୍ନ ତଥା ବଳଶାଳୀ ପ୍ରତିଶ୍ରୁତି ବହନ କରିଥିବା ନୀଳମଣିଙ୍କ ଗଳ୍ପସବୁ ପ୍ରଥମ ଶ୍ରେଣୀରେ ନହେବ କାହିଁକି ?

ଏମିତି ପ୍ରତିଶ୍ରୁତି ବହନ କରିଥିବା ଭାବଚେତନାକୁ ନୀଳମଣି କେତେ ସହଜ ଭାବରେ ଲେଖିଦେଇ ପାରନ୍ତି ତା'ର ଏକ ଦୃଷ୍ଟାନ୍ତ ତାଙ୍କ ଅଭିଶପ୍ତ ଗନ୍ଧର୍ବ ଗଳ୍ପରୁ ଦିଆଯାଇପାରେ ।

'ଅନେକ ଲୋକ ସ୍ତ୍ରୀ ଲୋକଟିଏ ବାହା ହୋଇ ଘର ସଂସାର କରନ୍ତି । ମାତ୍ର ସ୍ତ୍ରୀ ଲୋକର ନିଶା କେତେ ଜଣଙ୍କୁ ଜୀବନସାରା ଲାଗିଥାଏ । କିନ୍ତୁ ଏହା ଲାଗି ମୁଁ କାହାକୁ ଦୋଷ ଦେଉନାହିଁ । କାରଣ ଆଲୋକିତ କୋଉ ମାହେନ୍ଦ୍ର ମୁହୂର୍ତ୍ତରେ ଜଣେ ମନୋନୀତ ଧର୍ମଗୁରୁଙ୍କର ଦର୍ଶନ ନପାଇବା ଯାଏ, ଧର୍ମନିଶା କ'ଣ ତାହା ଜଣେ ଜାଣି ପାରିବ ନାହିଁ । ସେମିତି, କୋଉ ପ୍ରେମଘନ ମାହେନ୍ଦ୍ର ମୁହୂର୍ତ୍ତରେ ଜଣେ ମନୋହାରିଣୀ ମଧୁମୟୀ ନାରୀର ପ୍ରୀତିସ୍ନିଗ୍ଧ ସମର୍ପଣମୟ ଦୃଷ୍ଟି ସଙ୍ଗେ ଦୃଷ୍ଟି ବିନିମୟ ହୋଇ ନଥିଲେ ସ୍ତ୍ରୀ ଲୋକର ନିଶା କ'ଣ ତାହା ଜଣେ ଜାଣି ପାରିବ ନାହିଁ ।

ନୀଳମଣିଙ୍କ 'ଅଭିଶପ୍ତ ଗନ୍ଧର୍ବ' ଗଳ୍ପର ପରିଯୋଜନାଟିକୁ ଲକ୍ଷ୍ୟ କରାଯାଇ ପାରେ ଆଉ ତାହା ସହିତ ଜୀବନମୟତାର ଗୁଣଟିକୁ । ସବୁଠି ସବୁବେଳେ ଇତର ମାନେ ଗୋଟିଏ ସ୍ଥୂଳ ପାର୍ଥିବତାକୁ ନେଇ ବ୍ୟସ୍ତ ଥାନ୍ତି  ଆଉ କେତେକ ସବୁକଥାରେ ଗୋଟେ ଉଚ୍ଚତର ସୂକ୍ଷ୍ମତା ଓ ଏକାନ୍ତ ପରିବୋଧନୀୟ ସମ୍ବେଦନଶୀଳତାକୁ ଖୋଜନ୍ତି । ଏହାର ଗୋଟିଏ ସଂଘାତମୟ ତଥା ଦ୍ୱାନ୍ଦିକ ଚିତ୍ର ଦେବା ପାଇଁ ନୀଳମଣି ଅଧିକ ଆୟୋଜନ କରିଛନ୍ତି । ଜୀବନ ବଞ୍ଚୁଥିବା ଯେକୌଣସି ମନୁଷ୍ୟର କଳାପକ୍ଷକୁ ସେ ଏହାଦ୍ୱାରା ଅଧିକ ଗୁରୁତ୍ୱ ପୂର୍ଣ୍ଣ ବିଷୟ ବୋଲି ମନେକରିଛନ୍ତି । ମନୁଷ୍ୟର ମନ ଓ ଅନ୍ତର ଭାବରେ ବଢେ । ଶ୍ରଦ୍ଧାଶୀଳତା, ପ୍ରେମିକତା ନଥିଲେ ଜୀବନ କାହାକୁ ସେମିତି ସୁନ୍ଦର ଲାଗେନି ।

ମଣିଷ ଜୀବନ ସତରେ ବିଚିତ୍ର । କିଏ କେଉଁ ଭାବରେ ଜୀବନ ବଞ୍ଚୁଛି । ବାପର ଦୁଃଖ ଅଲଗା ତ ପୁଅର ଦୁଃଖ ଅଲଗା । ନିଜ ଗହୀରର ନିଜେ । ପୁଣି ଏ ଦୁଃଖପୂର୍ଣ୍ଣ ସଂସାରରେ ସଭିଏଁ ନିଜ ନିଜ ବାଟରେ ସୁଖ ଭୁଞ୍ଜୁଛନ୍ତି । ମଣିଷର  ସକଳ ସୁଖ ସୌଭାଗ୍ୟ ସହିତ ତା'ର ନିର୍ବୋଧ ଅସହାୟତାକୁ ଗାଳ୍ପିକ ନୀଳମଣି ବେଶ ଆନ୍ତରିକତାର ସହିତ ପର୍ଯ୍ୟବେକ୍ଷଣ କରିଛନ୍ତି ।

ସେ ସ୍ଥିତିବାଦୀ ଲେଖକଙ୍କପରି ମଣିଷର ଜୀବନ ବଞ୍ଚିବା ସମୀପକୁ ଆସିଛନ୍ତି । ଅତି ନିକଟରୁ ଏକାନ୍ତ ଜୀବନମୟ ମଣିଷର ମୂଳ ପାପ ସବୁକୁ ଦେଖିଛନ୍ତି । ତା'ର ଦୁର୍ଭାଗ୍ୟ ସବୁକୁ ବୁଝିବା ପାଇଁ ଚେଷ୍ଟା କରିଛନ୍ତି । ଘୃଣାରେ, ଅଶ୍ରଦ୍ଧାରେ ମଣିଷର କ୍ଳେଦାକ୍ତ ଜୀବନ ବଞ୍ଚିବା ଠାରୁ ସେ ଦୂରକୁ ଘୁଞ୍ଚିଯାଇ ନାହାନ୍ତି ।

ଗୋଟେ ଚେଖଭୀୟ ଜୀବନନିଷ୍ଠତା ନେଇ ନୀଳମଣି ନିଜ ଗଳ୍ପର ଆଦର୍ଶ ସଂପର୍କରେ 'ମୁଁ କିପରି ଗଳ୍ପ ଲେଖିଲି' ଶୀର୍ଷକରେ ଲେଖିଛନ୍ତି: 'ପ୍ରକୃତରେ ପଶୁ ଆମଠାରୁ ବେଶୀ ଅସହାୟ ନୁହେଁ । ତା'ର ଗାର୍ଜନ ଅଛନ୍ତି ପ୍ରକୃତି ଦେବୀ । ଆମେ ପ୍ରକୃତିର ତ୍ୟଜ୍ୟ ସନ୍ତାନ । ଆମର ମାଁ ବାପ କେହି ନାହିଁ । କିନ୍ତୁ ପଶୁ ଆମଠାରୁ ଅସହାୟ ନୁହଁ ସିନା କିନ୍ତୁ ଆମଠାରୁ ବେଶୀ ଅବୋଧ, ନିର୍ବୋଧ- ବେଶୀ ବୋକା ।

ପଶୁ ପ୍ରତି ଅନୁକମ୍ପା ଜାତ ହୁଏ । ମାତ୍ର ମନୁଷ୍ୟ ଲାଗି ଉଚ୍ଚକିତ ସ୍ୱରରେ କାନ୍ଦିବାକୁ ଇଚ୍ଛାହୁଏ । ଆହା ଆମେ ଏତେ କଥା ବୁଝିପାରୁଛେ । ଅଥଚ ଆମେ ଏତେ ଅସହାୟ ।

ଆମେ ଏତେ ଦୁଃଖୀ । ଏଇ ସବୁ କଥା ବୁଝିପାରିବାର ମଣିଷର ଦୁଃଖ-ଏଇ ଅସହାୟତା ବୋଧଇ ମଣିଷର ଦୁଃଖ । ପିଲାଦିନୁ ଏ ହିସାବରେ ମୁଁ ବଡ଼ ଦୁଃଖୀ । ବୁଝିପାରିବାର ଗୋଟିଏ ସକରୁଣ ବିଷାଦବୋଧ ମୋର ଚିତ୍ତକୁ ସର୍ବଦା ଘେରି ରହି ଆସିଛି ଆଉ ମତେ ମଣିଷ ସଂପର୍କରେ ଗଳ୍ପ ଲେଖିବାକୁ ପ୍ରବର୍ତ୍ତାଇ ଆସିଛି ।'

ମାନବୀୟ ପ୍ରେମ ଓ ସମ୍ବେଦନଶୀଳତା ନୀଳମଣିଙ୍କ ଗଳ୍ପର ମଜ୍ଜାଭାବ । ଇତର ମାନେ ଅନ୍ୟ ମଣିଷମାନଙ୍କୁ କାରଣ ଅକାରଣରେ ଘୃଣା କରନ୍ତି ଓ ସେମାନଙ୍କ ସହିତ ବୈରତା କରନ୍ତି । ନୀଳମଣୀ ତାଙ୍କ ସୃଜନଶୀଳ ଭାବ ଚେତନାରେ ଯେପରି ବୈଷ୍ଣବ ସେହିପର

ପରମାର୍ଥୀ । ବିହ୍ୱଳ ତନ୍ମୟତାର ସ୍ରଷ୍ଟାଟିଏ । ତାଙ୍କର ରଚନାଶୈଳୀକୁ ସବୁମତେ ଏ ତନ୍ମୟତା ଆବୋରି ବସିଛି । ଭାରି ନିମଜ୍ଜିତ ହୋଇ ପଡ଼ିଛନ୍ତି ସେ ସବୁଠି । କୀର୍ତ୍ତନୀୟା ମାନଙ୍କ ନିମଜ୍ଜମାନତା । କଣ୍ଠ ଥରୁଥିବ । ଭାବ ପ୍ରବୋଧିତ ହୋଇ କେମିତି ଠାଣିରେ ନର୍ତ୍ତନ କରୁଥିବ । ଆଖିରେ ଲୁହ ଜକେଇ ଆସୁଥିବ । ଅଧର କମ୍ପି ଉଠୁଥିବ । ଅସହାୟ ମଣିଷର କଥା ଲେଖିଲା ବେଳେ ତା'ର ଯାବତୀୟ ବିଷାଦକୁ ଚିତ୍ରଣ କଲାବେଳେ ନୀଳମଣି ଅବିକଳ ସେମିତି କମ୍ପିଛନ୍ତି । ସେ ପାଇଁ ତାଙ୍କ ଗଳ୍ପର ଭାଷା ବହୁସ୍ଥଳରେ ବିଗଳନର ଭାଷା ହୋଇଯାଇଛି । କଥିତ ଭଙ୍ଗୀକୁ ଛାଡ଼ି ନାହାନ୍ତି । ଲୋକଭାଷାକୁ ପରିହାର କରିନାହାନ୍ତି । ସାତପୁରୁଷର ଚଳଣୀକୁ ହୃଦୟର ସହିତ ଘେନା କରିଛନ୍ତି । ପୁରୁଣା ସ୍ମୃତି ସବୁ ତାଙ୍କ ଜୀବନକୁ ଯେମିତି ଭରି ଦେଇଛି । ସେ ତାଙ୍କ ମନ ଓ ଆତ୍ମାରେ ଯେପରି ପୁଲକିତ ହୋଇ ପଡ଼ୁଛନ୍ତି ।

ଗାଳ୍ପିକ ନୀଳମଣି ଯେତିକି ପାର୍ଥିବ ବାସ୍ତବତାକୁ ଲେଖିଛନ୍ତି ସେତିକି ଉନ୍ମୁଖତା ପ୍ରଦର୍ଶନ କରିଛନ୍ତି ଏକ ଶୁଦ୍ଧ ଜୀବନନିଷ୍ଠ ଅଥଚ ଊର୍ଦ୍ଧ୍ୱଗ ବାସ୍ତବତା ପ୍ରତି । ଏହା ସହିତ କିଛି ରହସ୍ୟ, କିଛି ଅଲୌକିକତା, କିଛି ସ୍ୱନିଷ୍ଠ ଭାବପ୍ରବଣତା ମିଶାମିଶି ଫେଣ୍ଟାଫେଣ୍ଟି ହୋଇ ରହିଛି । ବାସ୍ତବତା ବି ମଣିଷର ସୃଜନଶୀଳ ପ୍ରବଣତା ସମକ୍ଷରେ ପ୍ରକାରେ ପ୍ରକାରେ । ଜଣେ ଗ୍ରାମ୍ୟ ମଫସଲବାସୀ ବୃଦ୍ଧର ହରିନାମ କୀର୍ତ୍ତନ ଓ ଆନନ୍ଦାଶ୍ରୁ ବିସର୍ଜନ ଜନିତ ବିଷୟ ଗୋଟିଏ ପ୍ରକାର ବାସ୍ତବତା । ଜଣେ କାମୁକ ପୁରୋହିତ ଅଶି ବର୍ଷରେ କେଉଁ ଷୋଡ଼ଶୀର ପାଣିଗ୍ରହଣ କରିବା ହୁଏତ ଆଉ ପ୍ରକାରେ ବାସ୍ତବତା । ନୀଳମଣିଙ୍କ ବାସ୍ତବତା ତାଙ୍କ ସୃଜନଶୀଳ ରସିକତା ଦ୍ୱାରା ବେଶ ଘୋଡ଼ାଇ ହୋଇ ରହିଛି । ବିଭୋର ପଣିଆର ପ୍ରତିଟି ମୁଦ୍ରା ତାଙ୍କ ଗଳ୍ପ ପଞ୍ଜରକୁ ବେଶ ଉଷ୍ମ ଓ ଗତିଶୀଳ କରି ରଖିପାରିଛି ।

ତାଙ୍କ ଗଳ୍ପର ପାଠକଙ୍କ ସଂଖ୍ୟା ବହୁତ ବେଶୀ । ଏଇଥି ପାଇଁ ଯେ ସେ ମଣିଷର ଜୀବନ ବଞ୍ଚିବାର ବହୁସ୍ତରୀୟ ବାସ୍ତବତାକୁ ଲେଖିଛନ୍ତି । ତା'ର ଅସହାୟତା ତା'ର ଭାଗ୍ୟହୀନତା ସହିତ ତା'ର ଦିବ୍ୟଜୀବନବୋଧକୁ କଳନା କରିଛନ୍ତି । ନୀଚ଼ତା ସତ୍ତ୍ୱେ ମଣିଷ ଭିତରେ ଅତୁଳନୀୟ ଉତ୍ତୀର୍ଣ୍ଣ ଅନୁଭବକୁ ସେ ପ୍ରକଟନ କରିବା ପାଇଁ ନିଷ୍ଠା ପ୍ରଦର୍ଶନ କରିଛନ୍ତି ।

ନୀଳମଣିଙ୍କ ଗଳ୍ପର ମଣିଷ ମୋଟା ମୋଟି ଭଲ ମଣିଷ । ପୃଥିବୀର ବଞ୍ଚି ରହିବା ହିଁ ତା'ର ବିଡ଼ମ୍ୱନାର କାରଣ ହୁଏ । ରାଜପୁତ୍ରଟିଏ ଭାଗ୍ୟହୀନ ହେଲାପରି, ଗନ୍ଧର୍ବଟିଏ ଅଭିଶପ୍ତ ହେଲାପରି ମଣିଷ ଏ ପୃଥିବୀରେ ବଞ୍ଚେ ।

ମଣିଷ ଜୀବନର ନାନା ଅନ୍ଧାରୀ ଦିଗ ଥିବା ସତ୍ତ୍ୱେ ତା ଭିତରେ ଅକଳନ୍ତି ସାଧୁତା ଦେଖିବାହିଁ ନୀଳମଣିଙ୍କ ଆଦର୍ଶ ମଣିଷ ଅବସ୍ଥାରେ ପଡ଼ି ତା'ର ସ୍ୱଭାବ ହରାଇଥିଲେ ବି ନୀଳମଣି ତା ଆତ୍ମା ଅନ୍ତରର ଜୟଗାନ କରିବା ପାଇଁ ବିଶେଷ ଉନ୍ମୁଖତା ଦେଖାଇଛନ୍ତି ଯେପରି । ସାଧୁ ଓ ସଇତାନ ଏମିତି ଦୁଇ ପ୍ରକାର ଚ଼ରିତ୍ର ସୃଷ୍ଟି କରିବା ସେଇ ଦୁଇ ପ୍ରକାର ଶକ୍ତିର ସଂଘର୍ଷ ଓ ତା'ର ଏକ ସ୍ପଷ୍ଟ ପରିଣତି ଆଙ୍କିବାର ଶିଳ୍ପାୟନ ପ୍ରତି ନୀଳମଣିଙ୍କର ସେତେଟା ସମର୍ଥନ ନାହିଁ । ସବୁକଥାକୁ ଏମିତି ଅଯଥାରେ ଅସମର୍ଥ ପାଠକମାନଙ୍କୁ ଗଳ୍ପ ଶୁଣାଇ ଆମୋଦିତ କରିବା ପାଇଁ ଗଳ୍ପାୟିତ କରିବା ସପକ୍ଷରେ ସେ ନୁହନ୍ତି । ଏକାନ୍ତ ଭାବେ

ଗଳ୍ପ ଯୋଡ଼ିବା ଗୋଟେ ପ୍ରକାର କୃତ୍ରିମତା । ଅସ୍ତିତ୍ୱବାଦୀମାନେ ଗୋଟେ ସୁନ୍ଦର ଗଳ୍ପ ପାଇଁ ନାଟକୀୟ ପ୍ଲଟ ଓ ତା'ର ଗଳ୍ପାୟନକୁ ଭାରି ଅପସନ୍ଦ କରନ୍ତି । ବରଂ ଅନୁଭବକୁ ସଜାଇ ଗଳ୍ପପାଇଁ ଗୋଟେ ମାନବୀୟ ଆଦର୍ଶକୁ ଛିଡ଼ା କରାଇବା ଉତ୍ତମ ଗାଳ୍ପିକର ଲକ୍ଷଣ । ନୀଳମଣିଙ୍କ ଭିତର ଇଚ୍ଛା ହେଉଛି ମଣିଷ ଅଯଥାରେ ଭ୍ରମରେ ପଡ଼ି ଦୁଃଖ କଷ୍ଟ ନପାଉ । ହସି ଖେଳି ଗୋଟେ ସୁନ୍ଦର ଜୀବନ ବଞ୍ଚୁ ।

ଏଇ ଆତ୍ମିକ ବୈଶିଷ୍ଟ୍ୟପାଇଁ ତାଙ୍କ ଗଳ୍ପ ଅପେକ୍ଷାକୃତ ବର୍ଣ୍ଣନାତ୍ମକ । ସେ ତାଙ୍କ ପ୍ରିୟ ପାଠକମାନଙ୍କ ସହିତ ଗଳ୍ପ ଜରିଆରେ କଥୋପକଥନ କରିବାକୁ ଚାହିଁଛନ୍ତି । ତାଙ୍କ ଗଳ୍ପରୁ ସେପାଇଁ ଗୋଟେ ଶୁଦ୍ଧ ଓ ସ୍ୱାଭାବିକ କଥ୍ୟରୀତି ବାରି ହୋଇପଡ଼େ ।

ମାନବାତ୍ମା ପ୍ରତି ଯାହାର ଶ୍ରଦ୍ଧା ନାହିଁ କି ଦରଦ ନାହିଁ ସେ ପାଠକମାନଙ୍କ ସମୀପକୁ ଆସିଲା ଭଳି ମନେ ହୁଏନାହିଁ । ସେ ଦୃଷ୍ଟିରୁ ନୀଳମଣି ଭାରି ଗପୁଡ଼ି । ତାଙ୍କ ଗପର ଭାଷା ଶୈଳୀରୁ ମନେହୁଏ ପାଠକମାନଙ୍କ ସହିତ ଗଭୀର ତନ୍ମୟତାର ସହିତ ଆଳାପ ଆଲୋଚ଼ନା କରିବା ପାଇଁ ସତେ ଯେପରି ସେ ଭାରି ବ୍ୟଗ୍ର ।

ଓଡ଼ିଆ ଭାଷାର ଆତ୍ମୀୟତାକୁ ନୀଳମଣି ତାଙ୍କ ଗଳ୍ପରେ ପ୍ରକଟ କରି ପାରିଛନ୍ତି । ଉତ୍ତମ ରଚନା ପାଇଁ ଏ ପ୍ରକାର ଆତ୍ମୀୟତା ଏକାନ୍ତ ଜରୁରୀ । ନୀଳମଣିଙ୍କ ଗପ ବା ଲଳିତ ନିବନ୍ଧ ସବୁ ପଢ଼ିଲେ ପାଠକ ନୀଳମଣିଙ୍କ ଆତ୍ମୀୟତା ଓ ମାର୍ମିକତାକୁ ଅନୁଭବ କରେ ।

ଯେ ପୁଣି ପ୍ରବୋଧିତ ହୋଇ ପାରେନା ସେ ସୁଚାରୁରୂପେ କୌଣସି କଥାକୁ ସରସ କରି ବର୍ଣ୍ଣନା କରିପାରେନା । ସେ ପ୍ରଗଳଭ ହୋଇ ପାରେନା ପ୍ରଗଳଭ ହେବା କଦାପି ବାହୁଲ୍ୟ ନୁହେଁ । ସମାଲୋଚ଼କମାନେ ସେ ପାଇଁ ନୀଳମଣିଙ୍କ ରଚ଼ନାଶୈଳୀ ଓ ଭାଷା ଯୋଜନା ସଂପର୍କରେ ଉପର ଠାଉରିଆ ମନ୍ତବ୍ୟ ଦେଇଛନ୍ତି । ଚିତ୍ର ଚରିତ୍ରର ଭିଡ଼ ଠେଲି ଠେଲି ଯେ ଶିଳ୍ପୀର ଆତ୍ମା ନିକଟକୁ ଯାଇ ପାରେନା ସେ ମନ୍ଦିରର ଗର୍ଭଗୃହକୁ ଯାଇ ଦେବତାର ବିଗ୍ରହ ଦେଖି ପାରେନା ।

ଜଣେ ଭାବବାଦୀ ଶିଳ୍ପୀର ବିଳାସ ଓ ରସିକତାକୁ କେହି ପାଠକ ବା ସମାଲୋଚ଼କ ତେଣୁ ଭୁଲ ବୁଝିବା ଉଚିତ ନୁହେଁ । 'ହଳରେ ଫୁଲ ଗଛ କାହିଁକି ମଲୁ' ଶୀର୍ଷକ ଆତ୍ମଜୀବନୀମୂଳକ ଗଳ୍ପଟି ତାଙ୍କ ବର୍ଣ୍ଣନା ରସିକତାର ପରିଚ଼ୟ ଦିଏ । ଶୈଶବ ସ୍ମୃତିକୁ ଅବିସ୍ମରଣୀୟ କରି ରଖିବାର ପ୍ରବଣତା ତାଙ୍କ ଭାଷାଶୈଳୀରୁ ବାରି ହୋଇପଡ଼େ । 'ଅଭିଶପ୍ତ ଗନ୍ଧର୍ବ'ର ଅଧିକାଂଶ ଗଳ୍ପ ଏହିଭାବରେ ଉଷ୍ମ ଓ ଗତିଶୀଳ ।

ଜଣକର ଶୈଳୀ ପ୍ରକୃତରେ ଗୋଟେପଣେ ସେ ନିଜେ । ଜଣକର ଶୈଳୀ ତା ସାମଗ୍ରିକ ବ୍ୟକ୍ତିତ୍ୱର ରୂପ । ନୀଳମଣିଙ୍କର ଶୈଳୀ ହେଉଛି ତାଙ୍କ ପରି ଜଣେ ସ୍ୱାଭିମାନ ଏକାନ୍ତ ଓଡ଼ିଆ ପ୍ରାଣ, ମରମୀ, ଦରଦୀ ଓ ରସିକ ଜନର ଶାବ୍ଦିକ ପ୍ରତିମାଟିଏ ଯେପରି ।

ନୀଳମଣିଙ୍କ ସ୍ୱାଭିମାନର ଫର୍ଦ୍ଦଟିଏକୁ ଏଠାରେ ଉଲ୍ଲେଖ କରାଯାଇପାରେ । ସେ ଏକ ସାକ୍ଷାତକାରରେ କହିଛନ୍ତି 'ପ୍ରତ୍ୟେକ ସତ ସାହିତ୍ୟିକ ପ୍ରଥମେ ତା ନିଜ ପ୍ରତି ସତ୍

ରହୁ । ପୃଥିବୀ ପ୍ରତି ମଧ୍ୟ ସତ୍ ରହୁ, ସାହିତ୍ୟ ସୃଷ୍ଟି ନିଜର ଯଶ, ଅର୍ଥ ଇତ୍ୟାଦି ବ୍ୟକ୍ତିଗତ ଲାଭଜନକ ମନୋବୃତ୍ତିର ପରିପୂର୍ତ୍ତି ପାଇଁ ବିନିଯୁକ୍ତ ନହେଉ । ମୋର ବିଶ୍ୱାସ ପ୍ରତି ସତ ସାହିତ୍ୟିକର ସ୍ୱପ୍ନ ହେଉଛି ସେ ବଞ୍ଚିଥିବା ପୃଥିବୀଟି ତା ସମୟ ଆପଣା ଅଧିକ ସୁନ୍ଦର ହେଉ । ମହାନ୍ ହେଉ । ଆମର ପୂର୍ବ ସୂରୀମାନେ ଆମ ଭାଷା ସାହିତ୍ୟକୁ ରକ୍ଷା କରିଛନ୍ତି ଓ ସମୃଦ୍ଧ କରିଛନ୍ତି । ସେମାନେ ଏ ଦେଶ ଜାତିକୁ ଭଲ ପାଇଛନ୍ତି । ଆମ ସାହିତ୍ୟିକଙ୍କ ଭିତରେ ସେପରି ଭଲ ପାଇବା ଆସିଲେ, ହତାଶ ହେବାର କିଛି ନାହିଁ ।

ଗୋଟେ ଉଚ୍ଚମାନର ଧାର୍ମିକତା, ଗୋଟେ ଉତ୍ତୀର୍ଣ୍ଣ ଅନୁଭବର ଆଧ୍ୟାତ୍ମିକ ସ୍ୱର୍ଶ, ତ୍ରୁଟିରହିତ ମାନବୀୟ ସମ୍ବେଗ ଓ ଛଳ ଛଳ ଭାବ ନୀଳମଣିଙ୍କ ଶିଳ୍ପୀ ଆତ୍ମାକୁ ପ୍ରକୃତରେ ଜର୍ଜ୍ଜରିତ କରି ରଖିଛି ।

ସ୍ୱଭାବ ରସିକତା କାରଣରୁ ସେ ତାଙ୍କ ଗଳ୍ପରେ ରମ୍ୟ ରଚନାର ଶୈଳୀକୁ ମିଶାଇଛନ୍ତି । ଓଡ଼ିଶାରେ ଓଡ଼ିଆ ଗଳ୍ପ ଧାରାରେ ଏହା ଏକ ଆନ୍ଦୋଳନର ବିଷୟ ହୋଇଛି । ଭୁବନେଶ୍ୱର ବେହେରା, ଚନ୍ଦ୍ର ଶେଖର ରଥ, ବସନ୍ତ କୁମାର ଶତପଥୀ, କେତେକାଂଶରେ ଚ଼ଉଧୁରୀ ହେମକାନ୍ତ ମିଶ୍ର ଏହି ରମ୍ୟରଚ଼ନାର ବର୍ଣ୍ଣନା ଶୈଳୀକୁ ଆଣି ଓଡ଼ିଆ ଗଳ୍ପ ଧାରାରେ ମିଶାଇଛନ୍ତି । ଗଳ୍ପ ଏହା ଦ୍ୱାରା ଅଧିକ ସୁଖପାଠ୍ୟ ଓ ଭାବନିଷ୍ଠ ହୋଇଛି । ଗଳ୍ପ ପ୍ରଧାନତା ବରଂ ଊଣାହୋଇ ଯାଇଛି । ମାତ୍ର ଅନୁଭବ ଓ ବିରଳ ମୁହୂର୍ତ୍ତର ପ୍ରବୋଧନା ଗଳ୍ପ କାରିତାକୁ ବେଶୀ ଭାବରେ ଆବୋରି ବସିଛି । ଗଳ୍ପଟିଏ କେବଳ ଗଳ୍ପ ସୃଷ୍ଟିର ଲକ୍ଷ୍ୟ ନୁହେଁ । ଗଳ୍ପ ଏକ ମାଧ୍ୟମ । ଗଳ୍ପ ଜରିଆରେ ପାଠକର ପରିବୋଧନୀୟ ଅଥଚ଼ ପରିଚ଼ିତ ଅନୁଭୂତିକୁ ଆର୍ଦ୍ର କରିଦିଆଯାଏ । ପାଠକର ରସବୋଧ ସୃଷ୍ଟିହିଁ ଭଲ ଗଳ୍ପର ଲକ୍ଷ୍ୟ ।

ନୀଳମଣିଙ୍କ ଗଳ୍ପର ଭାବପକ୍ଷ ବେଶ ଉଜ୍ଜ୍ୱଳ । ସୁନ୍ଦର ଓ କଳାଗତ ପ୍ରାଣର ବହୁ ଉପଲବ୍ଧି ତାଙ୍କ ଗଳ୍ପରେ ତେଣୁ ବହୁଭାବରେ ବର୍ଣ୍ଣିତ ହୋଇଛି । ଭାବର ମହିମା ତାଙ୍କ ଗଳ୍ପ ମାନଙ୍କରୁ ବାରିହୋଇ ପଡୁଛି । ଜୀବନ ଦୃଷ୍ଟି ସହିତ ପରମାର୍ଥ କାମନା ନୀଳମଣିଙ୍କ ଗଳ୍ପରେ ବେଶ ମିଶାମିଶି ହୋଇ ରହୁଛି ।

ନୀଳମଣିଙ୍କ ଗଳ୍ପ ଓ ରମ୍ୟରଚ଼ନା ସବୁର ଅନୁଶୀଳନ କଲେ ତାଙ୍କ ଶୈଳୀ ଓ ଶିଳ୍ପାୟନର ବୈଶିଷ୍ଟ୍ୟ ଜଣାପଡ଼ିବ । କିଛିଟା ଦ୍ୱନ୍ଦ୍ୱ ଓ ଘଟଣା ବିନ୍ୟାସ ସର୍ବସ୍ୱ ଗଳ୍ପ ତିଆରି କରିବା ନୁହେଁ ବରଂ ଗଳ୍ପ ଜରିଆରେ ଗୋଟେ ସୁନ୍ଦର ସରସ ତଥା ନୀତିନିଷ୍ଠ ଜୀବନଯାପନ ପାଇଁ ପାଠକକୁ ପ୍ରବୋଧିତ କରିବା ତାଙ୍କ ଗଳ୍ପର ଅନ୍ୟ ଏକ ଆଦର୍ଶ ।

ନୀଳମଣିଙ୍କ ଗଳ୍ପର ଶୈଳୀ ଓ ଶିଳ୍ପାୟନ କ୍ରମଶଃ ବିକଶିତ ହୋଇଛି ମହନୀୟ ମାନବୀୟ ସମ୍ବେଗକୁ ଏକାନ୍ତ ସ୍ୱନିଷ୍ଠ ଶୈଳୀ ଓ ପ୍ରାଣପୂର୍ଣ୍ଣ ଭାଷାରେ ବ୍ୟକ୍ତ କରିବା ପାଇଁ । ନୀଳମଣିଙ୍କ ଗଳ୍ପର ଶୈଳୀ ଓ ଶିଳ୍ପାୟନର ଚ଼ମତ୍କାରିତାକୁ ବହୁଭାବରେ ତେଣୁ ପ୍ରଶଂସା କରାଯାଇ ପାରେ ।



# ସ୍ମୃତି ଓ ସମ୍ପର୍କର କବି

ଯେକୌଣସି ଲେଖକର ଶୈଶବ ପ୍ରୀତି ସମସ୍ତଙ୍କୁ ଭଲ ଲାଗେ । ତାହା ସମସ୍ତଙ୍କ ପରିଚିତ ଅନୁଭୂତିକୁ ଆର୍ଦ୍ର କରିଦିଏ । ସୀତାକାନ୍ତଙ୍କ କବିତ୍ୱର ଶୈଶବ ପ୍ରୀତି ତାଙ୍କ କାବ୍ୟ ଚେତନାର ଏକ ବଡ଼ ଅଧ୍ୟାୟ ।

ଶୁଦ୍ଧ କବିତାର ମୂଳ ଗୁଣ ହେଲା ତା'ର ଅନାଳଙ୍କାରିକତା । ସେହିପରି ଶୁଦ୍ଧ କବିତ୍ୱର ଲକ୍ଷଣ ହେଲା ବକ୍ର ଆଟୋପହୀନତା । ତାଙ୍କ କବିତାଗ୍ରନ୍ଥ ସୃଷ୍ଟି ପର୍ଯ୍ୟାୟରେ ସୀତାକାନ୍ତଙ୍କ ଅନ୍ୟତମ କବିତାଗ୍ରନ୍ଥ 'ପ୍ରଦକ୍ଷିଣ' ହୁଏତ ସେହି ଅନାଳଙ୍କାରିକତା ତଥା ଆଟୋପହୀନତାର ସର୍ବୋତ୍ତମ ଉଚ୍ଚାରଣ ।

କବିତା କେତେ ଅଧିକ ମାତ୍ରାରେ ପାଠକର ଶୁଦ୍ଧ ଜୀବନମୟ ପ୍ରବଣତାକୁ ସ୍ପର୍ଶ କରିପାରେ, କବିତା ପୁଣି କେତେ ଅଧିକ ନିଷ୍କପଟ ଭାବେ କବିଚିତ୍ତର ନିବିଡ଼ ଆତ୍ମୀୟତାକୁ ପ୍ରକଟନ କରିପାରେ ତା'ର ଏକାନ୍ତ ସଫଳ ନିଦର୍ଶନ ହେଉଛି ହୁଏତ ସୀତାକାନ୍ତଙ୍କ ପ୍ରଦକ୍ଷିଣ କବିତା ଗ୍ରନ୍ଥର ପ୍ରତିଟି କବିତା ।

ବିଶ୍ୱାସନୀୟତା ଅପେକ୍ଷା ଆତ୍ମୀୟତାର ବୋଳ ଯେକୌଣସି କାଳର କବିତାକୁ ଅଧିକ ଭାବ ପ୍ରବୋଧକ କରିଥାଏ ।

ଯେଉଁ କବିତା ପାଠକର ପରିଚିତ ଅନୁଭୂତିକୁ ଉଖାରି ଦିଏ ପାଠକତ ସେଇଟି ସବୁମତେ ଆପଣାକୁ ଆବିଷ୍କାର କରେ । କବିତା ମନସ୍କ ମୁଗ୍‌ଧ ପାଠକଟିଏ ତ ସବୁବେଳେ କବିତାରୁ ସେହି ସ୍ପର୍ଶ, ସେହି ସଂଯୋଗ ଖୋଜିଥାଏ ।

ସୀତାକାନ୍ତଙ୍କ 'ପ୍ରଦକ୍ଷିଣ'ର କବିତାସବୁ କେତେ ସ୍ମୃତିସ୍ନିଗ୍‌ଧ, କେତେ ଅଧିକ ଜୀବନ ମୟ ବୁଝାଇ କହିବା ହୁଏତ ନିଷ୍ପ୍ରୟୋଜନ । ତାଙ୍କ କବିତାର ଶବ୍ଦ ସବୁତ ସବୁବେଳେ ପାଠକକୁ ଆବିଷ୍ଟ କରିଦିଏ । ଆପଣା ଆତ୍ମୀୟତାର ରସନିବିଡ଼ ସ୍ମୃତି ସବୁକୁ ସେ ସାମ୍ନା କରେ ।

କ୍ଷେତ ଉଜୁଡ଼ି ଗଲାପରେ ମଧୁର ଶୈଶବର ଦିନ ସବୁ କେମିତି ସହି ଯାଇଛି ତା'କୁ ଝୁରିହେବାର ନିଷ୍କପଟ ପ୍ରବଣତା ସୀତାକାନ୍ତଙ୍କ କବିତ୍ୱକୁ ସତରେ ମହିମା ମଣ୍ଡିତ କରି ଦେଇଛି । ତାଙ୍କ କବିତ୍ୱର ତାଙ୍କ ବିଗଳିତ ଆତ୍ମାର ସାଧୁତା ସ୍ପଷ୍ଟତଃ ବାରି ହୋଇ ପଡୁଛି । ଭାରି ସ୍ୱର୍ଗୀୟ, ଭାରି ତେଜଦୀପ୍ତ ସେ ସାଧୁତା ।

ଆପଣା ଅଭ୍ୟନ୍ତରର କରୁଣା, ଶୂନ୍ୟତା, ସ୍ମୃତି, ସଂପ୍ରୀତି, ମାୟା ମମତା, ବିଗଳନ ପ୍ରତିଟି ଅନୁଭବ ପ୍ରତି ସତ୍ୟଶୀଳତା କବିତ୍ୱର ମଞ୍ଜ ଅଂଶ । ସେଥିପ୍ରତି କବି ଅନ୍ତରର ସତ୍ୟଶୀଳତା ନଥିଲେ କବିତା କେମିତି ଗୋଟେ ଶୂନ୍ୟପରବତ ପରି ଏବଷ୍ଟ୍ରାକ୍ଟ ଓ ଇନ୍ଦ୍ରିୟ ନିରପେକ୍ଷ ହୋଇଯାଆନ୍ତା ।

ସଂପର୍କ ଆଧାରିତ ସୀତାକାନ୍ତଙ୍କ ପ୍ରଦକ୍ଷିଣ କବିତା ସଙ୍କଳନର କବିତା ସବୁ ଅନାୟାସରେ ପାଠକର ମନମୋହିଦେବ,ତା'ର କଞ୍ଚା ଇନ୍ଦ୍ରିୟ ପରାୟଣତା ଯୋଗୁଁ । ରୂପ ରସ ଗନ୍ଧର ଏ ବ୍ରହ୍ମାଣ୍ଡକୁ ଜଣେ ଇନ୍ଦ୍ରିୟ ଦେଇ ଅନୁଭବ କରେ; ସେଇ ଇନ୍ଦ୍ରିୟ ଦେଇହିଁ ଭୋଗ କରେ ।

ଚିତ୍ରୋତ୍ପଳା ନଈ କୂଳର ଗାଁ ଓ ତା'ର ପରମ ଆତ୍ମୀୟତାକୁ କବି ସୀତାକାନ୍ତ ସତରେ ଗୋଟେ ସୁନ୍ଦର ଚିତ୍ରାଙ୍କନ କରି ଦେଇଛନ୍ତି । ସେଠି ଆକାଶ ଅଛି, ଅସୁମାରୀ ଧାନବିଲ, ମେଞ୍ଚା ମେଞ୍ଚା ଅନ୍ଧାର, ତୋଫା ଜହ୍ନରାତି, ବେଗମତୀ ନଈ, ଦାଣ୍ଡ ଅଗଣାର ଶୂନ୍ୟତା, ଭାଗବତ ଗାଦି, ସଞ୍ଜଦୀପ, ମେଘମହଲ ପୂଷମାସ, କେତକୀ ଫୁଲର ମହକ ସବୁଅଛି । ଗାଁକୁ, ବୋଉକୁ ଆଉ ଆପଣାର ସବୁପ୍ରିୟ ମଣିଷ ମାନଙ୍କୁ ଭଲ ପାଇବାର ହୃଦୟଭର୍ତ୍ତି ପ୍ରେମିକତା ସୀତାକାନ୍ତଙ୍କ କବିତାସବୁକୁ ଯେମିତି ଜୀବନମୟ କରିଦେଇଛି ସେମିତି ଅତି ନିବିଡ଼ ଭାବରେ ଚିରକାଳର ମାଟି, ଆକାଶ, ପାଣି ପବନ, ନିରବଧିକାଳ, ଈଶ୍ୱରୀୟ ଶୂନ୍ୟତା, ଛଳ ଛଳ କପଟ ଶୂନ୍ୟ ଆତ୍ମୀୟତା, ସ୍ୱର୍ଗ ଭୂମି ପରି, ସପ୍ତସିନ୍ଧୁ ବହିଗଲାପରି ବାପା ବୋଉଙ୍କ ହୃଦୟକୁ ସ୍ପର୍ଶ କରିବାର ଅପୂର୍ବ ଶିହରଣ ସେହି କବିତାକୁ ପୁଣି ଆପଣା ହୃଦୟର କରୁଣ ଅଥଚ୍ ମଧୁର ଗୀତ ପଦେପଦେ କରି ଦେଇଛି ।

ହୃଦୟର ଉଚ୍ଚାରଣ ଏତେ ଅଧିକ ଆବେଗିକ ହୋଇପାରେ ଆପଣାର ପ୍ରିୟ ଜନ୍ମମାଟିକୁ ଆଦୌ ଭୁଲି ନପାରିବାର ପ୍ରତିବଦ୍ଧତା ଏତେ ଗାଢ଼ ଓ ଗଭୀର ହୋଇ ପାରେ ସୀତାକାନ୍ତଙ୍କ 'ପ୍ରଦକ୍ଷିଣ' କବିତା ଗ୍ରନ୍ଥର କବିତା ସବୁ ତା'ର ସର୍ବୋତ୍ତମ ନିଦର୍ଶନ ।

ଜଣକ ଉପରେ ଆକାଶ ନିରନ୍ତର ସାମିଆନା ହେଲା ପରି ସୀତାକାନ୍ତଙ୍କର ସମଗ୍ର କାଳର କବି ହୃଦୟକୁ ସତେ ଯେପରି ତାଙ୍କ ଚିତ୍ରୋତ୍ପଳା ନଈଖଣ୍ଡି ଗାଁ ଆଉ ସେ ଗାଁରେ କଟିଥିବା ମଧୁର ଶୈଶବର ଦିନସବୁ ନିତିଦିନ ଆଚ୍ଛନ୍ନ କରି ରଖିଛି ।

ସେଇସବୁ ଦିନମାନଙ୍କୁ ବିକଳ ହୋଇ ଝୁରିହେବାର ବ୍ୟଥାର ଆବେଗ ସୀତାକାନ୍ତଙ୍କ କବିତାର ଭାଷାକୁ ଗୋଟେ ମରମିପଣିଆର ନରମ ଲାବଣ୍ୟ ଆଣି ଦେଇଛି । ପକ୍ଷୀର ଡ଼େଣା ପରି, ଫୁଲର ପାଖୁଡ଼ା ପରି, ଆଷାଢ଼ର ଭିଜାମାଟିପରି, ସଞ୍ଜ ନଈକୂଳର ପବନ ପରି, ଶୀତ ରାତିର ନୀରବତି ପହର ପରି ସେ ଭାଷାର ନରମ ପଣିଆ । ଦ୍ୱିଅର୍ଥ ବୋଧକ ମେଟାଫରିକ ଅବା ମାର୍ଜିତ ଆଳଙ୍କାରିକ ଭାଷା ପ୍ରୟୋଗର ସାମାନ୍ୟତମ ଅହଙ୍କାର ସୀତାକାନ୍ତଙ୍କ କବିଚିତ୍ତକୁ ସ୍ପର୍ଶ କରିନି ଏଠାରେ ।

ନିଜ ସାତ ପୁରୁଷର ଗାଁ ମାଟି, ଜେଜେ ବାପା, ବୋଉ, ଚିତ୍ରୋତ୍ପଳା ନଈ, ଆପଣାର ଅପାଶୋରା ଶୈଶବର ସ୍ମୃତି କବିର ମନକୁ କେତେ ଛଳଛଳ ଓ ବିନମ୍ର କରି ଦେଇଛନ୍ତି ତା'ର ସାର୍ଥକ ପ୍ରମାଣ ହେଉଛି ଚିଠିର ଭାଷାପରି ତାଙ୍କ ମନ ଓ ହୃଦୟର ଭାଷା । ଭାଷା ପ୍ରୟୋଗରେ ସେ ବୁଦ୍ଧିବାଦୀ ଆଭିଜାତ୍ୟ ସଂପର୍କରେ ସଚେତନ ହୋଇ ନାହାନ୍ତି । ବୁଦ୍ଧି, ପଦପଦବୀ ଆଳଙ୍କାରିକ କବିତ୍ୱ ପାଣ୍ଡିତ୍ୟର ଆଟୋପ ଟିକିଏବି 'ପ୍ରଦକ୍ଷିଣ'ର କବିତା ଗୁଡ଼ିକରେ ନାହିଁ ।

ଗାଁର ଲ୍ୟାଣ୍ଡସ୍କେପ ତାଙ୍କୁ ସବୁବେଳେ ଯେପରି ଆବିଷ୍ଟ କରିଥାଏ, ତାଙ୍କର କବିମନ ପୁଣି ତାଙ୍କ ମଧୁର ଶୈଶବକୁ ଯେପରି ଝୁରି ହେଉଥାଏ ତା'ରି ପ୍ରଭାବର ଗୋଟେ ନିରୁତା ଆବେଗର ଭାଷା ଲେଖିବା ସୀତାକାନ୍ତଙ୍କ କବିତ୍ୱର ଏକ ବିଶିଷ୍ଟ ଦିଗ । ଯେଉଁ ଭାଷାର ମନଛୁଆଁ ଆହୁରି ବିକଶିତ ରୂପ ଜଣେ ତାଙ୍କ 'ପ୍ରଦକ୍ଷିଣ'ରେ ହିଁ ଦେଖିଥାଏ ।

ଏକାନ୍ତ ଅପରିବର୍ତ୍ତନୀୟ ଫୁଲ ଫଳ ଭର୍ତ୍ତି ଗାଁର ବାଡ଼ି ବଗିଚ଼ା, ତୋଟାମାଳ, ଦୂରସ୍ଥ ନଈ, ମାଛରଙ୍କା ଚଢ଼େଇ, ଦୂର ଆକାଶର ଥମଥମ ଜହ୍ନ କେମିତି କବି ମନକୁ ମୋହି ଦେଇଛି ଆଉ ଭାବ ପ୍ରବଣ କବିଚିତ୍ତ କେଉଁ ପ୍ରାର୍ଥନାର ପ୍ରସ୍ତାବନା କରିଛି ଏଠି ତାହା ପଢ଼ାଯାଇ ପାରେ ।

ସବୁମୁନୁ ମାନେ ବଢ଼ିଗଲେ ବି ସେମାନଙ୍କର ଆତ୍ମକଷି ଆଉ ସରଗଶଶୀ ନିରନ୍ତର ଖୋଜିବାର ବିଷୟ ହେଉ ।

'ସବୁକାଳେ ସେଇ ତୋର ଦାବି ହୋଇରହୁ
ଧୂଳି ଧୂସର ହାଟ ବଜାରରେ ଆଉ କିଛି ମାଗିବୁନି
ହାତ ପତେଇବୁନି କି ଦାବି ବାଢ଼ିବୁନି
ହାତୀଘୋଡ଼ା ମାଗିବୁନି, ପେଁକାଳି ବଜେଇଦେ ବୋଲିକହିବୁନି
ଦାବି କରିବୁ ସବୁ ଦରମଲା ଗଛ ଫୁଲ ଫଳରେ ଭାଙ୍ଗି ପଡ଼ନ୍ତୁ
ମାଗିବୁ ସାମ୍ନାର ଥଟା ପଟାଳି ରଙ୍ଗ ବେରଙ୍ଗ ଖେଳନା ନୁହଁ
ଦୂର ଆକାଶର ଥମ ଥମ ଜହ୍ନ
ଗଛଟିଏ ଉପାଡ଼ି ଦବୁନି, ଛନ ଛନିଆ ଡ଼ାଳଖଣ୍ଡିଏ,
ଭାଙ୍ଗିବୁନି, ଭାଙ୍ଗିବାକୁ ଦବୁନି । ଗଛଯେ କାନ୍ଦିବ ।

'ପ୍ରଦକ୍ଷିଣ' ହେଉଛି କବିଙ୍କ ଭାଷାରେ 'ସଂପର୍କ ଆଧାରିତ କବିତା । ପ୍ରଦକ୍ଷିଣ ବାସ୍ତବତାର, ସ୍ମୃତିର, ସ୍ୱପ୍ନର । ଏ ପୃଥିବୀ ସ୍ନେହରେ ବନ୍ଧା ହୋଇଥିବା, ଗୁନ୍ଥା ହୋଇଥିବା ସ୍ମୃତିର ସମାହାର ଓ ସ୍ମୃତିର ପ୍ରଦକ୍ଷିଣ ଆମର ଅବଶ୍ୟମ୍ଭାବୀ ଭାଗ୍ୟ ।

ଦିନେ ନା ଦିନେ ଆମକୁ ଜାଣିଥିବା, ଚ଼ିହ୍ନିଥିବା, ବୁଝିଥିବା, ମନେ ପୂକାଉଥିବା କେଇଜଣ ପ୍ରଦକ୍ଷିଣ କରୁଥିବେ ଆମରି ସ୍ମୃତିକୁ ଯେତେବେଳେ ଆମେ ଆଉ ନଥିବା । ପ୍ରଦକ୍ଷିଣ କରିବେ, ମନେ ପକେଇବେ ଯେତେଦିନ ସେମାନେ ଅଛନ୍ତି । ତା'ଛଡ଼ା ଥିବାକାଳରେ, ଜୀବନରେ ବଞ୍ଚିଥିବା ବେଳେ ହିଁ ଏଇ ପ୍ରଦକ୍ଷିଣ କର୍ମଚାଲି ଥାଏ-କେତେବେଳେ ଜାଣତରେ, କେବେ ବା ଅଜାଣତରେ । ସ୍ୱପ୍ନରେ ସ୍ମୃତି ପ୍ରଦକ୍ଷିଣ କରେ ବାସ୍ତବତାକୁ । ବାସ୍ତବତା ଗଭୀର ସ୍ୱପ୍ନ ହୋଇ ସ୍ମୃତିକୁ ପ୍ରଦକ୍ଷିଣ କରେ । ସ୍ୱପ୍ନ, ସ୍ମୃତି ଓ ବାସ୍ତବତା ସତେ ଯେମିତି ଶୂନ୍ୟଚ଼ାରୀ ଭ୍ରାମ୍ୟମାଣ ସେଇ ସ୍ଥିତି ସମୂହ ଯେଉଁମାନେ ଅନନ୍ତ ଆକାଶର ଅନନ୍ତ ସମୟର ଅନ୍ଧାରରେ ମିଳେଇଯିବା ପୂର୍ବରୁ ନିଜକୁ ହିଁ ସ୍ମରଣ କରୁଥାନ୍ତି ।

ପ୍ରଦକ୍ଷିଣ ଆମ ସଭିଙ୍କର କଥା, ସଭିଙ୍କର ମାନସିକତାର ରୂପାୟନ ବୋଲି ମୁଁ ବିଚ଼ାରେ ।'

କବିହୃଦୟର ବଡ଼ ସଂପତ୍ତି ହେଉଛି ପ୍ରକୃତରେ ତା'ର ଶୈଶବ ସ୍ମୃତି । ସବୁଠି ସବୁକାଳର କବି ତା'ର ମଧୁର ଶୈଶବ ସ୍ମୃତି ପ୍ରତି ଅତ୍ୟନ୍ତ ସମ୍ମୋହିତ । କବି ମାତ୍ରେହିଁ ଅତୀତ ପ୍ରତି ଅଧିକ ଆଗ୍ରହୀ ।

ଶୈଶବ ପୁଣି ହେଉଛି ପ୍ରତ୍ୟେକ ମଣିଷ ପାଇଁ ସ୍ମୃତି ବିଜଡ଼ିତ ଏକ ବର୍ଣ୍ଣାଢ଼୍ୟ ବଳୟ; ମୃତ୍ୟୁ ପର୍ଯ୍ୟନ୍ତ ଯେଉଁଥିରେ ତା'ର ମନ ହୁଏତ ବିଚ଼ରଣ କରେ । ଗଦ୍ୟପଦ୍ୟ ନିର୍ବିଶେଷରେ ଆମ ସାହିତ୍ୟ ରଚ଼ନାର ବହୁପୃଷ୍ଠା ଏହି ସ୍ମୃତି ଚ଼ୟନରେ ହିଁ ମୁଖର ହୋଇଛି । ଯଶ ପୌରୁଷ ପରି ଜୀବନର କୌଣସି ଉପାର୍ଜ୍ଜନ ଶୈଶବ ମାଧୁର୍ଯ୍ୟର ବିକଳ୍ପ ନୁହେଁ । ଯେତେ ନିଃସ୍ୱ ନିଃସମ୍ବଳ ହେଲେ ବି ଶୈଶବ ପରି ଜୀବନର ଆଉ କୌଣସି ସମୟ ଏତେ ମଧୁର ନୁହେଁ; ଏଇଥିପାଇଁ ଯେ ଚରମ ଉତ୍ସୁକତା ଭିତରେ ସ୍ୱଚ୍ଛନ୍ଦ ଭାବରେ ବିଚ଼ରଣ କରି ପାରୁଥିବା ପୁଣି ଗୋଟେ ନିହାତି ଆପଣାର ଲାଗୁଥିବା ମାଟି ଉପରେ ଜଣେ ବସ୍ତୁତଃ ତା ଶୈଶବରେ-କେବଳ ତା ପ୍ରେମାସ୍ପଦ ମାନଙ୍କ ସ୍ନେହଶୀଳତା ଓ ନିସର୍ଗ ଭଲ ପାଇବା ଭିତରେ ପରିବେଷ୍ଟିତ ହୋଇ ଥାଏ । ଏହି ମଧୁମୟ ଶୈଶବ ପ୍ରତି ସମ୍ମୋହିତ ହେବାର ସାର୍ବଜନୀନ ମୁଦ୍ରାଟି ସୀତାକାନ୍ତଙ୍କ କବିତାରେ ଅତ୍ୟନ୍ତ ଉଜ୍ଜ୍ୱଳ ।

ଆପଣା ଆତ୍ମୀୟଙ୍କ ସ୍ନେହ ମମତାକୁ ସ୍ମରଣକୁ ଆଣିବାର ଶ୍ରଦ୍ଧାନ୍ୱିତ ପ୍ରବଣତା ମନୁଷ୍ୟର ଏକ ଉତ୍ତମ ସଂସ୍କାର । ବ୍ରହ୍ମାଣ୍ଡକୁ ଭୋଗ କରିବା ପାଇଁ ଅନ୍ତରର ଯେଉଁ ବିନୟ ଦର୍କାର ତା'ର ମୂଳ ପ୍ରୋତ୍ସାହନ ଆତ୍ମୀୟଙ୍କ ପ୍ରତି କୃତଜ୍ଞତା ଜ୍ଞାପନ ଜନିତ ସଂସ୍କାରରୁ ହିଁ ମିଳିଥାଏ । ଶ୍ରଦ୍ଧା, ବିନୟ ଓ କୃତଜ୍ଞତା ଆଦି ମନୁଷ୍ୟ ହୃଦୟର ଉପଲବ୍ଧି ଓ ତଦ୍‌ଜନିତ ସଂସ୍କାର କବିର ସୃଜନଶୀଳ କାବ୍ୟ ପ୍ରକ୍ରିୟାକୁ ବହୁଭାବରେ ତ୍ୱରାନ୍ୱିତ କରେ ।

ସୀତାକାନ୍ତଙ୍କ 'ଅଷ୍ଟପଦୀ', 'ଶବ୍ଦର ଆକାଶ', 'ସମୁଦ୍ର' ଅବା 'ଚିତ୍ରନଦୀ' ଆମ ଅତି ପରିଚ଼ିତ, ଅତି ଆପଣାର— ହେଉ ପଛେ ତେଲଚ଼ିକିଟା, ମରହଟ୍ଟୀ ଗାଁ ପରିବେଶର ବିସ୍ତୀର୍ଣ୍ଣ ଐତିହ୍ୟକୁ ହିଁ ଗୋଟେ ସଞ୍ଚରଣଶୀଳ ଆବେଗିକ ଭାଷାରେ ଚିତ୍ରାୟିତ କରିଛନ୍ତି । ତା'ର ଆହୁରି ରସ ନିବିଡ଼ ମାର୍ମିକ ଅଭିବ୍ୟକ୍ତକୁ ଜଣେ ସୀତାକାନ୍ତଙ୍କ 'ପ୍ରଦକ୍ଷିଣ'ରେ ହିଁ ଦେଖି ପାରିବ ।

ସର୍ପିଳନଦୀ, ବଣ ପାହାଡ଼, ପଦ୍ମପୋଖରୀ, ଅସରନ୍ତି ଧାନବିଲ, ଧାଡ଼ିଧାଡ଼ି ମଣିଷର ଘର, ସେମାନଙ୍କ ସ୍ୱପ୍ନିଳ ଆଖି, ସେମାନଙ୍କ ବଞ୍ଚିରହିବାର ଦୁଃଖ ଓ ବଞ୍ଚନା, ତଥାପି ଜୀବନମୟ ଅବଶିଷ୍ଟ ଆୟୁଷ, ଚ଼ାଟଶାଳୀ, ମନ୍ଦିର, ଭାଗବତ ଘର, ଗାଁ ଗୋହିରୀ ପରିବେଷ୍ଟିତ ଭିଟାମାଟିର ନକ୍‌ସା ସୀତାକାନ୍ତଙ୍କ କବିତାରେ ଏତେ ବାସ୍ତବ ଓ ଜୀବନ୍ତ ଯେ ତାହା ନିଖୁଣ ଚିତ୍ର ପରି ଲାଗେ । ସେ ଚିତ୍ର ସବୁକୁ ସ୍ମୃତିରେ ଧରି ରଖିବାର ବ୍ୟାକୁଳତା ତାଙ୍କର ପ୍ରତିଟି ଉଚ୍ଚାରଣକୁ ଜୀବନମୟ କରି ଦେଇଛି ।

ଆପଣାର ମଣିଷମାନଙ୍କୁ କୋଳେଇ ନେବାରେ, ଗଲା ହଜିଲା ମଣିଷମାନଙ୍କୁ ଲୁହଭର୍ତ୍ତି ଆଖିରେ ଝୁରିହେବାର ଶୋକାତୁରତା ଭିତରେ କବି ଉଚ୍ଚସ୍ତରର ସାତ୍ତ୍ୱିକ ଅନୁଭବ ଆଡ଼କୁ ଉନ୍ମୁଖ ହୋଇଛନ୍ତି; ଯାହାର ଏକମାତ୍ର ଲକ୍ଷ୍ୟ ହେଉଛି କେବଳ ଝୁରିହେବା; ଆପଣା ଅନ୍ତରରେ ମୃତ ଜୀବିତ ପ୍ରିୟଜନ ମାନଙ୍କୁ ଅଭିଷିକ୍ତ କରିବା; ସେମାନଙ୍କୁ ହୃଦୟଭରା ଆତ୍ମୀୟତାରେ ଚର୍ଚ୍ଚିତ କରିବା, ଆପଣା ଶୈଶବ ସହିତ ସେମାନଙ୍କ ସଶ୍ରଦ୍ଧ ସାନ୍ନିଧ୍ୟକୁ ବାରବାର ସ୍ମରଣକୁ ଆଣିବା; ଅନ୍ୟକିଛି ଯଶ ପୌରୁଷ ପ୍ରାପ୍ତିର ଅଭିଳାଷ ପାଇଁ ନୁହେଁ ।

ତାଙ୍କ ପ୍ରିୟପାଠକମାନେ ଅଥର ହିରୋଭାବେ ସ୍ୱୟଂ କବିଙ୍କୁ ହିଁ 'ପ୍ରଦକ୍ଷିଣ'ରେ ପ୍ରତ୍ୟକ୍ଷ କରନ୍ତି; କବିଙ୍କର ଛାୟା ପୁରୁଷଙ୍କୁ ନୁହେଁ । କବିର ମନ ଓ ଇନ୍ଦ୍ରିୟ ଶକ୍ତିଶାଳୀ ହେଲେ କବିତା ବି ସ୍ୱତଃ ଶକ୍ତିଶାଳୀ ହୁଏ । ଗଭୀର ପ୍ରାଣ ପିପାସା ସବୁକୁ କବି ଅତ୍ୟନ୍ତ ଜୀବନମୟ କରି ଲେଖେ । ଜୀବନକୁ ସେ କବି ବିଚାରାୟିତ କରେନି କି ନୀତି ବୟାନ ବି କରେନି । ପୁଣି ଯେଉଁ କବିର କବିତାରେ ଜୀବନର ଉଚ୍ଚାରଣ ଯେତେ ଶୁଦ୍ଧ ତା'ର କବିତା ସେତିକି ମୃତ୍ତିକାମୟ । ସେ ଦୃଷ୍ଟିରୁ ସୀତାକାନ୍ତ ଖାଲି ସ୍ମୃତି ଓ ସମ୍ପର୍କର କବି ନୁହନ୍ତି ତା ସହିତ ମାଟି ଓ ଆକାଶର, ପ୍ରୀତି ଓ ପରମ୍ପରାର । ଯେଉଁଠି ମାଟି ସେଇଠି ଆପଣାର ପ୍ରିୟ ମଣିଷମାନେ ଆଉ ତା' ସହିତ କାହିଁ କେତେ କାଳର ପରମ୍ପରା ।

ମାଟିକୁ ଛୁଇଁଲେ ଜଣେ ତା ମାଆକୁ ଛୁଇଁବ । ମାଆକୁ ଛୁଇଁଲେ ହୁଏତ ମୃତ୍ତିକାମୟ ଚଉକତିକୁ ସେ ଜାଣି ପାରିବ । କବିଙ୍କ ଆତ୍ମକଥନରେ—

'ଆକାଶ ତଳକୁ ବଡ଼ ଆମ ପାଦତଳର ମାଟି, ତା'ର ଅୟୁତ ବାସ୍ନା;
ଖରାରେ ଶୁଖି ଧକୋଉଥିବା ମାଟିର ହା-ହୁତାଶ
ପହିଲା ଅସରାପରେ ମାଟିର ସ୍ୱର୍ଗୀୟ ବାସ୍ନା
ଗଛଲତା ପତ୍ରଫୁଲରେ ମାଟିର ସୁଗନ୍ଧ;
ଶିଖେଇଥିଲୁ ସକାଳୁଉଠି ଆଗ ମାଟିକୁ ଛୁଇଁ
ମୁଣ୍ଡରେ ଲଗେଇବାକୁ ।'

ଅତି ନିବିଡ଼ଭାବେ ଜଣେ ମାଟିକୁ ଆପଣାର ମାଆ ବୋଲି ଭାବିବା ଯେଉଁ ଉତ୍ତୀର୍ଣ୍ଣ ତଦ୍‌ଗତ ଅନୁଭବର ଅପେକ୍ଷା ରଖେ ସେହି ଉପଲବ୍‌ଧିକୁ କେତେ ସରଳ ଭାଷା ଓ କେତେ ଅଳ୍ପ ଅନଳଙ୍କୃତ ଶବ୍ଦରେ ସୀତାକାନ୍ତ ପରିବେଷଣ କରିଛନ୍ତି । ଯଥା:- 'ତାରି ତଳେ ମାଟି ହିଁ ସବୁଦିନର/ମୋ'ରି ପରି ସିଏ ବି ଗୋଟେ ବୋଉ/ମୁଁ ନ ଥିଲା ବେଳେ ସିଏ ନବ ମୋ ସ୍ଥାନ/ତା'କୁ ଛୁଇଁଲେ । ମତେ ହିଁ ଛୁଇଁବୁ ।

ମାଟିକୁ ମାଆର ପ୍ରତିରୂପ ବୋଲି କହିବା ପାଇଁ ଯେଉଁ ପ୍ରତ୍ୟୟ ଲୋଡ଼ା, ଆତ୍ମାର ଯେଉଁ ସ୍ପର୍ଶ, ହୃଦୟର ଯେଉଁ ସଂଯୋଗ ଲୋଡ଼ା ସେ ସବୁକୁ ଜଣେ ହୁଏତ ଅତି ନିବିଡ଼ ଭାବେ ସୀତାକାନ୍ତଙ୍କ କବିତାରୁ ବାରି ପାରିବ । ମାଟିକୁ ମାଆ କହିବାରେ ଗୋଟେ ସାଧାରଣ

ପୁରୁଣା ଲଜିକ କେବଳ ମୂର୍ତ୍ତ ହେଉନି, ଗୋଟେ ଆବେଗିକ ଉଚ୍ଛାସ ବରଂ ତାସହିତ ପ୍ରକଟିତ ହେଉଛି ।

ଆବେଗ ବଳରେ ଜଣେ ଅପରକୁ, ଆପଣାର ଚ଼ତୁଃପାର୍ଶ୍ୱକୁ, ଏ ବିଶାଳ ମହୀମଣ୍ଡଳକୁ ଓ ନିରତ ମୋହି ଦେଉଥିବା ତା' ଜଳସ୍ଥଳ, ଦୂର ନଭକୁ କେବଳ ଅନୁଭବ କରିପାରେ; ବୁଦ୍ଧି ବା ତର୍କ ବଳରେ ନୁହେଁ । ଏହି ଆବେଗମୟତା ଆଉ ଜୀବନ ନିଷ୍ଠତାର ଗୁଣ ଦୁଇଟି ସୀତାକାନ୍ତଙ୍କ କବିତାରେ ଅଧିକ ସ୍ଥିତିବାଦୀୟ ।

ସୀତାକାନ୍ତଙ୍କ ସମକାଳୀନ ଓ ସତୀର୍ଥ ବହୁ ଆଧୁନିକ ଓଡ଼ିଆ କବି ଜୀବନ ସମ୍ପର୍କରେ ବହୁ 'ଲଜିକ' ଶୁଣାଇ ପାଠକକୁ ଅତିଷ୍ଠ କରି ପକାଇଛନ୍ତି । ଅଥଚ ଅନ୍ତସ୍ଥଳର ପ୍ରଗାଢ଼ ଅନୁଭବକୁ ଶୁଦ୍ଧ କବିତ୍ୱପୂର୍ଣ୍ଣଭାବେ ସଞ୍ଚାଳିତ କରିବାର ପାରଦର୍ଶିତାକୁ ସେମାନେ କ୍ୱଚ଼ିତ ପ୍ରଦର୍ଶନ କରିଛନ୍ତି । ତଦ୍‌ଗତ ନ ହେଲେ ଜଣେ କେବେ, ଅହଂ ବିବର୍ଜିତ ହୋଇପାରିବନି । ରହସ୍ୟମୟତା, ଅତ୍ୟଧିକ ପ୍ରତୀକଧର୍ମୀ, ବୁଦ୍ଧିବାଦୀ କ୍ଲିଷ୍ଟ କାବ୍ୟାନୁଷଙ୍ଗ ସବୁ ସେହି ଅକାବ୍ୟିକ, ନିରର୍ଥକ ଅହଂର ଏକ ଏକ ପ୍ରତିରୂପ ।

'ପ୍ରଦକ୍ଷିଣ'ରେ କବି ସୀତାକାନ୍ତ ମୋହନ ବଂଶୀ ପରି ଚିତ୍ତଉଲ୍ଲାସକ ଶୁଦ୍ଧ କବିତାପାଇଁ ସେ ସବୁକୁ ଅଦରକାରୀ ବୋଲି ମନେକରି ବରଂ ବିସର୍ଜି ଦେଇଛନ୍ତି । କାବ୍ୟ ଆବେଗ ଯେତେ ନିଷ୍କପଟ ଓ ଭାବାତ୍ମକ ହେବ ତା'ର କାବ୍ୟପ୍ରଭାବ ସେତେ ବଢ଼ିବ ।

ସାର୍ବଜନୀନତା, ସାର୍ବକାଳୀନତାର ଧାରଣା ସତ୍ତ୍ୱେ ଜଣେ ପ୍ରଚ଼ଣ୍ଡ ଭାବେ କିନ୍ତୁ ଆଞ୍ଚଳିକତାକୁ ଅନୁଭବ କରେ । ତା ନିଜ ଗାଁର ଗୋହିରୀ, ତା ଘର ପଛ ଦି'ଟା ନୀଳକଇଁ ଫୁଟିଥିବା ଟୁବି ଗଡ଼ିଆ ପରି ଏ ସଂସାରରେ ଆଉ ଗୋଟେ ଗୋହିରୀ, ଆଉ ଗୋଟେ ଗଡ଼ିଆ ସମାନ ହୋଇ ପାରିବନି । ଅବସ୍ଥିତି, ଆକୃତି ଅବା ଟୁବି ଗଡ଼ିଆ, ନିଜ ଅଗଣାର ଛୋଟ ମେଞ୍ଚୁଆଡି ବାଡ଼ ସହିତ ପ୍ରାଣର ଯେଉଁ ଆବେଗିକ ସଂଯୋଗ ରହିଛି ତା'ର ବିକଳ୍ପ ଆଉ କାହିଁ ?

ଆମେ ସଭିଏଁ ଆମ ଗାଁକୁ ଯେପରି ଅନୁଭବ କରିପାରୁ ଆମ ବୋଉକୁ ଆମ ଅଗଣାକୁ, ଆମ ବାଡ଼ିବେଢ଼ ଆମ ଚଉଘେରତିକୁ, ସେପରି ଅନୁଭବ ଆମେ ବିଶାଳ ବିଶ୍ୱକୁ ଦେଖି, ଅନନ୍ତ ସମୁଦ୍ରକୁ ଦେଖି ଅସୀମ ଦିଗ୍‌ବଳୟକୁ ଦେଖିପାରୁନା । ମୃତ୍ତିକାଶ୍ରୟୀ ସ୍ଥାନୀୟତାର ଗୋଟେ ନିବିଡ଼ ପ୍ରଭାବ ଆମ ମାନସିକତାର ଗୋଟେ ଅନିବାର୍ଯ୍ୟ ସଂଯୋଗ ହୋଇ ରହିଛି । ସେହି ଉପଲବ୍ଧିଟିକୁ ସୀତାକାନ୍ତ ଆହୁରି କଞ୍ଚା ଆହୁରି ତୀବ୍ର କରି ପ୍ରକଟନ କରିଛନ୍ତି ତାଙ୍କ କବିତାମାନଙ୍କରେ ।

ପହଲି ଅସରା ବରଷାରେ ନାଚ଼ିବାର ଉଲ୍ଲାସ, ପଖାଳ ଆମ୍ବ ଚ଼ଟଣି, ବଡ଼ିଚୂରା, କଳମ ଶାଗର ନିଦାଘ, ପୂର୍ବେଇ ପବନ, ଚ଼ିତ୍ରୋପ୍ତଳାର ଗଣ୍ଡପାଣିରେ ପାଣିକୁଆ ପରି ବୁଡିବାର ଆନନ୍ଦକୁ ସାତୀକାନ୍ତଙ୍କ କବିଚିତ୍ତ ପାଶୋରି ପାରିନି । ଅତି ଛଳ୍‌ଛଳ କବିତ୍ୱପୂର୍ଣ୍ଣ ଅଥଚ଼ କେତେ ଆତ୍ମ ସ୍ୱୀକାରୋକ୍ତିମୂଳକ ତାଙ୍କ ଶୈଳୀ । ସ୍ଥିତିବାଦୀ ଲେଖକର ଅଥର ହିରୋ

ନିଜର ଆବେଗ, ନିଜର ଅନୁଭବ ପ୍ରତି ଯେପରି ସତ୍ୟଶୀଳ ଅବିକଳ ସେହି ସତ୍ୟଶୀଳତାକୁ ଜଣେ ସୀତାକାନ୍ତଙ୍କ ଶୈଶବ ପ୍ରତି ପ୍ରଗାଢ଼ ସମ୍ମୋହନର ଭାଷାରୁ ବାରିପାରେ । ଏହା ତାଙ୍କ ସୃଜନଶୀଳ ଆତ୍ମାର ଏକାନ୍ତ ବ୍ୟକ୍ତିଗତ ଉଚ୍ଛ୍ୱାସ । ଇଲିୟଟୀୟ ଇତିହାସ ପ୍ରୀତି ଓ ଐତିହ୍ୟବୋଧରେ ଯେଉଁ ସମଷ୍ଟିଗତ ବା ସାମାଜିକ କୃଷ୍ଟିର ଆଭାସ ଥାଏ ସୀତାକାନ୍ତଙ୍କ ଅତୀତ ପ୍ରୀତି ତା'ଠାରୁ ଅଲଗା ପ୍ରକାରର ନିଶ୍ଚୟ । ଅତୀତକୁ ସବୁମତେ ଅତି ଆପଣାର କରିବା ଅର୍ଥ ଶୁଦ୍ଧ କବିତାର ସନ୍ନିକଟ ହେବା ।

ଦୂର ନିର୍ଜ୍ଜନ ପୃଥିବୀ ନୁହେଁ, କଳ୍ପ ଲୋକର ଅମରାବତୀ ନୁହେଁ, ଅଯୋଧ୍ୟା ନୁହେଁ, କି କେଉଁ ଅଗନାଅଗନି ବନସ୍ତ ନୁହେଁ ନିକଟ ପ୍ରତିବେଶ ପ୍ରତି ତାଙ୍କର ଉତ୍ସୁକତା ବେଶୀ । ତାଙ୍କ ଛୋଟ ନଈଖଣ୍ଡି ଗାଁ ଭୂଗୋଳ ବହିରେ ପଛେ ଚିହ୍ନିତ ନହେଉ, ତାଙ୍କ କଳ୍ପନା ବୃତ୍ତର କେନ୍ଦ୍ର, ତାଙ୍କ ଭାବ ଭାବନାର ମୂଳପୀଠ ହେଉଛି ପ୍ରକୃତରେ ତାଙ୍କ ଗାଁ । ତାଙ୍କ କବିତ୍ୱର ମୂଳ ବୀଜ ସେ ଗାଁରୁ ହିଁ ଆରମ୍ଭ । ଗଣେଷ ତାଙ୍କ ପିତାଙ୍କ ଚତୁର୍ଦ୍ଦିଗରେ ଥରେ ବୁଲିଆସି ଯେପରି ବିଶ୍ୱବ୍ରହ୍ମାଣ୍ଡକୁ ପ୍ରଦକ୍ଷିଣ କରିଦେଲେ ବୋଲି ଦାବିକଲେ ସୀତାକାନ୍ତଙ୍କ ପ୍ରଦକ୍ଷିଣ ସେହିପରି ନିଜର ବାପା ବୋଉ ଓ ଶୈଶବର ସ୍ମୃତି ତୀର୍ଥ ତାଙ୍କ ନଈଖଣ୍ଡି ଗାଁ ଚାରିକଡ଼େ ମାତ୍ର ଆସିବାରେ ସମାପିତ ହୋଇଛି ।

ତାଙ୍କର ପ୍ରଦକ୍ଷିଣ କବି ସୀତାକାନ୍ତଙ୍କ ଆବେଗିକ ପୁନର୍ନିର୍ମାଣର ଶେଷହୀନତାକୁ ସାବ୍ୟସ୍ତ କରେ । ପରିଚିତ ଓ ଆତ୍ମୀୟ ଲାଗୁଥିବା ଭୂମିକୁ ବାରମ୍ବାର ଲେଖିଲେ ବି ଲେଖା ସରିବାର ନାହିଁ । ଅନ୍ୟ ପୃଥିବୀକୁ ଲେଖିବା ପାଇଁ ସ୍ୱପ୍ନ ଓ ପ୍ରସ୍ତାବନା ଥିଲେ ବି ଆପଣାର ଆତ୍ମୀୟ ଲାଗୁଥିବା ଚତୁର୍ଦ୍ଦିଗଟି ଆପେ ଲେଖି ହୋଇ ଯାଉଛି । ଗୋଟେ ସ୍ନେହ ମମତାର, ଶ୍ରଦ୍ଧା ଓ ଶୁଭକାମନାର ଗୋଟେ ସଦନକୁ ଝୁରିହେବା ଜନିତ ଆପଣା ପ୍ରାଣର ବିଗଳନ ହୁଏତ ଅନ୍ୟ ସବୁକୁ ବଳି ଯାଉଛି ।

ସୀତାକାନ୍ତଙ୍କ ଅସୀମ ଆତ୍ମ ବିଗଳନର ଭାଷାକୁ ଏଠାରେ ପଢ଼ାଯାଉ; ଯାହାକୁ ସେ ନିଜେ ଲେଖିଛନ୍ତି । ସେ ଲେଖିଛନ୍ତି— 'ଉଣେଇଶ ତେପନ ମସିହା । ମେଟ୍ରିକ୍ ପାଶ କରି ବାପା ବୋଉ, ସାଙ୍ଗସାଥୀ, ଚିତ୍ରୋତ୍ପଳା ନଦୀ ଆଉ ଆକାଶ ପରି ଲମ୍ବିଥିବା ଗହୀରି ବିଲଠୁଁ ବିଦାହୋଇ ମୁଁ ଆସି ବସିଥାଏଁ ରେଭେନ୍ସା କଲେଜ ପୂର୍ବ ଛାତ୍ରାବାସର ଗୋଟିଏ କୋଠରୀର ଝର୍କା କତିରେ । ସେଇ ପଟେ ଜହ୍ନ ଉଏଁ । ମୋତେ ଦୁଶେ ଚିତ୍ରୋତ୍ପଳାର କୁନିକୁନି ଲହରୀରେ ରୂପାରଙ୍ଗ ଖେଳିବୁଲେ । ସେଇ ବର୍ଷ ଶେଷ ଆଡ଼କୁ ବୋଧହୁଏ 'ଅଶ୍ରୁ ଓ ସ୍ୱାଦ' କବିତାଟିର ଜନ୍ମ ଯାହାପରେ 'ଦୀପ୍ତି ଓ ଦ୍ୟୁତି' ସଙ୍କଳନର ପ୍ରଥମ କବିତା ଭାବେ ସ୍ଥାନିତ ହୁଏ ।

କୁଆଡ଼େ ଯାଏ ଗଲି ଅନୋଉଁ ଅନୋଉଁ ଚାଳିଶ ବର୍ଷ । କୁଆଡ଼େ ହଜନ୍ତି ମଣିଷ, ଚିହ୍ନାଜଣା ସାଙ୍ଗସାଥୀ । ଖାଲି ଅନୁଭୂତି, ସ୍ମୃତି ଯାହା ବଞ୍ଚିରହେ । ସବୁବେଳେ ଲାଗେ ସେଇ ପୁରୁଣା ଦିନମାନେ ଗୋଟି ଗୋଟି ହୋଇ ପ୍ରାୟ ଅସରନ୍ତି ଏକ ଶୋଭାଯାତ୍ରାରେ ଫେରି ଆସନ୍ତେ କି ଆଉଥରେ । କିଏ ଜାଣେ ସେଇ ଅନୁଭବ, ଆବେଗର ସେଇ ରଙ୍ଗ, ପୁଣିଥରେ ଉକୁଟି ଉଠନ୍ତା ? କି ନାହିଁ, ସ୍ମୃତି ପେଡ଼ିରୁ ପୁଣି ଥରେ ମୂଳସ୍ୱର ଶୁଭିଯାଆନ୍ତା କି ନାହିଁ !!

ସୀତାକାନ୍ତଙ୍କ ଉପଲବ୍ଧ ହେଲା, ସବୁ ମୁହୂର୍ତ୍ତ ଯେମିତି ଜୀବନରେ ହଜିଯିବା ପାଇଁ ବସିଛି । ଆଉ ଥରେ ଉଇଁ ଆସିବନି । ଅତୀତରେ କବର ନେଇଯିବ । ସେଇ ଅପାଶୋରା ମୁହୂର୍ତ୍ତଗୁଡ଼ିକର ସ୍ମୃତି ହିଁ ତ କବିତା; ଯାହା ମନ ଓ ଅନ୍ତରକୁ ଉଦବେଳିତ କରିଦିଏ ବୋଲି ମନେକରି ବରଂ ବିସର୍ଜି ଦେଇଛନ୍ତି ।

ଯେଉଁ ସୁମଧୁର ଶୈଶବ ଆଉ ଫେରି ଆସିବନି, ଜେଜେ ବାପା ଜେଜେ ମାଆ କୁଇରୁ ଆଉ ଉଠିଆସି ଶୁଭ ମନାସିବେନି, ପୁଣିଥରେ ଯୁବାକାଳ ଆଉ ଫେରି ଆସିବନି, ସୀତାକାନ୍ତ କହିଛନ୍ତି— 'ଯିଏ ଥରେ ଗଲେ ଆଉ ଠିକ୍ ସେଇ ବାଗରେ ଉଇଁ ଆସିବନି । ଆଉଥରେ ଏହି ହୃଦୟ ଆକାଶରେ, ଯାହାପାଇଁ ସାରା ଜୀବନ ହିଁ ଝୁରିବାକୁ ହେବ- ତା'ରି ପାଇଁ ଅକୁହା ଲୋଭ, ଅବୁଝା ଦୁଃଖ ହିଁ କବିତା ।

ନାନା ଗଛ ଡାଳରେ ଫୁଟି ହସୁଥିବା ଫୁଲ, କି ଗୀତ ଗାଉଥିବା ଚଢ଼େଇ ନୁହେଁ— ଝଡ଼ି ପଡୁଥିବା, ମଉଳି ଆସୁଥିବା ଫୁଲ, ମନମାରି ବସିଥିବା ଚଢ଼େଇ ମୋ ପାଇଁ କବିତା ।

ଘଷରା ଜୀବନ ତଳେ ଖଲଖଲ ହେଉଥିବା ଦରମଲା ସ୍ୱପ୍ନଟିଏ, ଘାସତଳେ ଅଣନିଃଶ୍ୱାସୀ ହୋଇଯାଉଥିବା ଶେଷ ଦୂବଘାସଟିଏ, ଠିରିକା ମାଟିତଳୁ ମତେ ପଦାକୁ ବାଟ ଛାଡ଼ିଦେ, ଛାଡ଼ିଦେ ବୋଲି କାତର ପ୍ରାର୍ଥନା କରୁଥିବା ମଞ୍ଜିଟିଏ, ସାମଗାନ ପରି କଳାକାଠ ଡାଳଟିରେ ନିଜକୁ, ମେଲିଦେବା ମୁହୂର୍ତ୍ତରେ ପତ୍ର କଢ଼ିଟିଏ— ସେମାନେ ହିଁ ମୋ ପାଇଁ କବିତା ।

କବି ମାଟି ଗୋଡ଼ି, ଗଛ, ବଣ, ପୋଖରୀ, ରାସ୍ତା, ପଡ଼ିଆ, ଶ୍ମଶାନ ସବୁଠି ଆପଣା ଆତ୍ମୀୟତାର ସଂଯୋଗ ଖୋଜିଛନ୍ତି । ଗାଁର ନକ୍ସା ଭିତରେ ପୁରୁଣା ଦିନକୁ ଦେଖିଛନ୍ତି । ଆଜି ଆଉ ସେଦିନକୁ ଗୋଟେ ଆତୁର ଭାବପ୍ରବଣତା ଭିତରେ ମିଳାଇ ଦେଖୁଛନ୍ତି ।

ସେଇତୋଟା, ସେଇ ନଈ, ସେଇ ପଦ୍ମପୋଖରୀ, ସେଇ କଦମ୍ବଗଛ ସେମିତି ଅଛି । ସେମିତି ବର୍ଷା ହେଉଛି, ପୂର୍ବାଳି ପବନ ବହୁଛି, ଦୂର ପାହାଡ଼ ପାଖରେ ସେମିତି ଜହ୍ନ ଅସ୍ତ ହୋଇ ଯାଉଛି । ରାସ୍ତାଘାଟ, ନଈଖଣ୍ଡି ଗାଁରେ ମଣିଷର ଜୀବନ ବଞ୍ଚିବା ସେମିତି ବଦଳିନି । ଅଥଚ୍ ଚାଳିଶ ବର୍ଷ ଏହା ଭିତରେ ବିତିଗଲାଣି । କେତେ ଲୋକ ମରି ହଜି ଗଲେଣି । ଆଜି ପୁନେଇ ପରବ କେମିତି ଖାଲି ଖାଲି ଲାଗୁଛି । 'ତମେ ନାହଁ/ନିଃସଙ୍ଗ ଅନ୍ଧାର ତିମିର ନିଶ୍ୱାସ ପରି ପ୍ରସରୁଛି/କୁତୂହଳୀ ପବନ ଚାହିଁ ବସିଛି/ଦୀପ ଜଳିଲେ ଖେଳିବ ଲୁଚ୍‌କାଳୀ/ତମେ ନାହଁ ଆସିଛି ଦିଆଲି ।' ସୀତାକାନ୍ତଙ୍କ 'ଆଜି ପୁଣି ଦିଆଲି' କବିତାର ଏହି ଧାଡ଼ିସବୁ ମଣିଷ ଅନ୍ତର କିପରି ଅବିରତ ଅନ୍ୟ ଆପଣାର ମଣିଷମାନଙ୍କୁ ଲୋଡ଼େ ତା'ର ଅକପଟ ସଂଳାପ ।

ଏ ପୃଥିବୀ, ଏ ଜୀବନ ଯେ ସ୍ନେହରେ ବନ୍ଧା-ଜୀବନ ତମାମ ସେତିକି ଉପଲବ୍ଧି କରିବା, ସେଇ ସ୍ନେହ ଟିକକ ପାଇଁ ଅତି ପିଲାଙ୍କ ପରି ହାତଯୋଡ଼ି ଆତ୍ମୀୟତା ମାଗିନେବା ହିଁ ଜୀବନର ବଡ଼ ସଫଳତା ।

ସୀତାକାନ୍ତଙ୍କ ମୁଖ୍ୟ କାବ୍ୟଚେ଼ତନା ହେଲା ଶ୍ରଦ୍ଧାରେ ସଂଯୋଗିତ ହେବା ମାଟି ସହିତ, ମହାକାଳ ସହିତ, ପ୍ରକୃତି ସହିତ, ମଣିଷମାନଙ୍କ ସହିତ; ଯାହାର ମୂଳ ପ୍ରୋତ୍ସାହନ ହେଉଛି ବୋଉର କୋଳ, ନଈ ଗାଁର ବାଲିବିଲ, ଗଛ, ପୋଖରୀ, ମନ୍ଦିର, ମଶାଣିପଦା, ନିଜର ସମ୍ପର୍କୀୟ ଆତ୍ମୀୟ, ଏକାନ୍ତ ମହୋତ୍ସବମୟ ଶୈଶବ ଆଉ ପଛ ଜୀବନକୁ ପାଶୋରି ନ ପାରିବାର ନିରୀହ ପ୍ରବଣତା ।

ଗତ ତିରିଶ ଚ଼ାଳିଶ ବର୍ଷର ସାରସ୍ୱତ ଧାରାରେ ସୀତାକାନ୍ତଙ୍କ କବିତା ଏହି ସବୁ କାରଣରୁ ସତରେ ଭାରି ଜୀବନମୟ ଲାଗେ । ସେହି ଜୀବନମୟତାହିଁ ସବୁକିଛି ଗୁଣ ଓ ଅଳଙ୍କାର ଊର୍ଦ୍ଧ୍ୱରେ ଉତ୍ତମ କବିତାର ସର୍ବୋତ୍ତମ ଉପାଦାନ । ରାଜା, ମାନି, ଜ୍ଞାନୀ, ଚ଼କ୍ରବର୍ତ୍ତୀ ହେବାର ପରିଚ଼ୟ ଊର୍ଦ୍ଧ୍ୱରେ ଯେ କୌଣସି ସ୍ଥାନର ସାଧାରଣ ମଣିଷ ଓ ତା'ର ଜୀବନ ବଞ୍ଚିବାର ଛବି ହିଁ କବିତାର ସବୁଠାରୁ, ଅନୁପମ ଚି଼ତ୍ର; ଶିଳ୍ପାୟନର ଯାବତୀୟ ଆଳଙ୍କାରିକ ଆଟୋପ ଯାହାକୁ କେବେ ଘୋଡ଼ାଇ ଦେଇ ପାରେନା ।

ସୀତାକାନ୍ତଙ୍କ ଏହି 'ପ୍ରଦକ୍ଷିଣ' କବିତା ଗ୍ରନ୍ଥର ବାଇଶଟି କବିତା କେବଳ ନୁହେଁ ତାଙ୍କ ରଚି଼ତ ଅଧିକାଂଶ କବିତା ଏକାନ୍ତ ସ୍ମୃତିପ୍ରିୟ ଓ ସମ୍ପର୍କ ଲୋଡୁଥିବା ସାଧାରଣ ମଣିଷର ଚିତ୍ତ-ପ୍ରବୋଧକ ମାର୍ମିକତାକୁ ଶୁଭାନୁଧ୍ୟାୟୀଙ୍କ ପ୍ରତି ତା ଅନ୍ତସ୍ଥଳର ଅସୀମ ଶ୍ରଦ୍ଧା ଓ ଅନନ୍ୟ ସମ୍ମାନ୍‌ବୋଧକୁ ମଧ୍ୟ ଲେଖିଛି ।

ଆଜି ଓ ଆଗକୁ ଯେଉଁ ସମୟଖଣ୍ଡ ଆସିବ ସେଥିରେ ସାଧାରଣ ମଣିଷ ଓ ତା'ର ଏକାନ୍ତ ଅନୁରାଗମୟ ଜୀବନପ୍ରିୟତାହିଁ ହୁଏତ ବିଶିଷ୍ଟ ସାରସ୍ୱତ ସ୍ତମ୍ଭ ହେବ ।



# ବିରଳ ବିଭୋର ସମର୍ପଣ

ସେଦିନ ଦିଲ୍ଲୀ ମହାନଗରୀର ଏକ କୁହୁଡ଼ିଆ ସଞ୍ଜବେଳ ଥିଲା । କବିତାପ୍ରେମୀ ଶ୍ରୋତାମାନେ ଚାଣକ୍ୟପୁରୀରେ ଭର୍ତ୍ତି ହୋଇ ଯାଇଥିଲେ ।

ସେଦିନ ଆସରର ଶେଷ ବେଳକୁ ବୋଧେ ତାଙ୍କର ସ୍ୱରଚିତ କବିତା ଚିତ୍ରୋତ୍ପଳା ପଢ଼ିଲେ ଓଡ଼ିଶାର ବିଶିଷ୍ଟ କବି ଦୀପକ ମିଶ୍ର । ପ୍ରଖ୍ୟାତ ଓଡ଼ିଆ କବି ସୀତାକାନ୍ତ ମହାପାତ୍ର ସେ କବିତା ଆସରର ଅଧକ୍ଷତା କରୁଥିଲେ ।

କବି ଦୀପକ ମିଶ୍ର କବିତା ପଢ଼ିବା ମାତ୍ରେ ସମସ୍ତେ ନୀରବ ହୋଇ ଯାଉଥିଲେ । ଆଖିରେ ନ ଦେଖିଲେ ଲୋକଭର୍ତ୍ତି ଏତେବଡ଼ ସଭାସ୍ଥଳୀ ଅଛି ବୋଲି ସେତେବେଳେ ଆଦୌ ଜାଣି ହେଉ ନଥିଲା ।

ସ୍ୱରଚିତ ଚିତ୍ରୋତ୍ପଳା କବିତା ଆବୃତ୍ତି କରି କବି ଦୀପକ ମିଶ୍ର ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲେ ।

କିଛି ସମୟ ପାଇଁ ସମସ୍ତେ ଯେପରି ଆବିଷ୍ଟ ହୋଇ ଯାଇଥିଲେ । ଏହା ବୋଧେ ଉତ୍ତମ କବିତାର ପ୍ରଭାବ; ଯାହା ସବୁମତେ ପାଠକକୁ ସ୍ପର୍ଶ କରେ ।

ଏତେ ଭାବପ୍ରବଣତା ଗୋଟେ କଣ୍ଠରୁ ଫୁଟିଉଠେ ମୁଁ ତା'ପୂର୍ବରୁ କେବେ ଏତେ ତନ୍ମୟ ହୋଇ ଅନୁଭବ କରି ନଥିଲି । ନିଜ ଗାଁ ପାଖ ନଈର କଥା ପଢ଼ିଲା ବେଳେ ଜଣକର କଣ୍ଠ ଏତେ ଥରିଉଠେ ତା ପୂର୍ବରୁ ମୁଁ କେବେବି ଶୁଣି ନଥିଲି ।

ଜଣେ କବିର ଏହା ଏକ ଉଲ୍ଲେଖଯୋଗ୍ୟ ପାରଦର୍ଶିତା ବରଂ । ଦୀପକ ମିଶ୍ରଙ୍କ କବିତା ପଢ଼ିବା ସେଦିନ ମୋତେ ଏତେ ଅଭିଭୂତ କରିଦେଲା ଯେ ମୋ ଆଖିରୁବି ଧାର ଧାର ଲୁହ ବହିଗଲା ।

ଏ ସଂସାରରେ ଯୁଗଯୁଗ ଧରି ସୁନ୍ଦରୀ ନାରୀମାନେ କବିଙ୍କୁ ହୁଏତ ମୋହି ଦିଅନ୍ତି । ମାତ୍ର ଗୋଟେ ନଦୀ ଏ ସଂସାରରେ ଗୋଟେ କବିଙ୍କୁ ଏତେ ମାତ୍ରାରେ ମୋହି ଦେଇପାରେ ତାହା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

ଦୀପକ ମିଶ୍ରଙ୍କ ଚିତ୍ରୋତ୍ପଳା କବିତାର ପ୍ରତିଟି ଶବ୍ଦ ଆଜି ସାତ ଆଠ ବର୍ଷ ପରେ ବି ମୋ କାନକୁ ଶୁଭିଯାଉଛି । ତାଙ୍କ ଥରିଲା କଣ୍ଠର ଆବାଜ ଏବେ ବି ମୋର ମନେ ଅଛି । ତାଙ୍କ ମୁହଁରେ ଫୁଟି ଉଠିଥିବା ପ୍ରତିଟି ଭାବମୁଦ୍ରା ଏବେ ବି ଜୀବନ୍ତ ହୋଇ ମୋ ସ୍ମୃତିରେ ସାଇତା ହୋଇ ରହିଛି ।

ମୁଁ ସେଥର ଦିଲ୍ଲୀରୁ ଫେରି ସମ୍ବଲପୁରରୁ ଦୀପକ ମିଶ୍ରଙ୍କ ନିକଟକୁ ଗୋଟେ ଭାବପୂର୍ଣ୍ଣ ଚିଠି ଲେଖିଥିଲି ।

ସେ ଚିଠିଟିକୁ ଅବିକଳ ମୁଁ ଏଠାରେ ଉଦ୍ଧାର କରୁଛି ।

୧୧.୩.୧୯୯୫
ଜ୍ୟୋତିବିହାର

ମାନନୀୟ ଦୀପକ ବାବୁ,

ମୋର ପ୍ରଣାମ ଜାଣିବେ । ଆପଣଙ୍କ ସ୍ୱାଭିମାନ ଓ ସମ୍ବେଦନଶୀଳତା ହିଁ ଆପଣଙ୍କର ଅସଲ କବିତ୍ୱ । ଆପଣଙ୍କ ବ୍ୟକ୍ତିତ୍ୱର ସେଇଦିଗ ପ୍ରତି ମୋର ଯଥେଷ୍ଟ ଖାତିର ଅଛି । ତା'ପରେ ଆପଣଙ୍କ ଭିତରେ ଥିବା ଏକ ନିଃସର୍ତ୍ତ ବିଭୋରପଣିଆ । ସେପାଇଁ ମୋର କୋଟି ଦଣ୍ଡବତ । ଏହି ବିଭୋରପଣିଆ ସେଦିନ ସେ ଚିତ୍ରୋତ୍ପଳା କବିତାରେ ଏପରି ବିନ୍ୟସ୍ତ ହୋଇଥିଲା । ଆଉ କବିତାର ମୂଳ ସମ୍ବେଗଟିକୁ ଏପରି ସିକ୍ତ କରିଦେଇ ଥିଲେ ଯେ, ସେଦିନ ଆସରରେ ଉପସ୍ଥିତ ତରୁଣ ପ୍ରବୀଣ ନିର୍ବିଶେଷରେ ସମସ୍ତଙ୍କ ଆତ୍ମା ଅନ୍ତରକୁ ଏକ ଅଶ୍ଳୁଳ କାରୁଣ୍ୟ ଓ ନିଜକୁ ସମର୍ପି ଦେବାର ଆନ୍ତରିକତା ଓ କନ୍‌ଫେସନ୍ ନିଷ୍କପଟତାରେ ଉଲ୍ଲସିତ କରିଦେଲା ।

ମୁଁ ଲକ୍ଷ୍ୟ କରି ଦେଖିଛି ସମସ୍ତେ ଅହଂ ବିବର୍ଜ୍ଜିତ ହୋଇ ପଡ଼ିଲେ କିଛି କାଳ ପାଇଁ । ଏପରିକି ଯତୀନବାବୁ ଓ ପ୍ରଫୁଲ୍ଲବାବୁ ମଧ୍ୟ । ସାରା ଆସର କେମିତି ସ୍ଥିର ହୋଇଗଲା । ମନ୍ତ୍ରର ପ୍ରଭାବ ପରି ଆପଣଙ୍କ ଆବୃତ୍ତି ଓ ଭାବୋଚ୍ଛ୍ୱାସ ଥିଲା । ମୋ ଭିତରେ ଥିବା ବିଭୋରପଣିଆ ଆହୁରି ଉଦ୍‌ବେଳିତ ହୋଇ ଉଠିଲା ।

ପାଖରେ ବସିଥିବା ନିଳାଦ୍ରୀବାବୁ ପିଲାଙ୍କ ପରି କାନ୍ଦିଲେ । ଧାର ଧାର ଲୁହ ତାଙ୍କ ଆଖିରୁ ବୋହି ଯାଉଥାଏ । ଦିଲ୍ଲୀ ମହାନଗରୀର ଅଭିଜାତ ପରିସର ଭିତରେ କିଏ କାହାକୁ କେଉଁଥିପାଇଁ ବା ପ୍ରବୋଧନା ଦେବ । ଗୋଟିଏ କବିର କବିତା କେତେଜଣଙ୍କୁ କନ୍ଦାଇ ପାରିଛି ?

ବିଧାତା ସର୍ଜନା କରିଥିବା ମୋ ଅଭ୍ୟନ୍ତରରେ ନିଃଷ୍ପାପ ମୋ କୁମାରୀ ମନକୁ ସେଦିନ ମୁଁ ଆପଣଙ୍କ କିବତ୍ୱକୁ ହିଁ ସମର୍ପି ଦେଇଥିଲି । ଆପଣ ମୋତେ ଉଚ୍ଛାସରେ ଆଲିଙ୍ଗନ କରି ତାହା ଘେନା କରିଥିଲେ ।

ଲକ୍ଷେ ପୁରସ୍କାର ତା'ର ସରିସା ନୁହେଁ ଦୀପକବାବୁ !

କବିମାନଙ୍କର ତାଲିକା ତ ସବୁବେଳେ ଲମ୍ବା । ହେଲେ ତା' ଭିତରୁ ଆପଣ ଅସଲ କବିଟିଏ । ଆପଣଙ୍କ କବିତା ମୋତେ ବହୁତ ଭଲଲାଗେ । ମୁଁ ଆଗ ପଢ଼େ ଆପଣଙ୍କ କବିତା ।

ମୁଁ ଆପଣଙ୍କ ଆଗରେ ସତ କହୁଛି ଆପଣଙ୍କ କବିତ୍ୱକୁ, ଆପଣଙ୍କ ସ୍ନେହଶୀଳତାକୁ, ଆପଣଙ୍କ ଅତିବଡ଼ ବିଭୋରପଣିଆକୁ ମନ ଦେଇଥିବା ପ୍ରେମିକାପରି ମୁଁ କଦାପି ଅସତ୍ୟ କହିବିନି । ମୋ ବଚନକୁ ମୁଁ କେବେହେଁ ବକ୍ର କରିପାରିବିନି ।

ସମାଲୋଚକର ପାଣ୍ଡିତ୍ୟ ମୋତେ ସବୁବେଳେ ଦୁର୍ବହ ହିଁ ଲାଗେ ।

ଶେଷରେ ଆପଣଙ୍କ କବିତା ଓ ଆପଣଙ୍କ ସ୍ନେହଶୀଳ ଆତ୍ମୀୟତା ମୋତେ ଆନନ୍ଦ ଦେଇଥିବାରୁ ମୁଁ ଏକ ଗ୍ରାମ୍ୟ କିଶୋରୀପରି ମାତ୍ର କେବଳ ସଲ୍ଲଜ କୃତଜ୍ଞତା ଜ୍ଞାପନ କରୁଛି ।

ଯେଉଁ ଭାବ ଯେ କୌଣସି କାବ୍ୟିକ ପ୍ରୋତ୍ସାହନର ମୂଳ ତାହା ତ ଉଚ୍ଚାରିତ ହେବାମାତ୍ରେ କବିକୁ କାଳିସୀ ଲାଗିଲାପରି ଲାଗେ । କବି ପ୍ରାଣର ଅପୂର୍ବ ଶିହରଣ ଅନୁଭବ କରେ । ସେ ବିଗଳିତ ହୋଇଯାଏ ।

କବିର ସ୍ୱରଚିତ କବିତାକୁ ସେ ନିଜେ ପଢ଼ିଲେ ତା'ର ଆବୃତ୍ତି ମନ୍ତ୍ରପାଠପରି ଅଭିଭୂତ କରିଦେବ । ତା'ର ଭାବପୂର୍ଣ୍ଣ ଥରିଲା କଣ୍ଠରୁ କେବଳ କବିତା ଯେମିତି ଅଧାରୁ ଅଧିକ ହୁଏତ ବୁଝି ହୋଇଯିବ ।

କବିର ଭାବାବିଷ୍ଟ ହେବା, କବିର ଆବେଗ, କବିତା ସୃଷ୍ଟିରେ ମୂଳପ୍ରେରଣା ଓ ପ୍ରୋତ୍ସାହନ ସମିଶ୍ରିତ ହୋଇ ଆବୃତ୍ତି ଅବସରରେ କବିକଣ୍ଠରେ ଫୁଟି ଉଠେ ।

କବିତାର ଉତ୍ତମ ଆବୃତ୍ତି ଶୀର୍ଷକ ଏକ ଲେଖା ଅବସରରେ କବି ଶ୍ରୀ ମିଶ୍ର ଚିଠିଟିକୁ ଅବିକଳ ସେ ଲେଖା ଭିତରେ ଛାପି ଦେଇଥିଲେ । ଯେଉଁ ପତ୍ରିକାରେ ସେ ତାଙ୍କ ଆଲୋଚନାମୂଳକ ଲେଖାଟିକୁ ଛାପିଥିଲେ ସେ ପତ୍ରିକାଟି ଆମ ପ୍ରଦେଶର 'ସମ୍ପର୍କ' ନାମକ ଏକ ଅଭିଜାତ ସାହିତ୍ୟ ପତ୍ରିକା ।

ଦୀପକବାବୁଙ୍କ ମତାମତ ମୋତେ ବହୁତ ଭଲ ଲାଗିଲା । ମୁଁ ତାଙ୍କ ସହିତ ପୂରା ଏକମତ ହୋଇଗଲି ।

ଆବୃତ୍ତି କରିବା ଜଣଙ୍କର ଉଲ୍ଲେଖଯୋଗ୍ୟ ପାରଦର୍ଶିତା । ଆବୃତ୍ତି ସଠିକ୍ ହେଲେ ପାଠକ ହୃଦୟରେ କବିତାର ଆବେଦନ ଅତି ସହଜରେ ଉପଲବ୍ଧ ହେବ । କବିତାର ଛନ୍ଦ ଓ ସାଙ୍ଗୀତିକତା ଆବୃତ୍ତି ଓ ଗାନର ସଫଳତା ଉପରେ ନିର୍ଭର କରେ ।

କଣ୍ଠରେ ଆବୃତ୍ତି ନକଲେ ଛନ୍ଦ ପ୍ରୟୋଗର ଅର୍ଥ ନଥାଏ । ଛନ୍ଦ ସହିତ କବିତାର ଆତ୍ମା ଯୋଡ଼ା ହୋଇ ରହିଥାଏ । କବିତାର ଆତ୍ମା ଛନ୍ଦ ତଥା ତା'ର ଅନ୍ତରୀଣ ସାଙ୍ଗୀତିକତାରେ ହିଁ ପ୍ରକଟିତ ହୋଇଥାଏ । ଛନ୍ଦ ସୁଷମାର ଅନିବାର୍ଯ୍ୟ ଉପଯୋଗିତା ଏହିଭାବରେ ସ୍ୱୀକୃତ ।

ସମ୍ପ୍ରତି ଆଧୁନିକ ଓଡ଼ିଆ କବିତା ପାଠରେ ଆମେ ଆବୃତ୍ତି କୌଶଳ ଉପରେ ଏତେ ଗୁରୁତ୍ୱ ଦେଉନାହିଁ । ଆବୃତ୍ତି ତେଣୁ ଆମ ପ୍ରଦେଶରେ ବଳିଷ୍ଠ ପରମ୍ପରାର ବିଷୟ ହୋଇ ପାରିନାହିଁ । ଶ୍ରେଣୀ ଗୃହରେ ଅଧିକାଂଶ ସାହିତ୍ୟ ଶିକ୍ଷକ ଉତ୍ତମ ଭାବରେ ପ୍ରଭାବ ଯୁକ୍ତ କରି କବିତାକୁ ଆବୃତ୍ତି କରି ପାରୁନାହାନ୍ତି । ଯଦି ପାରୁଥାଆନ୍ତେ, ତା ହେଲେ ଅନାୟାସରେ କବିତାର ଅଧାରୁ ଅଧିକ ଅର୍ଥ ସ୍ୱତଃ ବୁଝା ପଡ଼ିଯାଉଥାନ୍ତା । କବିତା ପଢ଼ିବା ହୁଏତ ଆଉ କାହା ପାଇଁ ଆଦୌ କ୍ଳାନ୍ତିକର ହୁଅନ୍ତା ନାହିଁ ।

ଉତ୍ତମ କବିତା ଯେପରି ପ୍ରାଣର ଭାଷା, ସେହିପରି କଣ୍ଠର ଭାଷା ମଧ୍ୟ । କବିତାର ସଂଯୋଜିତ ଭାବବେଳେ କଣ୍ଠକୁ ଥରାଇଦିଏ, ଜଣକର ଚେତନାକୁ ମୋଟାପଣେ ଆର୍ଦ୍ର

କରିଦିଏ । ନାଦବ୍ରହ୍ମ ଯେପରି ଉଭା ହୋଇ ଯାଆନ୍ତି । କବିତା ତେଣୁ ମନ୍ତ୍ରର ପ୍ରଭାବ ସୃଷ୍ଟିକରେ ।

କବିତା ଈଶ୍ୱରୀୟ ଲାଗେ ।

ଛନ୍ଦର ଏତେ ଶକ୍ତିଶାଳୀ ପ୍ରଭାବ ସତ୍ତ୍ୱେ କବିତାର ସଫଳ ଆବୃତ୍ତି ଉପରେ ଗୁରୁତ୍ୱ ନଦେବା ଦୁଃଖ ପୂର୍ଣ୍ଣ ।

ସେ ସ୍ୱୟଂ କବି ହୁଅନ୍ତୁ କି ପାଠକ ହୁଅନ୍ତୁ ଯେ କୌଣସି କବିତାକୁ କଣ୍ଠରେ ସଫଳ ଭାବରେ ଆବୃତ୍ତି କରି ନପାରିବା ଏକ ଅପାରଗତା ନିଶ୍ଚୟ ।

ସେଦିନ ଦୀପକବାବୁଙ୍କ ଆବୃତ୍ତି କୁଶଳତା ବହୁ ଅଣ ଓଡ଼ିଆ ଶ୍ରୋତାଙ୍କ ସମେତ ସମସ୍ତଙ୍କୁ ଆବିଷ୍ଟ କରି ଦେଇଥିଲା । ଏହି ଆବୃତ୍ତି କୁଶଳତା ଯୋଗୁଁ ଖାସ ଦୀପକ ମିଶ୍ରଙ୍କ ଚିତ୍ରୋତ୍ପଳା କବିତାଟି ସାମଗ୍ରିକ ଭାବେ ଜୀବନ୍ତ ହୋଇ ଉଠିଥିଲା ।

କବିତାଟି ଚିତ୍ରମୟ ଲାଗିଲା । ସାରା କବିତାଟି ନିମିଷକେ ଏକ ସୁନ୍ଦର ଓ ଅତି ବିଶ୍ୱାସନୀୟ ଛବିଳ ଲ୍ୟାଣ୍ଡସ୍କେପ୍‌କୁ ଉନ୍ନୀତ ହୋଇଗଲା ଯେପରି ।

ଏକାନ୍ତ ଭାବ ପ୍ରବୋଧକ ତଥା ଚିତ୍ତ ଉଲ୍ଲାସକ ଦୀପକବାବୁଙ୍କ ଆବୃତ୍ତି ଭିତରେ ସତେ ଯେପରି ଚିତ୍ରୋତ୍ପଳା ନଈଟି ଦିଶି ହୋଇଗଲା । ନଈଟି ସହିତ କବିଙ୍କ ଯାବତୀୟ ଆବେଗିକ ସମ୍ପର୍କର ପ୍ରତିଟି ବିଷୟ କେମିତି ଭାରି ନିବିଡ଼ ଲାଗିଲା ।

ମୋର ଶୈଶବ ସ୍ମୃତି ବିଜଡ଼ିତ ବଳଙ୍ଗ ନଈଟିକୁ ମୁଁ ଯେପରି ମୋ ସ୍ମୃତିକୁ ଆଣିଲି । ମୋ ଚେତନାରେ ବୁହାଇ ଦେଲି ।

ମନେ ହେଉଥିଲା, ଦୀପକବାବୁଙ୍କ ଥରିଲା କଣ୍ଠର ଭାଷା ଶୁଣି ହୁଏତ ସଭିଏଁ ନିଜ ନିଜ ଗାଁର ନଈକୁ ନିଜ ପ୍ରାଣରେ ଅନୁଭବ କରି ପାରୁଥିଲେ ।

ଆବୃତ୍ତି କରିବା ଏତେ ପ୍ରଭାବଶାଳୀ ସତରେ ?

ଅଦ୍ଭୁତ ଭାବରେ ଗୋଟେ କାବ୍ୟସ୍ପର୍ଶ ସେଥିରୁ ଫିଟି ପଡ଼େ ।

ତଦ୍‌ଗତ ହେବାର ଗୋଟେ ଅନନ୍ୟ ମାର୍ମିକତା ଯେପରି ମୁକୁଳିପଡ଼େ ।

ଟୁପୁରୁ ଟାପର ବର୍ଷା ପଡ଼ିଗଲା ପରି ଲାଗେ ।

ମିଠା ଗୀତ ପଦେ ପରି ଦେହ ମନକୁ ଯେମିତି ଭିଜେଇଦିଏ ।

ନାଦର ଏତେ ମହିମା ସତରେ ?

ବର୍ତ୍ତମାନ ସମୟର ଓଡ଼ିଆରେ ଅନେକ ଆଧୁନିକ କବି ଅଛନ୍ତି ଯେଉଁମାନେ ଆବୃତ୍ତି କରି ଶ୍ରୋତାର ପ୍ରାଣରେ ଏପରି ଅନ୍ତରଙ୍ଗ କାବ୍ୟ ପ୍ରଭାବ ସୃଷ୍ଟି କରି ପାରନ୍ତିନି । ବଡ଼ ଦୁର୍ଗୁଣ ଅସାମର୍ଥ୍ୟ ଆମ ପ୍ରଦେଶର କବିତା ପାଠୋତ୍ସବ ମାନଙ୍କରେ ବାରିହୋଇ ପଡ଼େ । କବିତାର ଆବୃତ୍ତି କାହାକୁ ଛୁଇଁ ପାରେନି ।

ଭାବ୍‌ରେ କବିର କଣ୍ଠ ଥରି ଉଠେନି ।

ଆତ୍ମାର ସେ ଉଲ୍ଲାସକୁ ଆବୃତ୍ତି କରି କେହ ପ୍ରକଟନ କରି ପାରନ୍ତିନି ।

ସେ ନାଦ, ସେ ଲହର, ସେ ଗୀତିଧର୍ମ ଫୁଟି ଉଠେନି ।

ଆସରଟା ସେମିତି ଖାସ ଜମେନି ।

କୌଣସି ଶ୍ରୋତା କବି କଣ୍ଠରୁ କବିତାଟିକୁ ଆପଣା ପ୍ରାଣକୁ ନେଇ ଯାଇ ପାରେନା । କବିର ଆତ୍ମାକୁ ବିଦୀର୍ଣ୍ଣ କରି ମୂର୍ତ୍ତି ହୋଇଥିବା ଶବ୍ଦର ସେ ଆଓ୍ଵାଜ କାହିଁ ଶ୍ରୋତାକୁ ବିଗଳିତ କରି ଦେଇ ପାରେନା ।

ଦୀପକ ମିଶ୍ରଙ୍କ ପରି ଓଡ଼ିଶାର ତରୁଣ ପ୍ରବୀଣ ନିର୍ବିଶେଷରେ ଯେଉଁ କବି ଆପଣାର କବିତାକୁ କଣ୍ଠରେ ଫୁଟେଇ ଦିଏ ସେ ପାଠକକୁ ଅଧିକ ଆପଣାର କରିନିଏ । ଆପଣା ଅନ୍ତରର ସନ୍ନିକଟ କରାଇଦିଏ ।

ଭଲ କବିତା ଆବୃତ୍ତିରେ ଫୁଟେ । ଶ୍ରୋତାର ହୃଦୟକୁ ଚହଲାଇ ଦିଏ । ତା'ର ଚେତନାକୁ ବଢ଼ୁରାଇ ଦିଏ ।

ସହରରୁ ମଫସଲ ପର୍ଯ୍ୟନ୍ତ ମୁଁ ଦେଖିଛି ଆମ ପାଠୋତ୍ସବ ମାନଙ୍କରେ କବି ଆପଣା ସ୍ୱରଚିତ କବିତାକୁ ପଢ଼ିବାର ଉଚ୍ଛାସ ଅନୁଭବ କରେ ନାହିଁ ତ ଶ୍ରୋତା ବି ଶୁଣିବାର ଉନ୍ମୁଖତା ଦେଖାଏ ନାହିଁ । ଅଥଚ ଆମ ନିକଟ ପଡ଼ୋଶୀ ପ୍ରଦେଶ ବଙ୍ଗଳାର ଏହି କବିତା ପାଠୋତ୍ସବଗୁଡ଼ିକ କେତେ ସଫଳ ହୁଏ । ସଭିଏଁ ପ୍ରବୋଧିତ ହୋଇ ଯେମିତି ଉତ୍ସବପରେ ଘରକୁ ଫେରନ୍ତି ।

ରବୀନ୍ଦ୍ରନାଥ ହୁଅନ୍ତୁ କି ନଜରୁଲ ଇସ୍‌ଲାମ ହୁଅନ୍ତୁ, ଜୀବନାନନ୍ଦ ଦାସ ହୁଅନ୍ତୁ କି ଶକ୍ତି ଚଟ୍ଟୋପାଧ୍ୟାୟ ହୁଅନ୍ତୁ ସମସ୍ତଙ୍କ କବିତାର କେସେଟ୍ ବିକ୍ରି ହେଉଛି । ସଫଳ ଆବୃତ୍ତି । ଅପୂର୍ବ କାବ୍ୟ ସ୍ପର୍ଶଟି ଯେପରି ଅତି ନରମ ଭାବରେ ଛୁଇଁ ଛୁଇଁ ଯାଉଛି ।

ପ୍ରେମିକାର ନରମ ନରମ କଥା, ସକାଳ ଚଢ଼େଇର ଗୀତ, ନାଁ ଅଜଣା ବଣ ଫୁଲର ବାସ୍ନା, ସେମିତି ଆକାଶର ରଙ୍ଗ, ମାଟିର ବିଶ୍ୱାସନୀୟତା, ପାଣି ପବନର ନିବିଡ଼ତା ଶବ୍ଦରେ କେବଳ ତ ଚହଲି ଉଠିଥାଏ ।

ଶବ୍ଦ ସବୁ ତ ଚମତ୍କାର ଦିଅନ୍ତି ।

ଶବ୍ଦ ସବୁ ତ ମୋହନ ବଂଶୀ ପରି ଲାଗନ୍ତି ।

ତାଳମାନର ବର୍ଣ୍ଣମେଳନ ନୁହେଁ ଅନୁଭୂତିର ଗଭୀରତା ହିଁ ଶବ୍ଦଯୁଗ୍ମ ନିର୍ମାଣ କରେ । ଗୋଟେ ନିରୁତା ଆବେଗ ଦେଇ ଶବ୍ଦ ସବୁ ଆପଣା ଛାଏଁ ଚିତ୍ର ପାଲଟି ଯାଆନ୍ତି ।

ନାରୀର ଚିତ୍ର ପରି ନଈର ଚିତ୍ର ଆଙ୍କି ହୋଇଯାଏ କବିତାରେ । ନିର୍ଜ୍ଜିବ ସବୁ କବିତାରେ ସଜୀବ ହୋଇଯାଏ । ଗତି, ଉତ୍ତାପ, ସ୍ପନ୍ଦନର ଧାର ସବୁ ଚାରି ଆଡ଼କୁ ମେଲି ଯାଆନ୍ତି । ରବୀନ୍ଦ୍ରନାଥ କହନ୍ତି ଛନ୍ଦ ହେଉଛି ଏକ ଗତି; ଯାହା ଅସରନ୍ତି ଗୀତିମୟତାର ଆଧାର । ଶେଲୀ କହନ୍ତି ଛନ୍ଦ ହେଉଛି ଏକ ସରଳ ଉତ୍ତେଜନା । ସବୁ ଆପଣା ଛାଏଁ ବାରି ହୋଇ ପଡ଼େ ।

କବିତା ହେଉଛି ସେଇ ଗୀତିମୟତା, ସେଇ ଗତି, ସେହି ବିସ୍ତାରର ଏକାନ୍ତ ଭାବମୟ ସଙ୍କେତ; ଯାହା କବି ଆତ୍ମା ଦେଇ ମୁକୁଳିତ ହୋଇଥାଏ ।

ଗୋଟିଏ ଚମତ୍କାର କାବ୍ୟିକ ପରିବେଶ ସୃଷ୍ଟି ଚମତ୍କାର ଆବୃତ୍ତି ଉପରେ ଅଧିକ ନିର୍ଭର କରେ । ସେ ପରିବେଶରେ କବି ଶ୍ରୋତା ସମସ୍ତେ ମୁହ୍ୟମାନ ହୋଇ ଯାଆନ୍ତି । କୋମଳ କାବ୍ୟସ୍ପର୍ଶରେ ପ୍ରାଣ ସ୍ନିଗଧ ହୋଇ ଯାଏ । ରସସିକ୍ତ ହୋଇଯାଏ ମନ ଓ ଚେତନା । ଆବେଗ ସହିତ ପ୍ରଜ୍ଞାର ମଧୁର ମିଳନ ଘଟେ ସେ ପରିବେଶରେ ।

ଆମ ପ୍ରଦେଶର ବହୁ କବିତା ଆସର ବଡ଼ ଶୁଖିଲା ଲାଗେ । କେମିତି ଗୋଟେ ଭାରି ଗତାନୁଗତିକ ଲାଗେ । ଉଦ୍ୟୋକ୍ତାମାନେ ଅନ୍ୟ ଭାବରେ ଥାଆନ୍ତିତ କବିମାନେ ବି ଅକବି ମାନଙ୍କ ପରି କୁତ୍ସା କଳହରେ ବେଳେ ବ୍ୟସ୍ତ ରହନ୍ତି । ଆଉ କେତେକ ବି ଆପତ୍ତି ଜନକ ଭାବେ ଅନ୍ୟମନସ୍କ ରହିଥାନ୍ତି ।

ବଙ୍ଗଳାରେ କିନ୍ତୁ କବିତା ଆସର ଭାରି ଜମେ । ସେମାନଙ୍କର ଗୋଟେ ରସିକତା ଅଛି । କଳା କବିତା ପ୍ରତି ଆତ୍ମାର ସମର୍ଥନ ଅଛି । ସେମାନେ ଅନାୟାସରେ ସେମିତି ଗୋଟେ ପରିବେଶ ସୃଷ୍ଟିକରି ଦେଇ ପାରନ୍ତି । କବିତା ଆସର ହେଉଛି ପ୍ରକୃତରେ ମନ ଓ ହୃଦୟ ଖୋଲିବାର ଆସର । ତାହା ଶୁଷ୍କ ଓ ଗଦ୍ୟମୟ ହେବା ଅନୁଚିତ ।

ହିନ୍ଦି କବିତା ଆସର ବେଳେବେଳେ ସାଇରି ପ୍ରଭାବରେ କେମିତି ଗୋଟେ ବାଇନାଚର ପରିବେଶ ଭଳି ଲାଗେ । ତରଳ ପ୍ରେମ ଗୀତର ଲହର ହିନ୍ଦି କବିତାର ଧାଡ଼ି ମାନଙ୍କର ବେଳେ ଥାଏ ।

ସାମାନ୍ୟ କବିତା ବୋଧ ନଥିବା ମୁଶାୟାରା ମାନେ ଆସରଟିକୁ ଗୋଟେ ଗ୍ରାମ୍ୟଅବା ସହରତଳି ଅଞ୍ଚଳର ବୈଠକ କରି ଦିଅନ୍ତି । ସେମାନଙ୍କ ପ୍ରେମକବିତାର ଆବେଦନ ବେଳେ ରଙ୍ଗବତୀ ଗୀତ ପରି ଲାଗେ ।

ଆବୃତ୍ତି ପ୍ରକୃତରେ ଏକ ନିବଦ୍ଧତାର୍ କଳା । ସଫଳ ଆବୃତ୍ତି କରିପାରିଲେ କବିତା ଚିତ୍ରମୟ ଲାଗେ । ଶବ୍ଦ ସବୁ ଜୀବନ୍ତ ରୂପକୁ ନାନାମତେ ରୂପାନ୍ତରିତ ହୋଇଯାଆନ୍ତି ।

ଶ୍ରୋତା ଭାବବିଷ୍ଟ ହୋଇପଡ଼େ । ଚେତନାର ଏକ ଛାୟାଛନ୍ନ ପରିମଣ୍ଡଳ ବା ହେଲୋସିନେସନ ଅବସ୍ଥାକୁ ସେ ଚାଲିଯାଏ । ରସପୂର୍ଣ୍ଣ ଓ ଏକାନ୍ତ ଭାବମୟ କବିତ୍ୱ ତ ସେ ପରିବେଶ ସୃଷ୍ଟିକରେ ଆବୃତ୍ତି ବି ସମଧିକ ଆବେଗ ସୃଷ୍ଟି କରେ ।

ସେଦିନ ଦୀପକ ବାବୁଙ୍କ ଚିତ୍ରୋତ୍ପଳା କବିତା ମୋତେ ଏତେ ଆବିଷ୍ଟ କରିଦେଲାଯେ, ତାହା ବୋଧେ ସେଥିପାଇଁ ସେହି ଦୃଷ୍ଟିରୁ ମୋ ଜୀବନରେ ଏକ ବିରଳ ସ୍ମୃତି ହୋଇ ରହିଗଲା । ମୋ ଆଖିରୁ ଲୁହ ବହି ପଡ଼ିଲା । ମୋର କୋହ ଉଠିଲା । ମୋ ଜନ୍ମର ଏନ୍ତୁଡ଼ିଶାଳ ମୋ ଗାଁ ତାଳବଣ, ଜହ୍ନରାତିର ନଈ ପୋଖରୀ ସବୁ ଦିଶି ହୋଇ ଗଲା । ମୋ ମାଆର କାନ୍ଦ କାନ୍ଦ ମୁହଁ, ଗାଁର ସଞ୍ଜବେଳ, ମେଘ ମହଳ ଜହ୍ନରାତି, ମଶାଣିପଦା, ରାତି

ପହରର ନୀରବତା, ବିଧବା ଆଖିର ଲୁହ ଓ ତା'ର ପ୍ରତିଟି କାରୁଣ୍ୟ, ଢ଼ଉରାମୂଳ, ଜହ୍ନିଫୁଲ ଫୁଟିବା ସବୁ ଉଜଳି ଉଠିଲା ।

ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ ମୋତେ ଖାସ ଏମିତି ଭାବ ବିଭୋର କରିଦିଏ । ଗହନ ବନର ବର୍ଷାକାଳକୁ ଚେ଼ତନାକୁ ନେଇ ଆସେ । ଆର୍ଦ୍ର କରିଦିଏ ମୋର ପ୍ରତିଟି ରସବୋଧକୁ ।

କାବ୍ୟାନୁଭାବର ଗୋଟେ ବିଷାଦ ଭୋଗ ଅଛି । କାବ୍ୟାନୁଭବ ଗଭୀର ହେଲେ ପ୍ରାଣ ଶୋକ ଜର୍ଜ୍ଜରିତ ହୋଇଯାଏ । ଟ୍ରାଜେଡ଼ିର ପ୍ରଭାବ ମନକୁ ବିନୀତ ଓ ଉଦାର କରିଦିଏ ।

ତାଙ୍କ ଆବୃତ୍ତି ସେଦିନ କୁହୁକ ସ୍ପର୍ଶ ପରି ମୋ ଶୈଶବ ସ୍ମୃତିକୁ ବିଛାଡ଼ି ଦେଲା । ମୁଁ ନିମିଷକେ ଆତ୍ମ ବିସ୍ମୃତ ହୋଇଗଲି ।

ତା ଗାଁର ପ୍ରିୟ ନଈଟି ସହିତ ଯେ ଏକାତ୍ମ ହୋଇନି ପ୍ରେମିକାକୁ ସେ ସତରେ ଏକ ବିଶିଷ୍ଟ ମାନସିକତା ଭିତରେ ଅନୁଭବ କରି ପାରିବନି ।

କବିତାଟିକୁ ଯଦି କବି ଆତ୍ମା ଦେଇ ଲେଖିଥିବ ତାହେଲେ ଉଚ୍ଚାରଣ କରିବା ମାତ୍ରେ ତାହା ହୃଦୟ ତନ୍ତ୍ରୀକୁ ଥରାଇ ଦେବ ।

ସ୍ୱରଚିତ କବିତାକୁ ଠିକ୍ ଭାବେ ଆବୃତ୍ତି କରି ପାରୁଥିବା କବି ମାନଙ୍କ ସଂଖ୍ୟା ଆମ ପ୍ରଦେଶରେ ବହୁତ କମ । କବିତା ଆସର ଗୁଡ଼ିକ ସତରେ ସେହି ସବୁ ଅସମର୍ଥ ମାନଙ୍କ ପାଇଁ ନିଃରସ ହୋଇ ଯାଉଛି । ସର୍ବତ୍ର କବିତା ପାଠୋତ୍ସବ ମାନଙ୍କରେ ଖୁବ୍ କମ ଶ୍ରୋତା ହେବାର ଅନ୍ୟତମ ବଡ଼ କାରଣ ହୋଇଛି ଏହା ।

ଗାନ ଠାରୁ ଆବୃତ୍ତି (Recitation) କମ ପ୍ରଭାବ ସୃଷ୍ଟି କରେ ନାହିଁ । ଉତ୍ତମ ଭାବେ ଆବୃତ୍ତି କରିପାରୁଥିବା କବିଙ୍କ କଣ୍ଠରେ କବିତାରେ ସଂଯୋଜିତ ଶବ୍ଦ ସବୁ ସେହି ଭାବରେ ନିନାଦିତ ହୁଏ ।

ଶବ୍ଦର ଆତ୍ମା ପ୍ରତ୍ୟକ୍ଷ ହୁଏ । ପ୍ରତ୍ୟେକ ଶବ୍ଦର ଏକ ଅତି ସୂକ୍ଷ୍ମ ଓ ସମ୍ବେଦନ ଶୀଳ ଭାବ ବଳୟ ଅଛି । ତାହା ଯୁଗ୍ମଶବ୍ଦ ନିର୍ମାଣରେ ଆହୁରି ମାର୍ମିକ ଓ ଅନୁରଣିତ ହୁଏ ।

ସାଧାରଣ ଶବ୍ଦ ସବୁ କବିତାକୁ ଆସିଲେ ଶବ୍ଦ ଗୁଡ଼ିକ ଅସମ୍ଭବ ଭାବେ ଅପୂର୍ବ ଲାଗନ୍ତି ।

ପୁରୁଣା ପରିଚିତ ଅନୁଭବରେ ବାରବାର ଭିଜିଯିବା ଉଭୟ କବି ଓ କବିତା ପ୍ରେମୀ ପାଠକ ବା ଶ୍ରୋତାମାନଙ୍କ ପାଇଁ ଅଲଗା ପ୍ରକାରର ଏକ କାବ୍ୟ ବୁନିଆଦି । ସତ କହିଲେ ଯେଉଁ ମାନଙ୍କର ସେଇ ବୁନିଆଦି ନାହିଁ ସେମାନେ କବିତାକୁ ଗୋଟେ ଗୋଟେ ଲଜିକ ବା ଚୁଟିକି ମାନଙ୍କର ଗାଣିତିକ କିମ୍ବା ଜ୍ୟାମିତିକ ପରିପ୍ରକାଶ ବୋଲି ବୁଝନ୍ତି । ସେମାନଙ୍କ ପ୍ରତୀକ ସବୁ ଆଦୌ ସମୁନ୍ନତ କାବ୍ୟବିମ୍ବ ପ୍ରକଟ କରି ପାରନ୍ତିନି ଓ ସେ ସବୁ କାବ୍ୟ ପ୍ରଭାବ ଆବେଦନରେ ଆଦୌ ତୀକ୍ଷଣ ବା ଧାରୁଆ ହୋଇ ନଥାନ୍ତି ।

ଏମିତି ଗୁଡ଼ାଏ ଲଜିକ କିମ୍ବା ରୈଖିକ ଚିତ୍ରଣ ମାତ୍ର ସୃଷ୍ଟି କରି କବିର ପ୍ରତିଷ୍ଠା ଅର୍ଜନ କରିଥିବା ଅନେକ ଆମ ଚତୁଃପାର୍ଶ୍ୱରେ ଚଳପ୍ରଚଳ କରୁଛନ୍ତି । ସେମାନଙ୍କ ଯୋଗୁଁ କବିତା ଆତ୍ମାର ସଂଯୋଗକାରୀ ସ୍ପର୍ଶ ହୋଇ ପାରୁ ନାହିଁ ।

ମୁଁ ସେଦିନଠାରୁ ଯେତେ କବିତା ଆସରରେ ଯୋଗ ଦାନ କରିଛି କବିତା ଆବୃତ୍ତି ସମୟରେ ମୁଁ ସବୁବେଳେ କବି ଦୀପକ ମିଶ୍ରଙ୍କୁ ହିଁ ସ୍ମରଣକୁ ଆଣିଛି ।

କବିତାର ଅନ୍ୟତମ ବଡ଼ଗୁଣ ହେଲା ଭାବ ପରିଚ୍ଛନ୍ନତା (Clarity) ଭାବ କବିତାକୁ ସବୁବେଳେ ସଜୀବ କରି ରଖିଥାଏ । ଭାବ ହେଉଛି କବିତାର ପ୍ରାଣଶକ୍ତି । ଭାବ ଦ୍ୱାରା ପ୍ରବୋଧିତ କବିଆତ୍ମା ଯେଉଁ ଭାଷାରେ ପ୍ରକଟିତ ହୁଏ ତା'ର ସ୍ଫୋଟ ସେହି ପ୍ରକାରର । ଆତ୍ମାର ଅନ୍ତସ୍ଥଳରୁ ଉନ୍ମେଷ ଲାଭ କରିଥାଏ । ସେ ଭାଷା ଆଓ୍ୱାଜ କରିବ । ପାଠକର ମନ ଓ ଆତ୍ମାକୁ ନିବଡ଼ଭାବରେ ସ୍ପର୍ଶ କରିବ । ବକ୍ତବ୍ୟର ଦୃଢ଼ତା ସେ ଭାଷାରେ ପ୍ରକଟିତ ହେବ । ଶବ୍ଦ ଗୁଡ଼ିକ ନାଦବ୍ରହ୍ମ ଭଳି ଦିବ୍ୟ ଅନନ୍ୟ ଲାଗିବ ।

ସେମିତି କବିତା ପଢ଼ିଲେ ପାଠକ ଉଚ୍ଚାଟିତ ହେବ । ତଦ୍‌ଗତ ହୋଇଯିବ । ଆଜି ଦଳେ ନିଃରସ ପଦ୍ୟ ବା ପଦ୍ୟାତ୍ମକ କବିତା ଲେଖିବାରେ ବ୍ୟସ୍ତ । କେତେକ ଶବ୍ଦ ପାଖରେ ଶବ୍ଦରଖି ବହୁପରିଚିତ ମିଥ୍ ଜରିଆରେ ଅତି ସାମାନ୍ୟ ବକ୍ତବ୍ୟକୁ ବର୍ଣ୍ଣନା କରି ଦେଇଛନ୍ତି କେବଳ । ସେମିତି କବି ସେମାନଙ୍କ ଶବ୍ଦ ନିକଟରେ ଆଦୌ ବିଶ୍ୱସ୍ତ ନୁହନ୍ତି । ସେମିତି ମାମୁଲି ପଦ୍ୟସର୍ବସ୍ୱ କବିତାର ଶବ୍ଦକୁ କବିନିଜେ ଭାବରେ ଉଚ୍ଚାରଣ କରି ପାରନ୍ତିନି ।

ଅନେକ କବି ସ୍ୱରଚିତ କବିତାକୁ ଆବୃତ୍ତି କରି ସେମିତି ମହତ୍ତର କାବ୍ୟ ପ୍ରଭାବ ସୃଷ୍ଟି କରି ପାରନ୍ତିନି । ଭାବରେ ସେମାନେ ଶିହିରି ଉଠନ୍ତିନି । କଣ୍ଠ ସେମାନଙ୍କର ଥରି ଉଠେନି ।

ସେମାନଙ୍କର ଆବୃତ୍ତିରେ ହାଡ଼ଭଙ୍ଗା ଶୀତପରି ଚେତନାର ଅନ୍ତସ୍ଥଳ ଥରିଉଠେନି । କିଛି ଫୁଟେନି । ଯାଦୁକରୀ ସ୍ପର୍ଶ, ଗୋଟେ ନିବିଡ଼ ଏକାତ୍ମକତା ଯେପରି ଅପ୍ରକଟିତ ହୋଇ ରହିଯାଏ ।

ବୀଣାର ତନ୍ତ୍ରୀ ଝଙ୍କୃତ ହେବା ଆବଶ୍ୟକ । ବୀଣାଝଙ୍କାର ପରି କବିତାର ଆବୃତ୍ତି । ବୀଣା ତାନରେ ଯେମିତି କାରୁଣ୍ୟ ଅଛି, ଶୃଙ୍ଗାର ଅଛି, ଭକ୍ତି ଅଛି, ବିଷାଦ ଅଛି, ସନ୍ୟାସର ଅନୁଭବ ଅଛି କବିତାରେ ସେହିପରି ଅନୁଭବ ବିନ୍ୟସ୍ତ ହୋଇ ରହିଥାଏ ।

ଆବୃତ୍ତି ସତରେ ଗୋଟେ ବଡ଼ ସାଧନ; ଯାହା ସଂବୃତ୍ତ ଭାବକୁ ମୁକ୍ତିଦିଏ । ଅକ୍ଷରର ରେଖାସବୁ ରବାଡ଼ମ୍ବର ଶବ୍ଦ ପାଲଟି ଯାଆନ୍ତି ।

ପାଠକ ମୁଗ୍ଧ ହୋଇ ଯାଉଥିବା କାରଣରୁ ଗୀତ ଶୁଣିଲା ପରିସେ କବିତା ଶୁଣିବାକୁ ଚାହେଁ । ଚାରିଆଡ଼େ ହଜାରେ କବିତା ଆସର ହୋଇଥିଲେ ବି ପ୍ରାଣକୁ ସିକ୍ତ କରିଦେଲା ଭଳି ଆବୃତ୍ତି କାହିଁ ?

ଦୀପକ ବାବୁଙ୍କୁ କବିତା ଆବୃତ୍ତି କରିବାର ଭାବଭଙ୍ଗୀ ଭାରି ମାନେ । ସେପାଇଁ ଦୀପକ ବାବୁଙ୍କ କବିତା ପଢ଼ିବା ଭାରି ପ୍ରଭାବ ବିସ୍ତାର କରେ ।

କବିତାର ବର୍ଣ୍ଣିତ ବିଷୟ ସହିତ ପ୍ରଚଣ୍ଡ ଆବେଗିକ ସଂପର୍କ ନଥିଲେ ଶବ୍ଦରେ ଭାବ ସ୍ଫୁରଣ ହୁଏ ନାହିଁ । ଅନ୍ତରୀଣ ସ୍ୱରଲହରୀ ଭିତରେ ଆବେଗ ଅନ୍ତର୍ନିହିତ ହୋଇ ଥାଏ ।

ଆବେଗ ହେଉଛି କବିତ୍ୱର ମୂଳ ପୁଞ୍ଜି । ଆବେଗ ହିଁ ଜୀବନର ସକଳ ବାସ୍ତବତାକୁ କବିତାୟିତ କରିଦିଏ ।

ଦୀପକ ମିଶ୍ରଙ୍କ ଚିତ୍ରୋତ୍ପଳା କବିତାଟିର ଅସଲ ଲାବଣ୍ୟ ହେଉଛି କବି ହୃଦୟର ପ୍ରଚଣ୍ଡ ଆବେଗ; ଯାହା ନଦୀଟିକୁ ଏତେ ନିବିଡ଼ ଭାବେ ସଡ଼ିର ସାମଗ୍ରୀ କରି ଦେଇଛି । ଗୋଟେ ଗାଁ ନଦୀର ସ୍ମୃତି ଏତେ ପ୍ରାଣବନ୍ତ ହୋଇପାରେ ଦୀପକ ମିଶ୍ରଙ୍କ 'ଚିତ୍ରୋତ୍ପଳା' କବିତା ତା'ର ପ୍ରମାଣ ।

କବିମାଟି ସହିତ, ମହାକାଳ ସହିତ ସଂଯୋଗିତ ହୋଇଯାଏ, ଆବେଗ ବଳରେ । କାବ୍ୟ ଆବେଗ କାବ୍ୟବୋଧର ପ୍ରତିଟି ଅଂଶ, ପ୍ରତିଟି ଉପାଦାନକୁ ଯୋଡ଼ିଦିଏ ।

ମିଠା ଗୀତ ପଦେ ଅବା ସଫଳ କବିତା ଧାଡ଼ିଏ ପ୍ରାଣକୁ ଯେ କିଣିନିଏ ସେଦିନ ଦିଲ୍ଲୀର କବିତା ଆସରରେ ଏ ବିଷୟରେ ମୋର ପ୍ରତ୍ୟକ୍ଷ ଅନୁଭୂତି ହେଲା । ମିତ୍ରାକ୍ଷର, ଅମିତ୍ରାକ୍ଷର, ମୁକ୍ତଛନ୍ଦ, ଗଦ୍ୟଛନ୍ଦ, ଉପଧାମିଳନ ଆଦି ବିଭିନ୍ନ ଛନ୍ଦବୈଚିତ୍ର୍ୟ ଊର୍ଦ୍ଧ୍ୱରେ କବିର ହୃଦୟାନୁଭୂତିର ଆବେଗଦୀପ୍ତ ପ୍ରଭାବ ଅନ୍ୟ ପ୍ରକାରର । ତାହା ଗୋଟେ ପ୍ରକାରର ତେଜ ।

ଅନୁଭୂତି ଗାଢ଼ ଓ ଗଭୀର ହୋଇଥିଲେ ଶାବ୍ଦିକତାରେ ସେ ତେଜଦୀପ୍ତ ମହିମା ଫୁଟି ଉଠେ । ରବୀନ୍ଦ୍ର କବିତା ତା'ର ସର୍ବୋତ୍ତମ ନିଦର୍ଶନ । ଆବିଷ୍ଟ ନହେଲେ ଆବେଗର ସେ ମହନୀୟତା ଆସିବନି ।

ଏ ସମୟଖଣ୍ଡର ଅଧିକାଂଶ ଆଧୁନିକ କବି ଶବ୍ଦକୁ କବିତା ନୁହେଁ ଲଜିକ ସୃଷ୍ଟି ପାଇଁ କେବଳ ବ୍ୟବହାର କରୁଛନ୍ତି । ସେମାନଙ୍କ କବିତାର ବିଶ୍ୱସବୁ ସେହି ଗରିମାମୟ ଆବେଗର ସ୍ପର୍ଶ ବହନ କରି ପାରୁନି । ସାରାଚିତ୍ରପଟଟିକୁ ଅନାବରଣ କରି ପାରୁନି ।

କବିତା ଆସରର କବିତା ପାଠ କରିଆରେ ଜଣେ କବି ତା' ଆତ୍ମାର ଉପଲବ୍ଧିକୁ ଶବ୍ଦମୟ ଅଭିବ୍ୟକ୍ତି ବେଳେ ଦେଇପାରୁନି; ଯାହା ଏକାନ୍ତ ଜରୁରୀ ।



# ଏକା ଏକା ବାଦଶାହା

ସେହି ଠିଆ ବାଳିଆ କବି କମଳା କାନ୍ତ ହିଁ ସତରେ ଗୋଟେ ବାଦଶାହା । ହେଲେ ସେ ଏକାଏକା ବାଦଶାହା । ତାଙ୍କ ପାଖରେ ଜଣେ ହେଲେ ବି କେହି ପାରିଷଦ ନଥାନ୍ତି ।

ନିଜର ସ୍ତ୍ରୀ ପୁତ୍ର କନ୍ୟା କେହି ବି କେତେବେଳେ ପାଖରେ ନଥାନ୍ତି । ଶୁଧୁ ଏକଲା ମଣିଷଟେ ।

ସାରା ଜୀବନ ଯେମିତି ଏକା ଏକା ସମୟ କଟାଇଛନ୍ତି ।

ବାରିକ ଛକ ଉପରେ ବିଚ୍ ରାସ୍ତାଟାରେ ଗୋଟେ ବାଦଶାହୀ ଠାଣିରେ ଠିଆ ହୋଇ କମଳାକାନ୍ତ ମଦପିଇଛନ୍ତି । କାହାକୁ ପରବାଏ ନଥାଏ ତାଙ୍କର ।

ଏତେବଡ଼ ସଂସାରରେ ପର ଆପଣା ନିର୍ବିଶେଷରେ କେହି ତାଙ୍କର ଦୁଃଖ ନେବାର ନାହିଁ କି କେହି ତାଙ୍କୁ ସୁଖ ଦେବାର ନାହିଁ । ଯେଝା ବାଟରେ ଯେଝେ ।

କମଳା କାନ୍ତ ବି ତାଙ୍କ ବାଟରେ ଥିଲେ ।

ପ୍ରଚୁର ମଦ ପିଉଥିଲେ ।

ସେମିତି ବି ପ୍ରଚୁର କବିତା ଲେଖୁଥିଲେ ।

ପ୍ରଚୁର ନିଃସଙ୍ଗତା ଭୋଗୁଥିଲେ ।

ତାଙ୍କ କବିତା ଥିଲା ସବୁବେଳେ ଅଲଗା ପ୍ରକାରର । ସାରା ପ୍ରଦେଶର ପୁଅଝିଅମାନେ ପ୍ରାୟ କମଳାକାନ୍ତଙ୍କ କବିତା ପ୍ରେମରେ ପଡ଼ି ଯାଇଥିଲେ । ତାଙ୍କ କବିତାର ଧାଡ଼ିସବୁକୁ ମୁଖସ୍ତ କରି ପୁଅଝିଅ ମାନେ ଏଣେ ତେଣେ ଗାଉଥିଲେ ।

ସତ କହଲେ ସୁପର ହିଟ୍ କବିତା ସବୁ ତାଙ୍କର । ଗୀତ ଗାଆନାରେ ପକ୍ଷୀ, ଦୁଃଖ ସହ କଥାବାର୍ତ୍ତା । କିଛି ବର୍ଷ ଧରି ଓଡ଼ିଆ କବିତା ଧାରାରେ ସେ ସତରେ ସୁପର ପୋଏଟ ଥିଲେ ।

ତାଙ୍କ କବିତାକୁ ଜଣେ ସହଜରେ ପାଶୋରି ପାରୁ ନଥିଲା । ସ୍ୱାଭିମାନରେ ତାଙ୍କ କବିତା ସତରେ ଫାଟି ପଡୁଥିଲା ।

ପୃଥିବୀକୁ ପିଠିକରି ରୁଷି ବସିବାର ବହୁ ଦୁଃଖ ନିବିଡ଼ ମୁହୂର୍ତ୍ତ କମଳାକାନ୍ତଙ୍କର କଟିଛି ।

ସେ ଲୋକ ଗୋଟାପଣେ ସେମିତି ଥିଲେ ।

ଷୋଳଅଣା କବି କବି ପରି ଲାଗୁଥିଲେ ।

ମଣିଷର ଦୁଃଖ ସବୁକୁ ବୁଝି ପାରୁଥିଲେ ।

ତାଙ୍କରି ଭିତରେ ବିବାକ ଗୋଟେ ଏକଲା ମଣିଷ ଗଜୁରି ଉଠୁଥିଲା ।

ସେ କାହାକୁ ବେଶୀ କିଛି ଖାତିର କରୁନଥିଲେ । ପାପ ପୁଣ୍ୟକୁ ଡରୁ ନଥିଲେ । ସବୁ ଛତ୍ରପତି ଓ ମାତବର ମାନଙ୍କଠାରୁ ଯଥା ସମ୍ଭବ ସେ ଦୂରରେ ରହୁଥିଲେ ।

ଏକା ଏକା ରହୁଥିଲେ ଗୋଟେ ମାଟିଘରେ ।

ଏକା ବସି ଖାଉଥିଲେ ପିଉଥିଲେ ।

ଏକା ଏକା ସବୁ ଋତୁର ରାତି ପହର ସବୁ କଟାଉଥିଲେ ।

ନିଜ ଗହୀରରେ ନିଜେ ବଞ୍ଚୁଥିଲେ ।

ଟିକିଏ ଏକ ଜିଦିଆ ଲୋକ ଥିଲେ ସେ । ଟିକିଏକୁ ଅଭିମାନରେ ଘୁଞ୍ଚି ବସୁଥିଲେ । ଘର ସଂସାର ଟିକିଏକୁ ବିସର୍ଜି ଦେଉଥିଲେ । ସତରେ ବଡ଼ ଅଦ୍ଭୁତ ଲୋକଟିଏ ଥିଲେ ସେ ।

ମେଞ୍ଚେ ଗୁଡ଼ାଖୁ ଧରି ପାଖ ଜୋରକୁ ଯାଉଥିଲେ ।

ଧାନ କ୍ଷେତର ସବୁଜିମା ଦେଖୁଥିଲେ ତ ଚଢ଼େଇର ଗୀତ ଶୁଣୁଥିଲେ ।

ଆପଣାର ମନ ଓ ଆତ୍ମାକୁ ବାରବାର ବିଷାଦଗ୍ରସ୍ତ କରୁଥିଲେ ।

ମାଟି, ପାଣି, ବର୍ଷାଜଳ, ମଉଛବ ରାତି ତାଙ୍କୁ ଆବିଷ୍ଟ କରି ରଖିଥିଲା ।

ତାଙ୍କୁ ଦେଖିଲେ, ତାଙ୍କ ସହିତ କଥାବାର୍ତ୍ତା କଲେ ସବୁବେଳେ ଗୋଟେ ବୋହେମିନିଆନ ପରି ଲାଗୁଥିଲେ । ତାଙ୍କ ପାଟିରୁ ପ୍ରେମକଥା ଦି'ପଦ ଶୁଣିଲେ ଭାରି ମତୁଆଲା ଲାଗେ । ପୁଣି ଗୋଟେ ପକ୍କା ବିପ୍ଳବୀ ପରି, କମ୍ରେଡ଼ ପରିସେ ବକ୍ତୃତା ଝାଡ଼ନ୍ତି ।

ପ୍ରେମ ପ୍ରେମ ସବୁ ବାଜେକଥା ବୋଲି କହନ୍ତି । ପ୍ରେମିକ ପ୍ରେମିକା ମାନଙ୍କୁ ବେଶ କଡ଼ା ଭାଷାରେ ବହେ ଶୋଧନ୍ତି । ବିସ୍ତର ପ୍ରେମ କଥା ଲେଖଥିବା କବିମାନଙ୍କୁ ମାତାଲ ବେହିସାବି ବୋଲି କହନ୍ତି ।

ବେଳେବେଳେ ମାଛ ପନିପରିବା କିଣିବା ପାଇଁ ସେ ଲେଙ୍କା କବିବାରିକ ଛକକୁ ଯାଆନ୍ତି । କିଛି ଆଟୋପ ନଥିଲା ତାଙ୍କର । '

ସେ ଆସକ୍ତ କବିଟି ଜହ୍ନରାତିରେ ପାଗଳ ହୋଇଯାଆନ୍ତି । ଜହ୍ନରାତି ହେଉ କି ଅନ୍ଧାର ରାତି ହେଉ ସବୁରାତି ତାଙ୍କୁ ଆବିଷ୍ଟ କରିଦିଏ ।

ଜୀବନରେ ଆଉ ତ କିଛି ସେ କରି ପାରିନଥିଲେ; ବରଂ ଭଲଜାଗାରେ ଘର ଖଣ୍ଡେ କରିଥିଲେ । ଭଲ କରି ଗଛପତ୍ର ଚାରିକଡ଼େ ଲଗାଇ ଥିଲେ । ଆମ୍ବ ପଣସ ସହିତ ପ୍ରଚୁର ନଡ଼ିଆ ଫଳୁଥିଲା ସେଠି । ଭାରି ଛାୟା ନିବିଡ଼ ଲାଗୁଥିଲା ବଗିଚା ଖଣ୍ଡିକ । ସର୍ବଦା ଶୋଭାବନ୍ତ ଦିଶୁଥିବା ସେ ଲେଙ୍କା କୁଟୀର । ବେଶ କିଛି ବର୍ଷଧରି ମୋ ସ୍ମୃତିର ଗୋଟେ ଲ୍ୟାଣ୍ଡସ୍କେପ୍ ଥିଲା ।

ବେଳେବେଳେ ଅଦା ହଳଦୀ ଲଗାଇବା ପାଇଁ ହୁଏତ ଦି'ଟା ଗେନ୍ଦୁଗଛ ପୋତି ଦେବା ପାଇଁ କଲମଛାଡ଼ି ସେ ଲେଙ୍କା କବି ବାଡ଼ି ହାଣୁଥିଲେ ।

କ'ଣ ତାଙ୍କୁ କହିବ । କେହି ବୁଝି ପାରନ୍ତିନି ସେ ଲେଙ୍କା କବିଙ୍କୁ । କେତେବେଳେ କବି ତ ପୁଣି କେତେବେଳେ ଧୂ ଧୂ ଖରାରେ ମାଟି ହାଣୁଥିବା ମୂଲିଆ । କେତେବେଳେ ମୌନ ଯତିରାଜ ତ ପୁଣି କେତେବେଳେ ଦିଓ୍ୱାନା ।

କାଳିଦାସୀ ବିଭୋର ପଣିଆ ତାଙ୍କ ଭିତରେ ଭର୍ତ୍ତି ହୋଇଥିଲା । ସେ ପ୍ରତିମୁହୂର୍ତ୍ତରେ ଫିଟି ପୁଡୁଥିଲେ ତ ଅହରହ ମୁକୁଳି ଯାଉଥିଲେ । ତାଙ୍କ ଆଗରେ କବିତା ବିରୋଧୀ ସେମିତି କିଛି ନୀତିବୋଧ ନଥିଲା । ନୀତିମାନ କି ମାନନୀୟ ହେବାର ବାସନା ବି ନଥିଲା ତାଙ୍କର କେତେବେଳେ ।

କବି ନିଜେ ଅଶେଷ ଉଲ୍ଲାସରେ ନିଜକୁ ଚିହ୍ନାଇଛନ୍ତି ।

'ମୁଁ କହୁଛି କମଳାକାନ୍ତ
ଗୋଟେ ସଚ୍ଚା କବି, ଗୋଟେ ଦିଅଣିଆ
ଅଚ଼ଳ ଦୋ ପଇସି, ଗୋଟେ ତିନି ଆଖିଆ
ନକଲି ଶମ୍ଭୂ ଯେ, ଖାଲି ଚମ, ଖାଲି ଢ଼ମ

x x x

କହୁଚି କମଳାକାନ୍ତ: କ'ଣ ନା କଟକିନି
ଛଟକିନୀ ଦେଖା ତୋ'ର·ବେଙ୍ଗଖିଆ ପାଟି
ଏବଂ ତମ୍‌ତମ୍ ଥମ୍ ଥମ୍ ଝମ୍ ଝମ୍ ଚାଲି ।
ନିର୍ବୋଧ କମଳାକାନ୍ତ । ଶଳା କବି
ଛେନା ଜାଣେ, ଗୁଡ଼ ଗିଳେ
ମୁଗ ସାଥେ, ଫିଟି ଯାଏ ମଗଜ ଶିକୁଳି ।'

(ଗୀତ ଗା'ନାରେ ପକ୍ଷୀ)

ଯଥେଚ୍ଛା ଆବେଗର କବି ସେ । କମଳାକାନ୍ତ ସବୁବେଳେ ନିଃସଙ୍କୋଚ । ସଂଭ୍ରମ, ଆବରଣ ଆଦି ତାଙ୍କ କାବ୍ୟ ଆବେଗର ପରିପନ୍ଥୀ । ସେ ସବୁବେଳେ ଅନମନୀୟ । ତାଙ୍କୁ କେହି କୌଣସି ଗତରେ ପକାଇ ପାରିନି ।

ଏମିତି ହେଉଛି ତାଙ୍କ ଉଚ୍ଚାରଣ—

'ପିଇଯାଅ ଦେଶୀ ବା ବିଦେଶୀ ସୁର ।
ପେଶିପାଶି ରକ୍ତର ହାଡ଼କୁ
କି ଘର, କି ଦ୍ୱାର-
କି ପୁଅ ଝିଅର ସଂସାର !
ନିଜପରି ଛତ୍ରପତି କିଏ ଅଛି ?
ଦୁଃଖ ଏବଂ ସୁଖର ଉର୍ଦ୍ଧ୍ୱର ।'

ଚଢ଼େଇ ପରି ଯେଇଠିକି ପାରେ ସେଇଠିକି ଉଡ଼ିଯାଇଛନ୍ତି ବାଟ ଅବାଟ ଜଳସ୍ଥଳ କିଛି ବାରଣ କରିନାହାନ୍ତି । ଉଡ଼ିବା ଯାହାର ଧର୍ମ, ଉଡ଼ିବା ଯାହାର ସାମର୍ଥ୍ୟ ଖାଲି ପଦ୍ମ ପୋଖରୀ ଆଉ ନୀଳନୀଳ ହ୍ରଦ କାହିଁକି ସେତ ଅନାବନା ନାଳ ନର୍ଦ୍ଦମା ଉପରେ ବି ଉଡ଼ିଯାଏ ।

ଜୀବନ ବଞ୍ଚୁଥିବା କମଳାକାନ୍ତ, ବାରିକ ଛକରେ ସବୁଦିନେ ଆତଯାତ ହେଉଥିବା କମଳାକାନ୍ତଙ୍କ ଠାରୁ କବି କମଳାକାନ୍ତ ଆଉ ଗୋଟେ ଅଲଗା ମଣିଷ ନୁହଁନ୍ତି । ତା'ଙ୍କର ଭାବ ଭାଷା କିଛି ବି ଗୋଟେ ଅଲଗା ହୋଇନି ।

କମଳାକାନ୍ତ ମଦ ପିଅନ୍ତୁ କି ନପିଅନ୍ତୁ ତାଙ୍କ ସଂସାର ପ୍ରତି ସେ ସତ୍ୟଶୀଳ ହୋଇଥିଲେ କି ନହୋଇଥିଲେ ସେ ତାଙ୍କ ବଞ୍ଚୁଥିବା ଜୀବନକୁ ନେଇ କିନ୍ତୁ ଭାରି ବିଭୋର ଥିଲେ । ମଦଭାଟି ଆଗରେ ଛିଡ଼ା ହୋଇଥାନ୍ତୁ କି ବାଟ ପାସେଞ୍ଜର ପରି ଗାଡ଼ି ମଟରରେ ଧାଉଁ ଥାଆନ୍ତୁ, ସମୁଦ୍ର କୂଳରେ ଥାଆନ୍ତୁ କି ଗରୁଡ଼ସ୍ତମ୍ଭ ସନ୍ନିଧାନେ ବିଜେ କରିଥାଆନ୍ତୁ ସବୁ ଠାରେ ସେହି ବିଭୋର ପଣିଆ ।

ଜୀବନକୁ ଜୀବନ ବୋଲି କହିବାରେ କିଛି ଆଦର୍ଶ କମଳାକାନ୍ତଙ୍କୁ ବାଟ ଦେଖାଇନି । ସେ ଚରମ ପୀଡ଼ା ଓ ବଞ୍ଚନା ଭିତରେ ବି ଜୀବନ ବଞ୍ଚିବାର ସ୍ପର୍ଦ୍ଧା ଦେଖାଇଛନ୍ତି ତ ତା ସହିତ ନାଗର ପଣିଆ ଦେଖାଇଛନ୍ତି ।

ଦୁଃଖରେ ଚିରକାଳ ବିଳାସ କରିଥିବା କବି କମଳାକାନ୍ତ ଗାଇଛନ୍ତି :

'ମୁଁ ମୋ ଦୁଃଖର ରାଜ୍ୟରେ ଏକଛତ୍ର ପତି,
ମୁଁ ମୋ ଖୋଜା ଲୋଡ଼ାର ତ୍ରିପାଦ ବାମନ ।
ମୁଁ ମୋ ନିଜସ୍ୱ କ୍ଷୋଭର ଅସ୍ତ୍ରାଗାରେ ଏକଲବ୍ୟ,
ମୁଁ ମୋ ନିଜଠାରେ ବନ୍ଦୀ ଏବଂ କୋଷ ମୁକତ୍ ଅସି ।'

(କି ଯାଏ ବଞ୍ଚେ ଅବା ମରେ: ଗୀତ ଗା'ନାରେ ପକ୍ଷୀ)

କଥିତ, କଞ୍ଚା ଭାଷାକୁ ଲେଖିବାରେ ଉଗ୍ର ଆଧୁନିକ କବି କମଳାକାନ୍ତ ଯେତେ ଅଣ ରୋମାଣ୍ଟିକ ବୋଲାଇଲେ ବି ତାଙ୍କ କବି ମନ ଉପରେ ରବୀନ୍ଦ୍ର ସ୍ପର୍ଶ ଏକ ପ୍ରଲେପ ହୋଇଥିଲା । ସେ ଦୁଃଖ, ବିଷାଦ ଓ ଏକାକୀତ୍ୱକୁ ଭଲ ପାଉଥିଲେ ସେହି ଭାବରେ ।

କମଳାକାନ୍ତ ଶାନ୍ତି ନିକେତନରୁ ଓଡ଼ିଆରେ ଏମ.ଏ. ଡିଗ୍ରୀ ଲାଭ କରିଥିଲେ । ଭାବ ବାଦୀ ସାହିତ୍ୟ ଛାତ୍ର ଥିଲେ । ତାଙ୍କ ଭାବ ଭାଷାରୁ ଶାନ୍ତିନିକେତନୀ ଢାଞ୍ଚା ବାରି ହୋଇପଡ଼େ ।

ଜୀବନ ବଞ୍ଚିବାକୁ ଜାହିର କରିବାରେ ସେ ଧର୍ମ, ନୀତି, ସମାଜ କେଉଁ ସଂହିତା ସହିତ ସାଲିସ କରିନାହାନ୍ତି ।

ଦୁଃଖ ଭିତରେ ଜୀବନ ତା'ଙ୍କୁ ଭାରି ସୁଆଦ ଲାଗିଛି । ଯେଉଁ ଗୀତ ଗାଇବା ପାଇଁ ହୁଏତ ସେ ଭାବିଥିଲେ ଏତେ ଭାଷା ଲେଖିବା ସତ୍ତ୍ୱେ ସେ ଗୀତ ସେ ଗାଇ ପାରିନାହାନ୍ତି ବୋଲି ଆଜି ସେ ଭାବିଛନ୍ତି ।

ଜୀବନ ଏମିତି ଅବ୍ୟକ୍ତ ହୋଇ ରହିଯାଏ । ଅନ୍ତିମ କଥାଟି ଅକୁହା ହୋଇ ରହିଯାଏ ବୋଧେ ।

କମଳାକାନ୍ତ ଭାରି ମରମୀ ଓ ଜୀବନର ଭାବ ପକ୍ଷ ଉପରେ ଭାରି ଗୁରୁତ୍ୱ ଦେଇଥିଲେ । ତାଙ୍କରି ଭାଷାରେ: 'ସାହିତ୍ୟ ପଢ଼ା ମୁଖ୍ୟତଃ ଜୀବନ ପ୍ରତି ଗଭୀର ରସବୋଧ ଓ ପ୍ରେମବୋଧରୁ ଜନ୍ମେ ଓ କ୍ରମଶଃ ସ୍ଥାନ କାଳ ପାତ୍ର ସଂପର୍କରୁ ପାକସିଦ୍ଧ ହୋଇ ବ୍ୟାପକ ଅର୍ଥରେ ଗୋଟେ ଉତ୍ତମ ବିଚାର ଓ ଚେତନା ଗଢ଼ିବାରେ ସାହାଯ୍ୟ କରେ । ଏପରିକି ଜୀବନ ଭିତରେ ଛପି ରହି ସବୁ ଜୀଅନ୍ତା ଅବବୋଧକୁ କୀଟଟିଏ ଭଳି ନଷ୍ଟ କରୁଥିବା ନାନା ବିରୋଧ, ବିଷମ ବିଡ଼ମ୍ବନା ବିରୋଧରେ ସାହିତ୍ୟ ପଢ଼ା, ସାହିତ୍ୟ ଚର୍ଚ୍ଚା ଓ ସାହିତ୍ୟ ସେବା ଲଢ଼େଇ କରି ଗୋଟେ ସ୍ୱଚ୍ଛ ଓ ଉଜ୍ଜ୍ୱଳ ମାନସିକତା ତିଆରି କରେ । ଭଲ ପାଠକ ମାତ୍ରକେ, ଜାଣିବେ, ଭଲ ଲେଖା ଓ ଲେଖକଙ୍କର ଅନ୍ତରଙ୍ଗତାର ରକ୍ଷା କବଚ । ପାଠକୀୟ ବିଶ୍ୱାସ ତା'ର ପ୍ରଥମ ସମ୍ମାନ ଓ ବିଶ୍ୱସ୍ତ, ନିଜସ୍ୱ ମାର୍ଜ୍ଜିତ ରୁଚିବୋଧ ତା'ର ଦ୍ୱିତୀୟ ବିଚାର ।' (ଲେଖକର ବିଶ୍ୱାସ-ପଦେ ଆଗକୁ-କମଳାକାନ୍ତ)

କମଳାକାନ୍ତ ନିଛକ ବିଭୋର ପଣିଆର କବି । ତାଙ୍କ କବି ଆତ୍ମା ଯେମିତି ଗୋଟେ ସମୁଦ୍ର, ଯେମିତି ଗୋଟେ ନିବିଡ଼ ଆକାଶ । ଯେଉଁଠି ସହସ୍ର ସହସ୍ର ସ୍ୱପ୍ନ ଓ ଖାଁ ଖାଁ ଶୂନ୍ୟତାର ଢେଉ ଉଠେ ।

କବି ମୋକ୍ଷ ପରମାର୍ଥ ଲୋଡ଼ି ନାହାନ୍ତି । ଗୋଟେ ନିର୍ବାଣ ତତ୍ତ୍ୱର ବିନ୍ଧାଣୀ ହେବା ପାଇଁ ସେମିତି ଗୋଟେ ଖାସ ଗୈରିକ ଅଭିଳାଷ ମଧ୍ୟ ପୋଷଣ କରି ନାହାନ୍ତି ।

ଜୀବନରେ ଛୋଟ ଛୋଟ ସ୍ୱପ୍ନସବୁ ଦେଖିବା ପାଇଁ ତାଙ୍କର ଭାରି ଇଚ୍ଛା । କାରଣ ସେହିସବୁ ଛୋଟ ଛୋଟ ସ୍ୱପ୍ନ ଜୀବନକୁ ମୋହାବିଷ୍ଟ କରି ରଖିଥାଏ । କମଳାକାନ୍ତ ଗାଇଛନ୍ତି :

'ଆସ ବସାଟିଏ
ବାନ୍ଧିବା, ଗୀତଟିଏ
ବୋଲିବା ସେଇଠି ।'

ସେଇଠି ଚଢ଼େଇମାନେ କିଚିରି ମିଚିର କରନ୍ତି କାଳକାଳ ଧରି ପାଂଶୁଳ ଦିଗ୍‌ବଳୟ ଆଉ ନିବିଡ଼ ବନସ୍ପତିର ନୀରବ ସ୍ଥିତି । ସେଇଠି ଏତେ ଭଲଲାଗେ ଗୀତ ପଦେ ଗାଇବା ପାଇଁ ଶବ୍ଦରେ ଶବ୍ଦରେ ତାଙ୍କର ଚିତ୍ରଟିଏ ତତ୍‌କ୍ଷଣାତ୍ ଆଙ୍କିଦେବା ପାଇଁ । ଜୀବନଟା ସେଇଠି ମତୁଆଲା ହୋଇ ଗଡ଼ିପଡ଼େ ।

କବି କମଳାକାନ୍ତ ଅଜସ୍ର ଆବେଦନ ଆହ୍ୱାନକୁ ପରୀକ୍ଷା କରିଛନ୍ତି । ନିଜ ଚାରିପାଖରେ ଏତେ କୋମଳତା, ଏତେ ସବୁଜ ନରମ ଘାସ ବଣ, ମୁଣ୍ଡ ଉପରେ ଏତେ ନୀଳ ଓ ସୁରଭିତ ଆକାଶ, ଚଢ଼େଇର ଏତେ ମିଠାଗୀତ— ସେ ସବୁକୁ ଛାଡ଼ି ମୃତ୍ୟୁ କବଳିତ ହେବା ପାଇଁ ସେ ଚାହିଁ ନାହାନ୍ତି ।

'କହରେ କହ, ଜୀବନ ଠାରୁ
ମରଣ କ'ଣ ଏମିତି ଭଲ ?
କଅଁଳ ଖରା, ନରମ ଘାସ,
ନେଳୀ ଆକାଶ ଲହଡ଼ା ଘାଟ
କିଚିରି ମିଚିରି ଚଢ଼େଇ ଗୀତ
ସତରେ ମିଛ ।'

ଗୋଟେ ସୁନ୍ଦର ଜୀବନ ବଞ୍ଚିବାର ଅଙ୍ଗୀକାର ବଦ୍ଧତା କବିକୁ ସ୍ୱପ୍ନ ଦେଖିବା ପାଇଁ ଏତେ ନରମ ମନ ଓ ହୃଦୟ ଦେଇଛି । ନିଜ ଜୀବନକୁ ସେ ପଙ୍କ ଅଥଚ ନିଜ ମନ ଓ ହୃଦୟକୁ ସେ ପଙ୍କଜ ଜ୍ଞାନ କରିଛନ୍ତି । ନିଜ ଭିତରର ସକଳ ପାର୍ଥିବ ଇତରତା ସଇତାନିକୁ ସେ ବୁଝି ପାରିଛନ୍ତି ।

ମାଟି ଉପରେ ପାଦ ଥାପି ସେ ମାଟିର ପରମ ସମ୍ମୋହନ ଓ ବିଶ୍ୱାସନୀୟତାକୁ ଅନୁଭବ କରିଛନ୍ତି । ଅଥଚ ତପସ୍ୟାରତ ସଂସାର ବିମୁଖୀ ଋଷି ପରି ପୁଣି ଅନାସକ୍ତ ଓ ଆକାଶମୁଖୀ ହୋଇଛନ୍ତି ।

ସବୁବେଳେ ତାଙ୍କ ଭିତରେ ଚେତନା ପୁରୁଷଟି ଦସ୍ତୋଭସ୍କୀୟ ମିଶ୍ର ଅନୁଭବର ମଣିଷ ପରି । ଟିକିଏକୁ ଭୋଗୀ ତ ପୁଣି ଟିକିଏକୁ ବିରାଗୀ । ଟିକିଏକୁ ବିଭୋର ହୋଇ ଯାଏତ ଆଉ ଟିକିଏକୁ ପୁଣି ଉଦାସ ଶ୍ରମଣ । ବିଷାଦର କବିତ ପୁଣି ବିଦ୍ରୋହର କବି ।

ପାରିଷଦ ବିହୀନ ବାଦଶାହା କବି କମଳାକାନ୍ତଙ୍କ ଉଦ୍‌ଘୋଷଣା ଶୁଣନ୍ତୁ:

'ମୁଁ ମୋ ଦୁଃଖର ରାଜ୍ୟରେ ଏକ ଛତ୍ରପତି,
ମୁଁ ମୋ, ଖୋଜାଲୋଡ଼ାର ତ୍ରିପଦ ବାମନ ।
ମୁଁ ମୋ ନିଜସ୍ୱ କ୍ଷୋଭର ଅସ୍ତ୍ରାଗାରେ ଏକଲବ୍ୟ
ମୁଁ ମୋ ନିଜଠାରେ ବନ୍ଦୀ ଏବଂ କୋଷମୁକ୍ତ ଅସି ।'

ଜଣେ ପକ୍‌କା ଜୀବନବାଦୀ କବି କମଳାକାନ୍ତ । ହେଲେ କମ ଧକା ଖାଇ ନାହାନ୍ତି ସେ ଜୀବନରେ ବାରବାର ସେ ଆଘାତ ଆଉ ଉପେକ୍ଷା ସହିଛନ୍ତି । ସେ ଆଘାତ ସବୁର ଉତ୍ସ ହେଉଛି ତାଙ୍କ ଜୀବନ କେନ୍ଦ୍ରର ନିକଟତମ ପରିଧି । ତାଙ୍କ ପତ୍ନୀ, ତାଙ୍କ ପରିବାର, ତାଙ୍କ ଜ୍ଞାତି ବନ୍ଧୁ କୁଟୁମ୍ବମାନେ ତାଙ୍କ ଭିତରର ଉଦ୍‌ବେଳନକୁ ଟିକିଏ ବି ବୁଝି ପାରିଲେନି ।

ପକ୍ଷୀର ଗୀତ ଓ ଜହ୍ନରାତିକୁ ଭଲ ପାଇବାର ତାଙ୍କ ଶ୍ରଦ୍ଧାନ୍ୱିତ ଆତ୍ମାକୁ ବି କେହି ଶ୍ରଦ୍ଧା କରି ନାହାନ୍ତି । ସାବାସ ଦେଇ ନାହାନ୍ତି । ସାହିତ୍ୟିକ ବନ୍ଧୁମାନେ ମଧ କେବେ ସଙ୍ଗୋଳି ଆସି ନାହାନ୍ତି କି ତାଙ୍କ ବିଭୋର ପଣିଆକୁ, ତାଙ୍କ ଶବ୍ଦ ବସାଣର ପାରଦର୍ଶିତାକୁ ତାରିଫ୍

କରି ନାହାନ୍ତି । ତାଙ୍କ ପଡ଼ିଶା ଜ୍ଞାତି ବନ୍ଧୁ ଟିକିଏ ଶ୍ରଦ୍ଧାପୂର୍ଣ୍ଣ ଭାବେ ତାଙ୍କ କବି ଚିତ୍ତର ବିଭୋର ପଣିଆକୁ ଦେଖି ନାହାନ୍ତ ।

ଜଣେ ସଚ୍ଚା କବି, ନିରୁତା ଆବେଗର ଭାବବାଦୀ ମଣିଷଟି ନିଗୃହିତ, ନିପୀଡ଼ିତ ହୋଇ ଯେମିତି ବଢ଼ିଛି ।

ଆମ ସାହିତ୍ୟ ଜଗତର ବର୍ବରୋଚିତ ଜାତିଆଣ ପ୍ରଥା ଓ ଯାବତୀୟ କପଟାଚାର ତାଙ୍କୁ ସବୁଠାରୁ ବେଶୀ ବାଧେ । ସେ ପାଇଁ ସବୁବେଳେ ସେ ଭାରି ଗରଗର ହୁଅନ୍ତି । ତା'ର କିଛି ଆଭାସ ତାଙ୍କ କବିତାରେ ଅବଶ୍ୟ ପରିଲକ୍ଷିତ । ଗୋଟେ ଘୃଣ୍ୟ ଜାତିଆଣ ମନୋଭାବ ବି ତାଙ୍କୁ ସାରା ଜୀବନ ଯେପରି ବ୍ୟଥିତ କରି ରଖିଥିଲା ।

ଓଡ଼ିଶା ପ୍ରଦେଶର ନୂଆ ପିଢ଼ିର କବିମାନେ କିନ୍ତୁ ତାଙ୍କର ଜୟ ଜୟକାର କରନ୍ତି । କମଳାକାନ୍ତଙ୍କ କବିତାକୁ ବାଛିବାଛି ପଢ଼ନ୍ତି । ତାଙ୍କ କବିତା ସବୁ ପୂଜା ବଜାରକୁ ସୁପରହିଟ୍ ହୋଇ ଆସିଥାଏ ଯେମିତି ।

କମଳାକାନ୍ତଙ୍କ କବିତା ସବୁ ବିଷାଦର ହେଉ ବା ଶୃଙ୍ଗାରର ହେଉ ତରୁଣ ତରୁଣୀମାନଙ୍କୁ ପ୍ରବୋଧିତ କରିଦିଏ ଶୁଦ୍ଧ ବିଭୋର ପଣିଆ ଭିତରେ ସୁନ୍ଦର ଜୀବନ ବଞ୍ଚିବା ପାଇଁ ସେମାନଙ୍କୁ ପ୍ରୋତ୍ସାହିତ କରିଥାଏ ।

କିଛି ସର୍ତ୍ତ ନରଖି ଜୀବନକୁ ଫିଙ୍ଗିଦେବାରେ କମଳାକାନ୍ତ ତାଙ୍କ ସମୟର ଜଣେ ପ୍ରବାଦପୁରୁଷ ଥିଲେ ଯେପରି । ଯେ ତାଙ୍କ ସଂସ୍ପର୍ଶରେ ଆସୁଥିଲା ଗୋଟେ କବିର ପ୍ରବୋଧିତ ଆତ୍ମା ସ୍ପର୍ଶରେ ମୁଗ୍ଧ ନହୋଇ ରହିପାରୁ ନଥିଲା ।

କମଳାକାନ୍ତଙ୍କ ପରି ନିରନ୍ତର ଦୁଃଖ ଭୋଗୁଥିବା ଲୋକମାନେ ସବୁ କେମିତି ଅଲଗା ପ୍ରକାରର ହୋଇ ଯାଆନ୍ତି । ସମାଜର ରୂଢ଼ିବାଦୀ ବିଚାର ପ୍ରତି ସେମାନଙ୍କର କୌଣସି ଭୟ ରହେ ନାହିଁ ।

ତାପରେ ସବୁକାଳର ଜ୍ଞାନୀ ଗୁଣୀ ଲୋକଙ୍କର ଅସହାୟତା । ସବୁକାଳର ସମାଜ ବି ଏମାନଙ୍କୁ ପ୍ରକୃତ ଆଦର କରିବା ପାଇଁ ବଡ଼ କୁଣ୍ଠିତ ହୋଇଥାଏ । ସମାଜ ସେମାନଙ୍କର ପାଇଁ ନିରାପତ୍ତାର ସ୍ଥଳୀ ହୋଇପାରେ ନାହିଁ ।

ପର ଆପଣା ଅନେକଙ୍କର ଅନାଦର ହତାଦର ଭିତରେ ଦୁଃଖ ପୀଡ଼ିତ କମଳାକାନ୍ତଙ୍କ କବିତ୍ୱ ଯେପରି ସିଦ୍ଧ ହୋଇଛି ।

ଶୋକ ଜର୍ଜ୍ଜରିତ ନହେଲେ ଶୃଙ୍ଗାର ଯେପରି ସୁବର୍ଣ୍ଣ ଦୀପ୍ତ ହୁଏନି, ଦୁଃଖରେ ନପଡ଼ିଲେ କେହି ସେମିତି ଶୁଦ୍ଧ ମଣିଷଟିଏ ହୁଏନି ।

ଶୁଦ୍ଧ ମଣିଷ ହେବା ପାଇଁ ପ୍ରଥମ ସର୍ତ୍ତ ହେଲା ଏକଲା ମଣିଷଟିଏ ହେବା । ଏକଲା ମଣିଷଟିଏ ନହେଲେ କାହାର ଆତ୍ମା କେବେ ନିର୍ମଳ ବି ହୋଇପାରେନି । କମଳାକାନ୍ତଙ୍କ କବିତାରେ ଏହି ଏକଲା ମଣିଷର ସ୍ୱର ଭାରି ପ୍ରାଣପୂର୍ଣ୍ଣ ଆଉ ନିବିଡ଼ ଲାଗେ ।

କମଳାକାନ୍ତଙ୍କ କବିତାର କାବ୍ୟପୁରୁଷଟି ସତରେ ଭାରି ଏକଲା । ଗହଳ ଚହଳ ଭିତରେ ବି ସେ ନିରୋଳାରେ ଚଳପ୍ରଚଳ କରେ । ଏଇଠି ଏ ପ୍ରସଙ୍ଗରେ ଜଗନ୍ନାଥ ଦାସଙ୍କ ଭାଗବତର ଏ କେତେ ଧାଡ଼ି ମନେପଡ଼େ ।

'ସବୁରି ସଙ୍ଗେ ସଙ୍ଗୀ ହେବ
ଅନ୍ତରେ ନିରୋଳେ ରହିବ ।
ତୋଡ଼ି ଯେସନେ ପଙ୍କେ ଥାଇ
ତା ଦେହେ ପଙ୍କ ନଲାଗଇ ।'

ଯେତେ ବସୁଧାମଣ୍ଡଳର କଥା କହିଲେ ବି କମଳାକାନ୍ତ ଭଦ୍ରଖିଆ ବୋଲି ବାରି ହୋଇ ପଡ଼ନ୍ତି । ସାଳନ୍ଦୀ ନଈ ତାଙ୍କର ଅତି ପ୍ରିୟ । ଭଦ୍ରକର ଖରା ଓ ବର୍ଷା କାଳ, ଭାରି ଶୁନଶାନ ଲାଗୁଥିବା ଛୁଟୀଦିନ, ଅଖିଣର ପାଣିଖରା, କବିତାକୁ ପ୍ରାଣ ଦେଇ ଭଲ ପାଇଥିବା ଲୋକ, ଭଦ୍ରକର ନଈବଢ଼ି ସବୁ ତାଙ୍କର ଅତି ପ୍ରିୟ ।

ଭଦ୍ରକର ପାଲୁଅ ଲଡୁ, ଇଲିଶିମାଛର ଝୋଳ କବି କମଳାକାନ୍ତଙ୍କ ଜିଭକୁ ଭଲ ଲାଗୁଥିଲା କି ନାହିଁ କେଜାଣି ? ଜାନପଦିକ ସୁଖର ଏ ଗୋଟେ ଗୋଟେ ଅଂଶ ।

ସୁଖକର ଜୀବନ ପାଇଁ ଏ ସବୁର ପ୍ରୟୋଜନୀୟତା ବି ଅଛି ।

କ'ଣ ପୁଣି ଜୀବନ ପାଇଁ ପ୍ରୟୋଜନ ଆଉ ପ୍ରୟୋଜନ ନୁହେଁ ତାଙ୍କ ଚେତନାରେ ତାହା ଅମୀମାଂସିତ ହୋଇ ରହିଛି । କମଳାକାନ୍ତ ବୋଧେ ତାଙ୍କ ପ୍ରିୟ ପାଠକମାନଙ୍କୁ ଏମିତି ପ୍ରଶ୍ନ ପଚାରିଛନ୍ତି । ଅନୁପାତ ଅନୁସାରେ ବୋଧେ ତାଙ୍କ କବିତାର ପ୍ରଶ୍ନ ବେଶୀ ଆଉ ଉତ୍ତର କମ୍ ?

ଜୀବନ ବଞ୍ଚିବା ଗୋଟେ ଛୁଆଖେଳ ଘର କି ?

ଜୀବନ ଗୋଟେ ନିଛକ ଭାବ ପ୍ରବଣତା କି ?

ବାଉଳା ହେବା ବୋଧେ ଜୀବନ । କିଏ ତା'ର ଉତ୍ତର ଦେବ ? କମଳାକାନ୍ତ ସେପାଇଁ ସବୁବେଳେ ଜୀବନର ଚାରିଛକରେ ଛିଡ଼ା ହୋଇଛନ୍ତି । କମଳାକାନ୍ତଙ୍କ ଭାବ ଭାଷା ଅତିମାତ୍ରାରେ ଯେମିତି ବ୍ୟକ୍ତିଗତ । ବେଳେବେଳେ ଭାବଗତ ମେଟାଫର୍ ଦ୍ୱାରା ଅନ୍ତର୍ମୁଖୀ ହୋଇ ପଡ଼ିଛି । ତାଙ୍କ ଭାଷା ଯଥେଷ୍ଟ ଭାବସଞ୍ଚରଣଶୀଳ । ପାଠକକୁ ସହଜରେ ଭସାଇନିଏ । ଭାବପରିଛନ୍ନତା ତଥା ଏକ ମୁଖୀନତାର ଗୁଣ ପୁଣି ତାଙ୍କ କବିତାରେ ବହୁତ କମ୍ ।

କମଳାକାନ୍ତଙ୍କ କବିତାର ଦୁଃଖାନାଭୂତି ଜୀବନକୁ ବୁଝିବା ପାଇଁ ଏକାନ୍ତ ଅର୍ଥପୂର୍ଣ୍ଣ । ଦୁଃଖ ବୋଧ ଜୀବନପ୍ରତି ତାଙ୍କର ସତ୍ୟଶୀଳତାକୁ ବଢ଼ାଇଛି । ଦୁଃଖ ତାଙ୍କୁ ଅଧିକ ମରମୀ କରିଛି ।

ସୁଖ ନୁହେଁ, ଜୀବନଭେଦୀ ହେଉଛି ଦୁଃଖ । କମଳାକାନ୍ତ ତାଙ୍କ ଅନେକାଂଶ କବିତାରେ ଜଣେ ବିପ୍ଳବୀ । ସେ ସହଜରେ ତାଙ୍କ ମନ ଆତ୍ମାକୁ ଅବଶ କରି ଦେଇ ନାହାନ୍ତି । ସ୍ଥୂଳ ପାର୍ଥିବତା ଓ ମଣିଷର ବିଷୟାସକ୍ତିକୁ ସେ ଜୀବନ ଭୋଗର ବାଧକ ବୋଲି ମନେ କରିଛନ୍ତି ।

ମଣିଷର କପଟାଚ଼ାର ତାଙ୍କୁ ସବୁଠାରୁ ବେଶୀ ବାଧିଛି । ଜାତି, ଜାତକ ପୌତ୍ତଳିକତା, ଆତ୍ମପ୍ରଚ଼ାର ଆଦିକୁ ସେ ଆଦୌ ପସନ୍ଦ କରି ନାହାନ୍ତି । ଅତି କଡ଼ା ଭାଷାରେ ମଣିଷର ରୁଢ଼ିବାଦୀ ବିଚାର ଧାରାକୁ କମଳାକାନ୍ତ ସମାଲୋଚନା କରିଛନ୍ତି ।

କମଳାକାନ୍ତ ଭାବପ୍ରବଣ କବି; ମାତ୍ର ବହୁଭାବରେ ହେତୁବାଦୀ ।

ସାରା ଜୀବନ ସେ ପ୍ରଚଣ୍ଡ ଅଭିମାନ ଭିତରେ ବଞ୍ଚିଥିଲେ । ଗୋଟେ ନିରୁତା କବିତ୍ୱ ତାଙ୍କୁ ଆଚ୍ଛନ୍ନ କରି ରଖିଥିଲା । ତାଙ୍କ ସାଂସାରିକ ଜୀବନ ବି ସେଥିରୁ ମୁକ୍ତ ହୋଇ ପାରିନଥିଲା ।

ଗୋଟେ ଜୀବନବାଦୀ ଭାବପ୍ରବଣତା ତାଙ୍କ ଭିତରେ ସବାର ହୋଇ ଥିଲା ଯେମିତି । ସେ କାନ ଡେରିଥିଲେ ଆଉ ଏକ ଜଗତର ଶବ୍ଦ ଶୁଣିବା ପାଇଁ । ସେମିତି ମନ ଦେଇଥିଲେ ଗୋଟେ ବୌଦ୍ଧିକ ଜୀବନର ବିଳାସକୁ । ତାଙ୍କର ବିଷାଦବୋଧ ବୋଧେ ସେହି ବୌଦ୍ଧିକ ବିଳାସର ଅଂଶ ।

ସେହି ବୌଦ୍ଧିକ ଦୁଃଖବାଦ ତାଙ୍କ ସାଧୁତାର ବିଷୟ ଥିଲା । ତାଙ୍କ ସୃଜନଶୀଳତାର ମୂଳଭାବ ଥିଲା ଦୁଃଖ । ଦୁଃଖବାଦୀ ତନ୍ମୟତା ବରଂ ତାଙ୍କ କବିତ୍ୱର ମୂଳ ବିଷୟ ଥିଲା । ଗୋଟେ ପ୍ରଚ଼ଣ୍ଡ ସୃଜନଶୀଳ ଆବେଗ ଭିତରେ ବଞ୍ଚିଥିବା ମଣିଷକୁ ପର ଆପଣା କେହି ସେପରି ଗ୍ରହଣ କରି ପାରିଲେନି । ଯଦି କେହି ଜଣେ ତାଙ୍କ ଭିତରେଥିବା ସେହି ଅତୁଳନୀୟ ସୃଜନଶୀଳ ମନ ଓ ଚେ଼ତନାକୁ ପ୍ରଣାମ କରି ପାରିଥାନ୍ତା ବୋ଼ଧହୁଏ ସେହି ହିଁ ତା଼ଙ୍କର ସନ୍ତାପହାରକ ହୋଇ ପାରିଥାନ୍ତା । ତାହା ହେଲା ନାହିଁ ଓ ତାଙ୍କ ଜୀବନଦୀପ ତୈଳ ଥିବା ସତ୍ତ୍ୱେ ଗୋଟେ ଅଭାବିତ ଅଦିନିଆ ଝଡ଼ପବନରେ ଲିଭିଗଲା ।

ଜଣେ ପ୍ରଚ଼ଣ୍ଡ ସ୍ୱାଭିମାନୀ ତଥା ଜୀବନବାଦୀ କବିର ଦୁଃଖଦ ମରଣ ତାଙ୍କର ଅଗଣିତ ପାଠକ ପାଠିକାଙ୍କୁ ସ୍ତବଧ କରି ଦେଲା ।

କେଜାଣି ଏଡେବଡ଼ ଜଗତରେ ତାଙ୍କର କେହି ଜଣେ ପ୍ରେମିକା ଥିଲା କି ନାହିଁ ? ତାଙ୍କ କବିତା ପ୍ରେମରେ ପଡ଼ିଥିବା କେହି ଜଣେ ମୁଗ୍ଧ ପାଠିକା ତାଙ୍କ ମରଣରେ ଲୁହ ଝରାଇଥିଲାକି ନାହିଁ ? ପର ଆପଣା ନିର୍ବିଶେଷରେ ଜଣକର ହେଲେବି ତାଙ୍କ ପ୍ରତି ଗଭୀର ଭଲ ପାଇବା ଥିଲାକି ନାହିଁ ?

ହେଲେ ଓଡ଼ିଶାର ଅଗଣିତ କବିତା ପ୍ରେମୀ କମଳାକାନ୍ତଙ୍କ ଦୁଃଖଦ ମୃତ୍ୟୁରେ ମ୍ରିୟମାଣ ହୋଇ ଯାଇଥିଲେ । ତାଙ୍କ ପ୍ରିୟ ଅତି ପରିଚ଼ିତ ସହର କମଳାକାନ୍ତଙ୍କ ମୃତ୍ୟୁରେ ହତବମ୍ବ ହୋଇଯାଇଥିଲା ।

କବି କାହିଁକି ଅଗ୍ନିଦଗ୍ଧ ହୋଇ ସକାଳ ହେବା ପୂର୍ବରୁ ଜୀବନ ହାରିଦେଲେ ତାହା ହୁଏତ ଅନୁଦ୍‌ଘାଟିତ ହୋଇ ରହିଗଲା । ହେଲେ ଜୀବନର ଯେଉଁ ସନ୍ତାପ ତାଙ୍କୁ ମରଣାନ୍ତକ ଭାବେ ଆଘାତ କଲା ତାହା ଆଉ କେଉଁ କବି ଜୀବନରେ ନ ଆସୁ । ଏତକ ଅନ୍ତତଃ ବହୁ କବିତା ପ୍ରେମୀ ପାଠକ ଅଭିଳାଷ ପୋଷଣ କରିଥିବେ ।

ଇଚ୍ଛାପୁର ବାରିକ ଛକରେ କିଏ ଆଉ ଏକା ଏକା ବାଦଶାହା ହୋଇ ଅନନ୍ୟ ଭଙ୍ଗୀରେ ଛିଡ଼ାହେବ ।

କିଏ ଆଉ ଆନନ୍ଦ ବିଭୋର ପକ୍ଷୀମାନଙ୍କୁ ଗୀତ ନଗାଇବା ପାଇଁ କହିବ ? କିଏ ଆଉ ମଣିଷର କପାଳରେ ଲେଖିଥିବା ଅନିବାର୍ଯ୍ୟ ଦୁଃଖମାନଙ୍କ ସହିତ କଥାବାର୍ତ୍ତା କରିବ ? କିଏ ଆଉ ଜୀବନ ଦୁଃଖ ପୂର୍ଣ୍ଣ ହେଲେବି ସୁଖ ଭୁଂଜିବା ପାଇଁ ମତୁଆଲା ହେବାକୁ ଶବ୍ଦରେ ଶବ୍ଦରେ ଡାକି ପାରିବ ?

କମଳାକାନ୍ତଙ୍କ ଅକାଳ ମୃତ୍ୟୁରେ ତାଙ୍କ ଶବ୍ଦରେ ବିଭୋର ହେଉଥିବା ତରୁଣମାନେ ଖାଲି ସିନା ଚିରକାଳକୁ ପ୍ରତ୍ୟୟ ହରାଇଲେ ଆଉ ଗୋଟେ କବିର ଆନନ୍ଦମୟ ପ୍ରତିମା ଚିରକାଳକୁ ହଜିଗଲା ।

ଶ୍ରାବଣର ବର୍ଷା ଦୁଲ ଦୁଲ ହେଲେ କମଳାକାନ୍ତ ପୋଖରୀ ହୁଡ଼ାରେ ଛିଡ଼ା ହୋଇ ଶବ୍ଦ ଖୋଜନ୍ତି । ମନ ପସନ୍ଦର ଶବ୍ଦ ।

ଭାଷାରେ ହେଉ କି ଭାବରେ ହେଉ କବି ସବୁବେଳେ ମଣିଷ ଭିତରେ ପ୍ରବଣତାକୁ ନେଇ ମତୁଆଲା ହୋଇଛନ୍ତି :

'ହାତ ପାଆନ୍ତା ନିଶ୍ଚିତ ଚକ୍ରାନ୍ତରୁ ଖସି ଯାଉଥିବା ଆଉ ଗୋଟେ ସୁନାର ମିରିଗ, ରଜତ ସମୟ ଯାହାର ଢୋକଟି ପାଇଁ ଅକୁଳାଣ ପଡ଼େ ସାରାଜୀବନ । ସାରା ସମୟ, ଅସରନ୍ତି ଜନ୍ମ-ମୃତ୍ୟୁ ନିର୍ଦ୍ଧୁମ ପରିହାସ ।'

ଶବ୍ଦ ସବୁ ଭାରି ଖେଳ ଖେଳୁଥିଲେ କମଳାକାନ୍ତଙ୍କ କଲମରେ । ତାଙ୍କ କବିତାର ଖୁବ୍ ଭିତରକୁ ଦେଖି ପାରିଲାଭଳି, ଆପଣା ଗହୀରର ଦୁଃଖକୁ ବତୁରାଇ ଦେଲାଭଳି ଭାଷା । ମାମୁଲି ଆଭିଧାନିକ ଅର୍ଥ ନୁହେଁ ଗୋଟେ ପ୍ରକାର ଉଲ୍ଲସିତ ଭାବ ସଞ୍ଚରଣଶୀଳତାକୁ ପାଠକ କମଳାକାନ୍ତଙ୍କ କବିତାରେ ଉପଲବ୍ଧି କରେ ।

ତାଙ୍କ ଡାଇରୀ କବିତାରୁ କିଛି ଧାଡ଼ି ଏଠାରେ ଉଲ୍ଲେଖ କରାଯାଇ ପାରେ ।

'ଧାଡ଼ିଏ ଲେଖିଦେଲା ବେଳେ

ଶବ୍ଦର କୃଷ୍ଣଚୂଡ଼ା ମୂଳେ ଗୋଟାଯାକ ମେଜାଜ

ଶୂନ ଚଢ଼େଇର ଛଇଲାଟ ଆକାଶ-ନା ଅଛି ।

ଖରାତରାର ନଈ ନା ଧୂଳି ଧୂଆଁର ସୁନ୍ଦର ସନ୍ଦେହ ।'

କମଳାକାନ୍ତ ମାତ୍ରାଧିକ ଅଭିମାନୀ । ସମସ୍ତଙ୍କଠାରୁ ପ୍ରୀତି ଝରିପଡୁ, ପୃଥିବୀ ଆହୁରି ପ୍ରେମମୟ ଆହୁରି ବିଶ୍ୱାସମୟ ହୋଇଯାଉ ଏହାହିଁ କମଳାକାନ୍ତଙ୍କ ପ୍ରାର୍ଥନା ।

ପ୍ରୀତି ବାଣ୍ଟୁଥିବା ଲୋକ କ୍ରୁର ହୋଇ ପାରିବନି । ଇତରଙ୍କ ପରି ଈର୍ଷା କରିବନି । ନିରନ୍ତର ଆପଣା ଢୋଲକୁ ପିଟି ପାରିବନି । ନିଜପାଇଁ ବିକଳ ହୋଇ ପ୍ରଶଂସା ଓ ପୁରସ୍କାର ଯୋଗାଡ଼ କରି ପାରିବନି ।

କମଳାକାନ୍ତଙ୍କ ସ୍ୱପ୍ନର ପୃଥିବୀ ଭାରି ସୁନ୍ଦର । ପ୍ରେମର ଛବିଳ ଗୋଲକଟିଏ ଯେପରି । ଯେଉଁଠି ସମସ୍ତଙ୍କ ପାଖକୁ ନିୟମିତ ବ୍ୟବଧାନରେ ପ୍ରୀତିଭରା ଚିଠି ସବୁ ଆସୁଥିବ । ସବୁ ଋତୁପରି ଲାଗୁଥିବ । ସବୁନାରୀ କୋମଳ ବଚନ କହୁଥିବେ ।

ସବୁଋତୁରେ ନଈ ପୋଖରୀରେ ପାଣି ଭର୍ତ୍ତି ହୋଇଥିବ ।

ସମସ୍ତେ ଆତଙ୍କ ମୁକ୍ତ ହୋଇଥିବେ ।

ଚଢ଼େଇ ଗୀତରେ ହେଉ ବା ମିତଣୀର ମିଠା କଥାରେ ହେଉ ସମସ୍ତେ ଯେପରି ବିମୋହିତ ହୋଇଯାଉଥିବେ ।

ଜୀବନ କାହାକୁ କଦାଞ୍ଚନ ଉଜୁଡ଼ା କ୍ଷେତପରି ଲାଗୁନଥିବ । ମେଞ୍ଚା ମେଞ୍ଚା ସ୍ୱପ୍ନ ସବୁ ମଣିଷର ମୁହଁକୁ ଆହୁରି ସୁନ୍ଦର କରି ଦେଇଥିବ । ସ୍ୱପ୍ନ ଦେଖିବା ଜୀବନ ବୋଲି ଯେମିତି ସେ ପୃଥିବୀରେ ସମସ୍ତେ ବୁଝିଥିବେ । କମଳାକାନ୍ତ ଥିଲେ, ଗୋଟିଏ କଥାରେ ହୀରାଖଣ୍ଡ ପରି ଶବ୍ଦ ବାଣ୍ଟୁଥିବା ସ୍ୱପ୍ନର ବଣିକ ।



# ପଲ୍ଲୀ ଆତ୍ମାର ଅନ୍ୟତମ
# ଅଗ୍ରଣୀ ଶାବ୍ଦିକ ଚିତ୍ରକର

ପ୍ରେମଚାନ୍ଦଙ୍କ ସମୟ ୧୮୮୦ରୁ ୧୯୩୬ ଖ୍ରୀଷ୍ଟାବ୍ଦ । କେବଳ ହିନ୍ଦି ସାହିତ୍ୟରେ ନୁହେଁ ଜାତୀୟ ସ୍ତରରେ ଜଣେ ବିଶିଷ୍ଟ କଥାଶିଳ୍ପୀ । ସମଗ୍ର ଭାରତୀୟ ସାହିତ୍ୟ କ୍ଷେତ୍ରରେ ପ୍ରେମଚାନ୍ଦ ବା ଧନପତରାୟଙ୍କ 'ଗୋଦାନ' ଏକ କ୍ଲାସିକ ଶ୍ରେଣୀର ଉପନ୍ୟାସ । କାରଣ ଏଥିରେ ବୃହତ୍ତର ଜାତୀୟ ଜୀବନର ଛବି ଅଙ୍କିତ ହୋଇଛି । ନିପୀଡ଼ିତ ନିମ୍ନବର୍ଗର ଭାରତୀୟ କୃଷକର ଜୀବନ ଛବି ଏଥିରେ ଅଙ୍କିତ ।

ତାଙ୍କର ଅସମାପ୍ତ ଉପନ୍ୟାସ 'ମଙ୍ଗଳସୂତ୍ର' ଓ ପ୍ରବନ୍ଧ 'ମହାଜନୀ ସଭ୍ୟତା' ପ୍ରେମଚାନ୍ଦଙ୍କ ଆଦର୍ଶବାଦୀ ଚିନ୍ତନର ଏକ ଏକ ନିଦର୍ଶନ । ପ୍ରତ୍ୟେକଙ୍କ ଲାଭଖୋର ମନୋବୃତ୍ତି ଆଧୁନିକ ସମାଜର ଏକ ବିଡ଼ମ୍ବନା ବୋଲି ସେ ମନେ କରିଛନ୍ତି । ଉତ୍ତମ ହେବା ଠାରୁ ବଡ଼ ସଂସ୍କାର ବଡ଼ ମନୁଷ୍ୟତା ଆଉକିଛି ନାହିଁ ବୋଲି ସେ ଯୁକ୍ତି ବାଢ଼ିଛନ୍ତି । ଉତ୍ତମ ମନୁଷ୍ୟ ସପକ୍ଷରେ ସେ ତାଙ୍କ ଶିଳ୍ପୀପ୍ରାଣର ସମର୍ଥନ ଯୋଗାଇ ଦେଇଛନ୍ତି ।

ମନୁଷ୍ୟ ସମାଜର ଏକାନ୍ତ ଅକଲ୍ୟାଣକର ଚରମ ଦୁଃସ୍ଥିତି ହେଇଛି ଶୋଷଣ । ଶୋଷଣ ହିଁ ଶ୍ରେଣୀ ସଂଘର୍ଷର କାରଣ; ଯାହା ଯେକୌଣସି ଅସମାନ ସମାଜରେ ହିଁ ସଂଘଟିତ ହୋଇଥାଏ । ପ୍ରେମଚାନ୍ଦ ଥିଲେ ସର୍ବୋତ୍ତମ ଭାବେ ଜଣେ ସମାଜବାଦୀ, ଯେଉଁଥି ପାଇଁ ସେ ଅଧିକ ସଂସ୍କାର ପ୍ରୟାସୀ ଥିଲେ । ମଣିଷ ଶୋଷଣ ହାବୁଡ଼ରେ ନପଡୁ ବୋଲି ସେ ସର୍ବାନ୍ତ କରଣରେହିଁ କାମନା କରୁଥିଲେ ।

ପ୍ରେମଚାନ୍ଦ ଗାନ୍ଧିବାଦୀ ଆଦର୍ଶ ଦ୍ୱାରା କେତେକାଂଶରେ ପ୍ରଭାବିତ ଥିଲେ । ଯେ କୌଣସି ଶୋଷଣ ମୁକ୍ତ ସମାଜ ହିଁ ପ୍ରକୃତରେ ବୈକୁଣ୍ଠ ସମାନ, ଯେଉଁଠି ଧନ, ଜାତି ପ୍ରତିପତ୍ତି କୌଣସି ନାମରେ ମଣିଷ ମଣିଷ ଭିତରେ ବ୍ୟବଧାନ ଓ ତଦ୍‌ଜନିତ ଘୃଣା ବୈରତା ନଥାଏ । ଏକ ଶୋଷଣ ମୁକ୍ତ ସମାଜରେ ବଞ୍ଚିବାର ସ୍ୱପ୍ନ ପ୍ରେମଚାନ୍ଦଙ୍କ ଶିଳ୍ପୀଜୀବନର ବଡ଼ ଆଦର୍ଶ ଥିଲା ।

ଗୋଟେ ମଣିଷର ବଡ଼ ସଇତାନି ହେଉଛି ଆଉ ଗୋଟେ ମଣିଷକୁ ଶୋଷଣ କରିବା । ଶୋଷଣଖୋର ମଣିଷ ପାଖରେ ଦୟା, ପ୍ରେମ ବୋଲି କିଛି ନଥାଏ । ମାନବୀୟ ଶ୍ରଦ୍ଧା ଓ ସମ୍ବେଦନଶୀଳତା ଠାରୁ ସେ ଦୂରରେ ଥାଏ । ଏକ କୃଷି ପ୍ରଧାନ, ଅସମାନ ଭାରତୀୟ ସମାଜରେ ଗୋଟେ କୃଷକ୍ର ପରିବାର କେମିତି ଶୋଷଣ ହାବୁଡେ ପଡ଼ିଛି ତା'ର ଏକ ମାର୍ମିକ ଚିତ୍ର ହେଉଛି ପ୍ରେମଚାନ୍ଦଙ୍କ ଗୋଦାନ । 'ସେବାସଦନ', 'ପ୍ରେମାଶ୍ରମ', 'ରଙ୍ଗଭୂମି', 'କାୟାକଳ୍ପ', 'ବରଦାନ', 'ନିରମଳା', 'ପ୍ରତିଜ୍ଞା', 'ଗବନ', 'କର୍ମଭୂମି', ଓ 'ଗୋଦାନ' ହେଉଛି ତାଙ୍କର ଏକ ଏକ ଉପନ୍ୟାସ ଯେଉଁଥିରେ ତାଙ୍କର ସ୍ୱପ୍ନ, ଯାବତୀୟ ସମାଜବାଦୀ ଖସଡ଼ା, ମାନବୀୟ ମୂଲ୍ୟ ବୋଧ ଓ ଆଦର୍ଶ ନାନାମତେ ରୂପାୟିତ ହୋଇଛି ।

ସମଗ୍ର ଜୀବନ ସେ ଅମାନବୀୟ ଅଶ୍ରଦ୍ଧା, ଅପ୍ରେମ ଓ ଅନୁଦାରତା ବିରୋଧରେ ଲଢ଼ିଛନ୍ତି । ତାଙ୍କ ନିଜ ଜୀବନ ସେମିତି ବହୁ ଦୃଷ୍ଟିରୁ କରୁଣ ଓ ଦୁଃଖ ଦାୟକ ଥିଲା । ଶୈଶବରେ ସେ ଦାରିଦ୍ର୍ୟର କଷଣ ପାଇଛନ୍ତି । ବିମାତାର ଅତ୍ୟାଚାର ସହିଛନ୍ତି । ପତ୍ନୀର କର୍କଶ ଭାଷଣ ଓ ଅପ୍ରେମର ତାଡ଼ନା ତାଙ୍କୁ ଭୋଗ କରିବାକୁ ପଡ଼ିଛି । ଅସଫଳ ଦାମ୍ପତ୍ୟ ଜୀବନର ପୀଡ଼ା ଠାରୁ ଅଧିକ ସନ୍ତାପ ଆଉ କ'ଣ ଥାଇପାରେ ଜୀବନରେ ? ଏ ସକଳ ଦୁଃସ୍ଥିତି ସତ୍ତ୍ୱେ କିନ୍ତୁ ପ୍ରେମଚାନ୍ଦ କେତେ ବେଳେ ବି ଆଦର୍ଶ ହୀନ ହୋଇ ନାହାନ୍ତି; ଯାହାର ପ୍ରତିବନ୍ଧ ଅଭିବ୍ୟକ୍ତି ଘଟିଛି ତାଙ୍କ ଉପନ୍ୟାସରେ ।

ପ୍ରେମଚାନ୍ଦଙ୍କ ଅଧିକାଂଶ ଗଳ୍ପ ଉପନ୍ୟାସରେ ବିକ୍ଷତ କୃଷକ ଜୀବନର ଇତିକଥାହିଁ ଅଭିଲିପିତ । ମଣିଷର ସହଜାତ ସାଧୁତା ହିଁ ତା' ଜୀବନକୁ ଗୌରବ ମଣ୍ଡିତ କରେ । ସେହି ଗୌରବ ଟିକକ ଯାହାର ନାହିଁ ସେ ଯେତେ ଧନ୍ୟଧାନ୍ୟ ଗୋପଲକ୍ଷ୍ମୀର ମଣିଷ ହେଉପଛେ ତା'ର କିଛି ହିଁ ନାହିଁ । ପ୍ରେମଚାନ୍ଦ ତାଙ୍କ ଗଳ୍ପ ଉପନ୍ୟାସରେ ଏହି ବକ୍ତବ୍ୟଟିକୁ ହିଁ ନାନାଭାବରେ କଥାୟିତ କରିଛନ୍ତି ।

ସାଂପ୍ରଦାୟିକ ଘୃଣା, ବୈରତା, ଅନ୍ଧ ଆସ୍ତିକତା, ପୌତ୍ତଳିକତା ଆଦି ଯାବତୀୟ ଅକଲ୍ୟାଣ ବିରୋଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି । ଶ୍ରଦ୍ଧା, ସଂସ୍କାର ପ୍ରୟାସର ବାସନା ଯେକୌଣସି ସତ ସାରସ୍ୱତ ସଙ୍କଳ୍ପର ମୂଳ ପ୍ରବଣତା; ଯାହା ସର୍ବୋତ୍ତମଭାବେ ପ୍ରେମଚାନ୍ଦଙ୍କ ନିକଟରେ ପରିଲକ୍ଷିତ । ଯୌତୁକ ପ୍ରଥା, ବାଲ୍ୟବିବାହ ଆଦି ଘୃଣିତ ସାମାଜିକ ବ୍ୟାଧି ବିରୋଧରେ ବି ସେ ଲେଖନୀ ଚଳାଇଛନ୍ତି । ସାମାଜିକ ନ୍ୟାୟ ବଞ୍ଚ ଓ ବିମାତା ପ୍ରସଙ୍ଗ ତାଙ୍କ ପ୍ରତି ସେ ତାଙ୍କ ଶିଳ୍ପୀ ଜୀବନର ନୈତିକ ସମର୍ଥନ ଯୋଗାଇ ଦେଇଛନ୍ତି । ମଧ୍ୟଯୁଗୀୟ ସାମନ୍ତବାଦୀ ଅନାଚାର ତାଙ୍କୁ ପ୍ରକୃତରେ ବ୍ୟଥିତ କରିଥିଲା ।

ସେଦିନ ହିନ୍ଦି ଗଳ୍ପ-ଉପନ୍ୟାସ ଯେତେବେଳେ ଅବିକଶିତ ଅବସ୍ଥାରେ ଥିଲା ପ୍ରେମଚାନ୍ଦଙ୍କ ଉପନ୍ୟାସ ରଚନା ଓ ତା'ର ଅସାମାନ୍ୟ ଲୋକପ୍ରିୟତା ସେତେବେଳେ ଏକାନ୍ତ ଉଲ୍ଲେଖ ଯୋଗ୍ୟ । କଳାର ସର୍ତ୍ତ ଭିତରେ ସେ ସାମାଜିକ ସମସ୍ୟା ସବୁକୁ ଉତ୍‌ଥାପନ କରିଛନ୍ତି । ତାଙ୍କର ସମାଜ ମଙ୍ଗଳକର ଭାବନା ତାଙ୍କ କଳାପକ୍ଷର ଏକ ବିଶିଷ୍ଟ ଦିଗ । ଗାନ୍ଧିଜୀଙ୍କ ସ୍ୱାଧୀନତା ଆନ୍ଦୋଳନ କାର୍ଯ୍ୟକ୍ରମ ସହିତ ନାନାବିଧ ସଂସ୍କାର ଯୋଜନାର ସୂଚନା ପ୍ରେମଚାନ୍ଦଙ୍କ ଉପନ୍ୟାସରେ ପରିଦୃଷ୍ଟ ।

ରବୀନ୍ଦ୍ର ନାଥ କିମ୍ବା ଶରତଚନ୍ଦ୍ରଙ୍କ ଉପନ୍ୟାସ ଠାରୁ ପ୍ରେମଚାନ୍ଦଙ୍କ ଉପନ୍ୟାସରେ ଅଧିକ ରାଜନୀତିକ ଚିତ୍ର ରହିଛି । ଏହା ତାଙ୍କ ଆଦର୍ଶବୋଧ, ବୈପ୍ଲବିକତା ତଥା ସଂସ୍କାର ପ୍ରୟାସର ନିଦର୍ଶନ ଅଧିକାଂଶ ବଙ୍ଗଳା ଉପନ୍ୟାସ ଯେତେବେଳେ ନାନାଭାବରେ ଟିକିଏ କୋମଳ ଓ ନରମ ସ୍ନେହ ପ୍ରେମର ବିଷୟକୁ ରୂପାୟିତ କରିଛି ପ୍ରେମଚାନ୍ଦଙ୍କ ଉପନ୍ୟାସ ସେତେବେଳେ ସଂସ୍କାର ଓ ବିପ୍ଲବର କଥା କହିଛି ।

ୟୁରୋପୀୟ ନବମାନବତା ବାଦୀ ଆନ୍ଦୋଳନ ପ୍ରତି ପ୍ରେମଚାନ୍ଦଙ୍କର କିଛି ଉନ୍ମୁଖତା ଥିଲା । ପାଶ୍ଚାତ୍ୟ ସାମାଜିକ ଅଭିବୃଦ୍ଧି ତାଙ୍କୁ କେତେକାଂଶରେ ପ୍ରଭାବିତ କରିଛି । ଶ୍ରମ

କରୁଥିବା ଶ୍ରମିକ ପ୍ରତି ସମାଜର ପରିବର୍ତ୍ତିତ ଦୃଷ୍ଟିଭଙ୍ଗୀ ୟୁରୋପୀୟ ନବଜାଗରଣର ଏକ ଅଂଶ ଥିଲା । କୃଷକ ଓ ଶ୍ରମିକ ମାନଙ୍କ ପ୍ରତି ସେହି ସ୍ୱୀକୃତି ଓ ସମ୍ମାନ ବୋଧର ଆଭାସ ପ୍ରେମଚାନ୍ଦଙ୍କ ଉପନ୍ୟାସରେ ରହିଛି ।

ପ୍ରେମଚାନ୍ଦଙ୍କ ଆଦର୍ଶ ଓ ବିଶ୍ୱାସ ତାଙ୍କ ଲେଖକୀୟ ପ୍ରବଣତାର ମୂଳ ପ୍ରୋତ୍ସାହନ; ଯାହାର ସ୍ପଷ୍ଟ ସୂଚନା ତାଙ୍କ ଶେଷ ଉପନ୍ୟାସ 'ମଙ୍ଗଳସୂତ୍ର'ରେ ରହିଛି । 'ମଙ୍ଗଳସୂତ୍ର'ର ନାୟକ ସତେ ଯେପରି ନିଜେ ପ୍ରେମଚାନ୍ଦ । ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆଦ୍ୟଭାଗ ଭାରତୀୟ ଜନ ଜାଗରଣର ସମୟ ଥିଲା । ସାମାଜିକ, ଅର୍ଥନୀତିକ ତଥା ରାଜନୀତିକ ସ୍ୱାଧୀନତା ଲାଭର ସ୍ୱପ୍ନ କୋଟି ଜନଗଣ ପ୍ରାଣକୁ ଉଦ୍‌ବେଳିତ କରୁଥିଲା । ପ୍ରେମଚାନ୍ଦଙ୍କ ସାହିତ୍ୟ ଥିଲା ସେହି ଉଦବେଳନର ଅନ୍ୟତମ ଉତ୍ସ ସେ ସରକାରୀ କର୍ମଚାରୀ ଥିଲେହେଁ ଭାରତୀୟ ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ କରି ଲେଖାଲେଖି କରୁଥିଲେ ।

ରାଜନୈତିକ ସଚେତନତା ସୃଷ୍ଟି କରିବା ପାଇଁ ସେ ଜନସାଧାରଣଙ୍କୁ ଆହ୍ୱାନ କରିଛନ୍ତି ଓ ଲେଖାଲେଖି ଭାବେ ବଲସେଭିକ୍ ଭାବାଦର୍ଶକୁ ଗ୍ରହଣ କରିଛନ୍ତି । ରୁଷିଆର ନିପୀଡ଼ିତ ଶ୍ରମିକ ଓ କୃଷକ ମାନଙ୍କ ସଂଗଠିତ ବିପ୍ଳବ ପ୍ରେମଚାନ୍ଦଙ୍କ ସୃଜନ ଆତ୍ମାକୁ ପ୍ରବୋଧିତ କରିଛି ।

ସେତେବେଳେ ପ୍ରେମଚାନ୍ଦ ଡିଗ୍ରୀ ଶିକ୍ଷା ଲାଭ କରିଥିବାରୁ ସେ ଭାରତ ତଥା ବିଶ୍ୱର ଚିନ୍ତା ଆନ୍ଦୋଳନ ସହିତ ପରିଚିତ ଥିଲେ । ଭାରତୀୟ ତଥା ବିଶ୍ୱର ବହୁ ଚିନ୍ତା ନାୟକଙ୍କ ଦର୍ଶନ ଓ ରାଜନୀତିକ ଦୃଷ୍ଟିଭଙ୍ଗୀ ତାଙ୍କୁ ପ୍ରଭାବିତ କରିଥିଲା । ସେପରି ସୁସ୍ଥ ଓ ଆଦର୍ଶବାଦୀ ସମାଜ ଗଠନର ସ୍ୱପ୍ନ ତାଙ୍କୁ ଅଧୀର କରିଥିଲା । ମାସାନୀ, ଗାରିବଲଡି, କାର୍ଲମାର୍କସ, ଲେନିନ ତଥା ରାମମୋହନ ରାୟ, ବିବେକାନନ୍ଦ, ଦୟାନନ୍ଦ, ବିଶିଷ୍ଟ ଭାରତୀୟ ମନିଷୀଙ୍କ ଦ୍ୱାରା ପ୍ରେମଚାନ୍ଦ ପ୍ରେରଣା ପ୍ରଣୋଦିତ ହୋଇଥିଲେ । ତାଙ୍କ ଉପନ୍ୟାସର ଚିତ୍ରଚରିତ୍ରରେ ଏହାର ପ୍ରତିଫଳନ ପରିଲକ୍ଷିତ ।

ପ୍ରେମଚାନ୍ଦ ତେଣୁ ଜନଗଣର ମନୋରଞ୍ଜନ ପାଇଁ କଥା ବା କାହାଣୀ ଲେଖକ କେବଳ ନଥିଲେ । ସେଥିଲେ ଯଥାର୍ଥରେ ଆଗାମୀ ଭାରତୀୟ ସମାଜ ପ୍ରତିଷ୍ଠା ପାଇଁ ସ୍ୱପ୍ନ ଦେଖୁଥିବା ଜଣେ ସଚ୍ଚା ସାରସ୍ୱତ ପୁରୁଷ ।

୧୯୨୧ରେ ଗାନ୍ଧିଜୀ ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତାନେଇ ଗୋରଖପୁର ଗଲେ । ପ୍ରେମଚାନ୍ଦ ଗାନ୍ଧିଜୀଙ୍କୁ ସାକ୍ଷାତ୍ କଲେ ଓ ତତ୍‌କ୍ଷଣାତ୍ ସରକାରୀ ଚାକିରୀରୁ ଇସ୍ତଫା ଦେଲେ । ବ୍ୟକ୍ତିଗତ ଜୀବନରେ ପ୍ରେମଚାନ୍ଦ ସ୍ୱାଭିମାନୀ, ଅତ୍ୟନ୍ତ ସମ୍ବେଦନଶୀଳ ଓ ମୁକ୍ତିକାମୀ ଥିଲେ । ଜାତୀୟ ସଂହତି, ସମାଜବାଦୀ ସଂଗଠନ, ସାଂପ୍ରଦାୟିକ ସଦ୍‌ଭାବ ଓ ମହାଭାରତୀୟ ଭାବନା ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଥିଲା ।

'ରଙ୍ଗଭୂମି' ଉପନ୍ୟାସରେ ପ୍ରେମଚାନ୍ଦଙ୍କ ଆଦର୍ଶବାଦୀ ଭାବଧାରା ଚିହ୍ନିତ । ଭାରତ ପରି ନବେଭାଗ ଗ୍ରାମାଞ୍ଚଳ ଥିବା ରାଷ୍ଟ୍ରର କଲ୍ୟାଣପାଇଁ ଗ୍ରାମାଞ୍ଚଳର ଉନ୍ନତି ଆବଶ୍ୟକ

ବୋଲି ଗାନ୍ଧିଜୀଙ୍କ ପରି ପ୍ରେମଚାନ୍ଦ ମଧ୍ୟ ଯୁକ୍ତି କରୁଥିଲେ । ଦାରିଦ୍ର୍ୟ ପୀଡ଼ିତ ଗ୍ରାମାଞ୍ଚଳର ଉନ୍ନତି ଗ୍ରାମବାସୀଙ୍କ ଦୁଃଖ ଦୁର୍ଦ୍ଦଶାର ଚିତ୍ର ପ୍ରେମଚାନ୍ଦ ତାଙ୍କ ଅଧିକାଂଶ ଉପନ୍ୟାସରେ ନେଇଛନ୍ତି । ମଦ୍ୟପାନ ପ୍ରତି ତାଙ୍କର ଅଶେଷ ଘୃଣାଥିଲା । ମଣିଷ ନିଶା କବଳିତ ନହେଉ ବୋଲି ପ୍ରେମଚାନ୍ଦ ସର୍ବାନ୍ତକରଣରେ କାମନା କରୁଥିଲେ ।

ମଣିଷକୁ ଶ୍ରଦ୍ଧା ଯୋଗାଇ ନେଇ ଗୋଟିଏ ସୁସ୍ଥ ସମାଜର ସ୍ୱପ୍ନ ଦେଖିବା ପରି ଏକ ଗୌରବାନ୍ୱିତ ଅଭିଳାଷ ତାଙ୍କ ଉପନ୍ୟାସର କଳାପକ୍ଷକୁ ନାନାମତେ ପୁଷ୍ଟ ଓ ଗତିଶୀଳ କରିଛି । ସାମାଜିକ ନ୍ୟାୟ ବଞ୍ଚିତ ଜନସାଧାରଣଙ୍କ ପାଇଁ ସେ ତାଙ୍କ ଶିଳ୍ପୀ ଜୀବନର ନୈତିକ ସମର୍ଥନ ଯୋଗାଇ ଦେଇଛନ୍ତି ।

ଭିକ୍ଟୋରିଆନ ଯୁଗର ଇଂରାଜୀ ଔପନ୍ୟାସିକ ମାନଙ୍କ ପରି ପ୍ରେମାଚାନ୍ଦ ତାଙ୍କ ଉପନ୍ୟାସରେ ମଣିଷ ଜୀବନକୁ ତ୍ରୁଟି ରହିତ କରିବା ପାଇଁ, ମଣିଷର ଚିତ୍ତ ଶୁଦ୍ଧିପାଇଁ ଅନେକ ନୀତି ଓ ଆଦର୍ଶର ବୟାନ କରିଛନ୍ତି ।

ପ୍ରେମଚାନ୍ଦଙ୍କ ପ୍ରସିଦ୍ଧ ଗୋଦାନ ଉପନ୍ୟାସ ପ୍ରକାଶନର ବହୁପୂର୍ବରୁ ଓଡ଼ିଶାର ଫକୀର ମୋହନ ଯେପରି ସଂସ୍କାର ବାଦୀ ଥିଲେ ସେହିପରି ନୀତି ଓ ଆଦର୍ଶବାଦୀ ଥିଲେ ସେହିପରି ନୀତି ଓ ଆର୍ଦଶବାଦୀ ମଧଭାବରେ ଫକୀର ମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସ ତା'ର ନିଦର୍ଶନ ।

ଅହିଂସା ପରି ଗାନ୍ଧିବାଦୀ ଆର୍ଦଶ ପ୍ରେମଚାନ୍ଦଙ୍କ ଶିଳ୍ପୀ ଜୀବନକୁ ନାନାଭାବରେ ଅନୁପ୍ରାଣିତ କରିଥିଲା । ଅଥଚ ଅନ୍ତରୀଣ ଓ ବୈପ୍ଳବିକ ଚେତନା ତାଙ୍କୁ ବହୁଭାବରେ ପ୍ରୋତ୍ସାହିତ କରିଥିଲା । ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ପ୍ରତିବାଦ, ପ୍ରତିରୋଧ କରିବାକୁ ସେ ଶ୍ରେୟ ମଣିଛନ୍ତି । 'ଗୋଦାନ' ଉପନ୍ୟାସର ଜଣେ ନିପୀଡ଼ିତ ନାୟକ; ଯାହାର ସାମଞ୍ଜସ୍ୟ ରହିଛି କର୍ମଭୂମି ଉପନ୍ୟାସ ସହିତ; ଯେଉଁମାନେ ଶୋଷଣ ହାବୁଡ଼ାରେ ପଡ଼ିଛନ୍ତି ।

ଶେଷ ଜୀବନ ପର୍ଯ୍ୟନ୍ତ ସେ ଏକ ମହତ ସ୍ପର୍ଦ୍ଧା ଓ ସ୍ୱାଭିମାନ ଭିତରେ ବଞ୍ଚିଛନ୍ତି । ଭାରତବର୍ଷ ପାଇଁ ଶୋଷଣମୁକ୍ତ ସମାଜର ସ୍ୱପ୍ନ ଦେଖିଛନ୍ତି । ମଣିଷ ମଣିଷ ମଧ୍ୟରେ ବିଶ୍ୱାସନୀୟ ତଥା ଶ୍ରଦ୍ଧାନ୍ୱିତ ସଂପର୍କର ସୌନ୍ଦର୍ଯ୍ୟକୁ କଳନା କରିଛନ୍ତି । ସେ କିନ୍ତୁ ଅଧିକ ଭଲ ମନ୍ଦ, ନ୍ୟାୟ ଅନ୍ୟାୟ ବିଷୟରେ ଜିଜ୍ଞାସା କରିଛନ୍ତି । ତାଙ୍କୁ ଇଶ୍ୱର କିଛି ଅଧିକ କୋମଳତା ତଥା ସହନଶୀଳତାର ଗୁଣ ଆଣି ଦେଇଥିଲେ । ମାତ୍ର ସାମାଜିକ ଅନ୍ୟାୟ ଓ ଶୋଷଣ ବିରୋଧରେ ସେ ତୀବ୍ର ପ୍ରତିବାଦର ସ୍ୱର ଉଠାଇଥିଲେ ।

ଭାରତୀୟ ଜନଗଣର ମୁକ୍ତିପାଇଁ ସେ ନିରନ୍ତର ସ୍ୱପ୍ନ ଦେଖି ଥିଲେ; ତାଙ୍କ ସାରସ୍ୱତ କୃତି ସବୁ ବସ୍ତୁତଃ ତାଙ୍କ ସ୍ୱପ୍ନର ସ୍ୱାକ୍ଷର ।

ପ୍ରେମଚାନ୍ଦ ଥିଲେ ଫକୀରମୋହନଙ୍କ ପରି ଜଣେ ବିଶିଷ୍ଟ ଜୀବନବାଦୀ ଶିଳ୍ପୀ ଓ ପର୍ଯ୍ୟବେକ୍ଷକ । ଲୋକ ଚରିତ୍ର ଓ ଜାଗତିକ ବୈଚିତ୍ର୍ୟକୁ ସେ ନାନାଭାବରେ ଚିତ୍ରଣ କରିଛନ୍ତି । ତାଙ୍କର ଆଦର୍ଶ ଥିଲା ଭଲମନ୍ଦ ପାପପୁଣ୍ୟ, ଜୟ ପରାଜୟକୁ ଅନାସକ୍ତ ଭାବେ ଲକ୍ଷ୍ୟ

କରିବା । ସବୁ କିଛି ଉର୍ଦ୍ଧ୍ୱରେ ସେ ମଣିଷର ବଞ୍ଚିରହିବାକୁ ସ୍ୱର୍ଗୀୟ ଓ ଗୌରବାନ୍ୱିତ ବିଷୟ ବୋଲି ମନେ କରିଛନ୍ତି ।

ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ସେ ଅଧିକ ସଂପର୍କ ଓ ସଂହତି ଚାହିଁ ଥିଲେ । ସେପାଇଁ ହନ୍ଦି ଓ ଉର୍ଦ୍ଦୁଭାଷାର ସମନ୍ୱୟ ସେ ଲୋଡ଼ିଥିଲେ । ଧର୍ମନିରପେକ୍ଷତା ଥିଲା ତାଙ୍କର ବିଶ୍ୱାସ ଓ ଆଚରଣର ବିଷୟ; ଯାହା ତାଙ୍କ ଗଳ୍ପ ଉପନ୍ୟାସରେ ପ୍ରତୀକିତ ହୋଇଛି । ସେ ରକ୍ଷଣଶୀଳ କି ରୂଢ଼ିବାଦୀ ଆଦୌ ନଥିଲେ । ଅନ୍ୟପକ୍ଷରେ ସେ ଉଗ୍ର ଆଧୁନିକ ବି ନଥିଲେ । ସେ ତ କଥା ସାହିତ୍ୟର ସମ୍ରାଟ ଥିଲେ । ତାବାଦ ସେ ଥିଲେ ଜଣେ ବିଶିଷ୍ଟ ବୁଦ୍ଧିବାଦୀ ଓ ପୁନରୁଥାନବାଦୀ ମଧ୍ୟ; ଯେ ଆର୍ଯ୍ୟ ଜୀବନର ଜ୍ଞାନ ଓ ନିରାଡମ୍ବରତାକୁ ଶ୍ରେୟ ବୋଲି ମନେ କରୁଥିଲେ । ପାଶ୍ଚାତ୍ୟ ଚାକଚକ୍ୟ ଓ 'ବାବୁ ସଭ୍ୟତା'କୁ ସେ ଆଦୌ ପସନ୍ଦ କରୁନଥିଲେ । ସେ ଜଣେ କର୍ମୀ ଓ ସାଧକଭାବେ ବିନୀତ ଜୀବନଯାପନ କରିଛନ୍ତି ।

ଦେଶ କିଛି କାଳ ଧରି ଦୁର୍ବହ ଦାମ୍ପତ୍ୟ ଜୀବନ, ଆର୍ଥିକ ଅସ୍ୱଚ୍ଛଳତା, ପ୍ରେସସ୍ଥାପନ ଜନିତ ନାନାଦି ସମସ୍ୟା ଓ ଅବ୍ୟବସ୍ଥା ପ୍ରେମଚାନ୍ଦଙ୍କ ଜୀବନକୁ ବିକ୍ଷୁବ୍ଧ କରି ଦେଇଥିଲା । ପ୍ରେସସ୍ଥାପନ କରି ତାଙ୍କ ସାରସ୍ୱତ ଜୀବନର ଗୋଟେ ପରିବ୍ୟାପ୍ତି ସେ ଚାହିଁଥିଲେ । ମାତ୍ର ସେହି ପ୍ରେସ ବସାଇବାକୁ ସେ ତାଙ୍କ ଜୀବନର ଗୋଟେ ବଡ଼ ପ୍ରମାଦ ବୋଲି ସ୍ୱୀକାର କରିଛନ୍ତି । ସେକାଳରେ ସେପାଇଁ ସେ ଦଶହଜାର ଟଙ୍କା ବ୍ୟୟ କରିଛନ୍ତିତ ଦୀର୍ଘ ଏଗାର ବର୍ଷଧରି ଅକ୍ଲାନ୍ତ ପରିଶ୍ରମ କରିଛନ୍ତି । ପ୍ରୁଫ୍ ଦେଖାରେ ଜୀବନର ମୂଲ୍ୟବାନ ସମୟ ନଷ୍ଟ କରିଛନ୍ତି । ପ୍ରତିବଦଳରେ ସେ କିଛି ପାଇନାହାନ୍ତି । ବରଂ ବିନା କାରଣରେ ଅନେକ ଶତ୍ରୁ ଅର୍ଜିଛନ୍ତି । ପ୍ରେମଚାନ୍ଦ ସେଥିପାଇଁ ଅନୁତପ୍ତ ହୋଇଛନ୍ତି । ତାଙ୍କ ଜୀବନରେ ଏହି ପ୍ରେସ ସ୍ଥାପନ ଘଟଣାଟି ଫକୀରମୋହନଙ୍କୁ ସ୍ୱତଃ ସ୍ମରଣକୁ ଆଣେ । ଫକୀରମୋହନ ସେହି ସାରସ୍ୱତ ଅଭିଳାଷ ଯୋଗୁଁ ପ୍ରେସ ସ୍ଥାପନକରି ନିଜକୁ ଅଭାବ ଓ ଜଂଜାଳଗ୍ରସ୍ତ କରିଛନ୍ତି ।

କିଛି ଅଧିକ ସାରସ୍ୱତ ଅଭିଳାଷ ଉଚ୍ଚ ଆକାଂକ୍ଷା ପ୍ରେମଚାନ୍ଦଙ୍କୁ ଚରମ ଆର୍ଥିକ ଦୁଃସ୍ଥିତ ଓ ଅସ୍ଥିରତା ଭିତରେ ପକାଇଥିଲା । ତାଙ୍କର ସମଗ୍ର ଜୀବନ କର୍ମ ବହୁଳ ଥିଲା । ପାରିବାରିକ ଦୁଃସ୍ଥିତି, ବିମାତାର ଅଶ୍ରଦ୍ଧା, ପତ୍ନୀଙ୍କ ରାଗ ରୋଷ ଓ ବିମୁଖତା ସତ୍ତ୍ୱେ ସେ ଏକ ସୁନ୍ଦରତର ଜୀବନ ଜିଇଁବା ପାଇଁ ସ୍ୱପ୍ନ ଦେଖୁଥିଲେ । ଆଳସ୍ୟ ତାଙ୍କୁ ସ୍ପର୍ଶ କରି ପାରିନଥିଲା । ଏମିତି ମହାନ କର୍ମଯୋଗୀ ଓ କଥାସମ୍ରାଟ ପ୍ରେମଚାନ୍ଦ ସ୍ୱନିର୍ବାଚିତ ଆଦର୍ଶ ପ୍ରତି ଅଙ୍ଗୀକାରବଦ୍ଧ ଥିଲେ । ତାଙ୍କ ରଚିତ ଗଳ୍ପ ଉପନ୍ୟାସ ଗୁଡ଼ିକରେ ସେହି ଆଦର୍ଶ, ସେହି ଶୁଭଙ୍କର ସ୍ୱପ୍ନହିଁ ବସ୍ତୁତଃ ପିଣ୍ଡିତ ହୋଇଛି ।



# କବିତ୍ୱ ମଳୟ ପବନ ମତ

କବିତ୍ୱ ସତରେ ମଳୟ ପବନ ପରି; ଯାହା ଦେହ ମନକୁ ଉଲ୍ଲସିତ କରିଦିଏ । ଶୁଦ୍ଧ କବିତ୍ୱ ଜୀବକୁ ପରମ କରିଦିଏ । ସ୍ୱପ୍ନହୀନ ଶୁଷ୍କଜୀବନକୁ ରସସିକ୍ତ କରିଦିଏ । କବିତ୍ୱର ସ୍ପର୍ଶ କାଳିସୀପରି ତାକୁ ରୋମାଞ୍ଚିତ କରିଦିଏ । ତା ଭିତରେ ଅପୂର୍ବ ଶିହରଣ ସୃଷ୍ଟିକରେ ।

ଉତ୍ତମ କବିତା ମଣିଷକୁ ସ୍ୱପ୍ନ ଦେଖାଏ । ଜଗତକୁ ଶ୍ରଦ୍ଧାରେ ଦେଖିବା ପାଇଁ ପ୍ରାଣକୁ ବିନୀତ କରିଦିଏ । ତାକୁ ଭାରି ଏକା ଏକା ଲାଗେ । ନିଜ ଭିତରେ ପ୍ରେମର ପାର୍ବଣୀ ଗୀତ ହୁଏ ।

କବିତ୍ୱ ଉଦୟ ହେଲେ ପକ୍ଷୀର ଗୀତଟିଏ ବି ତାକୁ ମୋହି ଦିଏ । ଯାହା ପ୍ରାଣରେ କବିତ୍ୱ ଉଦୟ ହୁଏ ତାଠାରୁ ସବୁ ଘୃଣା ଅଶ୍ରଦ୍ଧା ଦୂରକୁ ଘୁଞ୍ଚିଯାଏ । କୌଣସି ଭୟ ଭ୍ରାନ୍ତି ତାକୁ ଆଉ କାତର କରିଦିଏ ନାହିଁ ।

ଜଗତର ସବୁ ହେବାଠାରୁ କବିହେବା ସବୁଠୁ ବଡ଼ ସଫଳତା । କବିତ୍ୱ ଢଣକୁ ଦିବ୍ୟ ଜୀବନ ଆଡ଼େ ନେଇଯାଏ । ଆଲୋକର ପଥ ଦେଖାଏ । ଆଗକୁ ଯିବା ପାଇଁ ପ୍ରୋତ୍ସାହିତ କରେ ।

କବିତ୍ୱ ହୃଦୟକୁ ଭରିଦିଏ । ଆଉ କିଛି କଥା ହୃଦୟକୁ ସେପରି ଭରି ଦେଇ ପାରେନା । ପ୍ରାଣ ପୁଲକିତ ହୁଏ । ମନ ଓ ଆତ୍ମା ଉଲ୍ଲସିତ ହୁଏ । ସବୁ ମଣିଷଙ୍କ କଥା ସେତେବେଳେ ତାକୁ ମିତଣୀର ସୋହାଗଭରା ଗୀତପରି ଲାଗେ ।

ଆଗରେ ପଦ୍ମବଣ, ଚୈତ୍ର ଉଦ୍ୟାନ୍ ଦିଶି ହୋଇଯାଏ । କବିତ୍ୱର ସ୍ପର୍ଶ ପାଇଥିବା ମଣିଷଟି ଆହୁରି ପ୍ରେମୀ ଆହୁରି ମରମୀ ହୋଇଯାଏ ।

ସ୍ଥୂଳ କ୍ଳେଦାକ୍ତ ଜଗତଟି ତାକୁ କ୍ରମଶଃ ଦିବ୍ୟଲାଗେ । ନନ୍ଦନବନ ପରିଲାଗେ । ଏପରି ଭଲ ଲାଗିବା ହେଉଛି କବିତ୍ୱର ଏକ ବଡ଼ସ୍ପର୍ଶ । ଜୀବନ ତାକୁ ଭାରି ସ୍ୱପ୍ନିଳ ଲାଗିବ । ସବୁ କିଛି ମିଠା ଲାଗିବ । ତାର ଭାବନା ବଢ଼ିବ, ଶ୍ରଦ୍ଧା ବଢ଼ିବ । ତା ଭିତରୁ ନୈରାଶ୍ୟ ସବୁ ଦୂର ହୋଇଯିବ ।

ଜୀବନ ତାକୁ ପବିତ୍ର ଲାଗିବ । ତା ଅନ୍ତରରେ ସାଧୁତା ବଢ଼ିବ । ସେଇ କେବଳ ସେତେବେଳେ ଗାଇ ପାରିବ— ମୋ ଜୀବନ ପଛେ ନର୍କେ ପଡ଼ିଥାଉ-ଜଗତ ଉଦ୍ଧାର ହେଉ ।

କବିତା ହେଉଛି ମହା ମୁକ୍ତିର ପ୍ରସ୍ରବଣ । ଘୃଣାରେ ଭରି ଯାଇଥିବା କାହାରି ଆତ୍ମା କେବେ ମୁକ୍ତିର ସ୍ୱାଦ ପାଇ ପାରେନି । ଶବ୍ଦ ଯୋଡ଼ିଲେ କବିତା ହୁଏନି । ପୁରୁଣା ବିମ୍ବସବୁକୁ ଆଉଥରେ ସଜାଡ଼ି ଦେଲେ ତାହା କାହାକୁ ପ୍ରବୋଧିତ କରି ପାରେନି । କବିତାର ଯାଦୁକରି ଶକ୍ତି ଅଛି । ତଡ଼ିତ୍ ପରି ସେ ବିମୋହିତ କରିଦିଏ ।

ସେଦିନ ପଦବ୍ରଜରେ ସୁବର୍ଣ୍ଣରେଖା ନଦୀକୂଳରୁ ଆସି ଗରୁଡ଼ ସ୍ତମ୍ଭ ସନ୍ନିଧାନେ କବି ଦୀନକୃଷ୍ଣ ଦାସ ଯେଉଁ ଆର୍ତ୍ତତ୍ରାଣ ଚଉତିଶା ଲେଖିଥିଲେ ତାର ପ୍ରତିଟି ଶବ୍ଦ କେମିତି ଭାରି ଆଓ୍ୱାଜ କରେ । ପ୍ରବୋଧିତ କରିଦିଏ । ନିମିଷକେ ପ୍ରାଣକୁ ଶୋକ ଜର୍ଜ୍ଜରିତ କରିଦିଏ । ବିହ୍ୱଳ କରିଦିଏ ।

ସେହି ଶକ୍ତିମାନ କବି କେବଳ ଏମିତି ଗାଇପାରେ ଯେ,

"କବିତ୍ୱ ମଳୟ ପବନ ମତ
କରେ ରସିକରେ ପଲ୍ଲବିତ
କର୍କଶ ମୂର୍ଖ ଶୁଷ୍କ ତରୁ ମାତ୍ର
କେତେବେଳେ ହେଁ ନଧରଇ ପତ୍ର ।"

ପ୍ରାଣରେ ରସିକତା ନଥିଲେ ନାଁ ସେ କବି ହୋଇପାରିବନାଁ ପାଠକ ହୋଇ ପାରିବ । ସବୁକଥା ପାଇଁ ଗ୍ରହଣଶୀଳତା ଆବଶ୍ୟକ । ପ୍ରେମୀ ହୋଇ ନ ପାରିଲେ କବିତା ତାକୁ ନାନା ମଧୁର ଦ୍ରବ୍ୟର କୋଷ ବୋଲି ମନେ ହେବ ନାହିଁ । ଶବ୍ଦର ଜ୍ୟାମିତି ପରି ମନେ ହେବ କେବଳ ।

ଏ ସଂସାରରେ ଏମିତି ବହୁ ଅକବି ଅଛନ୍ତି ଈଶ୍ୱର ଯାହାଙ୍କୁ ଜାଣିଚାଏ କବି ହେବାର ଶକ୍ତି ଦେଇ ନାହାନ୍ତି । ଅଥଚ କେତେ ଭାବରେ ସେମାନେ ନିଜ କବିତ୍ୱର ଡିଣ୍ଡିମ ପିଟନ୍ତି । ଯେ ସବୁ ଲଗ୍ନକୁ ବାସନ୍ତିକ କରିଦିଏ ଶବ୍ଦରେ ଫୁଲ ଫୁଟାଏତ ବାରୁଦ ଗଦାରେ ନିଆଁ ଲଗାଇ ଦିଏ ।

କଂସେଇ କେବେ କବିତା ଲେଖି ପାରେନି । ଇତରତାରେ ଭରି ଯାଇଥିବା କୁତ୍ସିତ ମଣିଷଟେ କେବେ କବିତାର ଧାର ଉଧାର କରିପାରେନାହିଁ ।

ସଂସାରରେ ମନ୍ଦ ବୁଦ୍ଧିର ଇତର ଇତରାମାନେ ରସଭୁକ୍ତା ହୋଇ ପାରନ୍ତିନି । ସେମାନଙ୍କର ମନ ଆତ୍ମା ବଢ଼ିପାରେନାହିଁ । ସେମାନେ ପ୍ରେମ, ମୁକ୍ତି ବୀରତ୍ୱର କଥା କହି ପାରନ୍ତିନି ।

ଜୀବନକୁ ମଧୁରତର କରିବା ପାଇଁ ସେମାନଙ୍କର କିଛି ମହତ୍ ଚେଷ୍ଟା ନଥାଏ ।

ରାଜାଙ୍କ ନାମରେ ପଦ ଭଣିତା କରିବାକୁ ମନାକରିଦେଇଥିବା ଦୀନକୃଷ୍ଣ ଲେଖିଛନ୍ତି :

"କବିତ୍ୱ ରସ ଉତ୍ତମ ଗୋ କ୍ଷୀର
କରି ତହିଁ ସଙ୍ଗ ସ୍ନେହ ସାକର
କର୍ଣ୍ଣ ତୁଣ୍ଡରେ ଯେ କରଇ ପାନ
କିଛି ହିଁ ସ୍ୱାଦୁ ଜାଣଇ ସେ ଜନ
କୁତ୍ସିତ ଯା ବୁଦ୍ଧି
କରେ ତା ବଚନ ଆମ୍ବିଳ ଦଧି ।"

ଧନ୍ୟ ସେ କବି । ଯାହାର ଅନୁଭବ ଏତେ ନିବିଡ଼ ଆଉ ଘୋଷଣା ଏତେ ଦୃପ୍ତ । କବିସୁଧୀ ସ୍ୱାଦୀ ହୋଇଯାଏ । ରସ ବୁଝେ, ଶୃଙ୍ଗାର ବୁଝେ, ମାଧୁର୍ଯ୍ୟ ବୁଝେ । ଯେଉଁ ଅରସିକ ତାହା ଉପଲବ୍ଧି କରିପାରେ ନାହିଁ ସେ ହୁଏତ କାମକେଳି କୁଶଳା କାମିନୀ ସମକ୍ଷରେ ନପୁଂସକ ପରି ।

ପ୍ରାଣର ରସିକତା ସୃଜନଶୀଳତାକୁ ଅନବରତ ଭିଜାଇ ରଖିଥାଏ । ଜଣେ ସୁଧୀ ଓ ସମର୍ଥ ହୋଇଥିଲେ ଯାଇ ଶୃଙ୍ଗାରକୁ ସୁବର୍ଣ୍ଣ ଦୀପ୍ତ କରିପାରେ । କବିତ୍ୱ ହେଉଛି ଗୋଟେ ଅନନ୍ୟ ସଂବାହକ ଶକ୍ତି (Transformation); ଯାହା ପ୍ରାଣକୁ ସଞ୍ଚାଳିତ କରେ ।

କବିତ୍ୱ ବୌଦ୍ଧିକ ଜୀବନ ପ୍ରତି ଉନ୍ମୁଖତା ବଢ଼ାଏ । ଉଚ୍ଚତର ଉପଲବ୍ଧି ଆଡ଼କୁ ନେଇଯାଏ । ବିଶ୍ୱଦୃଷ୍ଟି ବଢ଼ାଏ । ନିରପେକ୍ଷତା ଦାନକରେ । କବିତ୍ୱ ବଳରେ ଅନନ୍ୟ ଜ୍ଞାନ ମଣ୍ଡଳ ଭିତରକୁ ସେ କ୍ରମଶଃ ପ୍ରବେଶ ଲାଭ କରେ । ସାଂସାରିକତା ତା'କୁ ଆଉ କବଳିତ କରିପାରେ ନାହିଁ ।

ପରିବ୍ରାଜକ ପରି ସେ ଭ୍ରମଣ କରେ । ବିଚିତ୍ର ଭୂଗୋଳର ଶୋଭା ସନ୍ଦର୍ଶନ କରେ । ଧର୍ମ ହେଉ ଭାଷା ହେଉ ଭୂଗୋଳ ହେଉ କୌଣସି ମଣ୍ଡଳରେ ସେ ଆଉ ବନ୍ଦୀ ହୋଇ ରହେ ନାହିଁ ।

କବିତ୍ୱ ତେଣୁ ଯୌବନର ଦୀପ୍ତି ପରି । ବସନ୍ତ ପବନ ପରି ଯାହା ଦେହ ମନକୁ ଉଲ୍ଲସିତ କରିଦିଏ । ଚତୁର୍ଦ୍ଦିଗ ତା'କୁ ବସନ୍ତ ଉଦ୍ୟାନ ପରି ଲାଗେ ।

ଅମର ସେ କବିତ୍ୱ । ଶାଶ୍ୱତ ସେ ସାରସ୍ୱତ । କୀର୍ତ୍ତିକୀଟ କାଳ ତା'କୁ କେବେ ବିଧ୍ୱଂସ କରି ଦେଇପାରେନା ।

ଇତିହାସର ପାଂଶୁଳ ଅନ୍ଧାର ଭିତରେ ଉଜ୍ଜୟିନୀ ସହର ଆଉ ମହାକବି କାଳିଦାସଙ୍କ ସାଧାରଣ ପରିଚୟ ହୁଏତ ହଜିଗଲାଣି । ମାତ୍ର ଏ ଯାବତ୍ କାଳିଦାସଙ୍କ କ୍ଷୁଦ୍ରତମ ଉପମାର ମୃତ୍ୟୁ ହୋଇନାହିଁ ।

କବିତ୍ୱ ଅବାଧ ପ୍ରୋତ୍ସାହନର ଶେଷହୀନ ବିସ୍ତାର । କାଳ ଗର୍ଭରେ କେତେ ସ୍ଲୋଗାନ୍ ମରିଯାଇଛି କେତେ ସଂଘ ବିନଷ୍ଟ ହୋଇଛି । ମାତ୍ର ଶୁଦ୍ଧ କବିତ୍ୱ ଓ ସତ୍‌କବିର ମୃତ୍ୟୁ ନାହିଁ ତାହା ମରଣଜୟୀ ।

ସେହି ମଳୟ ପବନବତ୍ ମୃତ୍ୟୁଞ୍ଜୟୀ କବିତ୍ୱ ଆମ ସମସ୍ତଙ୍କୁ ଅଭିମନ୍ତ୍ରିତ କରୁ ଓ କ୍ରମବର୍ଦ୍ଧିଷ୍ଣୁ ଅପସାଂସ୍କୃତିକ ଅଭିଘାତରୁ ରକ୍ଷା କରୁ । ଏହା ହିଁ ପ୍ରାର୍ଥନା ।

କବି ଯଥାର୍ଥରେ କବିତାର ପିତା । ସେ କବିତାର ଲାଳନ ପାଳନ କରେ । କବିତାକୁ କବି ପୁଷ୍ଟ ଓ ସୁଷମା ମଣ୍ଡିତ କରାଏ । କବିତାର ସାର୍ଥକତା ହେଉଛି ସେଥିପ୍ରତି ରସିକ ମାନଙ୍କର ସାଦର ଗ୍ରାହକତା ।

ଦୀନକୃଷ୍ଣ କବିତାର ଗ୍ରାହକତା କରୁଥିବା ସେହି ରସିକଜନ ମାନଙ୍କର ଜୟଗାନ କରିଛନ୍ତି । ମୂର୍ଖମାନେ କବିତାର ରସଭୋଗ କରିପାରନ୍ତି ନାହିଁ । ରସବୋଧ ଜଣକର ବଡ଼ ଯୋଗ୍ୟତା । ପଶୁମାନଙ୍କର ସୌନ୍ଦର୍ଯ୍ୟାନୁଭୂତି ନାହିଁକି ରସବୋଧ ନାହିଁ । ମୂର୍ଖମାନେ ସେହି ପଶୁସ୍ତରର ।

ଦୀନକୃଷ୍ଣ କବିତାର ସର୍ବକାଳୀନ ଗ୍ରାହକତା ବିଷୟରେ ଲେଖିଛନ୍ତି :

''କବିତା ବନିତା କବିତା ପିତା
କହିବା ଲୋକ ତାର-ଉପମାତା
କଲେ ତାକୁ ଭୋଗ ରସିକ ନେତା
ତେବେହେଁ ରହଇ ତା'ର ଯୋଗ୍ୟତା
କୁମତି ଗୁଆଁର
କେବଳ ବଇମାତ୍ର ଭାଇ ତା'ର୍ ।''



# ଜ୍ଞାନୀଲୋକର ଅସହାୟତା

ସବୁକାଳରେ ସବୁଠି ଅଧିକାଂଶ ଜ୍ଞାନୀଲୋକ ଦାରୁଣ ଅସହାୟତା ଭିତରକୁ ଫିଙ୍ଗି ହୋଇ ଯାଆନ୍ତି । ଗ୍ରାହକତା ଥିବା ଅନେକ ଲୋକଙ୍କୁ ଶ୍ରଦ୍ଧା ଓ ସ୍ୱୀକୃତି ସତ୍ତ୍ୱେ ଜ୍ଞାନୀଲୋକ ଜୀବନରେ ନୈରାଶ୍ୟ ଓ ଅସହାୟତା ବେଶୀ ।

ପ୍ରଥମ କଥା ହେଲା ଜ୍ଞାନୀଲୋକ କେବେ ଅବିଦ୍ୟା କରୁଥିବା ଅଧମମାନଙ୍କ ସହିତ ମିଶି ପାରେନି । ଅନ୍ୟ ପକ୍ଷରେ ଅସମର୍ଥ ଇତରମାନେ ବି ଜ୍ଞାନୀ ଲୋକଟିର ସ୍ୱପ୍ନ ଓ ସ୍ୱାଭିମାନକୁ ସହ୍ୟ କରି ପାରନ୍ତିନି, ଈର୍ଷା କରିଥାନ୍ତି ।

ଜ୍ଞାନୀ ଲୋକର ରାଶି ଅଲଗା । ସେ ଅଲଗା ଭାବରେ ସମୟ କଟାଏ । ଜ୍ଞାନ ରାଜ୍ୟରେ ନିମଜ୍ଜିତ ହୋଇ ରହେ । ତା'ର ଏହି ନିମଜ୍ଜିତ ହୋଇ ରହିବାକୁ ତା'ର ଜ୍ଞାତିବନ୍ଧୁମାନେ ବି ସହ୍ୟ କରି ପାରନ୍ତିନି ।

ଜ୍ଞାନୀ ଲୋକଟିର ଦୁଃଖ ସବୁବେଳେ ଅଲଗା ପ୍ରକାରର । ସୁଖ ବି ଅଲଗା ପ୍ରକାରର ।

ଅଶ୍ରଦ୍ଧା ଓ ଅବିଦ୍ୟା ରାଜୁତି କରୁଥିବା ପରିବେଶରେ ଜ୍ଞାନୀ ଲୋକମାନେ ସର୍ବଦା ଅଣନିଃଶ୍ୱାସୀ ହୋଇ ଯାଆନ୍ତି ।

ଅବିଦ୍ୟା ବିଦ୍ୟା ଉପରେ ସବାର ହୁଏ । ସଇତାନମାନେ ସହଜରେ ଜିତି ଯାଆନ୍ତି । ମାତ୍ର ଜ୍ଞାନୀଲୋକର ନିଜସ୍ୱ ସାଧୁତା ନିଜକୁ ରକ୍ଷା କରେ ।

ଆପଣା ଢୋଲ ଆପେ ପିଟିବାରୁ ନିବୃତ୍ତ ନହେଲେ ଜଣେ କେବେ ନିଜ ଅନ୍ତରକୁ ସୃଜନଶୀଳ କରି ରଖି ପାରିବନି । ସୃଜନଶୀଳ ଆତ୍ମାର ଅଧିକାରୀ ନିଷ୍କାମ ଭାବେ, ପ୍ରତିଦାନ ଆଶା ନରଖି ଆପଣାକୁ ବିତରଣ କରେ । ଜ୍ଞାନୀଲୋକ ଶ୍ରଦ୍ଧାରେ ଅନେକ ଶ୍ରଦ୍ଧାଶୀଳଙ୍କ ସହିତ ସଂଯୋଗିତ ହୁଏ । ସେ ଭେଦ ବାରେ ନାହିଁ । ଲାଭ ଲୋଭର ହିସାବ ରଖେନାହିଁ । ପ୍ରତିଶୋଧ ପରାୟଣ ହୁଏ ନାହିଁ ।

ଯେ କୌଣସି ଜ୍ଞାନୀଲୋକର ଆଉ ଦୁଇଟି ଭଲଗୁଣ ହେଲା ଗ୍ରାହକତା ଓ ପ୍ରେମିକତା । ଗ୍ରାହକତା ଏକ ଦୁର୍ଲ୍ଲଭ ଗୁଣ । ଈଶ୍ୱର ସମସ୍ତଙ୍କୁ ଏହି ଗ୍ରାହକତାର ଗୁଣ ଦେଇ ନଥାନ୍ତି ।

କାଳ କାଳ ଧରି ଏ ବ୍ରହ୍ମାଣ୍ଡରେ ସକାଳ ହେଉଛି । ମାତ୍ର ଗ୍ରାହକତା ନଥିଲେ ଜଣେ ସକାଳ ହେବାର ବିରଳ ରମଣୀୟତାକୁ ପ୍ରାଣରେ ଉପଲବ୍ଧି କରି ପାରିବନି । ବିଜନତାର ମୋହନ ବେଶ କେତେଜଣକୁ ଆବିଷ୍ଟ କରି ପାରୁଛି ? ଏହିପରି ଜୀବନର ଅନେକ କଥା । ଜଣକର ଅସହାୟତା ଓ ଅଶାନ୍ତି ବି ସୃଜନଶୀଳତା ପାଇଁ ସନ୍ନ୍ୟାସ ଓ ଅନାସକ୍ତିର ଅନୁଭବ ଆଣି ଦିଏ ।

ଜଣେ ଜ୍ଞାନୀଲୋକ ସଂସାରରେ ଏ ସବୁ ବିଷୟପ୍ରତି ସତ୍ୟଶୀଳ ହୋଇଥାଏ; ଅଥଚ ନିର୍ବୋଧ ଅସମର୍ଥମାନେ କେବଳ ନିରର୍ଥକ ଅସାର ବିଷୟର ଆୟୋଜନରେ ନିଜକୁ ଭାରି

ଚତୁର ଓ ପାରିବାର ମନେକରି ଥାଆନ୍ତି । ଜ୍ଞାନ ଓ ପାଣ୍ଡିତ୍ୟପ୍ରତି ସେମାନଙ୍କ ହୃଦୟରେ କିଛି ଭାବ ନଥାଏ ।

ନାନାଦି ଡିଗ୍ରୀ ଓ ପଦପଦବୀ ଯୋଗାଡ଼ରେ ସେଇ ବାମନମାନେ ସର୍ବଦା ବ୍ୟସ୍ତଥାନ୍ତି । ପ୍ରବଳ ଆଟୋପ ଓ ଅହମିକା ଭିତରେ ବଞ୍ଚିବାକୁ ସୁଖକର ମଣିଥାନ୍ତି । ସେମାନେ ନିହାତି ଅସ୍ଥିର ଶକ୍ତିକେନ୍ଦ୍ର (Power Block) ଚାରିକଡ଼େ ନିଜକୁ ବିଛାଡ଼ି ଦେଇଥାନ୍ତି । ରାଜନଙ୍କର ମିଛ ସ୍ତୁତିଗାନ କରିଥାନ୍ତି । ନିରନ୍ତର ଅନ୍ୟ ଶକ୍ତି କେନ୍ଦ୍ରଗୁଡ଼ିକର କଳନା କରୁଥାନ୍ତି ।

ରାଜାଙ୍କ ପାରିଷଦରେ ସେମାନେ କଟୁଆଳ ହୋଇଥାନ୍ତୁ ପଛେ ନିଜକୁ ଅତି ମାତ୍ରାରେ ଭାଗ୍ୟଧର ବୋଲି ମନେକରିଥାନ୍ତି । ସରଳ ଭାବରେ ବଞ୍ଚୁଥିବା ଜ୍ଞାନୀ ଲୋକମାନଙ୍କୁ ସେମାନେ ସର୍ବଦା ଭାଗ୍ୟହୀନ ବୋଲି ମନେକରନ୍ତି । ଉପହାସ କରନ୍ତି । ବେଳେ ବେଳେ କାରଣ ଅକାରଣରେ ଦୟା ବି ଦେଖାନ୍ତି ।

ଜ୍ଞାନୀଲୋକଟି ବିଚ୍ରା ନିରନ୍ତର ତା କାମରେ ବ୍ୟସ୍ତଥାଏ । ଟଙ୍କା ସୁନା ଗୋଟାଇବାରେ ନୁହେଁ । ବିଶ୍ୱବ୍ରହ୍ମାଣ୍ଡକୁ ଆପଣା ପ୍ରାଣରେ ଅନୁଭବ କରିବାରେ ସେ ବ୍ୟସ୍ତଥାଏ ।

ଶୈଶବକୁ, ବନସ୍ତର ଘନଘୋର ବର୍ଷାକାଳକୁ, ମଉଛବ ରାତିର ବାଜାଗୀତକୁ, ଆପଣାର କାରୁଣ୍ୟ ଆଉ ବିଷାଦକୁ, ଆପଣାର ମୋହ, ବନ୍ଧନ ଓ ଶୋକ ଜର୍ଜରିତ ପ୍ରାଣକୁ ଜ୍ଞାନୀଲୋକଟେ ଥୟଧରି ଅନୁଭବ କରିବା ପାଇଁ ବାହାରେ ।

ଉଦାସପଣିଆର ସର୍ବୋତ୍ତମ କବିତ୍ୱ ତା ଦେହ ମନକୁ ବେଢ଼ିଦିଏ । ସେ କ୍ରମଶଃ ଆହୁରି ଉଦାସ ହୋଇଯାଏ । ଗୋଟେ ଏକଲା ମଣିଷର ଶୁଦ୍ଧ କାରୁଣ୍ୟ ତା'କୁ ମୋହିଦିଏ । ସେ ସମସ୍ତଙ୍କ ସହିତ ସାଂସାରିକ ସମସ୍ୟାସବୁକୁ ନେଇ ସେମିତି ବେଶୀ କିଛି କଥାବାର୍ତ୍ତା କରେନାହିଁ ! ଆପଣା ସ୍ୱପ୍ନ, ଆପଣା କଳ୍ପନାରେ ଆପେ ନିମଜ୍ଜିତ ହୋଇ ରହିବାକୁ ଭଲପାଏ ।

ଜ୍ଞାନୀଲୋକର ପାର୍ଥିବ ଅଭିଳାଷ ବୋଲି ଖାସ କିଛି ନଥାଏ । ଜ୍ଞାନର ମହନୀୟତା ତାଙ୍କ ଜୀବନରେ ବଡ଼କଥା ହୋଇଥାଏ ।

ଜ୍ଞାନୀଲୋକ ତାତ୍କାଳିକ ସୁଖ ପାଇଁ କେବେ ବିକଳ ହୁଏନାହିଁ । ତାତ୍କାଳିକ ସୁଖ ମଣିଷର ସର୍ବନାଶ କରେ । ତା'କୁ ଶାଶ୍ୱତ ସହିତ ମିଶିବାକୁ ଦିଏନାହିଁ ।

ଏ ପୃଥିବୀ କେତେ ସୁନ୍ଦର, ଏ ବ୍ରହ୍ମାଣ୍ଡରେ କେଡ଼େ ଦୁର୍ଲଭ ମଣିଷଜୀବନ ସେକଥା ଅସାର କଥାରେ ମାତିଥିବା ସେ ଅପଣ୍ଡିତ ଅଶିକ୍ଷିତମାନେ ଆଦୌ ବୁଝି ପାରନ୍ତିନି । ଉଦାସପଣିଆ ବୋଲି ସେମାନଙ୍କର କିଛି ନଥାଏ । ଗୋଟେ ଉନ୍ମତ୍ତ ଜୀବନ ସେମାନଙ୍କୁ ସଦାସର୍ବଦା କବଳିତ କରି ରଖିଥାଏ ।

ଜ୍ଞାନୀଲୋକର ବିନୟ ସହିତ ତା ଉଦାସପଣିଆର ସମ୍ପର୍କ ଭାରି ନିବିଡ଼ । କୁହାଳିଆ ଉନ୍ମତ୍ତମାନେ ପୃଥିବୀର ଚାରୁ ସଙ୍ଗୀତ ଶୁଣି ପାରନ୍ତିନି । ନୀରବ ନହେଲେ ମୌନ ନହେଲେ ଜଣେ ବ୍ରହ୍ମାଣ୍ଡକୁ ବି ନିବିଡ଼ଭାବେ ଉପଲବ୍ଧି କରିପାରେ ନାହିଁ ।

ଜ୍ଞାନୀଲୋକର ଏହି ମୌନତା ଓ ବିନୀତ ହେବାର ବିଷୟକୁ କେହି ଜଣେ ଯଦି ତା'ର ନିଷ୍କ୍ରିୟତା ଅବା ଅସାମର୍ଥ୍ୟ ବୋଲି ଜ୍ଞାନ କରେ ତା'ହେଲେ ସବୁ ସଂଶୟ ଏଇଠି ହିଁ ସୃଷ୍ଟି ହୁଏ ।

ସୃଜନଶୀଳ ମନ ନେଇ ବଞ୍ଚୁଥିବା ଜଣେ କଳାକାର ଅଧିକାଂଶରେ ଉଦାସ ଜୀବନ ବଞ୍ଚେ । ଗହଳ ଚହଳ ତା'କୁ ଶାନ୍ତି ଦେଇପାରେ ନାହିଁ । ସାମାଜିକ ଉତ୍ସବମୟତା ଠାରୁ ସେ ଦୂରରେ ରହିବାକୁ ଚେଷ୍ଟା କରେ ।

ଅନେକ ସାମାଜିକ ପର୍ବପର୍ବାଣୀ ସମଷ୍ଟିର କୋଳାହଳ ଓ କ୍ରୁରତା ସୃଷ୍ଟି କରେ । ସୃଜନଶୀଳ ମନ ଓ ଅନ୍ତର ସେଥିରେ ପୂର୍ଣ୍ଣତା ପାଏ ନାହିଁ । ସମଷ୍ଟିଠାରୁ ଦୂରରେ ରହିବା ସବୁବେଳେ ଅସାମାଜିକତା ନୁହେଁ ।

ମହତ୍ତର ଜୀବନପାଇଁ ବେଶ ଏକାକୀତ୍ୱ ଦରକାର । ଅନ୍ତରରେ ଏକଲା ନହେଲେ ସୃଜନଶୀଳତା ବଢ଼େନାହିଁ । ଅସଲ କବିତ୍ୱର ଉଦୟ ହୁଏ ନାହିଁ । ଜଣେ କବି କଳାକାର ସ୍ୱେଚ୍ଛାକୃତ ଭାବେ ବିଷାଦକୁ ବରଣ କରେ । ଆପଣା ଦୁଃଖକୁ ଭଲପାଏ । ଆପଣା ଉଦାସପଣିଆ ଭିତରେ ବଞ୍ଚେ । ସେଇଥିରେ ହିଁ ବିଳାସ କରେ ।

ମୂଢ଼ମାନେ ଜମା ଜଣେ ଶିଳ୍ପୀର ସୃଜନଶୀଳ ପ୍ରାଣକୁ ବୁଝି ପାରନ୍ତି ନାହିଁ । କଳା କବିତାପ୍ରତି ଉତ୍ସୁକ ସେ ଜ୍ଞାନୀଲୋକଟିକୁ ସ୍ଥୂଳଜୀବନ ବଞ୍ଚୁଥିବା ସମାଜର ଅନେକ ଲୋକ ନ୍ୟୁନ ମନେକରନ୍ତି । ଏମିତି ନ୍ୟୁନ ମନେକରି ସେ ପଣ୍ଡିତମନ୍ୟ ଇତରମାନେ ବହୁତ ଆତ୍ମପ୍ରସାଦ ଅନୁଭବ କରନ୍ତି । ସେଇ ଇତରମାନେ ସବୁଠି ସବୁବେଳେ ବଡ଼ ବାବଦୁକ ହୋଇଥାନ୍ତି ।

ଲେଖିବା, ପଢ଼ିବା ଏକ ଅନୁରାଗମୟ ନିମଜ୍ଜମାନତାର ଅପେକ୍ଷା ରଖେ । ତାହା ସଂସାର କର୍ମରେ ଏତେ ଲାଗେ ନାହିଁ । ତାହା ଆଦୌ ବ୍ୟାବହାରିକ ନୁହେଁ କି ବାଣିଜ୍ୟିକ ନୁହେଁ ।

ସେହି ଅନୁରାଗ, ସେହି ନିମଜ୍ଜିତ ହେବାର ଉପଲବ୍ଧି ଦେଇ କେହି ପତ୍ନୀକୁ ସନ୍ତୁଷ୍ଟ କରି ପାରିବନି କି ଧନଲୋଭୀ ଜ୍ଞାତିବନ୍ଧୁଙ୍କୁ ମଧ୍ୟ ।

ନୀଚ୍ ଲୋକମାନଙ୍କ ପରି ଜ୍ଞାନୀ ଲୋକମାନେ କାହାର ମିଛ ପ୍ରଶଂସା କରି ପାରନ୍ତିନି । କାହାର ଅଯଥା ଗୁଣ କୀର୍ତ୍ତନ କରି ପାରନ୍ତିନି । କାହାକୁ ଦିନରାତି ବେଢ଼ି ବସି ପାରନ୍ତିନି ।

ଜ୍ଞାନୀଲୋକର ମନ ଓ ହୃଦୟ ସବୁବେଳେ ଭାବରେ ତରଙ୍ଗାୟିତ ହେଉଥାଏ । ପର୍ବତ ପ୍ରମାଣେ, ସ୍ୱାଭିମାନ ସେମାନଙ୍କ ଭିତରେ ଥାଏ । ସେମାନଙ୍କୁ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ହେଉଛି ସେହି ସ୍ୱାଭିମାନ ।

ଏ ସଂସାରରେ ଯେମିତି ମିଛ ପ୍ରତିଶ୍ରୁତି ଦେଇଥିବା ଲୋକମାନଙ୍କ ସଂଖ୍ୟା ବହୁତ ବେଶୀ ସେମିତି ଶାସ୍ତ୍ର ସାହିତ୍ୟପ୍ରତି ଅନୁରକ୍ତ ନହେଉଥିବା ଲୋକମାନଙ୍କ ସଂଖ୍ୟା ଆହୁରି ବେଶୀ ।

ଇତରମାନେ ସବୁ ତୀକ୍ଷ୍ଣତା, ସବୁ ମାର୍ମିକତାକୁ ନଷ୍ଟ କରିପକାନ୍ତି । କଳା ମାର୍ଗରେ ଥିବା ଲୋକମାନଙ୍କ ବିଚାର ବା ପ୍ରବଣତାକୁ ଆଦୌ ବୁଝି ପାରନ୍ତି ନାହିଁ ।

ଜ୍ଞାନୀ ଲୋକଟିକୁ ଆଦୌ କେହି ସହ୍ୟ କରିପାରନ୍ତି ନାହିଁ ମଧ୍ୟ । ତା'କୁ କେହି ବେଶୀ ଖାସ ଲୋଡ଼ନ୍ତିନି । ସ୍ୱଚ୍ଛମନରେ ସେମାନେ ବି ଜ୍ଞାନୀଲୋକର ପ୍ରଶଂସା କରିପାରନ୍ତିନି ।

ଜ୍ଞାନୀଲୋକଟି ସର୍ବଦା ତା ମାର୍ଗରେ ବଞ୍ଚେ । ଗଣତନ୍ତ୍ରର ବାମନ ଓ ସର୍ବହରାମାନେ ଇତର ଲୋକମାନଙ୍କର ବନ୍ଦନା ଗୀତ ଗାଆନ୍ତି । ଜ୍ଞାନୀଲୋକର ସ୍ୱର୍ବିତ ଅନ୍ତର ଓ ସ୍ୱାଭିମାନକୁ ସେମାନେ ସହଜ ଭାବରେ ବୁଝି ପାରନ୍ତିନି ।

ଆପଣା ଭାବ ଜଗତରେ ସେମାନେ ନିମଜ୍ଜିତ ହୋଇ ରହନ୍ତି । ତଦ୍‌ଗତ ହୁଅନ୍ତି ଅନନ୍ତ ପ୍ରକୃତି ସହିତ । ପ୍ରକୃତି ପ୍ରାଣ ହୋଇ ବଞ୍ଚିବା ବେଳେ ସାଧାରଣଙ୍କ ପକ୍ଷେ ସମ୍ଭବ ହୁଏନି, ଯଦିଓ, ସଭିଏଁ ନିରନ୍ତର ପ୍ରକୃତି କୋଳରେ ହିଁ ବାସ କରିଛନ୍ତି ।

ପ୍ରକୃତି ସହିତ ତଦ୍‌ଗତ ହେଲେ ପ୍ରାଣ ପୂରିଉଠେ । ମନ ଓ ଆତ୍ମା ଉଲ୍ଲସିତ ହୋଇଉଠେ । ପ୍ରକୃତିପ୍ରାଣତା ଅସଲ କବିତ୍ୱର ମୂଳଗୁଣ । ପ୍ରକୃତିପ୍ରାଣ ହୋଇ ବଞ୍ଚିବା ଈଶ୍ୱର ଆରାଧନା ସହିତ ସମାନ ।

ମଠ ଆଶ୍ରମରେ ଯେଉଁ ସାଧକମାନେ ମୌନ ହୋଇଛନ୍ତି ଧ୍ୟାନସ୍ଥ ହୋଇଛନ୍ତି, ସେମାନେ ମହାକାଳ, ମହାଜୀବନକୁ ବୁଝିବାପାଇଁ ସମର୍ଥ ହୋଇଛନ୍ତି । ସେମାନଙ୍କ ପ୍ରାଣ ଆନନ୍ଦରେ ନାଚି ଉଠିଛି । ଜୀବନ ତାଙ୍କୁ ମଧୁର ଲାଗିଛି । ବଞ୍ଚିବା ତାଙ୍କୁ ସାତ୍ତ୍ୱିକ ଲାଗିଛି ।

ଖଳମାନେ, ଦୁର୍ବଳମାନେ ସର୍ବଦା ଉତ୍ତେଜନା ଭିତରେ ଜୀବନ ବଞ୍ଚନ୍ତି । ଇତରମାନେ ପାର୍ଥିବ ମୋହ ଭିତରେ ଜୀବନ ବଞ୍ଚନ୍ତି ।

କଳାକାରମାନେ ସୃଜନଶୀଳତାକୁ ବଡ଼ ସମ୍ପତ୍ତି ଓ ସୌନ୍ଦର୍ଯ୍ୟ ବୋଲି ଜ୍ଞାନ କରନ୍ତି । ଅନ୍ୟ କୌଣସି ପାର୍ଥିବ ସମ୍ପଦ ସେମାନଙ୍କୁ ମୋହିଦେଇ ପାରେନାହିଁ । ଯେଉଁ କବି କଳାକାରମାନେ ପାର୍ଥିବ ଜୀବନରୁ ପଳାଇ ଆସି ସେହିପରି ପରିବେଶରେ ଜୀବନ ବଞ୍ଚିଛନ୍ତି ସେମାନେ ଆଜୀବନ ସାତ୍ତ୍ୱିକ ଆନନ୍ଦକୁ ଉପଭୋଗ କରିଛନ୍ତି । ଘନଘୋର ବର୍ଷା, ବାସନ୍ତୀ ରାତି, କମ୍ରସକାଳ, ଶାରଦୀୟ ଦିଗ୍‌ବଳୟ ଯେଉଁମାନଙ୍କୁ ବିଭୋର କରିଦିଏ ସେମାନଙ୍କର ଗ୍ରାହକତା ଅଲଗା ପ୍ରକାରର ନିଶ୍ଚୟ ।

ଶୈଶବ ମିଠା ଲାଗେ ସେମିତି ମଧୁମୟ ପରିବେଶ ଯୋଗୁଁ । ପ୍ରକୃତି ଭଲଲାଗେ ତା'ର ସାତ୍ତ୍ୱିକ ପ୍ରଭାବ ଯୋଗୁଁ । ଜୀବନ ଭୋଗ ପାଇଁ ପ୍ରକୃତିର ଦାନ ସବୁଠାରୁ ବେଶୀ ।

କେତେ ସୃଜନଶୀଳ ସତରେ ମଣିଷର ବଞ୍ଚି ରହିବାର ସ୍ୱପ୍ନ । କେତେ ପୁଲକର ଆମ ଜୀବନ । ଆନନ୍ଦ ବିଭୋର ଜୀବନ ବଞ୍ଚିବାର ସୂତ୍ର ଆମ ସମସ୍ତଙ୍କୁ ଜଣା ନାହିଁ । ଆମେ ଜାଣି ଜାଣି ଭୋଗବାଦ ଆଡ଼କୁ ଟାଣି ହୋଇଯାଉଁ । ଜୀବନ ପରିଧିରୁ ଆନନ୍ଦକୁ ବିସର୍ଜି ଦେଉଁ । ଜୀବନ ବିଷମୟ ହୋଇଯାଏ ।

ପ୍ରକୃତ ଆନନ୍ଦର ଉତ୍ସ କ'ଣ ଜ୍ଞାନୀ ଲୋକମାନେ ହିଁ ଜାଣନ୍ତି । ତା'ର ପରିଚର୍ଯ୍ୟା କରନ୍ତି । ଅସ୍ଥିର ଜୀବନ ଆଡ଼କୁ ସେମାନେ ଆଦୌ ଟାଣି ହୋଇ ଯାଆନ୍ତିନି ।

କେତେ ସ୍ୱପ୍ନର ଭିଜା ଏ ପୃଥିବୀ । ସ୍ୱପ୍ନ ଅଛି ବୋଲି ଜୀବନ ଏତେ ସୁନ୍ଦର ଲାଗୁଛି । ସୁନ୍ଦର ଜୀବନର ସଂଜ୍ଞା କ'ଣ ସେକଥା ଜ୍ଞାନୀ ଲୋକମାନେ ଜାଣନ୍ତି ।

ସୁନ୍ଦର ଆନନ୍ଦମୟ ଜୀବନ ଆମର ଧ୍ୟେୟ । ଈଶ୍ୱରାନୁଭୂତି ପ୍ରକୃତି ଚେତନା ସବୁକିଛି ଆନନ୍ଦମୟ । ଦୁଃଖ ଓ ବଞ୍ଚନା ସବୁ ଯଦି ପ୍ରାଣକୁ ବିନୀତ କରିଦେଲା ତାହା ବି ଜୀବନ ପାଇଁ ଲୋଡ଼ା ।

ଜୀବନ ଏକ ପ୍ରସାରଣଶୀଳତା । ଜୀବନକୁ ଯେତେ ପ୍ରସାରିତ, ଯେତେ ପରିବ୍ୟାପ୍ତ କରାଯାଇ ପାରେ ।

ଜୀବନ ଏକ ଭୋଗ୍ୟବସ୍ତୁ ନୁହେଁ । ଭୋଗ କରିବାର ପ୍ରବୃତ୍ତି ନାନା ଉତ୍ତେଜନା ସୃଷ୍ଟିକରେ । ଜୀବନର ଭୋଗମୟ ପ୍ରବୃତ୍ତି ସବୁ ଆମକୁ ଶାଶ୍ୱତ ଆନନ୍ଦର ପରିଧି ଭିତରକୁ ନେଇ ଯାଇ ପାରେନା ।

ଗୋଟେ ପକ୍ଷୀର ଡାକରେ ଯେଉଁଠି ଜୀବନ ଚହଲିଯାଏ, ଟିକିଏ ଆକାଶ ଯେଉଁଠି ରୋମାଞ୍ଚିତ କରିଦିଏ ସେଠି ଜୀବନତ କ୍ଷୟହୀନ କବିତ୍ୱ ଆଡ଼କୁ ମୁହାଁଇ ଯାଏ ।

କବିତ୍ୱ ପ୍ରାଣକୁ ପୁଲକିତ କରିଦିଏ । ଅସଲ କବିତ୍ୱର ଉପାର୍ଜ୍ଜନ ପାଇଁ ଜ୍ଞାନୀଲୋକମାନେ ତତ୍ପର ହେଉଥିଲା ବେଳେ ଇତରମାନେ ସେହି ଅବିଦ୍ୟା ଅନ୍ଧାର ଭିତରେ ଦରାଣ୍ଡି ହେଉଥାନ୍ତି । ଆଲୋକର ମହୋତ୍ସବ ଆଡ଼େ ଯାଇ ପାରନ୍ତିନି ।

ଜ୍ଞାନୀ ଲୋକମାନେ କହନ୍ତି ଏକ ରସମୟ ଜଗତ ଆଡ଼କୁ ଟାଣି ହୋଇଯିବା ଜୀବନ ହିଁ ପ୍ରକୃତରେ ସୁନ୍ଦର ଲାଗେ ଓ ସେହି ଏକାନ୍ତ ଉଲ୍ଲାସମୟ ରସଭୋଗ ଭିତରେ ହିଁ ଜୀବନର ସାର୍ଥକତା ଆସେ ।



# ସହସ୍ରାବ୍ଦୀୟ ଶ୍ରଦ୍ଧାଞ୍ଜଳି

ନରବଧି କାଳ, ବିଶାଳ ବିପୁଳ ପୃଥିବୀ । ଅଜସ୍ର ପରିବର୍ତ୍ତନ ସତ୍ତ୍ୱେ ଦୃଶ୍ୟ ବା ଅଦୃଶ୍ୟ ହୋଇ ତଥାପି ଅପରିବର୍ତ୍ତନୀୟତା ମୂର୍ତ୍ତ ହୋଇଥାଏ । କାଳ ଗର୍ଭରେ ଏହି ଅପରିବର୍ତ୍ତନୀୟ ସବୁକିଛି ତ ଚିରନ୍ତନ । ଲକ୍ଷ ଲକ୍ଷ ବର୍ଷ ଧରି ଯେପରି ଆମ ଏଇ ପୃଥିବୀର ରମଣୀୟ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ । ସଞ୍ଜ ସକାଳ, ରାତିଦିନ, ଗ୍ରହ ନକ୍ଷତ୍ର ଚନ୍ଦ୍ର ସୂର୍ଯ୍ୟ ଏମିତି ଆତଯାତ ହେବା । ଯେମିତି ନିଶ୍ଚଳ ଓ ସ୍ଥାବର ଗିରି ଓ ସମୁଦ୍ର । ସେମିତି ପାଣି ପବନ, ତାରକିତ ନଭମଣ୍ଡଳ ଆଉ ଏମିତି ଗୋଟେ ସୁନ୍ଦର ଛବିଳ ପୃଥିବୀରେ ଅୟୁତ ଅୟୁତ ବର୍ଷଧରି ମଣିଷର ଅସରନ୍ତି ଜୀବନ ପ୍ରବାହ ।

ଜଣେ ଶିଳ୍ପୀ ସବୁକିଛି ଊର୍ଦ୍ଧ୍ୱରେ, ସବୁମତେ ଅତି ନିବିଡ଼ ଭାବେ ମାଟି, ମଣିଷ ଓ ମହାକାଳକୁ ହିଁ ଲେଖେ । ଯେମିତି ଲେଖିଛନ୍ତି ଏ ମାଟିର ମହାକବି ସାରଳା ଦାସ, ଘନଘୋର ପ୍ରାବୃଟ, କୁସୁମିତ ବସନ୍ତ ଆଉ ତାସହିତ ଜୀବ ଓ ପରମପ୍ରାଣର ହର୍ଷ ବିଷାଦ ବିରହ ମିଳନ ଆଦି ଯାବତୀୟ ନୃତାତ୍ତ୍ୱିକ ଭାବାବେଗକୁ ଭାଗବତକାର ଜଗନ୍ନାଥ ଦାସ ଆଉ ଯେମିତି ଅଯୋଧ୍ୟାର ନରପତି ଦଶରଥଙ୍କ ମଧ୍ୟରେ ଥିବା ଶ୍ରଦ୍ଧାନ୍ୱିତ ସଂପର୍କ ସବୁକୁ ଲେଖିଛନ୍ତି ରାମାୟଣକାର ମତ୍ତ ବଳରାମ ଦାସ ।

ସହସ୍ର ସହସ୍ର ବର୍ଷର ସାମାଜିକ ବିବର୍ତ୍ତନ ପ୍ରକ୍ରିୟା, ସଭ୍ୟତାର ପରିବର୍ତ୍ତନ ତଥାପି ମଣିଷର ସଂପର୍କ ଓ ତା'ର ହୃଦୟ ବୃତ୍ତିକୁ ନିଷ୍କ୍ରିୟକରି ଦେଇ ପାରିନି । ମଣିଷର ସ୍ୱପ୍ନ ସଦିଚ୍ଛା, ତା'ରି ପ୍ରେମ ଓ ପୁଲକ, ତା'ର ତପସ୍ୟା, ତା'ର ସୃଜନଶୀଳ ଅଭିଳାଷ ସବୁର ମହିମାନ୍ୱିତ ଭାଷ୍ୟତ ହେଉଛି ସହସ୍ର ସହସ୍ର ବର୍ଷର ସାହିତ୍ୟ ।

ଜଣେ ସାରଳା ପୂର୍ବବର୍ତ୍ତୀ ଓଡ଼ିଆ କବି ବତ୍ସାଦାସ ତପସ୍ୟାର ସିଦ୍ଧି, ଆତ୍ମାର ସୌନ୍ଦର୍ଯ୍ୟ ଲେଖିଥିଲେ ସେମିତି ସହୃଦୟା ଶ୍ରଦ୍ଧାଶୀଳା ରାଜପୁତ୍ରୀଟିଏ ଆତ୍ମାର ସେହି ସୌନ୍ଦର୍ଯ୍ୟ ଆଉ ସେହି ଶିବତ୍ୱର ସାନିଧ୍ୟ ପାଇଁ ଶ୍ମଶାନଚାରୀ ଯୋଗୀଟିକୁ ବରଣ କରିଛି ନିଜକୁ ସବୁମତେ ସମର୍ପି ଦେଇଛି । ବେଶ ପୋଷାକ ପ୍ରତିପତ୍ତି ଆଦି କୌଣସି ବାହାରର ଆଟୋପ ନୁହେଁ । ମଙ୍ଗଳମୟ ପୁରୁଷର ପ୍ରାଣଟି ହିଁ ମହାନ । ଏହି ଉପଲବଧିଟିକୁ ରୂପାୟିତ କରିଥିବା କଳସା ଚଉତିଶାର କବି ବତ୍ସାଦାସ ସହସ୍ର ସହସ୍ର ବର୍ଷ ବିତିଗଲେ ବି ଗ୍ରହଣଶୀଳ ସଜ୍ଜନଙ୍କ ହୃଦୟରେ ଅବିସ୍ମରଣୀୟ ହୋଇ ରହିଥିବେ । ଯେଉଁ କବିଟି ସେଦିନ କହ୍ନାଇର ଅବର୍ତ୍ତମାନରେ ଗୋପଦାଣ୍ଡର ଶୂନ୍ୟତାକୁ ଖରାକାଳରେ ଲେଖିଥିଲା । ଯଶୋଦାର ମାତୃ ହୃଦୟ ବିଳପି ଉଠିଥିଲା । ତାହା ଛନ୍ଦ ଚଉତିଶାର ଅଧିନିୟମ ଊର୍ଦ୍ଧ୍ୱରେ କାଳ କାଳକୁ ଅନନ୍ତ କୋଟି ମଣିଷର ହୃଦୟକୁ ବାତ୍ସଲ୍ୟ ଭାବରେ ପ୍ରବୋଧିତ କରୁଥିବ । ତାହା କେବେ ଜୀର୍ଣ୍ଣ ଓ ପୁରାତନ ହେବାର ନୁହେଁ । ତାହା କେବେ ଗତାୟୁ ସମୟ ଖଣ୍ଡରେ ସୀମିତ ହୋଇ ଯିବାର ନୁହେଁ ।

ଆଜିର ଏ ସହସ୍ରାବ୍ଦୀ ସେହିସବୁ ସାରସ୍ୱତ ପୁରୁଷଙ୍କୁ ଶ୍ରଦ୍ଧା ନିବେଦନ କରୁଛି; ଯେଉଁମାନେ ଭାବରେ ଭାବରେ ସବୁକାଳର ମଣିଷଙ୍କୁ ପୁଲକିତ ଓ ପ୍ରବୋଧିତ କରୁଥିବେ । ଶ୍ରଦ୍ଧା ଓ ବିଶ୍ୱାସରେ ସବୁକାଳର ପାଠକ ହୃଦୟକୁ ଭରି ଦେଉଥିବେ । ସତ ସାହିତ୍ୟ ଗଦ୍ୟ ପଦ୍ୟ ନିର୍ବିଶେଷରେ, ଯାବତୀୟ ଆଳଙ୍କାରିକ ବୈଚିତ୍ର୍ୟ ଊର୍ଦ୍ଧ୍ୱରେ ସାହିତ୍ୟ ପ୍ରେମୀ ସହୃଦୟମାନଙ୍କୁ ପୂର୍ଣ୍ଣତା ଆଡ଼କୁ ନେଇଯାଏ ।

କବିର ସୃଜନଶୀଳ ସୁବର୍ଣ୍ଣ ଦୀପ୍ତ ଆବେଗ ହେଉଛି ଖଣ୍ଡିତ ଦର୍ଶନ ଓ ମଣିଷର ଆବେଗାୟିତ ଅନୁଭବର ଭଗ୍ନାଂଶ ସବୁକୁ ମହାକାଳର ଧାରାରେ ଏକ କରି ଦେବା । ଓଡ଼ିଶାର ସୁଦୀର୍ଘ ସାରସ୍ୱତ ପରମ୍ପରା ଓ ତା'ର ଅତିବଡ଼ ସାଂସ୍କୃତିକ ଐତିହ୍ୟ ହିଁ ଏହି ବିପୁଳ ଏକୀକରଣର ନିଦର୍ଶନ । ବୌଦ୍ଧ, ଜୈନ, ଶାକ୍ତ ଓ ବୈଷ୍ଣବ ଧର୍ମ ଦର୍ଶନ ଦ୍ୱାରା ପୁଷ୍ଟ ଓ ପ୍ରସାରିତ ଓଡ଼ିଆ ସାହିତ୍ୟ କିନ୍ତୁ ଉଲ୍ଲେଖଯୋଗ୍ୟ ଭାବେ ମାନବ କେନ୍ଦ୍ରିକ ହୋଇଛି । ସକଳ ଧାର୍ମିକ ଆଟୋପ ଓ ଔପଚାରିକତା ଊର୍ଦ୍ଧ୍ୱରେ ଗତ ସହସ୍ରାବ୍ଦୀର ଓଡ଼ିଆ ସାହିତ୍ୟିକ ମଣିଷର ସୁଖ ଦୁଃଖ, ବିରହ ମିଳନର ଛବିକୁ ହିଁ ସରସ କରି ଲେଖିଛି । କବିର ଆକାଶମୁଖୀ କଳ୍ପନା ଓ ସ୍ୱର୍ଗପ୍ରୀତି ସତ୍ତ୍ୱେ ତା'ର ସାହିତ୍ୟର ସବୁକିଛି ଉଲ୍ଲେଖଯୋଗ୍ୟ ଭାବେ ମର୍ତ୍ତ୍ୟାୟିତ ଓ ମାନବାୟିତ ହେଇଛି ।

ମଣିଷର ପାର୍ଥିବ ଜୀବନ ପ୍ରତି ପ୍ରାଚୀନ କବି ବିତସ୍ପୃହ ବା ବିମୁଖ ହୋଇ ନାହିଁ । ସମୁନ୍ନତ ଶୃଙ୍ଗାର ଓ ସୌନ୍ଦର୍ଯ୍ୟ ଭିତରେ ପ୍ରାଚୀନ ଓଡ଼ିଆ କବି ମଣିଷର ଜୀବନକୁ ନାନାମତେ ଗୌରବାନ୍ୱିତ କରିଛି ।

ସାରଳା, ବଳରାମ, ଜଗନ୍ନାଥ ଆଦି ତିନି ତିନିଜଣ ମହାକବି ସେମାନଙ୍କ ସର୍ବୋତ୍ତମ ସୃଜନଶୀଳ ସ୍ୱପ୍ନ ଓ କଳ୍ପନାକୁ ଜନତା ଓ ଜନପଦଠାରୁ କଦାପି ଦୂରକୁ ଘୁଞ୍ଚାଇ ନେଇ ନାହାନ୍ତି । ଉଚ୍ଚତର ବୌଦ୍ଧିକ ବିଳାସ ଓ ସୃଜନଶୀଳତା ସତ୍ତ୍ୱେ ସେମାନେ ସାହିତ୍ୟକୁ ସବୁମତେ ଜନସାହିତ୍ୟ ହିଁ କରି ଦେଇଛନ୍ତି । ସାହିତ୍ୟର ସର୍ବୋତ୍ତମ ସୌନ୍ଦର୍ଯ୍ୟ ହେଉଛି ମଣିଷର ଜିଇଁରହିବା ଓ ତା'ର ନିବିଡ଼ ଜାନପଦିକ ସଂପର୍କର ସୁଷମା ।

କବିର ସୌନ୍ଦର୍ଯ୍ୟ ଦୃଷ୍ଟି ଓ ତା'ର କଳ୍ପନା ବିଳାସର ଗୋଟିଏ ନିଦା ବିଷୟ ହେଲା ବିବର୍ତ୍ତନୀୟ ସୃଷ୍ଟି ପ୍ରକିୟା, ସମୁଜ୍ଜ୍ୱଳ ମାତୃତ୍ୱ ଓ ନାରୀପୁରୁଷର ସ୍ୱର୍ଗୀୟ ମିଳନ ଚିତ୍ର; ଯାହାକୁ ଗତ ଶତାବ୍ଦୀ ମାନଙ୍କରେ ଓଡ଼ିଆ କବି ଅତି ଚମତ୍କାର ଭାବେ ବହୁବିଧ ରୂପକଥା ଭିତରେ ଆଙ୍କି ପାରିଛି । ଏ ଦିଗରୁ ସମସ୍ତେ ପାରଦର୍ଶୀ ଓ ପ୍ରତିଭାବାନ ମନେ ହୁଅନ୍ତି । ବତ୍ସାଦାସ, ମାର୍କଣ୍ଡ ଦାସଙ୍କଠାରୁ ଏଯାବତ୍ ସବୁ ସାରସ୍ୱତ ପୁରୁଷ ପ୍ରାୟ ସାହିତ୍ୟ ହେଉ ବା ସଂସ୍କୃତି ହେଉ, ଧର୍ମ ହେଉ ବା ଦର୍ଶନ ହେଉ, ସବୁର ମୂଳ ହେଉଛି ମଣିଷ । ସବୁରୂପକଥାର ଅନ୍ତସ୍ତଳରେ ରହିଛି ମଣିଷର ଜୀବନ । ଏଇଥିପାଇଁ ଏହି ମଣିଷର କଥା କହିଥିବା କାରଣରୁ ଓଡ଼ିଆ ସାହିତ୍ୟ ସବୁକାଳରେ ଦୀପ୍ତିମନ୍ତ ହୋଇ ସମସ୍ତଙ୍କ ମନ ଓ ଆତ୍ମାକୁ ସ୍ପର୍ଶ କରୁଥିବ । ତାହା କେଶବ କୋଇଲି ହେଉ କି ବାରମାସୀ କୋଇଲି ହେଉ ତାହା ମନବୋଧ ଚଉତିଶା

ହେଉ କି କିଶୋର ଚନ୍ଦ୍ରାନନ୍ଦ ଚଂପୂ ହେଉ ତାହା ଚାଟ ଇଚ୍ଛାବତୀ ହେଉ କି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ହେଉ ସବୁ କୃତିର ଅନ୍ତଃସ୍ଥଳୀର ରହିଛି ବିଚିତ୍ର ଓ ଅନୁପମ ଏ ମଣିଷ ଜୀବନ ।

ଅନୁପମ ମଣିଷ ଜୀବନର ଜୟଗାନ କରି ଅୟୁତବର୍ଷର କବି ଆପଣାର ଅନ୍ତରକୁ ଉଲ୍ଲସିତ କରିଛି । ଓଡ଼ିଆ ସାହିତ୍ୟ ସହସ୍ର ସହସ୍ର ବର୍ଷ ଧରି ଯେପରି ଜନମୁଖୀ ହୋଇଛି, ତା'ର ଅକଳନ୍ତି ଆଳଙ୍କାରିକତା, ଅତୁଳନୀୟ କଳ୍ପନା ବିଳାସ, ରହସ୍ୟବାଦୀ ଅନୁଭବ ଓ ଅତୀନ୍ଦ୍ରିୟତା ସତ୍ତ୍ୱେ ସେହିପରି ଜୀବନନିଷ୍ଠ ମଧ ହୋଇଛି ।

ସାରଳା ମହାଭାରତର ଚିତ୍ର ଚରିତ୍ର ସବୁ କେତେ ଅଧିକ ମାତ୍ରାରେ ଉତ୍କଳୀୟ ହୋଇ ଯାଇ ନାହାନ୍ତି ସତରେ । ଜାନପଦିକା ଭୂମିସଂଲଗ୍ନତାକୁ ସାରଳା, ବଳରାମ, ଜଗନ୍ନାଥ ସେମାନଙ୍କ ଭାବ ଓ ଭାଷାରେ କେତେ ଧରି ନରଖିଛନ୍ତି । ଅଥଚ୍ କେତେ ବିପୁଳ କଳ୍ପନା ସେମାନଙ୍କ ରଚ୍ନାରେ ବିନ୍ୟସ୍ତ ନହୋଇଛି ।

ସେମାନେ ଥିଲେ ସତ୍ୟଦ୍ରଷ୍ଟା ଋଷି ସାଧକ ଶିଳ୍ପୀ ଓ ସଂସ୍କାରକ । ସାରଳା ସମାଜର ସ୍ୱାସ୍ଥ୍ୟ ଓ ସଂଯମ କାମନା କରିଛନ୍ତିତ ବଳରାମ, ଜଗନ୍ନାଥ ଜାତି ମାନି ନାହାନ୍ତି । ସବର୍ଣ୍ଣ ଅସବର୍ଣ୍ଣ ଭେଦରେ ଏକ ଅସମାନ ସାମାଜ ଯେଉଁ ସାମାଜିକ ଦୁର୍ଗତିର କାରଣ ହୋଇଛି ଉଭୟ ତାହା ଲେଖିଛନ୍ତି । ଏତେ ସ୍ପର୍ଦ୍ଧା ଏତେ ଔଜଲ୍ୟ ସେମାନଙ୍କ ଆତ୍ମା ଓ ଅନ୍ତରର ! ସେମାନେ ଥିଲେ ସତେ ଯେପରି ଏ ଜାତିର ଭାଷା, ସାହିତ୍ୟ, ସଂସ୍କୃତି ଓ ଜାତୀୟତାର ରକ୍ଷା କବଚ୍ ।

ସଂସ୍କୃତର ଅପ୍ରତିଦ୍ୱନ୍ଦ୍ୱୀ ଓ ଅସପନ୍ନ ପ୍ରତିଷ୍ଠା ବିରୋଧରେ ଓଡ଼ିଆ ଭାଷାରେ କାବ୍ୟ ମହାକାବ୍ୟ ରଚନା କରିବାର ସଫଳ ପାରଦର୍ଶିତାରେ ଏମାନେ ଥିଲେ ଏକ ଏକ ସ୍ତମ୍ଭୀୟ ବ୍ୟକ୍ତିତ୍ୱ । ଓଡ଼ିଆ ପ୍ରାଣ ଓ ତା' ସ୍ୱାଭିମାନର ସଂଚ୍ାଳକ ।

ଆସିଛନ୍ତି ବଳରାମ ଜଗନ୍ନାଥଙ୍କ ସହିତ ଆଉ ତିନିଜଣ ସଖା, ଅନନ୍ତ, ଯଶୋବନ୍ତ ଓ ଅଚ୍ୟୁତାନନ୍ଦ । ସାହିତ୍ୟକୁ ଏମାନେ ଅଭିଜାତ ମହଲ ଓ ପ୍ରସାଦରୁ କୁଟୀରକୁ ନେଇ ଆସିଛନ୍ତି । ନେଇ ଆସିଛନ୍ତି ସଭ୍ୟ ଶିକ୍ଷିତଙ୍କ ସହିତ ଅର୍ଦ୍ଧଶିକ୍ଷିତ ଅଶିକ୍ଷିତ କୃଷକ ଓ ଶ୍ରମିକ ମାନଙ୍କ ନିକଟକୁ ।

ଏକବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ମହାନ କାବ୍ୟ ପରମ୍ପରାକୁ ଅବଶ୍ୟ ନାନାଭାବରେ ଲକ୍ଷ୍ୟ କରିବାର ଅଛି । ଓଡ଼ିଆ ସାହତ୍ୟକୁ ଋଦ୍ଧିମନ୍ତ କରିଥିବା କାରଣରୁ ସାହିତ୍ୟ ଜଗତର ସେହି ରଥୀ ମହାରଥୀମାନଙ୍କୁ ସମ୍ମାନ ପ୍ରଦର୍ଶନପୂର୍ବକ ଶ୍ରଦ୍ଧା ନିବେଦନ କରିବାର ଅଛି ।

ଓଡ଼ିଆ ମଧ୍ୟଯୁଗ ସାହିତ୍ୟର ପ୍ରତିନିଧି ସ୍ଥାନୀୟ କବି ସମ୍ରାଟଙ୍କୁ ସ୍ମରଣ କରାଯାଉ; ଯାହାଙ୍କର ଭାଷାଜ୍ଞାନ ଆଉ ଆଳଙ୍କାରିକ ଆଟୋପ ସେ କାଳର ସଂସ୍କୃତଜ୍ଞମାନଙ୍କୁ ସ୍ତବ୍ଧ କରି ଦେଇଥିଲା ।

ପ୍ରାକୃତ ଓଡ଼ିଆ ଭାଷାରେ ଯେ ଉଚ୍ଚ କୋଟିର ଆଳଙ୍କାରିକ କାବ୍ୟ ରଚନା କରାଯାଇପାରେ ଭଞ୍ଜ ତାହା ପ୍ରମାଣ କରିଦେଇ ପାରିଥିଲେ । ଓଡ଼ିଆ ଭାଷାର ସୃଜନଶୀଳ ଗୁଣ ଓ ଗୌରବକୁ ଉପେନ୍ଦ୍ର ହିଁ କେବଳ ସଙ୍କଳ୍ପବଦ୍ଧ ଭାବେ ସଂସ୍କୃତ ପଣ୍ଡିତମାନଙ୍କର ପ୍ରତିସ୍ପର୍ଦ୍ଧୀ ହୋଇ ସାବସ୍ତ କରି ପାରିଥିଲେ । ଆଳଙ୍କାରିକ ଉପେନ୍ଦ୍ର ଥିଲେ ସମଭାବରେ ସଙ୍ଗୀତଜ୍ଞ କବି ଓ ଶୃଙ୍ଗାରିକ । ରୀତି ଆଦର୍ଶର ଜଣେ ଅତି ବିସ୍ମୟଜନକ ପ୍ରତିଭା ଥିଲେ ଉପେନ୍ଦ୍ର । ବିତାଡ଼ିତ ରାଜପୁତ୍ର, ଯୌବନରେ ବିପତ୍ନୀକ ଉପେନ୍ଦ୍ର ସରସ ଓ ଶୃଙ୍ଗାରିକ ପଦମାନ ଯୋଡ଼ି ଏ ଜାତିର ମାନସିକତାକୁ ରସାର୍ଦ୍ର କରି ଦେଇଥିଲେ । ଯାହାଙ୍କ ଗୀତ ସବୁକୁ ନୃତ୍ୟନ୍ତ ଗଣିକା ଗାଏତ ଗାଏ ବିଲବାଡ଼ିରେ କୃଷକ; ଗାଏ ପଥିକ ତ ଗାଏ ପଣ୍ଡିତ । ଅନନ୍ୟ ସାଙ୍ଗୀତିକତା ସେସବୁ ରଚନାର । ବେଶ କିଛି କାଳ ଧରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କାବ୍ୟପ୍ରେମୀମାନଙ୍କୁ ନାନା ଭାବରେ ଆବିଷ୍ଟ କରି ରଖିଥିଲେ ।

କବିସୂର୍ଯ୍ୟ ବଳଦେବରଥଙ୍କ ଚଂପୂ ଏ ସମୟ ଖଣ୍ଡରେ ବି ଆମକୁ ମୋହି ଦେଉଛି । ପ୍ରେମ ପ୍ରଣୟର ରସ ନିବିଡ଼ କ୍ଷୁଦ୍ରତମ କାବ୍ୟଖଣ୍ଡିଏ । ଯେମିତି ଘନବଦ୍ଧ ସେମିତି ନାଟକୀୟ । ଯେମିତି ଶୃଙ୍ଗାରିକ ସେମିତି ସମ୍ବେଗାତ୍ମକ । ନାଗର ନାଗରୀଙ୍କ ସରଳ ବାସନାରାଜିକୁ ସେ ଏକାନ୍ତ ମାନବୀୟ ସମ୍ବେଗ ଭିତରେ ମହିମାମଣ୍ଡିତ କରି ଯାଇଛନ୍ତି । ଚଂପୂର ନାୟକ ବିଦଗ୍ଧ । ପ୍ରାଣର ବ୍ୟାକୁଳତା, ମିଳନ ଉତ୍‌କଣ୍ଠାକୁ ଚରମରେ ପହଞ୍ଚାଇଛି । ପ୍ରେମର ଏପରି ଚିତ୍ର, ଏପରି ରସାର୍ଦ୍ର ବ୍ୟଞ୍ଜନା ବିଶ୍ୱ ସାହିତ୍ୟରେ ବିରଳ ।

ଅଭିମନ୍ୟୁ ସାମନ୍ତସିଂହାର, ସୁବର୍ଣ୍ଣ ଦୀପ୍ତ ଶୃଙ୍ଗାରର ପରିଚର୍ଯ୍ୟା କରିଥିବା ସୁବର୍ଣ୍ଣରେଖା କୂଳରେ ଦୀନକୃଷ୍ଣ ଭାବ ପ୍ରବୋଧକ । ବଚନ ବୈଦଗ୍ଧ ପଦଲାଳିତ୍ୟରେ ଆଜି ଓ ଆଗାମୀ କାଳରେ ବି ଏ ଦି'ଜଣ କବି ଅନେକଙ୍କୁ ମୂର୍ଚ୍ଛିତ କରି ରଖିଛନ୍ତି ପ୍ରାଚୀନ ଆଳଙ୍କାରିକ ସାହିତ୍ୟର କେତେକ ପଦପଂକ୍ତି ଗୀତ ହେଲେ ଆଜି ବି ଅନେକ ଆଧୁନିକଙ୍କୁ ତାହା ଭାରି ଛୁଏଁ ।

ଯୌବନ ଓ ପ୍ରଣୟର ରଙ୍ଗ ଓ ବର୍ଣ୍ଣିଳ ମୁଦ୍ରା ସବୁକୁ ଏମାନେ ଉତ୍ତମ ରାଗ ରାଗିଣୀରେ ପ୍ରକାଶ କରି ଆଜି ବି ସର୍ବସାଧାରଣଙ୍କୁ ବିମୋହିତ କରିରଖିଛନ୍ତି । ଭଞ୍ଜଙ୍କ "ନିର୍ମଳ ଚନ୍ଦ୍ର ମଣ୍ଡଳ ଶରଦେ ବିରାଜି / ଦିଶେ ଯଥା ଦର୍ପକ ଦର୍ପଣେ ଥିଲେ ମାଜି/ଚାହିଁ କୁମର କାତର/ ଲେଖି ଆରମ୍ଭିଲା ବସି ବିନୟ ପତର/" ଅବା ଅଭିମନ୍ୟୁଙ୍କ "ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ/ବାତ୍ସଲ୍ୟମମତା ଘେନି ଭାଳୁଛନ୍ତି ମାତ, କଳା ମାଣିକରେ/ନିର୍ଧନ ସଂଖାଳି ମୋର ଦରିଦ୍ର ପସରା/ଅନ୍ଧ ଲଉଡ଼ି ବାବୁରେ ହୃଦରତ୍ନ ହାରା, କଳା ମାଣିକରେ/" ଅବା ଦୀନକୃଷ୍ଣଙ୍କ "କୁସୁମ ସମୟ ହୋଇଲା ଉଦୟ/ଦକ୍ଷିଣା ପବନ ବହିଲା/କାମ ଦେବଦୂତ ହୋଇ ମହାମତ୍ତ ପଞ୍ଚମ ସ୍ୱରରେ କହିଲା ।" ଆଦି ଗୀତସବୁ କାବ୍ୟର ସର୍ବୋତ୍ତମ ଗୁଣ ପାଇଁ ନିତ୍ୟନୂତନ ଲାଗୁଛି ।

କାଳଜୟୀ ହେବା ସଫଳ ସାହିତ୍ୟର ଗୁଣ ଓ ଲକ୍ଷଣ । ଏ ସହସ୍ରାବ୍ଦୀ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ କଦାପି ପ୍ରାଚୀନ କହି ଆଡ଼େଇ ଦେଇ ପାରିବନି । ଏଇଥି ପାଇଁ ଯେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଚିରନ୍ତନ ମାନବାତ୍ମାକୁ ହିଁ ପ୍ରତୀକିତ କରିଛି । କାବ୍ୟର ବ୍ୟଂଜନାରେ ମଣିଷ ଓ ତା'ର ନିକଟତମ ଚତୁଃପାର୍ଶ୍ୱ ହିଁ କେନ୍ଦ୍ର ହୋଇଛି । ମଣିଷ ସହିତ ପ୍ରକୃତି ସଂଯୋଗିତ ହୋଇ ପ୍ରକଟିତ ହୋଇଛି । ଏହି ପ୍ରକନଟ ମ୍ଳାନ ବା ପୁରାତନ ହେବାର ନୁହେଁ । ବର୍ତ୍ତମାନ ଅତୀତକୁ ପ୍ରତ୍ୟାଖ୍ୟାନ କରିପାରେନାହିଁ । ଏ ସହସ୍ରାବ୍ଦୀ ଗତ ସହସ୍ରାବ୍ଦୀକୁ ନିଜ ଅଙ୍ଗରେ ଅଙ୍ଗୀଭୂତ କରିବ ସିନା— ଅଶ୍ରଦ୍ଧାରେ ପୁରୁଣା କହି ଉପେକ୍ଷା କରି ପାରିବନି ।

ବିଚ୍‌କ୍ଷଣ ଦୁଇ ସଙ୍ଗୀତ କର୍ତ୍ତା ହେଲେ ବନମାଳୀ ଓ ଗୋପାଳକୃଷ୍ଣ । ନରନାରୀଙ୍କ ଜୀବନର ଟିକିଟିକି ବିରହ ମିଳନକୁ ମଧୁର ଭାବରେ ଗାଇବାରେ ଏ ଦୁଇଜଣ ସତରେ ଅନନ୍ୟ । ଏକବିଂଶ ଶତାବ୍ଦୀର ଓଡ଼ିଆ ସଙ୍ଗୀତ ପ୍ରାଥମିକ ଭାବେ ସଙ୍ଗୀତଯୁଗର ଏଇ ଦୁଇଜଣ ବରେଣ୍ୟ ସାଧକଙ୍କ ସଙ୍ଗୀତ ଉପରେ ହିଁ ଆଧାରିତ ।

ଅସଲ ଆଳଙ୍କାରିକତା ହେଉଛି କବିପ୍ରାଣର ଜନମଙ୍ଗଳକର ଭାବନା (Sense of social good) । ଜଣେ ହିବ୍ରୁଋଷି ପରି କବି ଭୀମଭୋଇ ଚ଼ରମ ଉତ୍ସର୍ଗର ଯେଉଁ ବାଣୀ ଉଚ୍ଚାରଣ କରିଛନ୍ତି ତାହା କାଳ କାଳ ଧରି ତାଙ୍କ ସମୁନ୍ନତ କବି ପ୍ରାଣର ପରିଚ଼ୟ ଦେଉଥିବ । ଭୀମଙ୍କ ସର୍ବୋତ୍ତମ ଅଭିଳାଷ ଥିଲା ଜଣେ ତା'ର ମନ ଓ ଆତ୍ମାକୁ ଶୁଦ୍ଧ କରୁ । ଏମିତି ଚିତ୍ତଶୁଦ୍ଧି ହେଲେ ଜଣେ ଯାଇ ଈଶ୍ୱରମୟ ଜୀବନଯାପନ କରିବା ପାଇଁ ସମର୍ଥ ହେବ । ନିଜ ଜୀବନ ବିନିମୟରେ ଏ ବ୍ରହ୍ମାଣ୍ଡର ଅନନ୍ତ କୋଟି ଜୀବଙ୍କୁ ତ୍ରାଣ କରିଦେବାର ପ୍ରାର୍ଥନା ଭୀମଙ୍କ କବିଚିତ୍ତକୁ ଊର୍ଦ୍ଧ୍ୱଗ ଓ ନଭଶ୍ଚୁମ୍ବୀ କରିଛି । ଭୀମ ଥିଲେ କୋଟି ଜନତାର କଲ୍ୟାଣକାମୀ ଲୋକ ଶିକ୍ଷକ । ପାଶ୍ଚାତ୍ୟର ବର୍କଲେ ଓ ଦକ୍ଷିଣ ଭାରତର ଦିଗମ୍ବର ସନ୍ଥକବି ବେମନାଙ୍କ ପରି ଭୀମ କୋଟି ମାନବାତ୍ମାକୁ ଆହୁରି ଶୁଦ୍ଧ ଓ ବିନୀତ କରିବା ପାଇଁ ଭଜନ କୀର୍ତ୍ତନର ଆୟୋଜନ କରିଛନ୍ତି ।

ବୈଦିକ ଋଷି ଜଣେ ଯେପରି ଏ ପଞ୍ଚମ ପ୍ରକୃତିକୁ ହିଁ ଈଶ୍ୱର ଜ୍ଞାନ କରିଛନ୍ତି ଭୀମ ଭୋଇ ସେହିପରି କୌଣସି ପ୍ରତିମା ଭିତରେ ଈଶ୍ୱରଙ୍କୁ ନଦେଖି ଈଶ୍ୱରଙ୍କ ଅସ୍ତିତ୍ୱକୁ ବିଶାଳ ପ୍ରକୃତି ଭିତରେ ହିଁ ଦେଖିଛନ୍ତି । ଜଣେ ସଂସ୍କାରକ ଓ ବିପ୍ଳବୀ ଭାବେ ଭୀମ ଯେଉଁ ମୁକ୍ତି ଓ ଆଲୋକର ପଥ, ଦେଖାଇବା ପାଇଁ ପ୍ରୟାସ କରିଛନ୍ତି ତା'ର ପଟ୍ଟାନ୍ତର ନାହିଁ । ଏ ଦୃଷ୍ଟିରୁ ଭୀମଥିଲେ ଆଧୁନିକ ଯେ କୌଣସି ୟୁରୋପୀୟ ଦାର୍ଶନିକଙ୍କ ପରି ହେତୁବାଦୀ ଓ ମାନବବାଦୀ ।

ଆଜି ଏ ସମୟ ଖଣ୍ଡରେ ନିରକ୍ଷର, ଦୀନ, ଗୃହହୀନ, ଅନ୍ଧ ଓ ଆଦିବାସୀ କବି ଭୀମ ହିଁ ଅଧିକ ସ୍ମରଣୀୟ ଏଇଥିପାଇଁ ଯେ ତାଙ୍କ କବିତ୍ୱ ଦୁର୍ଗମ ଆଳଙ୍କାରିକତା ସର୍ବସ୍ୱ ନଥିଲା; ବରଂ ବହୁଭାବରେ ଥିଲା ମାନବକେନ୍ଦ୍ରିକ ।

ଓଡ଼ିଆ ସାହିତ୍ୟର ଆଉଜଣେ ମନ୍ତ୍ରଦ୍ରଷ୍ଟା ଋଷିଙ୍କ ପରି ଏ ବିଶ୍ୱକୁ ନିସର୍ଗଭାବେ ସୁନ୍ଦର ଓ ମଧୁମୟ ଜ୍ଞାନ କରିଥିବା କବି ହେଉଛନ୍ତି ସୁଧାନ୍ୱେଷୀ ଗଙ୍ଗାଧର । ଜଗତ ଓ ଜୀବନରେ ସେ ଅଶିବ ଓ ଅସୁନ୍ଦରକୁ ଦେଖି ନାହାନ୍ତି । ସଂସାରିକ ଦୁଃଖ ଓ ତାଡ଼ନାରେ ତାଙ୍କ କବିଚିତ୍ତ ଅନୁଲ୍ଲସିତ ହୋଇନି । ପ୍ରକୃତି ଥିଲା ତାଙ୍କ ପାଇଁ ମହାନାଟକ ଓ ମହୋତ୍ସବର ଲୀଳାଭୂମୀ । ଏ ସହସ୍ରାବ୍ଦରେ ସେ ସ୍ମରଣୀୟ ନିଶ୍ଚୟ; ତାଙ୍କ ଆଳଙ୍କାରିକ ବକ୍ରତା ପାଇଁ ନୁହେଁ, ତାଙ୍କ ସୁନ୍ଦରର ଆରାଧନା ଓ ମାନବାତ୍ମାର ଜୟଗାନ ପାଇଁ, ତାଙ୍କ ଆଶା ଓ ଆନନ୍ଦବାଦୀ ସୃଜନଶୀଳତା ପାଇଁ ।

କବିବର ରାଧାନାଥ ସେମିତି ଥିଲେ ବିଶ୍ୱର ମହାଦିଗନ୍ତ ପ୍ରତି ଉନ୍ମୁଖତା ପ୍ରଦର୍ଶନ କରୁଥିବା ସମୁଜ୍ଜ୍ୱଳ ବିଶ୍ୱଦୃଷ୍ଟିର ଅଧିକାରୀ ଜଣେ ବିଶିଷ୍ଟ ଓଡ଼ିଆ କବି; ଯେ ଖାଲି ବାଣୀ ଆରାଧନା କରି ନାହାନ୍ତି ଏ ପ୍ରଦେଶର ବଣ ପାହାଡ଼, ନଦୀ ହ୍ରଦ ଆଦି ଛବିଳ ପ୍ରକୃତିକୁ ଅତି ଅନ୍ତରଙ୍ଗ ଭାବେ ଭଲ ପାଇଛନ୍ତି । ସେମିତି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, କବିଶେଖର ଚିନ୍ତାମଣି ମହାନ୍ତି, କୁନ୍ତଳା କୁମାରୀ ସାବତ, ପଲ୍ଲୀକବି ନନ୍ଦକିଶୋର ବଳ ଆଉ ଓଡ଼ିଆ ସାହିତ୍ୟର ସଂକ୍ରାନ୍ତିପୁରୁଷ ବ୍ୟାସକବି ଫକୀର ମୋହନ ସେନାପତି ।

ଗୋପାଳ ଚନ୍ଦ୍ର ପ୍ରହରାଜ, ଗୋପୀନାଥ ମହାନ୍ତି, କାଳିନ୍ଦୀ ଚରଣ, ସଚ୍ଚିଦାନନ୍ଦ ରାଉତରାୟ, ମାୟାଧର ମାନସିଂହ ଆଦି ଓଡ଼ିଆ କବି ଓ ଲେଖକଙ୍କ କାଳଜୟୀ ସାହିତ୍ୟ ଆଜି ଏହି ପରିବର୍ତ୍ତିତ ସମୟଖଣ୍ଡରେ ନିଷ୍ପ୍ରଭ ହୋଇ ଯାଇନାହିଁ ତା'ର ଚିରନ୍ତନ ସାରସ୍ୱତ ଗୁଣ ଓ ଗୌରବ ପାଇଁ । ଅପରିବର୍ତ୍ତନୀୟ ମଣିଷର ହୃଦୟ କଥା, ତା ଜୀବନ ବଞ୍ଚିବାର ପ୍ରବଣତା କଥା ଯେଉଁଠି ପ୍ରତୀକିତ ତାହା ଗଦ୍ୟପଦ୍ୟ ନିର୍ବିଶେଷରେ, ନୂଆ ପୁରୁଣା ବିଚାର ଉର୍ଦ୍ଧ୍ୱରେ ଅବଶ୍ୟ ସବୁ କାଳର ମଣିଷଙ୍କ ପାଇଁ ସ୍ମରଣୀୟ ହୋଇ ରହିବ ଓ ସବୁ ସମୟ ସେ ମହାନ ସାରସ୍ୱତପୁରୁଷଙ୍କୁ ସେପାଇଁ ଶ୍ରଦ୍ଧା ନିବେଦନ ବି କରିବ ।



# ଏକବିଂଶ ଶତାବ୍ଦୀର ସାହିତ୍ୟ

ଚଳିତ ଶତାବ୍ଦୀର ସାହିତ୍ୟଠାରୁ ଏକବିଂଶ ଶତାବ୍ଦୀର ସାହିତ୍ୟ ସାମାଜିକ ବିବର୍ତ୍ତନ ନିୟମ କ୍ରମରେ ସ୍ୱାଭାବିକ ଭାବେ ପରିବର୍ତ୍ତିତ ହେବ ନିଶ୍ଚୟ । ଏ ପରିବର୍ତ୍ତନ ଯେପରି ବାସ୍ତବ ସେହିପରି ଅନିବାର୍ଯ୍ୟ । ଏହା କମ ବେଶୀରେ ସର୍ବତ୍ର ହିଁ ପରିଲକ୍ଷିତ ହେବ । ୟୁରୋପରେ ଅଧିକ ପ୍ରତ୍ୟକ୍ଷ ହେଲେ ଆଫ୍ରିକାରେ ହୁଏତ ସେ ପରିବର୍ତ୍ତନ ସେତିକି ପ୍ରତ୍ୟକ୍ଷ ହୋଇ ନପାରେ ।

ଗଦ୍ୟପଦ୍ୟ ନିର୍ବିଶେଷରେ ସାହିତ୍ୟ ଅଧିକ ଶୈଳୀ-ପ୍ରଧାନ ହେବ । ଶୈଳରେ ବ୍ୟକ୍ତିକ ଛାପ ବେଶୀ ଅନୁଭୂତ ହେବ । ସାହିତ୍ୟରେ ସାଧାରଣୀକରଣ ବ୍ୟାପାରଟି କ୍ରମଶଃ ଉଣା ହୋଇଯିବ । କବିର ଆତ୍ମଲୀନ ମାନସିକତା ତଥା ମଗ୍ନ ଚୈତନ୍ୟର ଅସ୍ପଷ୍ଟ ବିମ୍ବସବୁ ହୁଏତ ଗଳ୍ପ କବିତାକୁ ଅଧିକ ଦୁର୍ବୋଧ କରିଦେବ । ସାହିତ୍ୟିକର ସାମାଜିକ ଅଙ୍ଗୀକାର ବଦ୍ଧତା ବୋଲି ଆଉ କିଛି ରହିବନି । ସେ ସାମାଜିକ ଦାୟିତ୍ୱ ତୁଲାଇବାକୁ କ୍ରମଶଃ ବିତସ୍ପୃହ ହେବ । ବେଶୀ ଅନୁଗତ ହେବ ତା'ର ଯାବତୀୟ ନାନ୍ଦନିକ ଅନୁଭବ ପ୍ରତି । ସେଥିରେ ସେ ଅଧିକରୁ ଅଧିକ ବିଳାସ କରିବ ।

ବିଶ୍ୱରେ ଏହି ଶତାବ୍ଦୀର ଶେଷ ପାଦରେ ଯାହାସବୁ ପରିଲକ୍ଷିତ ହେଉଛି ସେସବୁ ଶିଳ୍ପୀର ଆତ୍ମାକୁ ଉଲ୍ଲସିତ ନକରି ହୁଏତ ବିଷାଦଗ୍ରସ୍ତ କରି ରଖିବ । ବିଷାଦକୁ ବରଣ କରିନେଇ ସେହି ଭାବରେ ହୁଏତ ଶିଳ୍ପୀଟିଏ ତା'ର ମନ ଓ ଆତ୍ମାର ପରିଚର୍ଯ୍ୟା କରିବ । ଓଡ଼ିଆ ସାହିତ୍ୟରେ ବି ବିଷାଦର ସ୍ୱର ହୁଏତ ଅଧିକ ହେବ । ନିକଟତମ ପରିପାର୍ଶ୍ୱର ପରିଧି ତା'କୁ ଆଉ ବନ୍ଧନଯୁକ୍ତ କରିପାରିବନି । ନିଜର କ୍ଷୁଦ୍ର ଲୋକାୟତନର ବଳୟ ଡେଇଁ ସେ ସବୁମତେ ବିଶ୍ୱମୁଖୀ ହୋଇଯିବ ।

ଏକବିଂଶ ଶତାବ୍ଦୀରେ ବିଶ୍ୱମୁଖୀନତା ଓ ତଦ୍‌ଜନିତ ତା'ର ସମୁଜ୍ଜ୍ୱଳ ମେଦିନୀଦୃଷ୍ଟି ସାମଗ୍ରିକ ଭାବେ ଓଡ଼ିଆ ସାହିତ୍ୟିକର ଆଦର୍ଶ ହେବ । ଗୋଟେ ଆଞ୍ଚଳିକ ଜୀବନ ଜିଇଁବାର ମଧୁର ସମ୍ମୋହନ ହୁଏତ ତା'ର କେତେକାଂଶରେ ରହିବ । କିନ୍ତୁ ଗୋଟେ ବୃହତ୍ତର ବହୁଦେଶୀୟ ଚେ଼ତନା ପ୍ରତି ତା'ର ବିଶେଷ ଉନ୍ମୁଖତା ରହିବ ।

ଓଡ଼ିଆ ସାହିତ୍ୟରେ ଯେଉଁ ଆଞ୍ଚଳିକ ଚିତ୍ରର ବର୍ଣ୍ଣାଢ୍ୟ ଆଲେଖ୍ୟସବୁ ଆମେ ଦେଖିବା ସେଥିରେ ସାର୍ବଜନୀନ ମହାଦେଶୀୟ ଇଙ୍ଗିତ ସବୁ ଅଧିକ ପରିଲକ୍ଷିତ ହେବ । ପ୍ରାକ୍ତନ ଧାର୍ମିକ ଚେତନା କ୍ରମଶଃ ଅନାବଶ୍ୟକ ମନେ ହେବ । ଆହୁରି ନିରର୍ଥକ ମନେ ହେବ ଆମର ଯାବତୀୟ କୁସଂସ୍କାର ଓ ଅନ୍ଧ ଆସ୍ତିକତାସବୁ ।

ସାହିତ୍ୟରେ ଗୋଟେ ଉଚ୍ଚମାନର ଧାର୍ମିକ ପରିଚୟ ନଥିବା ମାନବତାବାଦୀ ଚେ଼ତନା ଅତି ନିବିଡ଼ ଭାବରେ ରହିବ; ଯାହାର ଉନ୍ମେଷକୁ ହୁଏତ ଅଷ୍ଟାଦଶ ଶତାବ୍ଦୀର ସାହିତ୍ୟରେ ଲକ୍ଷ୍ୟ କରାଯାଇଥିଲା ।

ଗୋଟିଏ ପ୍ରକାର ଅନିବାର୍ଯ୍ୟ ପରିବେଶ ଭିତରେ ବିଶ୍ୱର ସବୁ ସାହିତ୍ୟିକ ସେମାନଙ୍କ ଚିନ୍ତା ଓ ଚେତନାରେ କମ ବେଶୀରେ ବହୁଦେଶୀୟ ହେବାକୁ ବାଧ ହେବେ । ବିଶ୍ୱସାହିତ୍ୟପ୍ରତି ମାନ୍ୟତା ଉଭୟ ଲେଖକ ଓ ପାଠକର ବଢ଼ିବ ।

ଆଗାମୀ ଶତାବ୍ଦୀର ସାହିତ୍ୟିକ ଅଧିକ ଆତ୍ମଲୀନ ହେବା କାରଣରୁ ହୁଏତ ସାହିତ୍ୟ ଖାଲି ଦୁର୍ବୋଧ ହେବନି; ଅତ୍ୟଧିକ ଇଙ୍ଗିତଧର୍ମୀ ହୋଇଯିବ । ମେଜିକ ରିଏଲିଟି ପରି ଯୌଗିକରୂପକ କବିର ବକ୍ତବ୍ୟକୁ ଆହୁରି ଜଟିଳ ଓ ଅସ୍ପଷ୍ଟ କରିଦେବ ।

ଏ ସମସ୍ତ ଶୈଳ୍ପିକ ଜଟିଳତା ସତ୍ତ୍ୱେ ଆଗାମୀ ଶତାବ୍ଦୀର ସାହିତ୍ୟ ଅଧିକ ଆକାଶମୁଖୀ ନହୋଇ ଭୂମିସ୍ପର୍ଶୀ ହେବ । କବିର ସୃଜନ ଅନୁଭବ ଅଧିକ ମାନବ କେନ୍ଦ୍ରିକ ହେବ । ସାହିତ୍ୟରେ ମଣିଷ ସମ୍ପର୍କିତ ଅଧିକ କଲ୍ୟାଣକର ଇଚ୍ଛା ପ୍ରକଟିତ ହେବ । ଯାବତୀୟ ଉଦ୍ଭଟ କଳ୍ପନା, ଅତିବାସ୍ତବବାଦୀ ବିମ୍ବ, ନିର୍ଜ୍ଜନ ନିଃସଙ୍ଗ ବିଳାସ ସତ୍ତ୍ୱେ ଜୀବନ ଜିଇଁବାର ସାର୍ଥକତା ପ୍ରତି ବେଶ ଉଷ୍ମ ପ୍ରବଣତା ପରିଲକ୍ଷିତ ହେବ । ସଭ୍ୟତାବିକାଶର ମଧ୍ୟଯୁଗରୁ ଏହି ସାରସ୍ୱତ ପ୍ରବଣତା ସର୍ବତ୍ର ସବୁସାହିତ୍ୟରେ ପ୍ରତୀକିତ ହୋଇଛି ।

ପ୍ରେମ ଓ ବିଶ୍ୱାସହୀନତା, ଜୀବନ ପରିଧିର ଯାବତୀୟ ଅଭାବବୋଧର ଚିତ୍ରଣ ସତ୍ତ୍ୱେ ଆଧୁନିକ ଚେତନା ପିଣ୍ଡ ଯେଉଁ ସୁଧାମୁକ୍ତିର ଅନ୍ୱେଷଣ କରିଛି ତା'ର ଆହୁରି ଉନ୍ମୋଚନ ଆଗାମୀ ଦିନମାନଙ୍କରେ ପରିଦୃଷ୍ଟ ହେବ । ହତାଶାର କୁହୁଡ଼ି ସତ୍ତ୍ୱେ ମାଟି ଓ ଆକାଶରେ ସୂର୍ଯ୍ୟକିରଣ କ୍ରମଶଃ ପରିବ୍ୟାପ୍ତ ହେଲାପରି ଆଶା ଓ ବିଶ୍ୱାସନୀୟତା ସଞ୍ଚାରିତ ହେବ । ସାହିତ୍ୟିକ ତଥାପି ପାରିପାର୍ଶ୍ୱିକ ନାନା ଦୁଃସ୍ଥିତି ସତ୍ତ୍ୱେ ଜୀବନକୁ ଭଲ ପାଇବସିବ । ଜୀବନ ସମକ୍ଷରେ ନିଜକୁ ସମର୍ପିତ କରି ରଖିବ ।

ସବୁକାଳର ଅସଲ ସୃଜନଶୀଳତା ହେଉଛି ଜୀବନ ବିଷୟକ ନିସର୍ତ୍ତ ନିଷ୍ପତ୍ତିତା । ଆଧିଭୌତିକତା ପରି ସାହିତ୍ୟର ଯାବତୀୟ କୃତ୍ରିମ ଆଳଙ୍କାରିକତା ଯାହା ଆଗାମୀ ଶତାବ୍ଦୀରେ ସାହିତ୍ୟରୁ ଚୂଡ଼ାନ୍ତଭାବେ ବିବର୍ଜ୍ଜିତ ହେବ । ରଚନା ମାତ୍ରେହିଁ ଆତ୍ମସ୍ୱୀକାରୋକ୍ତିର ବର୍ଣ୍ଣିଳ ଧ୍ୱଜା ହେବ ।

କୁଢ଼ କୁଢ଼ ଶବ ପଡ଼ିଥିବା ସତ୍ତ୍ୱେ ମଣିଷ ସହଜରେ ମରେନାହିଁ ବୋଲି ସୁଧୀ ସାହିତ୍ୟିକଟିଏ ସମସ୍ତଙ୍କୁ କହୁଥିବ । ମାଟିର ସମ୍ମୋହନକୁ ତା ଗୀତରେ ବାରମ୍ବାର ଉଚ୍ଚାରଣ କରୁଥିବ । ନାନାଦି ଯୁଦ୍ଧବିଗ୍ରହ ସତ୍ତ୍ୱେ ମଣିଷ ବେକ ସହଜରେ କଟିବ ନାହିଁ ବୋଲି ସେ ବିଶ୍ୱାସ କରୁଥିବ ।

ମଣିଷର ଆତ୍ମାକୁ ଜାଗରିତ କରି ରଖିବାର ଇନ୍ଦ୍ରିୟପରାୟଣତା ସବୁ କବିର ମନକୁ ଆବିଷ୍ଟ କରି ରଖିବ । ସେ ଆତ୍ମ ସମ୍ମୋହନ ଭିତରୁ କବି କଦାପି ମୁକୁଳିଯିବାକୁ ଚାହିଁବନି । ଥରେ ଏରିକ୍‌ଫ୍ରୋମ୍ କହିଥିଲେ, ଆମେ ସବୁ ଗତ ଶତାବ୍ଦୀରେ ଈଶ୍ୱରଙ୍କୁ ମାରି ଦେଇଥିଲୁ ଆଉ ଏଇ ଶତାବ୍ଦୀରେ ଆମେ ପୁଣି ମଣିଷକୁ ମାରିଦେଲୁ । ଆଗାମୀ ଶତାବ୍ଦୀ ବୋଧେ ମଣିଷ ମନର ସ୍ୱପ୍ନ ଓ ସୌନ୍ଦର୍ଯ୍ୟାନୁଭୂତିକୁ ନିଃଶେଷ କରିଦେବ । ଲାଭ କରିଥିବା ଜୀବନକୁ

ଅସାମାନ୍ୟ ମନେ କରିବା, ପାଇଥିବା ନିଜର ଭାଗ୍ୟକୁ ଆଶୀର୍ବାଦ ବୋଲି ଜ୍ଞାନ କରିବା ହେଉଛି ଆମର ଅସଲ ସୌନ୍ଦର୍ଯ୍ୟାନୁଭୂତି । ସେହି ଅନୁଭୂତି ଆଗାମୀ ଦିନମାନଙ୍କରେ ଆହୁରି ନିବିଡ଼ ହେବ ଓ ବଞ୍ଚୁଥିବା ଜୀବନପ୍ରତି ନିଷ୍କପଟ ମମତ୍ୱବୋଧ ଅଙ୍କୁରିତ ହେବ । ଅନ୍ୟ ପକ୍ଷରେ ଅନାବଶ୍ୟକ ଧର୍ମଭୀରୁତାକୁ ଆମେ ଆଗାମୀ ଶତାବ୍ଦୀରେ ଅବଶ୍ୟ ବିସର୍ଜି ଦେଇ ପାରିବୁ । ସେପାଇଁ ଆମର ଫଳପ୍ରଦ ଆୟୋଜନ ଓ ବିଶେଷ ମାନସିକ ପ୍ରସ୍ତୁତି ସୃଷ୍ଟିହୋଇଛି ।

ବିଂଶ ଶତାବ୍ଦୀର ଜାଗରଣ ଏକବିଂଶ ଶତାବ୍ଦୀକୁ ଆହୁରି ବିସ୍ତୀର୍ଣ୍ଣ ହେବ । ଆପଣାକୁ ବ୍ୟକ୍ତ କରିବା ପାଇଁ ଆମେ ଆହୁରି ପ୍ରବୋଧିତ ହୋଇ ପାରିବା ।

ସବୁକାଳରେ ଲୋଡ଼ା ମଣିଷର ସତ୍ୟ ବା ଜ୍ଞାନ । ସାହିତ୍ୟ ତାହା ସର୍ବୋତ୍ତମ ଭାବେ ବିତରଣ କରିଥାଏ । କବିର ସର୍ଜନଶୀଳ ମନ ନାନା ଅସାର ଓ ଅସତ୍ୟକୁ ଅତିକ୍ରମ କରି ଏହି ଶୁଦ୍ଧ ଜ୍ଞାନ ପ୍ରତି ଅନୁରକ୍ତ ହୋଇଥାଏ । ସତ୍ୟାନୁସନ୍ଧାନ ହେଉଛି ଉତ୍ତମ ସାହିତ୍ୟର ଗୁଣ ବା ଆଦର୍ଶ । ଏକବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ଏତେ ଅଧିକ ଜୀବନବାଦୀ ହେବଯେ ତହିଁରେ ଦୂରବର୍ତ୍ତୀ ରୋମାଣ୍ଟିକ ଅନର୍ଗଳତା ଆଦୌ ରହିବନି ।

ଜୀବନର ଇନ୍ଦ୍ରିୟଗ୍ରାହ୍ୟ ନିବିଡ଼ ଅନୁଭବ ହିଁ ଯଥାର୍ଥରେ ଆଗାମୀ ଶତାବ୍ଦୀର ସାହିତ୍ୟରେ ବିଷୟ ପିଣ୍ଡ ହେବ । ସଂଘ, ସ୍ଲୋଗାନ କିମ୍ବା କୌଣସି ନିର୍ଦ୍ଦିଷ୍ଟ ବିଷୟର ଅବତାରଣା ସାହିତ୍ୟର ଥିମ୍ ହେବ ନାହିଁ ପ୍ରାୟ । ଶିଳ୍ପୀର ନାନ୍ଦନିକ ଅନୁଭବ ବାୟବୀୟ ନହୋଇ ଜୀବନନିଷ୍ଠ ହିଁ ହେବ । ପରିବର୍ତ୍ତିତ ସମୟର ନାନା ଦୁଃସ୍ଥିତ ସତ୍ତ୍ୱେ ଆଗାମୀ ଶତାବ୍ଦୀର ଶିଳ୍ପୀ ସର୍ବତ୍ର କଲ୍ୟାଣକର ମାନବଜୀବନର ବନ୍ଦନା ଗୀତ ହିଁ ଗାଇବ । ଧର୍ମ, ଜାତି, ବର୍ଣ୍ଣ ନାମରେ ଥିବା ବିଭେଦସବୁ କ୍ରମଶଃ ଊଣା ହୋଇଯିବ । ସମଗ୍ର ବ୍ରହ୍ମାଣ୍ଡକୁ ଏକ ବୋଲି ମନେ କରିବାରେ ସାହିତ୍ୟ ବହୁଭାବରେ ପ୍ରୋତ୍ସାହିତ ହିଁ କରିବ । ସାହିତ୍ୟିକର ବସୁଧୈବ କୁଟୁମ୍ବକମ୍ ଭାବ ତଥା ବିଶ୍ୱ ଦୃଷ୍ଟି ବଢ଼ିବ । ଅସମର୍ଥ ସଙ୍କୀର୍ଣ୍ଣମାନେ କେବଳ ତଥାପି ଭାଷା, ଧର୍ମ, ଭୂଗୋଳ ନାଁରେ ବିଭେଦର କଥା କହୁଥିବେ ।

ଏକବିଂଶ ଶତାବ୍ଦୀରେ ଶିଳ୍ପୀ ସମସ୍ତଙ୍କ ପାଇଁ, ସମସ୍ତଙ୍କ ବାଧାବନ୍ଧନ ଦୂର କରିବା ପାଇଁ ପ୍ରାର୍ଥନା ହିଁ କରିବ । ନିଜପାଇଁ ଏକ ବୃହତ୍ତର ସାଂସ୍କୃତିକ ପରିମଣ୍ଡଳ ସୃଷ୍ଟିକରିବ; ଯେଉଁଥିରେ ସେ ତା'ର ଆତ୍ମା ଅନ୍ତରକୁ ସ୍ୱଚ୍ଛନ୍ଦରେ ବିତରଣ କରାଇ ପାରିବ । କୌଣସି ଆଞ୍ଚଳିକ ବିଭେଦ ତା ମନ ଓ କଳ୍ପନାକୁ କେବେ ସଙ୍କୁଚିତ କରି ଦେବନି । ତା'ର 'ଗ୍ଲୋବାଲ ଭିଲେଜ' ଧାରଣା ପ୍ରତି କ୍ରମଶଃ ବିଶ୍ୱାସ ଓ ସମ୍ମାନ ବଢ଼ିବ ।

ଆଜି ଏକବିଂଶ ଶତାବ୍ଦୀର ଅବ୍ୟବହିତ ପୂର୍ବରୁ ଓଡ଼ିଶା ପ୍ରଦେଶର ବହୁ ତରୁଣ କବି ଲେଖକ ସେମାନଙ୍କ ରଚନାରେ ବିଶ୍ୱଗର୍ଭିକ ଚେତନାକୁ ହିଁ ବହୁଭାବରେ ପ୍ରତୀକିତ କରୁଛନ୍ତି । ଆନ୍ତର୍ଜାତିକ ଭାବ ଭାବନା ପ୍ରତି ସେମାନଙ୍କ ବିଶେଷ ଉନ୍ମୁଖତା ପରିଲକ୍ଷିତ ହେଉଛି । ଆଗାମୀ ସମୟଖଣ୍ଡରେ ତରୁଣ ପ୍ରାଣର ଏହି ଉତ୍ସୁକତା ଆହୁରି ପରିବ୍ୟାପ୍ତ ହେବ ।

ବର୍ତ୍ତମାନ ଅନ୍ୟତ୍ର ଅନ୍ୟ ଭୂଖଣ୍ଡରେ ଯେଉଁ ବୌଦ୍ଧିକ ଚିନ୍ତା ତରଙ୍ଗ ସୃଷ୍ଟି ହେଉଛି ସେଥିପ୍ରତି ଓଡ଼ିଶାର ବହୁ ତରୁଣ କବି ଓ ଲେଖକ ଅଧିକ ସଶ୍ରଦ୍ଧ । ଆଗାମୀ ଏକବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ସ୍ୱରୂପ ସମ୍ପର୍କରେ ତରୁଣ ପ୍ରାଣର ଏହି ଗ୍ରହଣଶୀଳତାକୁ ଉପଜୀବ୍ୟ କରି ଧାରଣା କରାଯାଇ ପାରେ । ଭାରତର ପ୍ରତିଟି ପ୍ରାଦେଶିକ ସାହିତ୍ୟରେ ଏହି ଆନ୍ତର୍ଜାତିକ ଚିନ୍ତା ତରଙ୍ଗର ପ୍ରତିଫଳନ ପରିଦୃଷ୍ଟ ହେବ ।

ଦ୍ରୁତ ଯୋଗାଯୋଗ, ବିଜ୍ଞାନର ଅତି ଆଶ୍ଚର୍ଯ୍ୟ ସଫଳତା, କମ୍ପ୍ୟୁଟର ତଥା ଯନ୍ତ୍ରମାନବର ବିସ୍ମୟଜନକ କୃତିତ୍ୱ ଆଗାମୀ ଶତାବ୍ଦୀର ମଣିଷ ଜୀବନକୁ ଆହୁରି ଗତିଶୀଳ କରିଦେବ । ତା'ର ସ୍ୱପ୍ନ ଓ କଳ୍ପନାବିଳାସ ତାଦ୍ୱାରା ଅନିବାର୍ଯ୍ୟ ଭାବେ ପ୍ରଭାବିତ ହେବ । ତା'ର ପ୍ରତିଫଳନ ତା'ର କଳା ଓ ସୌନ୍ଦର୍ଯ୍ୟବୋଧକୁ ମଧ୍ୟ ନିୟନ୍ତ୍ରଣ କରିବ । ଏହାଦ୍ୱାରା ମଣିଷ ମନରୁ ଅନ୍ଧ ଆସ୍ତିକତା, କୁସଂସ୍କାର ତଥା ବୈଜ୍ଞାନିକ ଧାର୍ମିକ ବିଶ୍ୱାସ ଦୂର ହୋଇଯିବ ଓ ସାହିତ୍ୟର ଆବେଦନ ଅଧିକ ସୃଜନଶୀଳ ଓ ସାର୍ବଜନୀନ ହେବ ।

ନାନା ଭାବରେ ଗୋଟିଏ ବିଶ୍ୱ ଐକ୍ୟ ପାଇଁ ଯେଉଁ ପ୍ରସ୍ତୁତି ଊନବିଂଶ ଶତାବ୍ଦୀରୁ ଆରମ୍ଭ ହୋଇ ନାନା ଜାଗରଣ ଭିତରେ ବିଂଶ ଶତାବ୍ଦୀରେ ଅଧିକ ଘନିଭୂତ ହୋଇଥିଲା ତାହା ଏକବିଂଶ ଶତାବ୍ଦୀରେ ଆହୁରି ପରିପୂର୍ଣ୍ଣ ହୋଇ ଉଠିବ ।

ମନୁଷ୍ୟ ଜୀବନ ସହିତ ଏକାତ୍ମ ହେବାର ତନ୍ମୟତା ଆଗାମୀ ଶତାବ୍ଦୀର ଶିଳ୍ପୀକୁ ବିଭୋର କରିଦେବ । ତା ଆଗରେ ଯେତେ ବିଫଳତା, ଯେତେସବୁ ପ୍ରତିବନ୍ଧକ ଦେଖାଯିବ, ତା ମନରେ ଯେତେ ଅଧିକ ଧକ୍କା ଲାଗିବ, ମାନବପ୍ରୀତି, ବିଶ୍ୱମୈତ୍ରୀ ଓ କରୁଣାକୁ ସେ ସେତେ ନିବିଡ଼ଭାବେ ଅନୁଭବ କରିପାରିବ ।

ଏହି ସମୟ ଖଣ୍ଡରେ ମଣିଷ ମନରେ ଥିବା ଯୁଦ୍ଧ ପ୍ରବଣତା, ତଥାପି ଅବଶିଷ୍ଟ କିଛି ଧର୍ମ ଓ ଗୋଷ୍ଠୀଗତ ବିଦ୍ୱେଷ, କିଛି ଅଶ୍ରଦ୍ଧା ଓ ପରସ୍ପର ମଧ୍ୟରେ କିଛି ଅବିଶ୍ୱାସକୁ ଏକବିଂଶ ଶତାବ୍ଦୀର କବିଚିତ୍ତ ଇତିହାସର ବିଡ଼ମ୍ବନା ବୋଲି କେବଳ ଜ୍ଞାନ କରିବ । ଆମେ ନିରନ୍ତର ଆତ୍ମ ସମୀକ୍ଷା ହିଁ କରୁଛୁଁ । ଏକବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟର ସ୍ୱରୂପ କ'ଣ ହେବ ତା'ର ଆକଳନ ପାଇଁ ହୁଏତ ଆମକୁ ଗତ ଶତାବ୍ଦୀମାନଙ୍କୁ ଅବଲୋକନ କରିବାକୁ ପଡ଼ିବ । ଚଳିତ ଶତାବ୍ଦୀ ପ୍ରତ୍ୟେକ ଦୃଷ୍ଟିରୁ ଆଗାମୀ ଶତାବ୍ଦୀର ପୃଷ୍ଠଭୂମି ହୋଇଥାଏ । ବିଶ୍ୱର ସର୍ବତ୍ର ପ୍ରତ୍ୟେକ ନବଜାଗରଣ ପର୍ବର ଇତିହାସ ଏହିପରି ବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ଓ ତା'ର ପ୍ରତିଟି ସାହିତ୍ୟାଦର୍ଶର ଉନ୍ମେଷ ହୁଏତ ଊନବିଂଶ ଶତାବ୍ଦୀରେ ହୋଇଥିଲା । ସାମାଜିକ ବିବର୍ତ୍ତନ ପ୍ରକ୍ରିୟା ପ୍ରାୟ ଏହିପରି । ସାମାଜିକ ବିବର୍ତ୍ତନ ପ୍ରକ୍ରିୟା ସର୍ବଦା ପୁଣି ଉଦ୍‌ବର୍ତ୍ତନର । ଉଦ୍‌ବର୍ତ୍ତନର ନିୟମ ହେଲା 'ଯାହା ଗତକାଲି ମନ୍ଦ ଥିଲା ତାହା ଆଜି ଭଲ ହୋଇଛି ଓ ଆସନ୍ତା କାଲି ତାହା ଆହୁରି ଭଲ ହେବ ।'

କେତେକ ନିହାତି ରକ୍ଷଣଶୀଳ ଲୋକ ଆଧୁନିକ ସାହିତ୍ୟ ବିରୋଧରେ ଅହେତୁକ ପ୍ରତିକ୍ରିୟା ପ୍ରକାଶ କରୁଥିଲେ ହେଁ ଆଧୁନିକ ସାହିତ୍ୟକୁ ପୁରାତନ ସାହିତ୍ୟ ଅପେକ୍ଷା ଅନେକ

ଦୃଷ୍ଟିରୁ ଉନ୍ନତ ବୋଲି କୁହାଯାଇ ପାରିବ । ଏକବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ବିଂଶ ଶତାବ୍ଦୀର ସାହିତ୍ୟାଦର୍ଶଠାରୁ ଆହୁରି ସମ୍ମୁନ୍ନତ ହେବ ଏଥିରେ ସନ୍ଦେହ ନାହିଁ ।

ଆଜି ଆମ ସାହିତ୍ୟିକମାନେ ଯେଉଁ ସବୁ ନୀତିବାଦୀ ଭାବଧାରାକୁ ଗୁଡ଼େଇ ତୁଡ଼େଇ ଲେଖୁଛନ୍ତି, ଯେଉଁ ବିଭଙ୍ଗ ଜୀବନର ଛବି ଆଙ୍କୁଛନ୍ତି ତାହା ବସ୍ତୁତଃ ଏକାନ୍ତ ସୃଜନଶୀଳ ଆମ ସର୍ବୋତ୍ତମ ଜୀବନପ୍ରିୟତାର ଆପେକ୍ଷିକ ଚିତ୍ରସବୁ । ଏହି ବିଂଶ ଶତାବ୍ଦୀର ଆଧୁନିକ ଓଡ଼ିଆ କବି ସମୁନ୍ନତ ଶୃଙ୍ଗାର ଓ ସୌନ୍ଦର୍ଯ୍ୟର ଛବି ଆଙ୍କିବାକୁ ଅସମର୍ଥ ବୋଲି କେତେକ ପୁଣି କହନ୍ତି । ମାତ୍ର ତାହା ଆଦୌ ସତ୍ୟ ନୁହେଁ । ଏକବିଂଶ ଶତାବ୍ଦୀର ନିଜସ୍ୱ ସୌନ୍ଦଯ୍ୟବୋଧ ଓ ସୃଜନଶୀଳତାରେ ଆହୁରି ବିମୋହିତ ହେବସିନା ଜୀବନ ବିମୁଖ ହୋଇ ଆଦୌ ବସିବନି । ସେ ଯାବତୀୟ ବିଧ୍ୱସ୍ତ ଇଲାକା ଓ ପୋଡ଼ାଭୂଇଁର ଚିତ୍ର ଆଙ୍କିପାରେ; ମାତ୍ର ସେଥିରେ ଆଗାମୀ ଶତାବ୍ଦୀର କବି ଜଗତର ଚାରୁଛବି ଓ ଜୀବନ ଅଭ୍ୟନ୍ତରର ସହଜାତ ସୌନ୍ଦର୍ଯ୍ୟକୁ ହିଁ ଦେଖିବ ।

ଆଗାମୀ ଶତାବ୍ଦୀର କବି ତା' ସ୍ୱପ୍ନ ଓ କଳ୍ପନାରୁ ଶ୍ରଦ୍ଧା ଓ ସୌନ୍ଦର୍ଯ୍ୟକୁ କେବେ ବିସର୍ଜ୍ଜି ଦେବନି । ଯେଉଁ ନାଟକୀୟ ବୈଜ୍ଞାନିକ ଘଟଣାସବୁ ଆଜି ସମସ୍ତଙ୍କୁ ବିସ୍ମିତ କରି ଦେଇଛି ତାର ଆଂଶିକ ପ୍ରଭାବ ବିଶ୍ୱର ସବୁସାହିତ୍ୟ ପରି ଓଡ଼ିଆ ସାହିତ୍ୟରେ ବି ପଡ଼ିବ । ଦୁରାରୋଗ୍ୟ ଏଡ଼ସ୍ ପରି ଆତଙ୍କ ମଣିଷର ଆଶା ଓ ଆନନ୍ଦବୋଧ ତଥା ତଦ୍‌ଜନିତ ମୂଲ୍ୟବୋଧକୁ ପ୍ରଭାବିତ କରିପାରେ । ଯନ୍ତ୍ରର ପ୍ରାବଲ୍ୟ ମଣିଷର ପ୍ରତ୍ୟୟ ଓ ତା'ର ଆବେଗକୁ ସଂକ୍ରମିତ କରିପାରେ । ସେସବୁର ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ ପ୍ରତିଫଳନକୁ ଏକବିଂଶ ଶତାବ୍ଦୀର ସାହିତ୍ୟାଦର୍ଶରୁ ହୁଏତ ପୃଥକ କରି ଆଗାମୀ ଦିନର ସାହିତ୍ୟ ଓ ତା'ର ରୂପରେଖକୁ କଳନା କରି ହେବନି ।

ଏ ସୁନ୍ଦର ବ୍ରହ୍ମାଣ୍ଡରେ ବଞ୍ଚିବାର ପରିବେଶକୁ ଆମେ ଯେପରି ନିର୍ବିଚାର ଭାବେ ନଷ୍ଟ କଲୁଣି ତା'ର ଭୟାବହ ପରିଣତି ଆମକୁ ଆଗକୁ ଭୋଗିବାକୁ ପଡ଼ିବ । ବାୟୁ ମଣ୍ଡଳରୁ ଅମ୍ଳଜାନ ନିଃଶେଷ ହେବାକୁ ବସିଲାଣି । ଅଧିକ ତାପ ସୃଷ୍ଟି କରୁଥିବା ଅଙ୍ଗାର କାମ୍ଳ ବାୟୁ ମଣ୍ଡଳରେ ଅଧିକ ହେଲାଣି । ଅତ୍ୟଧିକ ସୂର୍ଯ୍ୟ କିରଣରୁ ରକ୍ଷା କରୁଥିବା ଓଜନସ୍ତର ଭାଙ୍ଗିଗଲାଣି । ପାଣି ପବନ ଭୟଙ୍କର ଭାବେ ପ୍ରଦୂଷିତ ହେଲାଣି । ମଣିଷ ଭିତରୁ ଦୟା ଓ କରୁଣା ଭାବ ଊଣା ହୋଇ ଗଲାଣି । କ୍ଲୋନିଙ୍ଗ୍ ହୁଏତ ଅବଶେଷରେ ସମାଜରେ ପିତାମାତାଙ୍କ ପ୍ରତି ଥିବା ମାନ୍ୟତାକୁ ପୁରାପୁରି ବଦଳାଇ ଦେବ ।

ଆଗାମୀ ଦିନ ମାନଙ୍କରେ ଏହି ସବୁ କାରଣରୁ ମଣିଷର ସ୍ୱପ୍ନ ଓ କଳ୍ପନା ବିଳାସ ଊଣା ହୋଇଯିବ । ଏକ ବିଭୀଷିକାମୟ ଯୁଦ୍ଧ ବିଧ୍ୱସ୍ତ ଇଲାକାରେ ମଣିଷ ବଞ୍ଚିଲା ପରି ସମଗ୍ର ପରିବେଶ ସେମିତି କ୍ରମଶଃ ଆଶାତୀତ ଭାବେ ବଞ୍ଚିବା ପାଇଁ ଆଉ ଅନୁକୂଳ ହୋଇ ରହିବନି । ଏଡ଼ସ୍ ପରି ଦୁରାରୋଗ୍ୟ ବ୍ୟାଧି ମଣିଷ ମନରୁ ଆଶା ଓ ଆନନ୍ଦ ତୁଟାଇ ଦେବ ।

ଆଗାମୀ ଏକବିଂଶ ଶତାବ୍ଦୀର ମଣଷ ଏକ ନିହାତି ବିବର୍ଣ୍ଣ ଧ୍ୱଂସର ପୃଥିବୀକୁ ହିଁ ସାମ୍ନା କରିବ । ତଥାପି ମଣିଷ ଏପରି ଏକ ଦିବ୍ୟ ପ୍ରାଣୀ ଯେ ଇତିହାସର ଅନେକ ଦୁଃସ୍ଥିତି ଭିତରେ ବି ଆଶା ଓ ଆନନ୍ଦର ଗୀତ ଗାଇଛି । ନାନାଦି ଅଭାବ ଓ ଅସୁନ୍ଦର ଥିବା ସତ୍ତ୍ୱେ ସୁନ୍ଦର ଦେଖିବା ଚ଼ରମ ଦୁର୍ଭାଗ୍ୟ ଭିତରେ ବି ତଥାପି ସ୍ୱପ୍ନ ଦେଖିବା ମଣିଷର ସର୍ବୋତ୍ତମ ସଂସ୍କାର ହୋଇଛି ।

ହୁଏତ ମଣିଷର ଏହି ଏକାନ୍ତ ଆଶା ଓ ଆନନ୍ଦବାଦୀ ପ୍ରବଣତା ଯୋଗୁଁ ଆଗାମୀ ଶତାବ୍ଦୀର ସାହିତ୍ୟରେ ଉଲ୍ଲିଖିତ ଅକଲ୍ୟାଣକର ଦୁଃସ୍ଥିତିର ପ୍ରତିଫଳନ ବେଶୀ ହୋଇ ନପାରେ । ତଥାପି ମଣିଷର ସ୍ୱପ୍ନ, କଳ୍ପନା ବିଳାସ ତା'ର ପ୍ରେମାନୁଭୂତି ତଥା ସୁନ୍ଦରର ଅନୁଭବ ବଦଳିଯିବ । ନାନାଦି ଚେ଼ଷ୍ଟା ଓ କୌଶଳ ଭିତରେ ଜିଇଁ ରହିବାକୁ ସେ ଉତ୍ତମ ସାର୍ଥକତା ବୋଲି କେବଳ ଜ୍ଞାନ କରିବ ।

ସାହିତ୍ୟରେ ସେତେବେଳେ ମାତ୍ରାଧିକ ଜ୍ଞାନ ନାଁ ସତ୍ୟ ପ୍ରକଟିତ ହେବ ତାହା ମଧ୍ୟ ଆଲୋଚନାର ଏକ ବିଷୟ । ନୂତନ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ମଣିଷର ଜ୍ଞାନକୁ ପ୍ରଭାବିତ କରିବ ନାଁ ଆଧୁନିକ ଜୀବନ ଦର୍ଶନ କିମ୍ୱା ଏସବୁ ମିଶାମିଶି ମଣିଷର ଅଭିଜ୍ଞତା. ଏତେବେଳୁ ଏସବୁକୁ ଜଣେ ଫଳିତ ଶାସ୍ତ୍ରୀ ଜ୍ୟୋତିଷ ଭବିଷ୍ୟତ କହିଲା ପରି ଆଦୌ କହି ହେବନି ।

ଯନ୍ତ୍ର ବିଶେଷତଃ କମ୍ପ୍ୟୁଟର ଓ ଅଣୁଶକ୍ତି ମଣିଷ ଜୀବନର ଢାଞ୍ଚା ବା ପେଟର୍ଣ୍ଣ ତଥା ତଦ୍‌ଜନିତ ମୂଲ୍ୟବୋଧକୁ ହୁଏତ ବଦଳାଇ ଦେବ । ତା'ର ବିଶ୍ୱଦୃଷ୍ଟି ହେତୁବାଦୀ ଚେତନା ସତ୍ତ୍ୱେ ସେ ନାନାଦି ଭାବେ ଅସହାୟ ହୋଇ ପଡ଼ିବ । ଏକବିଂଶ ଶତାବ୍ଦୀର ସେହି ଅସହାୟ ମଣିଷଟି ଆପଣାକୁ ନିବିଡ଼ ଭାବେ ଅନୁଭବ କରିବା ପାଇଁ ବିଷାଦକୁ ହିଁ ବରଣ କରିନେବ ଓ ଏହି ମଣିଷର ଏହି ବିଷାଦବୋଧ ହିଁ ଏକବିଂଶ ଶତାବ୍ଦୀର ସୃଜନଶୀଳତାର ଏକ ନିଦା ଅଂଶ ହେବ ।



# ସାହିତ୍ୟର ଗ୍ରାହକତା

ସାହିତ୍ୟର ଗ୍ରାହକତା କଲେ ପ୍ରାଣରେ ଶ୍ରଦ୍ଧା ବଢ଼େ, ମନବଢ଼େ, ଚେତନା ବିକଶିତ ହୁଏ ।

ସାହିତ୍ୟ ପଢ଼ି ପୁଣି ଜଣେ ଚତୁର ହୁଏ । ତାର ବୁଦ୍ଧିବଢ଼େ, ଜ୍ଞାନ ବଢ଼େ । ଛବିଳ ବ୍ରହ୍ମାଣ୍ଡର ଭୂଗୋଳକୁ ଆପଣାର କରିବା ପାଇଁ ଶିଖେ । ମାଟି ଓ ଆକାଶ ତାକୁ ବାରବାର ମୋହି ଦିଏ । ମାଟିର ଆତ୍ମୀୟତା ତାକୁ ବେଢ଼ିଦିଏ ।

ସାହିତ୍ୟର ମୂଳଭୂମି ହେଉଛି ସ୍ପର୍ଶ । ସହସ୍ର ସଂଯୋଗର ତୀର୍ଥ ଭୂମି ହେଉଛି ସେହି ସାହିତ୍ୟ ।

ସାହିତ୍ୟ ଜଣକୁ ନମିଚ୍ଛିତକରେ । ସାହିତ୍ୟ ଜଣକୁ ଅନନ୍ୟ ରସମୟତା ଦାନ କରେ । ରସ ସମୁଦ୍ରର ଅତଳକୁ ଯିବା ପାଇଁ ପ୍ରୋତ୍ସାହିତ କରେ ।

ଏ ବ୍ରହ୍ମାଣ୍ଡରେ ବଞ୍ଚୁଥିବା ଅନେକ ଲୋକ ମୁଗ୍ଧ ହୋଇ ପାରନ୍ତି ନାହିଁ । ମୁଗ୍ଧ ହେବା ସବୁଠି, ସବୁକାଳରେ ଗୋଟେ ସାତ୍ତ୍ୱିକ ଅନୁଭବ । ତା ଦ୍ୱାରା ଜଗତର ସବୁକିଛି ନିବିଡ଼ ଲାଗେ । ନିବିଡ଼ ନ ଲାଗିଲେ ପକ୍ଷୀର ଗୀତ କାହିଁକି ରତି ସୁଖବି ମାମୁଲି ଲାଗିବ ।

ସାହିତ୍ୟ ଆଗକୁ ନେଇଯାଏ । ଆଉ ଟିକିଏକୁ ଟୁପୁର ଟାପର ବର୍ଷା ହେବ ବୋଲି ସ୍ୱପ୍ନର କବିତା ପଢ଼ାଏ । ପରିଶ୍ରାନ୍ତ ପାନ୍ଥକୁ ଆଗରେ ଚନ୍ଦନ ବଣ, ପଦ୍ମ ପୋଖରୀ ଅଛି ବୋଲି କହିସେ ଆଡ଼କୁ ବାଟ କଢ଼େଇ ନିଏ । ସ୍ୱପ୍ନ ଦେଖିବାକୁ ଶିଖାଏ ।

ଜୀବନମୟତାର ବଳୟସବୁକୁ ଉଖାରି ଦିଏ । ଗଭୀର ଉଲ୍ଲାସର ମନ୍ଦାକିନୀ ବୁହାଇଦିଏ ।

ସାହିତ୍ୟ ସେତୁ ପରି କାଳ କାଳକୁ ସବୁ ଯୋଡ଼ିଦିଏ । ଅତୀତର ବ୍ୟଥା ଓ ବିଷାଦକୁ ପ୍ରକଟନ କରିଦିଏ । ସୁବର୍ଣ୍ଣ ଦୀପ୍ତ ଶୃଙ୍ଗାର ରଚିବା ପାଇଁ ପ୍ରାଣକୁ କାରୁଣ୍ୟରେ ଭିଜାଇଦିଏ ।

ଉନ୍ନତ ସାହିତ୍ୟ କୃତି ସବୁ ଆଲୋକର ପଥ ସଦୃଶ ।

ବିଷୟାଚ୍ଛନ୍ନ ମନୁଷ୍ୟର ଆତ୍ମାକୁ ସାହିତ୍ୟ ତ୍ରାଣ କରି ଦିଏ ତା'କୁ ଦାସତ୍ୱରୁ ମୁକ୍ତିଦିଏ ।

ମାୟା ଓ ମହା ବନ୍ଧନର ଏ ଜୀବନ । ସଂଶୟ, ଆସକ୍ତି ସବୁତାକୁ କବଳିତ କରିଦିଏ । ସାହିତ୍ୟ ସାର ଓ ଶାଶ୍ୱତକୁ ଉପଲବ୍ଧ କରାଏ । ମନୁଷ୍ୟ ଜୀବନର ଉତ୍ତମତାକୁ ସୂଚିତ କରେ । ରୂପାନ୍ତରଣର ଅନିବାର୍ଯ୍ୟ ସମ୍ଭାବନାକୁ ସାବ୍ୟସ୍ତ କରେ ।

ଗୋଟେ ଜାନ୍ତବ ଇତରତାର ବଳୟ ଭିତରୁ ମୁକ୍ତ ହୋଇ ଦିବ୍ୟାନୁଭୂତି ଲାଭର ବାସନା ଜଣକୁ ଅନୁପ୍ରେରିତ ନ କଲେ ତାର ମୁକ୍ତି ନାହିଁ । ସତ ସାହିତ୍ୟ ଏକଥା ମନୁଷ୍ୟକୁ ବାରବାର ଚେତେଇ ଦିଏ ।

ସାହିତ୍ୟ ଓ ସ୍ୱାଧୀନତା ଓ ସ୍ୱାଭିମାନର ସଂକେତ । କବିଟିଏ ତା ଅନ୍ତରରେ ଏକାଏକା ଅଥଚ ଅନେକ କୋଟି ମଣିଷଙ୍କ ସହିତ ସଂପର୍କିତ ହେବାର ଇଚ୍ଛା ତାର ଶିବ ସଂକଳ୍ପକୁ ବିସ୍ତୀର୍ଣ୍ଣ କରାଏ ।

ସାହିତ୍ୟର ଗ୍ରାହକତା କରିବା ଅର୍ଥ ସୃଜନଶୀଳ ମନ ଓ କଳ୍ପନାର ବିଳାସ କରିବା । ମନୁଷ୍ୟ ବେଶି ବଞ୍ଚେ ଦେହରେ ନୁହେଁ; ତା ମନ ଓ ଚେତନାରେ । ସାହିତ୍ୟ ଭାବରେ ତା ମନ ଓ ଚେତନାକୁ ଭିଜାଇଦିଏ । ତାର ରସଚେତନା ତାକୁ ମହାଜୀବନ, ମହାଦିଗନ୍ତର ସ୍ୱାଦ ଆଣିଦିଏ । ତାର ସ୍ୱପ୍ନ କଳ୍ପନା ତାକୁ ଅମରାବତୀ ଆଡ଼େ ନେଇଯାଏ ।

ସାହିତ୍ୟ କେତେବେଳେ ବ୍ୟାବହାରିକ ନୁହେଁ କି ବାଣିଜ୍ୟ ପ୍ରଧାନ ମଧ୍ୟ ନୁହେଁ । ଆତ୍ମାର ବିଳାସ ପାଇଁ ସାହିତ୍ୟ ଜଣକୁ ଯୋଗ୍ୟ କରାଏ । ବିନୀତ ଓ ବଳଶାଳୀ ଆତ୍ମାର ଅଧିକାରୀ ହେବାପାଇଁ ପ୍ରୋତ୍ସାହିତକରେ ।

ଧ୍ରୁପଦୀ ସାହିତ୍ୟର ଗୁଣ ହେଉଛି ତାହା, ଯାହା ମଣିଷକୁ ଯୁଗେ ଯୁଗେ ସତ୍ୟ ଶିବ ଓ ସୁନ୍ଦରର ଅନୁଭବ ଆଣିଦିଏ । ଗୋଟେ ସ୍ଥୂଳ ପାର୍ଥିବ ଜୀବନ ତାର ଆତ୍ମାକୁ ଆଉ ଅବରୁଦ୍ଧ କରି ରଖିପାରେନା ।

ମନୁଷ୍ୟର ମନ ଓ କଳ୍ପନା ଉତ୍ତମ ସାହିତ୍ୟ ପଠନ ଦ୍ୱାରା ଏତେ ରସସିକ୍ତ ହୋଇଯାଏ ଯେ ସେ ତା ଜୀବନକୁ ଅନୁପମ ବୋଲି ଜ୍ଞାନକରେ ତାକୁ ଜୀବନ ସୁନ୍ଦର ଲାଗେ । ସେ ତା ଜୀବନକୁ ମେହୋତ୍ସବମୟ ବୋଲି ମନେକରେ ।

ଚଳମାନ ଘଟଣାକୁ ଆଧାରକରି ଗଢ଼ିଉଠିଥିବା ସ୍ଲୋଗାନ ଧର୍ମୀ ସାହିତ୍ୟ ଯାହା ବହୁ ଭାବରେ ସାଟାୟାର ଧର୍ମୀ ତାହା ନିତ୍ୟ କାଳରେ ପାଠକ ଅନ୍ତରକୁ ବାନ୍ଧି ପାରେନାହିଁ । କ୍ଲାସିକ ସାହିତ୍ୟର ଗୁଣ ହେଉଛି ତାହା ନିତ୍ୟ କାଳର ଅପରିବର୍ତ୍ତନୀୟ ମୁଦ୍ରାକୁ ହିଁ ଲେଖିଥାଏ ଯେପରି ନିତ୍ୟକାଳର ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ଋତୁ ବଦଳିବା, ସଞ୍ଜ ସକାଳ ହେବା, ମଣିଷର ବ୍ୟଥା ବେଦନା, ନାରୀର ମାଆ ହେବାର ଆଦିମ ଇଚ୍ଛା, ଫୁଲ ଫୁଟିବା, ବର୍ଷାରେ ମାଟି ଭିଜିଯିବା ଆଦି ଅନେକ ଅନେକ କଥା ।

ବାର ବାର ଲେଖା ହେଉଥିଲେ ବି ସେ ସବୁ ନୂଆ ପରି ଲାଗେ । ଜଣେ ପାଠକ ତାର ମନ ଓ ଆତ୍ମାକୁ ବଢ଼ାଇବା ପାଇଁ ଏଇ କ୍ଲାସିକ ସାହିତ୍ୟର ଗ୍ରାହକତା କରିବା ଉଚିତ୍ ।

ମହାନ୍ ସୌନ୍ଦର୍ଯ୍ୟ ଶାସ୍ତ୍ରୀ ଉଇଟ୍‌ଗେନ୍‌ଷ୍ଟାଇନ୍ ମରିବା ପୂର୍ବରୁ କହିଥିଲେ, "ମୁଁ ମରିଯାଉଛି, ହେଲେ ଗୋଟେ ସୁନ୍ଦର ଜୀବନ ଜିଇଁବା ପାଇଁ ମୁଁ ସାରା ଜୀବନ ସ୍ୱପ୍ନ ଦେଖିଥିଲି ବୋଲି ଦୟାକରି ଏଠି ଉପସ୍ଥିତ ନଥିବା ମୋ ବନ୍ଧୁମାନଙ୍କୁ କହିଦେବେ ।" ଉଇଟ୍‌ଗେନ୍‌ଷ୍ଟାଇନ୍‌ଙ୍କର ପ୍ରତ୍ୟେକ ବହି ସୁନ୍ଦର ଜୀବନ ପାଇଁ ସମସ୍ତଙ୍କୁ ଅନୁପ୍ରେରିତ କରେ ।

ସାହିତ୍ୟ ସୁନ୍ଦର ଜୀବନ ପାଇଁ ପ୍ରେରଣା ଦିଏ । ଗୋଟେ ସୁନ୍ଦର ଭୋଗ ଆଡ଼କୁ କ୍ରମଶଃ ଉନ୍ମୁଖ କରାଏ ।

ସାହିତ୍ୟର ଗ୍ରାହକତା କଲେ ଯଦି ସୁନ୍ଦର ଜୀବନ ବଞ୍ଚିବା ପ୍ରତି ଆମର ସମର୍ଥନ ବଢ଼ିବ ତାହେଲେ ଅଯଥାରେ ନିରର୍ଥକ ଭାବେ ଦୁଃଖ ଭୋଗୁଥିବା ମଣିଷଙ୍କ ପାଇଁ ସାହିତ୍ୟର ସେହି ଗ୍ରାହକତା ହିଁ ଆବଶ୍ୟକ ।

ଜୀବନ ସୁନ୍ଦର । କୁତ୍ସିତ ବୁଦ୍ଧି ଏହି ସୁନ୍ଦର ଜୀବନର ତେଜକୁ ନ୍ୟୁନ କରିଦିଏ । ମନରେ ଶ୍ରଦ୍ଧା ବଢ଼ିଲେ, ସଙ୍କଳ୍ପ ବଢ଼ିଲେ ଜୀବନର ସୁନ୍ଦରପଣ ବଢ଼େ । ଜୀବନ ଆଗକୁ ଆଗକୁ ବଢିବା ପାଇଁ ବାଟ ଖୋଜେ । ଆମେ ଏପାଇଁ ମୁକ୍ତି ଓ ଆଲୋକର ପଥ ଆଡ଼େ ଯିବା ଉଚିତ ।

ସଂଶୟ ସବୁ ଆମକୁ କିଂକର୍ତ୍ତବ୍ୟ ବିମୂଢ଼ ଓ ହୀନବୀର୍ଯ୍ୟ କରିଦିଏ । ଜ୍ଞାନ, ବୁଦ୍ଧି ଆମକୁ ସେଥିରୁ ରକ୍ଷା କରେ ।

ଯେ ସତ ସାହିତ୍ୟର ଗ୍ରାହକତା କରେ ସେ ସ୍ୱତଃ ସୁଜନ ଓ ସହୃଦୟ ହୋଇଯାଏ । ପୃଥିବୀର ଋତୁବଦଳିବା, ପାଣି ପବନ, ସଞ୍ଜ ସକାଳ ସବୁତା'କୁ ନିବିଡ଼ ଲାଗେ ।

ଏହି ନିବିଡ଼ ଲାଗିବାହିଁ ଗ୍ରାହକତାର ପ୍ରମାଣ । ଗ୍ରାହକତା କରିବାର ପ୍ରବଣତା ନଥିଲେ ସାହିତ୍ୟର ସ୍ରଷ୍ଟା କାହାକୁ କେବେ ରସ ନିବିଡ଼ ଲାଗିବନି ।

ସାହିତ୍ୟ ହେଉଛି ଏକ ଛବିଳ ଭୂଗୋଳ, ଯାହାକୁ ମୋହି ଦେଉଥିବ ସେହିଁ ସାହିତ୍ୟ ସ୍ରଷ୍ଟାରେ ଏ ରସମୟ, ରୂପମୟ ଜଗତକୁ ଦେଖି ପାରିବ ।

ମହୁମାଛି ଫୁଲରୁ ମହୁ ସଂଗ୍ରହ କଲାପରି ଏ ଜଗତ କୋଷରୁ ଆମକୁ ଭାବ ଆନନ୍ଦ ସଂଗ୍ରହ କରିବାକୁ ପଡ଼ିବ ।

ଆନନ୍ଦ ଟିକକ ପାଇଁ ତ ଜୀବନରେ ଏତେ ଆୟୋଜନ ।

ସେହି ଆନନ୍ଦ ହିଁ ସବୁର ଶୀର୍ଷ, ସବୁର ଅନ୍ତିମ ।

ଆନନ୍ଦ ନାହିଁତ ଜୀବନ ନାହିଁ ।

ଆମର ମୁକ୍ତିର ଆକାଂକ୍ଷା ସେହି ଆନନ୍ଦ ପାଇଁ

ସକଳ ଆଧ୍ୟାତ୍ମିକ ଅଭିପ୍ସାର ମୂଳ ତ ହେଉଛି ତାହା ।

ପରମ ପୁଲକ ପାଇଁ ପ୍ରାଣର ଏତେ ଦାହ ।

ସର୍ବୋତ୍ତମ ଧାର୍ମିକ ବା ସୌନ୍ଦର୍ଯ୍ୟତାତ୍ତ୍ୱିକ ଅଭିଳାଷଟି ବି କଦାପି ଆନନ୍ଦ ବିବର୍ଜ୍ଜିତ ନୁହେଁ । ଆମ ସକଳ ସାଧନାର ଅନ୍ତିମ ଲକ୍ଷ୍ୟଟି ହେଉଛି ସେହି ଆନନ୍ଦ ।

ଉତ୍ତମ ସାହିତ୍ୟ କାଳ କାଳ ଧରି ତା'ର ପାଠକକୁ ସେହି ଆନନ୍ଦର ସନ୍ଦେଶ ହିଁ ଦେଇଛି । ଗଭୀର ସୌନ୍ଦର୍ଯ୍ୟାନୁଭୂତିର ରୂପଟିତ ହେଉଛି ପ୍ରାଣର ସେଇ ଚରମ ପୁଲକ ।

ତଦ୍‌ଗତ ହେବାର ବାସନା ବଢ଼ିଲେ ହୃଦୟରେ ଅନନ୍ୟ ପ୍ରେମିକତା ଜାତ ହୁଏ । ତଦ୍ ଗତ ନହୋଇ ଆପଣା ସ୍ୱାର୍ଥର ବଳୟ ଭିତରେ କେହି ବିମଳ ଆନନ୍ଦ ପାଇ ପାରିବନି ।

ଏ ଜଗତ ପର ନୁହେଁ; ଏକାନ୍ତ ଆପଣାର ।

ଏ ଜଗତ ସହିତ, ଏ ଜଗତକୁ ନେଇ ଜଣେ ଆନନ୍ଦ ଲାଭ କରେ । ଏ ଜଗତ ତା'ର । ଏ ଜଗତରେ ସେ ଜନ୍ମ ନେଇଛି । ଏଇଠି ବି ତା'ର ବିନାଶ ହେବ । ଜଗତ ତା'କୁ ଧାରଣ କରିଛି । ଜଗତ ସହିତ ଜଣକର ସଂପର୍କ ଅଧିକ ପ୍ରେମମୟ ଓ ବିଶ୍ୱାସ ମୟ ହେବା ଉଚିତ । ତାହେଲେ ସେ ନିବିଡ଼ତାକୁ ଅନୁଭବ କରି ପାରିବ । ଗୋଟେ ତାଦାତ୍ମ୍ୟ ଭାବର ପୁଲକ ତା ଅନ୍ତସ୍ଥଳକୁ ଉଦ୍‌ବେଳିତ କରି ଦେବ ।

ଆକାଶ କେତେ ଉର୍ଦ୍ଧ୍ୱରେ । ଅଥଚ ସେହି ଅନନ୍ତ ଶୂନ୍ୟ ଆକାଶ ପ୍ରତି ଆମ ପ୍ରାଣର କେତେ ଉନ୍ମୁଖତା । ମାଟି ପ୍ରୀତି ଠାରୁ ଆକାଶ ମୁଖୀ ହେବାର ପ୍ରବଣତା ଆମର କମ୍ ନାହିଁ ।

ଏ ଜଳସ୍ଥଳ ଏ ନଭମଣ୍ଡଳ ଆମର । ପକ୍ଷୀର ଗୀତ, ବର୍ଷାରାତି, ଫୁଲର ଫଗୁଣ, ଜହ୍ନରାତି, ଅସରନ୍ତି ଧାନବିଲ, ଏ ପର୍ବତ ମାଳ, ଶ୍ୟାମଳ ଉପତ୍ୟକା, ପୁଷ୍ପ ସ୍ତବକିତ ଲତାକୁଞ୍ଜ ସବୁ ଏ ମଣିଷର ।

ମଣିଷର ଉପସ୍ଥିତିହିଁ ଏ ପୃଥିବୀକୁ ଅର୍ଥପୂର୍ଣ୍ଣ କରିଛି । ମଣିଷ ତା'ର ଚେ଼ତନାବଳରେ ଏ ବ୍ରହ୍ମାଣ୍ଡର ବର୍ଣ୍ଣାଢ଼୍ୟ ରୂପକୁ ଅନୁଭବ କରିଛି । ତା'କୁ ଆହୁରି ସରସ ଆଉ ଭାବପୂର୍ଣ୍ଣ କରି ପ୍ରକାଶ କରିଛି । କାରଣ ମଣିଷ ହେଉଛି କେବଳ ଗୋଟିଏ ପ୍ରାଣୀ ଯାହାର ଚେ଼ତନା ଓ ଚିନ୍ତନ କରିବାର ଶକ୍ତି ଅଛି । ପୃଥିବୀକୁ ନାନାମତେ ବର୍ଣ୍ଣନା କରିବାର ଶକ୍ତି ଅଛି । ତା'ର ଗ୍ରହଣଶୀଳତା ପାଇଁ ଶକ୍ତି ଅଛି । ତା'ର ରସିକତା, ତା'ର ସୃଜନଶୀଳତା ତା'ର ଗ୍ରାହକତା ତାକୁ ସତରେ ମହିମ୍ନ କରିଛି ।

ସେ ନଭମଣ୍ଡଳକୁ ବର୍ଣ୍ଣନା କରିଛି । ନିବିଡ଼ ବନସ୍ପତି, ସମୁଦ୍ର, ମହାକାଳ ସବୁକୁ ବର୍ଣ୍ଣନା କରିଛି । ଅସଂଖ୍ୟ ଶ୍ଳୋକ ହେଉଛି ତା'ର ଶ୍ରଦ୍ଧାନ୍ୱିତ ସୃଜନଶୀଳତାର ପ୍ରମାଣ ।

ଜଣେ ପାଠକ ତା'ରି ଗ୍ରାହକତା କରିଛି । ଗ୍ରାହକତା କରିବା ହେଉଛି ତା'ର କୃଷ୍ଟି ବୁନିଆଦିର ବିଷୟ ।

ବ୍ରହ୍ମାଣ୍ଡରେ ସୁନ୍ଦର ଜୀବନ ଭୋଗ ହେଉଛି ଆମ ସାହିତ୍ୟର ବଡ଼ ବିଷୟ । ଜୀବନର ସଫଳତା ଅନ୍ୱେଷଣର ରୂପକଥା ହେଉଛି ଆମ ସାହିତ୍ୟ । ସଫଳ ଜୀବନର ସଂଜ୍ଞା କ'ଣ ସେ ବିଷୟ ଜାଣିବାର କୌତୂହଳ ଆମ ସାହିତ୍ୟ ପଠନର ଏକ ବଡ଼ ଦିଗ ।

ସାହିତ୍ୟ ହେଉଛି ସର୍ବଦା ଆମ ଜୀବନର ବିମ୍ବିତ ଦର୍ପଣ । ଦର୍ପଣରେ ଆମେ ଆମର ପ୍ରତିଛବି ଦେଖିଲାପରି ସାହିତ୍ୟରେ ଆମେ ଅବିକଳ ଜଗତ ଓ ଜୀବନର ପ୍ରତିଛବି ଦେଖୁଁ ।

ଆମର ସାହିତ୍ୟର ଗ୍ରାହକତା କରିବା ଅର୍ଥ ଜୀବନ ପ୍ରିୟତାକୁ ବାରବାର ଦୋହରାଇବା । କାରଣ ଜଣେ ଜୀବନକୁ ଭଲ ନପାଇଲେ ସାହିତ୍ୟକୁ ଭଲ ପାଇ ପାରିବ ନାହିଁ । ଜୀବନର ସୁଖ ଦୁଃଖ, ହସ କାନ୍ଦ ଯାହାକୁ ନିବିଡ଼ ନଲାଗେ ତା'ର ହୃଦୟ ପଣିଆ ସତରେ କ'ଣ । ସେ ସାହିତ୍ୟ ପଢ଼ିବାକୁ ସୁଖ ମଣିବ ନାହିଁ ।

ଜୀବନର ବନ୍ଦନା ଗୀତ ହେଉଛି ସାହିତ୍ୟ । ନିବିଡ଼ ଜୀବନ ଭୋଗର ପକ୍ଷପାତି କେବଳ ସାହିତ୍ୟର ରସ ପରିଣାମକୁ ଉପଲବ୍‌ଧି କରିପାରେ ।

ସାହିତ୍ୟର ଗ୍ରାହକତା ଲୋକ ଖାଲି କଳାଭୋଗ କରେ ନାହିଁ ତାସହିତ ମଣିଷ ଆତ୍ମାର ଶ୍ରଦ୍ଧା ଓ ସତ୍ୟଶୀଳତାକୁ ଦେଖେ । ସମାଜକୁ ତ୍ରୁଟିରହିତ କରିବା ପାଇଁ ତା'ର ଆନ୍ତରିକ ପ୍ରଗାଢ଼ତାକୁ ମଧ ଉପଲବ୍‌ଧି କରେ ।

ପାଠକ ଶିଳ୍ପୀ ଆତ୍ମା ସହିତ ପ୍ରକୃତରେ ସଂଯୋଗ ସ୍ଥାପନ କରେ । ପାଠକକୁ ଶିଳ୍ପୀଙ୍କ ଆକାଶମୁଖୀ ବର୍ଣ୍ଣାଢ଼୍ୟ ଆତ୍ମାର ସ୍ୱର୍ଗ ମିଳେ । ଜଣେ ସ୍ରଷ୍ଟା ଏ ମର୍ତ୍ତ୍ୟର ଦ୍ୱିତୀୟ ଈଶ୍ୱର; ଯେ କାଳ୍ପନିକ ଅମରାବତୀର କାରିଗର ।

ପାଠକ ସାହିତ୍ୟ ପୃଷ୍ଠାରେ କଳ୍ପନାର ବିବିଧ ରୂପ ଦେଖେ । କେତେ ତ୍ରୁଟି ରହିତ ପୃଥିବୀର କଲ୍ୟାଣକର ରୂପ ଦେଖେ । ଯାହା ବାସ୍ତବରେ ସେ ଖୋଜି ପାରିନଥାଏ । ସାହିତ୍ୟ ପୃଷ୍ଠାରେ ତା'କୁ ସାମ୍ନା କରେ ।

ମଣିଷର ସ୍ୱପ୍ନ କେତେ ସୁନ୍ଦର, କଳ୍ପନା ସବୁ କେତେ ଅଧିକ ପ୍ରେମମୟ ପାଠକ ସାହିତ୍ୟ ପୃଷ୍ଠାରୁ ତା'କୁ ଅନୁଭବ କରେ ।

ଯେ ସାହିତ୍ୟର ଗ୍ରାହକତା କରେ ନାହିଁ ତା'ର ସେ ଅନୁଭବ କାହିଁ ଆସିବ ? ସାହିତ୍ୟ ପୃଷ୍ଠାରେ କେତେ ଯେ ନଦୀ ପ୍ରବାହିତ ହୁଏ, କେତେଯେ ସେଠି ପୁଣି ଚୈତ୍ର ଉଦ୍ୟାନର ଶୋଭା ବର୍ଣ୍ଣିତ । କେତେ ଯେ ସମ୍ମୋହନ, କେତେ ଯେ ପ୍ରେମ ତା'କୁ ସତରେ କଳନା କରି ହେବନି ।

ସାହିତ୍ୟ ହେଉଛି ଗୋଟେ ତ୍ରୁଟିରହିତ କଳ୍ପିତ ବିଶ୍ୱର ରୂପଛବି । ଯାହା ବାସ୍ତବ ନୁହେଁ; ଆମ ସ୍ୱପ୍ନର ପୃଥିବୀ ।

ପ୍ରାଣ ଲୋଡ଼େ ଯାହା କେତେ ଜଣ ଏ ପୃଥିବୀରେ ତାହା ପାଆନ୍ତି । ସହିତ୍ୟ ହେଉଛି ସବୁ ଅପ୍ରାପ୍ତି, ସବୁ ଅବଶୋଷର ପ୍ରକାଶ ଭୂମି । ସବୁ ପ୍ରାପ୍ତିର ଆନନ୍ଦ ମୟ ମଣ୍ଡଳ ।

ସାହିତ୍ୟ ସବୁକୁ ରୂପାୟିତ କରିଛି । ସନ୍ୟାସକୁ ସମ୍ମୋହନକୁ । କେତେ ଗୋବିନ୍ଦଚନ୍ଦ୍ର, କେତେ ଶଙ୍କରାଚାର୍ଯ୍ୟଙ୍କ କଥା ଲେଖିଛନ୍ତି କେତେ ଯଯାତିଙ୍କ କଥା ଲେଖିଛି ଯେ ଚରମ ବାର୍ଦ୍ଧକ୍ୟରେ ଜୀବନ ଭୋଗ କରିବା ପାଇଁ ପୁତ୍ରକୁ ଯୌବନ ମାଗିଛି । କେତେ ଅମ୍ଫା, କେତେ ଗୋପା ଓ ଗଉତମଙ୍କୁ ସାହିତ୍ୟ ଲେଖିଛି ।

ସାହିତ୍ୟ ଲେଖିଛି ଏକ ଏକ ରୂପାନ୍ତର ପ୍ରକ୍ରିୟା ବା ମେଟାମରଫସିସ୍‌କୁ; ଯେଉଁଠି ରତ୍ନାକର ସବୁ ବାଲ୍ମୀକି ହେଉଛନ୍ତି ତ ଗଉତମ ସବୁ ବୁଦ୍ଧ ହେଉଛନ୍ତି ।

ଗୋଟେ ସାଧାରଣ ଶାପଗ୍ରସ୍ତ ମଣିଷ ଭିତରେ ତଥାପି ଅମାପ ସୃଜନଶୀଳତାର ସମ୍ଭାବନାକୁ ସାହିତ୍ୟ ନିରନ୍ତର ଲେଖିଆସିଛି । ଚିରଦିନ ପାଇଁ ସାହିତ୍ୟ ଆନନ୍ଦ ଓ ଆଲୋକର ପଥ ଦେଖାଇଛି ।

ସାହିତ୍ୟ ନାନା ବୈଭିନ୍ୟ ଓ ବ୍ୟବଧାନ ଭିତରେ ସଂଯୋଗର ସେତୁପରି କାର୍ଯ୍ୟ କରିଛି । ଦୂର ସହିତ ନିକଟକୁ ଯୋଡ଼ି ଦେଇଛି । ଅନେକ କୋଟି ମଣିଷଙ୍କ ସହିତ ସଂଯୋଗିତ ହେବା ପାଇଁ ସବୁକାଳର ମଣିଷଙ୍କୁ ପ୍ରୋତ୍ସାହିତ କରିଛି । ପାଠକଟିଏ ଆପଣା ପ୍ରାଣରେ ଉପଲବ୍ଧି କରେ ସାହିତ୍ୟର ଏହି ଏକାନ୍ତ ମଙ୍ଗଳମୟ ପଂକ୍ତିଟିକୁ —

'ଆମର ହୃଦୟ କ୍ରନ୍ଦନ କରେ

ମାନବ ଜୀବନେ ମିଶିତେ

ନିଖିଳର ସାଥେ ମହାରାଜପଥେ

ଚଲିତେ ଦିବସେ ନିଶିଥେ ।'

ସାହିତ୍ୟ ସଂଯୋଗିତ ହେବାର ମନ୍ତ୍ର ଶିଖାଏ । ଆଶା ଓ ଆନନ୍ଦର ପାର୍ବଣୀ ଗାଏ । ଏ ବିଶ୍ୱ ଯେ ମଧୁମୟ, ପ୍ରେମମୟ ସାହିତ୍ୟ ବାରବାର ତାହା ଘୋଷଣା କରେ । ସଂଶୟ ଓ ଅନ୍ଧକାର ସବୁ ଦୂର କରିଦିଏ । ପ୍ରୀତି ଭାବନାରେ ପ୍ରତ୍ୟେକଙ୍କୁ ପ୍ରବୋଧିତ କରିଦିଏ ।

ସାହିତ୍ୟ ଗ୍ରହୀତାର ହିତ ସାଧନ କରେ । ତା'କୁ ପୁଣ୍ୟତୀର୍ଥ ଆଡ଼େ ନେଇଯାଏ । ଅମୃତର ଆସ୍ୱାଦନ ଆଣି ଦିଏ । ତା'ର ସୀମିତ ସ୍ୱାର୍ଥର ସଂକୀର୍ଣ୍ଣ ବଳୟ ଭିତରୁ ସାହିତ୍ୟ ତା'ର ଗ୍ରହୀତାକୁ ବରଂ ଅର୍ଥପୂର୍ଣ୍ଣ ବୃହତ୍ତର ବଳୟ ଭିତରକୁ ନେଇଆସେ । ତା'କୁ ମଧୁର ଓ ସୁନ୍ଦରର ରୂପ ଦେଖାଏ ।

ସାହିତ୍ୟ ସତ କହିଲେ ସୁନ୍ଦରର ଏକ ଅଭିବ୍ୟକ୍ତି ।

ଏତେ ରଂଗ ଏତେ ରୂପର ସଂଜ ସକାଳ ଏଠି, ଏତେ ଗରିମାମୟ ନିତ୍ୟକାଳକୁ ଆମ ଉପରେ ସାମିଆନା ହୋଇଥିବା ଏ ନଭମଣ୍ଡଳ, ଏତେ ପ୍ରାଣପୂର୍ଣ୍ଣ ଓ ନିବିଡ଼ ବନସ୍ପତି ତାହା ସାହିତ୍ୟ ଆମକୁ ତା'ର ଚିତ୍ତଉଲ୍ଲାସକ ମର୍ମସ୍ପର୍ଶୀ ଭାଷାରେ ଜଣାଏ ।

ସାହିତ୍ୟ ଗ୍ଲାନିରୁ, ପରାଜୟରୁ, ବ୍ୟର୍ଥତାରୁ ଉଠାଇ ଆଣି ପୁଣି ବିଜୟ ଓ ସଫଳତାର ସ୍ୱପ୍ନ ଦେଖାଏ ।

ସାହିତ୍ୟ ହେଉଛି ମହାମୁକ୍ତିର ପ୍ରସ୍ରବଣ । ତା'ର ପ୍ରେମିକତା କରୁଥିବା ମଣିଷମାନଙ୍କୁ ସାହିତ୍ୟ ସୀମାବଦ୍ଧତାରୁ ରକ୍ଷା କରେ । ମହାଜୀବନ ଓ ମହାଜଗତର ଶାଶ୍ୱତ ଉପଲବ୍ଧି ଆଡ଼େ ତା'କୁ ନେଇଯାଏ । ତା'କୁ ପ୍ରବୋଧିତ କରେ ।

ଏକ ପ୍ରବୋଧିତ ଅନ୍ତର କେବେ ଇତରଙ୍କ ପରି ସଂକୀର୍ଣ୍ଣହୋଇ ପାରେ ନାହିଁ । ସେ ମୁକ୍ତିପାଗଳ ହୁଏ ।

ସାହିତ୍ୟ ମହାନନ୍ଦର ଆସ୍ୱାଦନ ଆଣି ଦିଏ । ତା'କୁ ସତ୍ୟ ସନ୍ଧାନୀ କରାଏ । ତାକୁ ଜାଗ୍ରତ କରାଏ । ତାକୁ ଉଦ୍ୟମୀ କରାଏ । ତା'କୁ ଜୀବନର ଅସରନ୍ତି ମହାଯାତ୍ରାରେ ପରାର୍ଥ ପଥିକଟି କରିଦିଏ ।

ସାହିତ୍ୟ ସତରେ ମହାଭାବର ଏକ ହିରଣ୍ମୟ ସ୍ପର୍ଶ; ଯାହା ଭାବରେ ଦେହ ମନକୁ ସିକ୍ତ କରିଦିଏ ।

ଜଣେ ଉଲ୍ଲସିତ ନହେଲେ ସାହିତ୍ୟ ତା'କୁ କେବଳ ଶବ୍ଦ ସମଷ୍ଟି ବୋଲି ମନେହେବ । ପ୍ରାଣରେ ତା'ର ସେ ଶିହରଣ ସୃଷ୍ଟି ହେବ ନାହିଁ ।

ସାହିତ୍ୟ ଜଣକର କୂପମଣ୍ଡୁକତ୍ୱକୁ ଦୂର କରିଦିଏ । ସେ ସବୁମତେ ବିନୀତ ହୋଇଯାଏ । ସେହି କେବଳ ଉଚ୍ଚାରଣ କରେ; ମୋର ସଂପତ୍ତି ମୋତେ ଦରିଦ୍ର କରିଛି ।

ସହସ୍ର ସହସ୍ର ଭାବ ସମ୍ପଦ ଉପାର୍ଜ୍ଜନହିଁ ମହତ ଜୀବନର ଲକ୍ଷ୍ୟ । ଉପଲବ୍ଧିରେ ଜଣେ ଜୀବନକୁ ସମୁହତ କରୁ ବୋଲି ସାହିତ୍ୟ ସେହି ଅଭିଳାଷ ପୋଷଣ କରିଛି ।

ସଁବାଳୁଆଟିଏ ପ୍ରଜାପତି ହେଲାପରି କୁତ୍ସିତ ସୀମାବଦ୍ଧତାରୁ ମୁକ୍ତ ହୋଇ ଜଣେ ଶାଶ୍ୱତକୁ ଭେଟୁ ବୋଲି ସାହିତ୍ୟ ତା'ର ଗ୍ରାହକମାନଙ୍କୁ ପ୍ରବୋଧିତ କରେ ।

ସାହିତ୍ୟର ସବୁଠାରୁ ବଡ଼କଥା ହେଉଛି ଶ୍ରଦ୍ଧା ଓ ସଂସ୍କାରବୋଧ । ସାହିତ୍ୟର ଗ୍ରାହକତା କଲେ ଜଣେ ଯେପରି ନିଜ ଭିତରେ ଶ୍ରଦ୍ଧାଶୀଳତା ବଢ଼ାଏ ସେହିପରି ସେ ସଂସ୍କାର ପ୍ରୟାସୀ ହୁଏ ।

ଜଣେ ସାହିତ୍ୟିକ କମ ବେଶୀରେ ଜଣେ ସମର୍ଥ ସଂସ୍କାରକ । ଏପରିକି କେତେଜଣ ସଂସ୍କାରକ ଭାବେ ଅଧିକ ପରିଚିତ ହୋଇ ଯାଆନ୍ତି ।

ଦର୍ଶନ ଆଗ; ତା ପରେ କବିତା । Vision first; then Poetry । ସାହିତ୍ୟ ଜୀବନର ଅର୍ଥ ପ୍ରଖ୍ୟାପନ କରେ । ସନ୍ତାପ ସବୁ ଭୁଲିଯିବା ପାଇଁ ପ୍ରୋତ୍ସାହନ ଯୋଗାଏ । ସୁନ୍ଦର ଦେଖିବା ପାଇଁ ପ୍ରବୋଧିତ କରେ ।



# ଏକ ପବିତ୍ର ଉପାସନା ମନ୍ଦିର

ମୋ ପବିତ୍ର ଉପାସନା ମନ୍ଦର କଥା କହିଲା ବେଳେ ତା ସହିତ ମୁଁ ମୋ ଜୀବନର ସ୍ମୃତି କଥା ବି କହିବି ।

ଜୀବନର ଦୀର୍ଘ ତିରିଶ ବର୍ଷ ନିରବଚ୍ଛିନ୍ନ ଭାବେ ମୁଁ ଏହି ନୀରବିତ ପର୍ବତଶ୍ରେଣୀ ବାର ପାହାଡ଼ ମୂଳରେ ହିଁ କଟାଇଛି । ଈଶ୍ୱରଙ୍କ ଇଚ୍ଛା ବୋଧେ ଥିଲା ତାହା ।

ମୁଁ ଜନ୍ମ ହୋଇଥିଲି ସମୁଦ୍ରକୂଳ ଏକ ଗାଁରେ । ବାରି ବିକ୍ଷୁବ୍ଧ ସମୁଦ୍ର ବେଳାଭୂମିରେ ମୋର ଶୈଶବ ବିତାଇ ଥିଲି । ଭାରି ମଧୁର ଥିଲା ସତରେ ସମୁଦ୍ରକୂଳ ଗାଁରେ କଟାଇଥିବା ମୋ ଶୈଶବର ଦିନସବୁ ।

ସେତେବେଳେ ବାପାମାଆ, ଭାଇଭଉଣୀ ସମସ୍ତେ ପାଖରେ ଥିଲେ ।

ଗୁଡ଼ାଏ ସାଙ୍ଗ ସାଥୀ ବି ଥିଲେ ସେ ସମୁଦ୍ର କୂଳ ଗାଁରେ ।

ସମୁଦ୍ର କୂଳ ଗାଁର ମାଟି ସେ ପାଇଁ ମୋତେ ଭାରି ଆପଣାର ଲାଗୁଥିଲା ।

ଭାରି ନିବିଡ଼ ଲାଗୁଥିଲା ଆମ ଗାଁ ଉପରର ଆକାଶ ।

ଭାରି ବିଶ୍ୱାସନୀୟ ଲାଗୁଥିଲେ ଆମ ସେ ଗାଁର ମଣିଷମାନେ ।

ଚାହୁଁ ଚାହୁଁ ମଧୁର ଲାଗୁଥିବା ସେ ମୋ ଶୈଶବ ସମ୍ମୋହନର ଜୀବନ ଶେଷ ହୋଇଗଲା ।

ସମୟ ଆଗକୁ ଚାଲିଲା ।

ସେ ମୋ ପଛ ଜୀବନ, ମୋ ଛୁଆଦିନକୁ ଆଉ କିଏ ଆଜି ଆଣି ମୋତେ ଦେଇ ପାରିବ ?

ଗାଁ ସ୍କୁଲରେ ପଢୁଥିଲା ବେଳେ ଯାହାଙ୍କ ବହି ମୋତେ ଉଦୁଉଦିଆ ଦିପହର ବେଳେ, ବର୍ଷାଦିନେ, ଶୀତରାତିରେ ତମାମ କନ୍ଦେଇ ଦେଉଥିଲା ସେ ହେଲେ ଔପନ୍ୟାସିକ କାହ୍ନୁଚରଣ ମହାନ୍ତି । କେତେ ଶୀତଳ ଜହ୍ନରାତି, ଧୁ ଧୁ ବାଲି ବିଲ, ଗାଁ ଗୋହିରୀ, ପଦ୍ମପୋଖରୀ, କାଠଚମ୍ପା ଭର୍ତ୍ତି ଗାଁର ମନ୍ଦିର ବେଢ଼ା, ରଜଦୋଳି ଗୀତ, ନାଲି ଉଖୁଡ଼ା, ପଖାଳ ଭାତରେ ମହକ, କେତେ ଜାତିକା ପିଲା ଖେଳର ଗାଁ ଦାଣ୍ଡ ତାଙ୍କ ଉପନ୍ୟାସ ମାନଙ୍କରେ ଚିତ୍ରିତ ହୋଇଥିଲା । ପାହାଡ଼ମୂଳ ହେଉ କି ସମୁଦ୍ରକୂଳ ନଈଖଣ୍ଡି ଗାଁ ହେଉ ସବୁ ଗାଁମାନଙ୍କର ଚମତ୍କାର ଲେଣ୍ଡସ୍କେପ ସେ ଆଙ୍କି ପାରୁଥିଲେ ।

ଶରତଚନ୍ଦ୍ର, ବଙ୍କିମ ଚନ୍ଦ୍ର, ପ୍ରେମଚନ୍ଦଙ୍କ ଉପନ୍ୟାସ ଗୁଡ଼ିକର ଓଡ଼ିଆ ଅନୁବାଦ ସବୁକୁ ମୁଁ ଖଳାରେ, କ୍ଷେତରେ, ଗଛଡାଳରେ, ସମୁଦ୍ରକୂଳ ଝଙ୍କାଳିଆ ବରଗଛ ମୂଳରେ ବସି ପ୍ରଚୁର ପଢୁଥିଲି ।

କି ଆନନ୍ଦ ମିଳୁଥିଲା ସେମିତି ସବୁ ଉପନ୍ୟାସ ପଢ଼ିବାରେ ମୁଁ ଠିକ୍ କରି କହି ପାରିବିନି । କି ଲାଭ ଆଶାରେ ବି ମୁଁ ଦିନଦିନ ରାତିରାତି ଧରି ପଢ଼ିବାରେ ନିଶାଖୋରଙ୍କ ଭଳି ମାତି ଯାଇଥିଲି କହି ପାରିବିନି ।

ମୋ ମନ ଭିତରର ଆନନ୍ଦ ଯୋଗୁଁ ମୁଁ ଆଉ ସବୁକଥା ଭୁଲି ବୋଧେ ପଢ଼ିବାରେ ଏତେ ମଜଗୁଲ ହୋଇ ରହୁଥିଲି । ବହିରେ ବର୍ଣ୍ଣିତ ଚିତ୍ର ଓ ପରିବେଶ ସବୁ ଏତେ ଜୀବନ୍ତ ଲାଗୁଥିଲା ଯେ, ବହୁଦିନ ପର୍ଯ୍ୟନ୍ତ ସେ ପରିବେଶର ଛବି ମୋ ଭିତରେ ସର୍ବଦା ଆଙ୍କି ହୋଇ ରହୁଥିଲା ।

ସମୟର ଗତି ମୋ ଜୀବନର ଅବସ୍ଥା ସବୁକୁ ବଦଳାଇ ଦେଉଥାଏ । ଚାହୁଁ ଚାହୁଁ ମୋର ବିଦ୍ୟାର୍ଥୀ ଜୀବନ ସରିଗଲା । ଆମ ପ୍ରଦେଶର ଗୋଟେ ଅଭିଜାତ ଶିକ୍ଷାନୁଷ୍ଠାନରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ଊଣେଇଶ ବାଆସ୍ତରୀ ମସିହାରେ ଭୀଷଣ ବନ୍ୟାବିପ୍ଳାତ ଚାଲିଥିଲା ବେଳେ ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ ମୁଁ ଅଧ୍ୟାପକ ଚାକିରୀ ଆରମ୍ଭ କଲି ଏବଂ ସେହି ବର୍ଷ ବର୍ଷାଦିନ ପୂର୍ବରୁ କ୍ଷୀରିଚୋରା ଗୋପୀନାଥ ମନ୍ଦିରରେ ଜଣେ ଛାନ୍ଦ ଚଉପଦୀର ରସିକତା କରୁଥିବା ସାରସ୍ୱତ ପ୍ରେମୀ ସଜ୍ଜନଙ୍କ ଗୌରାଙ୍ଗୀ କନ୍ୟା ସହିତ ମୋର ଶୁଭ ପରିଣୟ ଉତ୍ସବ ଅତି ନିରାଡ଼ମ୍ବର ଭାବରେ ଶେଷ ହୋଇଥିଲା ।

ଜୀବନର ଗୁଡ଼ାଏ ଅଭିଳାଷ ଥିଲା ମୋର ସେଦିନ ।

ତା' ସହିତ ପ୍ରଚୁର ଭାବ ପ୍ରବଣତା ବି ଥିଲା ।

ସତ କହିଲେ ମୁଁ ଗୋଟେ ଅଦ୍ଭୁତ ରୋମାଣ୍ଟିକ୍ ମନ ନେଇ ବଞ୍ଚିଥିଲି ।

ଅଥଚ ମୁଁ ଗୋଟେ ଶୁଦ୍ଧ ଆନନ୍ଦବାଦୀ ପତ୍ନୀ ପାଇଲି ନାହିଁ ।

କେଜାଣି ଈଶ୍ୱରଙ୍କ ଇଚ୍ଛା ଆନ ପ୍ରକାରର ଥିଲା ।

ସେହି କାରଣରୁ ଜୀବନ ତମାମ ଦୁଃଖ ସହିଲି ତ ।

ଦୁଃଖ ଭୁଲିବା ପାଇଁ ସୁଖ ଦୁଃଖର ନିଚ୍ଛୁଟା ଜୀବନ କଥା ଲେଖାଥିବା ପ୍ରଚୁର ବହି ସବୁ ଆଣି ପଢ଼ିଲି ।

ଜୀବନରେ ଆଉ କ'ଣ ପାଇଲି ନପାଇଲି ସେ ହିସାବ ମୁଁ ଆଜି କରୁନି । କିଛି ଲାଭ ବି ନାହିଁ ସେଥିରେ ।

ଚାହୁଁଚାହୁଁ ମୋର ସବୁସ୍ୱପ୍ନ ମରିଗଲା । ସବୁ ସମ୍ମୋହନବି କ୍ରମଶଃ ତୁଟିଗଲା । ସମୁଦ୍ରକୂଳ ଗାଁରେ ବିତାଇ ଥିବା ମଧୁର ଶୈଶବର ଦିନସବୁ କେବଳ ମୋ ସ୍ମୃତିରେ ବହୁରଙ୍ଗୀ ଫୁଲ ହୋଇ ଫୁଟିଲା ।

ମୁଁ ଭାବିଥିଲି, ପତ୍ନୀ ପ୍ରେମର ଉଷ୍ମତା ମୋତେ ଚିରକାଳ ବିଳସିତ କରିବ ବୋଲି ।

ମୋ ବିବାହ ପୂର୍ବରୁ ମୋ ପତ୍ନୀ ପ୍ରାଣପ୍ରିୟା ପ୍ରେମିକା ଥିଲାବେଳେ ମୁଁ ତା'କୁ ହୁଏତ ଅତିକମରେ ଶହେରୁ ଅଧିକ ଦୀର୍ଘ ପ୍ରେମପତ୍ର ଲେଖିଥିବି ।

ସେଦିନୁ ମୁଁ ତା'କୁ ବାରବାର ଅନୁରୋଧ କରି ଆସିଥିଲି ଯେ, 'ତୋ ଠାରେ ମୋର ଆଉ କିଛି ବିଶେଷ ସାଂସାରିକ ପ୍ରାର୍ଥନା ନାହିଁ । ନଅଭଜା ଛଅତିଅଣ କରି ତୁ ମୋତେ ନ ଦେ' । ସକାଳେ ସବୁ ଚ଼କୁଳି କରି ମୋତେ ଜମା ନପରଷ । ଉଗ୍ର ବାସ୍ନାର ବାଦଶାହୀ ଅତର ସିଞ୍ଚି ମୋ ରୁମାଲକୁ ଆଣି ଛାତି ପକେଟରେ ନରଖ । ଆଉ ରାତି ବିଛଣାକୁ ଗଲାବେଳେ ସବୁଦିନେ ବିଡ଼ିଆପାନ ଆଣି ନ ଦେ ।

ସାବିତ୍ରୀ ଅମାବାସ୍ୟାରେ ନିର୍ଜଳା ଉପବାସ କରି ତୁ ମୋତେ ଦଣ୍ଡବତ ନକର ପଛେ ମୋ ପରି ଜଣେ ଭାବପ୍ରବଣ ମଣିଷର ଆତ୍ମାକୁ ତୁ କେବେ ଆଘାତ କରିବୁନି । ଯେଉଁଦିନ ଆଘାତ କରିବୁ ଚ଼ଣ୍ଡାଳୀ ! ସେହିଦିନ ମୋର ହୃଦୟ ଫାଟିଯିବ ।

ତା ବୋଧେ ହେବାର ନଥିଲା ।

ହେଲା ନାହିଁ ।

ଆଘାତ୍ ପରେ ଆଘାତ୍ ସହିଲି ।

ଦୁଃଖ ଓ ବଞ୍ଚନାରେ ଭାଙ୍ଗି ପଡ଼ିଲି ।

ମୋ ପଢ଼ାଘରକୁ ମୁଁ ଆତ୍ମରକ୍ଷାର ସୁଡ଼ଙ୍ଗଟିଏ କରିଦେଲି ଶେଷରେ ।

ଏତେ ବଡ଼ ବ୍ରହ୍ମାଣ୍ଡରେ, ଏତେ ଲୋକଙ୍କର ଗହଳ ଚ଼ହଳ ଭିତରେ ମୁଁ ସେଦିନୁ ଏକାନ୍ତ ଆତ୍ମଲୀନ ହୋଇ ବଞ୍ଚିଲି ।

ନୀରବ ନିଶିଥରେ, ମୋର ଗୌରାଙ୍ଗୀ ତରୁଣୀ ଭାର୍ଯା ସହିତ ଯେତେବେଳେ ସୁରତି କରିବାର ବେଳ ମୁଁ ସେତେବେଳେ ମଣିଷର ବ୍ୟଥା, ବେପଥୁ, ବଞ୍ଚନା, କାରୁଣ୍ୟ ଓ ରକ୍ତ କ୍ଷରଣର ମୁହୂର୍ତ୍ତସବୁ ଶବ୍ଦାୟିତ ହୋଇଥିବା ବହି ପଢୁଥିଲି ଆଉ ମୋ ସମୁଦ୍ରକୂଳ ଗାଁର ଶୈଶବ ସ୍ମୃତିରେ ମଜଗୁଲ ହୋଇ ରହୁଥିଲି ।

ବର୍ଷ ବର୍ଷ ଧରି ସବୁରତ୍ରର ରାତିଅଧ ମୋର ସେ ବାର ପାହାଡ଼ ମୂଳରେ ଏମିତି କଟୁଥିଲା ପ୍ରାୟ ।

ପାହାଡ଼ମୂଳର ଅନ୍ଧାର ଆହୁରି ବହଳ ହେଉଥିଲା ।

ଜହ୍ନରାତିରେ ପାହାଡ଼ ସବୁ କେମିତି ଭାରି ପାଂଶୁଳ ଦିଶୁଥିଲା ।

ନାଁ ଅଜଣା ବଣପକ୍ଷୀର ଗୀତ ରାତି ପହରକୁ ଆହୁରି ଉଦାସ କରି ଦେଉଥିଲା ।

ଚ଼ରମ ଅନୁରାଗରେ ବିମୋହିତ ଆତ୍ମା ମୋର ପତ୍ନୀର କିଞ୍ଚିତ ପ୍ରଣୟ ପାଇଁ ଅବଶ୍ୟ ପ୍ରାର୍ଥନା କରିଛି । ଦିନ ଦିନ ଧରି ପ୍ରାଣର ବ୍ୟାକୁଳତା ପ୍ରକାଶ କରିଛି । ବର୍ଷ ବର୍ଷ ଧରି ତାହା ସେହି ଅଭିଳାଷରେ ହିଁ ରହି ଯାଇଛି କେବଳ ।

ହତଭାଗାକୁ ଈଶ୍ୱର ସହାୟ ହୁଅନ୍ତି ।

ମୋ ଭାଗ୍ୟହୀନତା ମୋତେ ସତରେ ଶ୍ରୀମନ୍ତ କରିଛି ।

ମୁଁ କଦାପି ଅକୃତଜ୍ଞ ହେବିନି । ଆଜି ମୋର କୁପିତା ପତ୍ନୀ ଅତୀତରେ ମୋତେ ଯେଉଁ ମଧୁର ପ୍ରଣୟ ଦେଇ ମୋ ଜୀବନ ପାତ୍ରକୁ ଭରି ଦେଇଥିଲା । ମୁଁ ସତକହିବି ତାହା ସେହି ପୂର୍ବରାଗରେ କେବଳ । ସବୁଋତୁରେ ସୁନେଲୀ ଖରାପଡ଼ି ଶୋଭାବନ୍ତ ସକାଳ ହେଉଥିବା ସେ ସମୁଦ୍ରକୂଳ ଜିଲ୍ଲାର ଗୋଟେ ଛୋଟ ପାହାଡ଼ିଆ ଗାଁର ନିର୍ଜ୍ଜନ, ନୀରବିତ ସ୍କୁଲହତା ଥିଲା ମୋ ସେହି ପୂର୍ବରାଗ ପ୍ରଣୟର କେଳିକୁଞ୍ଜ ।

ଆଜି କଥା କାଲିକି ନଥାଏ । ଖାଲି ଝୁରିହେବା ହୁଏତ ସାରହୁଏ । ଏହି ନିଷ୍କଳ ପାହାଡ଼ ମୂଳରେ ରାତି ବେଶୀ ହେଲେ, ମେଘ ପବନ ଆସିଲେ ସେହି ପାହାଡ଼ିଆ ଗାଁର ବିରଳ ପ୍ରୀତିଲଗ୍ନ ସବୁ ଗୋଟି ଗୋଟି ହୋଇ ମନେପଡ଼େ । ତା ସହିତ ଦିଶିଯାଏ ଦି'ଟା ପୁରୁଣା ମନ୍ଦିର, ଦି'ଟା ପଦ୍ମପୋଖରୀ ଆଉ ଗୋଟେ ସର୍ପିଳ ନଈ, ଦୂରସ୍ଥ ଦି'ଟା ପାହାଡ଼ ସମେତ ଭାରି ଆପଣାର୍ ଲାଗିଥିବା ସେ ଗାଁ ଚାରିକଡ଼ର ସୁଶୋଭିତ ଦିଗ୍‌ବଳୟ । ମୋତେ ମୋହି ଦେଇଥିବା ସେ ଗାଁର ଶୋଭାବନ୍ତ ଲ୍ୟାଣ୍ଡସ୍କେପ୍; ଯାହା ମୃତ୍ୟୁ ପର୍ଯ୍ୟନ୍ତ ହୁଏତ ଜୀବନରେ ଅପାଶୋରା ହୋଇ ରହିଯିବ ।

ଆଜି ମୋ ମନ ଚ଼ହଲିଲେ, କଲମ ଉଠାଇଲେ ସେ ଗାଁ, ସେ ନଈ ସେ ଦିନର ପ୍ରୀତିମୁଗ୍ଧା ମୋ ଏକାନ୍ତ ଆଦରଣୀୟା ପ୍ରେମିକାର ମୁହଁ ଝଲସି ଉଠେ ।

ଆଜି ମୋ ପଢ଼ାପଢ଼ି, ମୋ ଲେଖାଲେଖି, ମୋ ପ୍ରାର୍ଥନା, ମୋର ସ୍‌ତିଚ଼ୟନ, ନିଜସ୍ୱ ଦୁଃଖରେ ଲୁହ ଗଡ଼େଇବା, ଗଲା ହଜିଲା ଦିନମାନଙ୍କୁ ଝୁରିହେବାର ଗୋଟେ ପ୍ରଶସ୍ତ ଜାଗା ହୋଇଛି ସତରେ ମୋ ପଢ଼ାଘର ।

ମୋ ପଢ଼ାଘର ମୋତେ କେତେ ଯେ ପ୍ରବୋଧିତ କରିଛି ତା'ର ହିସାବ ନାହିଁ । ସେ ପଢ଼ାଘରେ ଥିବା ମୋ ବହିସବୁ ମୋର ଆତ୍ମୀୟ, ବନ୍ଧୁ ପରିଜନମାନଙ୍କ ପରି ପରମ ଆତ୍ମୀୟତା ଦେଇ ମୋ ସନ୍ତାପିତ ଜୀବନକୁ ଶୀତଳ କରି ଦେଇଛନ୍ତି । ମୁଁ ଚ଼ରମ ଅନ୍ତରଙ୍ଗତାରେ ସେମାନଙ୍କ ସହିତ ଏକାତ୍ମ ହୋଇ ଯାଇଛି । ପ୍ରେମାସ୍ପଦ ଆତ୍ମୀୟମାନଙ୍କ ମୁହଁ ଦିଶିଗଲା ପରି ବହିଗୁଡ଼ିକରେ ରୂପରଙ୍ଗ ମୋ ସ୍ମୃତିରେ ଚ଼ିରକାଳ ଅଭୁଲା ହୋଇ ରହି ଯାଇଛି ।

ସବୁଠାରୁ ବଡ଼ କଥା ହେଲା ମୋ ପଢ଼ାଘରେ ଥିବା ବହିଗୁଡ଼ିକ ମୋତେ କେବେ ନିର୍ଜ୍ଜୀବ ଲାଗିନାହାନ୍ତି । ବହୁଦିନ ତଳେ ଥରେ ଜଣେ ମହାପୁରୁଷ କହିଥିଲେ, 'ଏ ସବୁ ବହିଗୁଡ଼ିକର ଜୀବନ ଅଛି । ପାଠକମାନେ ସେହି ଜୀବନମୟତାର ସ୍ପର୍ଶ ପାଇଲେ ହେଲା ।'

ମୋ ପଢ଼ାଘରେ ସାଇତି ରଖିଥିବା ପ୍ରତିଟି ବହି ସହିତ ମୋର ପ୍ରଥମ ପରିଚ଼ୟ କିପରି ଘଟିଥିଲା ଆଉ ତା'ର ପ୍ରତିଟି ନିବିଡ଼ ଅନୁଭୂତିକୁ ଆଜି ବି ମୋ ମନ ଭିତରେ ଅତି ଶ୍ରଦ୍ଧାରେ ସାଇତି ରଖିଛି । କେଉଁ ବହିଟିକୁ ମୁଁ କେଉଁଠାରୁ କେବେ ଆଣିଥିଲି ସବୁକଥା ମୋର ଗୋଟି ଗୋଟି ହୋଇ ମନେଅଛି ।

କେଉଁ ବହିଟିକୁ ମୁଁ ଭଲ ବକ୍ତୃତା ଦେଇ ସ୍କୁଲ କଲେଜର ବାର୍ଷିକ ଉତ୍ସବରେ ପୁରସ୍କାର ସ୍ୱରୂପ ପାଇଥିଲି, କେଉଁ ବହିଟିକୁ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ହୋଇ ପାଇଥିଲି,

କେଉଁ ବହିଟିକୁ ପୁଣି କାହାଠାରୁ ଉପହାର ସ୍ୱରୂପ ପାଇଥିଲି ତା'ର ବିବରଣୀ ମୋ ସ୍ମୃତିରେ ସାଇତା ହୋଇ ରହିଛି ।

ମୋତେ ଛୁଉଁ ଭାଇ କରିଥିବା ଲଳିଅପା ଆମ ପ୍ରଦେଶର ଜଣେ ଜୀବନବାଦୀ ଲେଖକଙ୍କର ପ୍ରେମପ୍ରଣୟଭରା ଯେଉଁ ଗପବହି ଖଣ୍ଡେ ତା ନିଜ ହସ୍ତାକ୍ଷରରେ ମୋତେ ଉତ୍ସର୍ଗ କରିଥିଲା । ତା'କୁ ସଯତ୍ନରେ ମୁଁ ସାଇତି ରଖିଛି । ଦେଇ ପରି ପ୍ରେମ ଦେଇ ରଇତ କରିଥିବା ସେଇସବୁ ସହପାଠିନୀ, ମିତଣୀମାନଙ୍କ ଦି'ଧାଡ଼ି ହସ୍ତାକ୍ଷରକୁ ମୁଁ ଗଣ୍ଠିଧନ କରି ରଖିଛି ସେ ବହିମାନଙ୍କରେ ।

ମୋ ପଢ଼ାଘର ମୋତେ ସେପାଇଁ ଜେମାଦେଇଙ୍କ ସ୍ୱପନର ଉଆସ ଅବା ବେପଥୁବନ୍ତ ଅଜସ୍ର ସ୍ମୃତିର ରାଜମହଲ ପରି ଲାଗେ ।

କେଉଁ ଗଙ୍ଗାକୂଳରେ ଅବା କେଉଁ ହରଦ୍ୱାରରେ ତୀର୍ଥକରି ଯିବା ବାଟରେ ମୋ ଜୀବନ ବାହାରିଯାଉ ବୋଲି ମୁଁ ଚାହିଁବିନି । ମୁଁ ତ ବରଂ ଚାହିଁବି, ଏକାନ୍ତ ପ୍ରାଣପୂର୍ଣ୍ଣ ଜୀବନମୟ କଥାସବୁ ଲେଖୁଲେଖୁ ପଢୁପଢୁ ମୁଁ ମୋ ପଢ଼ାଘରେ ମରିଯାଏଁ ଯେପରି ।

ମୋ ପଢ଼ାଘରେ ଗଦା ଗଦା ବହି ଭିତରେ ଯା ମୋ ଜୀବନ ସରିଯାଉ ।

ସତ କହିଲେ ମୁଁ କାହାରିଠାରୁ ଗୋଟେ ପ୍ରଗାଢ଼ ଆତ୍ମୀୟତା ପାଇଲି ନାହିଁ । ମୁଁ ବି ଖାସ କାହାକୁ ସେମିତି ମୋର ନିକଟତର କରି ପାରିଲିନି । ଅଥଚ ଗୋଟେ ନାରୀ ଅମାପ ପ୍ରେମ ଦେଇ ମୋତ ଚାରିକଡୁ ବେଢ଼ିଦେଉ, ମୋତେ ସବୁମତେ ଶକ୍ତକରି ଆବୋରିବସୁ ବୋଲି ମୁଁ କାହିଁକି ସବୁବେଳେ ଇଚ୍ଛା କରୁଥିଲି ।

ଏମିତି ଜୀବନରେ ସ୍ୱପ୍ନ ଦେଖୁଥିବା, ଅଭିଳାଷ ପୋଷଣ କରୁଥିବା ଲୋକମାନଙ୍କର ଦୁଃଖ ପ୍ରଚୁର । ପଢ଼ାପଢ଼ି ଭିତରେ ମଜଗୁଲ ହୋଇ ରହୁଥିବା ମଣିଷର ପୁଣି ଗୋଟେ ପ୍ରକାରର ଦୁଃଖ । ସେମାନେ ଦୁଃଖର ସାମ୍ନା ସାମ୍ନି ହୋଇ ଦୁଃଖ ସହ କଥାବାର୍ତ୍ତା କରନ୍ତି ।

ମିଛ କହିବିନି, ଜୀବନରେ ସୁନ୍ଦରୀ ନାରୀଙ୍କ ପାଇଁ ମୋ ମନରେ, ମୋ ଚେତନାରେ କିଛିଟା ଅଧିକ ସରାଗ ଅଛି । ତା ବୋଧେ ମୋ ଭିତରେ ଥିବା ଏକାନ୍ତ ଈଶ୍ୱରୀୟ ଲାବଣ୍ୟ ଲାଳସା । ଏ ପାଇଁ ପ୍ରାଣ କିଛି ଅଧିକ ଉଦ୍‌ବେଳିତ ହୋଇଛି ଆଉ କିଛି ଅଧିକ ଅବଶ୍ୟ ଏଇ କାରଣରୁ ଦୁଃଖଭୋଗ କରିଛି ।

ଦୁଃଖରେ ହେଉ ବା ସୁଖରେ ହେଉ ମୁଁ ମୋତେ ଖୋଜି ପାଇଛି ବେଶୀ ମୋ ପଢ଼ାଘରେ । ରାତିରେ ସାରା ପରିବାର ଶୋଇପଡ଼ିଲା ପରେ ।

ସେହି ପାହାଡ଼ମୂଳ ମୋ ପଢ଼ାଘରେ ଏକା ଏକା ମୁଁ ରାତିରେ ଚାହିଁ ବସିଥାଏଁ । ବର୍ଷା ରାତିରେ କେତେ କେଁ କଟର ଶବ୍ଦ । ଶୀତରାତି ଆହୁରି ଶୂନଶାନ । ନିଦୁଆଳି ରାତି, ମହୁଲିଆ ପାଗ । ଅଜଣା ଫୁଲର ବାସ୍ନା ।

ପଢ଼ାଘରେ ବେଶୀ ରାତିରେ ମୌନ ହୋଇ ମୁଁ ବସିଥାଏଁ ।

ସ୍ୱର୍ଗବାସୀ ବାପା ମାଆ ଦି'ଜଣ ଭାରି ମନେ ପଡ଼ନ୍ତି ।

କେତେ ବିନୀତ କେତେ ଉଦାର ହୋଇଯାଏଁ ସେତେବେଳେ ମୁଁ ।

ପଢ଼ାଘରେ ବହିସବୁ ବିଛଣା ଉପରେ ସାରା ବିଛାଡ଼ି ହୋଇ ପଡ଼ିଥାଏ । କେଉଁ ବହିରେ ଗୋଟେ ସହର ତଳି ବସ୍ତି ଇଲାକାର ଧୂଳି ଧୂସରିତ ଛବିଟିଏ ଅଙ୍କାଯାଇ ଥାଏତ କେଉଁ ବହିରେ ଗୋଟେ ଶୋଷିତ, ସ୍ୱପ୍ନହୀନ ଅସହାୟ ମଣିଷର ଜୀବନ ବଞ୍ଚିବା ଚିତ୍ରିତ ହୋଇ ଥାଏ । କେଉଁ ବହିରେ ପୁଣି ରକ୍ତ, ବୀର୍ଯ୍ୟର ତତ୍ତ୍ୱ କଥା ଲେଖା ହୋଇଥାଏ ତ କେଉଁ ବହିରେ ଗୋଟେ ନୀଳ ଓ ନିବିଡ଼ ଆକାଶ ସହିତ; ଗୋଟେ ନଈ ଓ ପାଂଶୁଳ ଜହ୍ନ ରାତିର ଚିତ୍ରଣ ହୋଇଥାଏ ।

କେତେ ଦୃଶ୍ୟପଟ୍ଟ, କେତେ ରକମ ଜୀବନ କଥାର ସେ ବହିସବୁ । ଧ୍ୟାନ କଲାଭଳି ମୌନ ଓ ବିନୀତ ହୋଇ ମୁଁ ବସିଥାଏଁ ମୋ ପଢ଼ା ଟେବୁଲ ପାଖରେ । ଟେବୁଲ ପାଖରେ ଟଙ୍ଗା ହୋଇଥାଏ 'ଦ୍ୟାଟ୍ ଇଣ୍ଡିଭିଜୁଆଲ' ଲେଖାଥିବା ଗୋଟେ ବର୍ଣ୍ଣିଳ ଫଳକ । ପୁରୁଣା ବର୍ଷର ଡାଇରୀ ସବୁ ଇତସ୍ତତଃ ହୋଇ ପଡ଼ିଥାଏ ।

ସେତେବେଳେ ନୀରବିତ ମୋ ପଢ଼ାଘରେ ମୋ ଦୁଃଖ ମୋତେ ଭଲ ଲାଗେ । ମୋ କାରୁଣ୍ୟ ମୋତେ ଭଲ ଲାଗେ ।

କାଳ କାଳ ଧରି ସବୁଠି ମୋ ପରି ରୋମାଣ୍ଟିକ୍ ଲୋକମାନେ ସବୁବେଳେ ଭାରି କଷ୍ଟରେ ଥାନ୍ତି ବୋଧେ । ସେମାନଙ୍କ ଅଭିଳାଷ କେବେ ପୂରଣ ହୁଏନି କି କ'ଣ ?

ମୁଁ ବୋଧେ ଏ ସଂସାରରେ ସେଇ ତାଲିକାର ଗୋଟେ ମଣିଷ । ଦୁଃଖ ଭୋଗିବାର ଅନିବାର୍ଯ୍ୟ ଭାଗ୍ୟ ନେଇ ସତେ ଯେପରି ଏ ସଂସାରକୁ ଆସିଛି ।

ମୋ ଯୁବା ବୟସରେ ଟିକିଏକୁ ମୁଁ ଭାରି ବ୍ୟସ୍ତ ବିକଳ ହେଉଥିଲି । ଧୈର୍ଯ୍ୟ ବୋଲି ସେଦିନ ମୋର କିଛି ନଥିଲା । ଆଜି ବୟସ୍କ ହୋଇଯିବା କାରଣରୁ ମୋ ଅଭିଜ୍ଞତାରୁ ମୁଁ ବୁଝି ପାରିଲିଣି ଦୁଃଖ, ବିଷାଦ, ବଞ୍ଚନାସବୁ କେମିତି ମୋ ମନ ଓ ଆତ୍ମାକୁ ସୃଜନଶୀଳ କରି ରଖିଛି । ପୂର୍ବପରି ମୁଁ ସେପାଇଁ ଆଉ ଥକାମନ ହୋଇ ବସିଯାଇନି ।

ନାନା ଦୁଃସ୍ଥିତି ଓ ଦୁର୍ଭାଗ୍ୟ ଭିତରେ ତଥାପି ଆଗକୁ ପାଦ ବଢ଼ାଇବା ଗୋଟେ ବଡ଼ ପାରିବାପଣିଆ ନିଶ୍ଚୟ ।

ମୋ ପଢ଼ାଘରେ ମୁଁ ସବୁବେଳେ ମୋ ସୃଜନଶୀଳ ଆତ୍ମାକୁ ଉପଲବ୍ଧି କରିପାରେ । ମୋ ବହିପତ୍ର ମୋ ଆତ୍ମାର ପଙ୍ଗୁତ୍ୱରୁ ମୋତେ ରକ୍ଷା କରିଛି । ମୋତେ ସୃଜନଶୀଳତାର ଅଧିକାରୀ କରିଛି । ମୋତେ ପ୍ରବୋଧିତ କରିଛି । ବିରଳ ଦୃଶ୍ୟ ଦେଖାଇବାର ଅବସର ସୃଷ୍ଟି କରିଛି । ନାନା ଭାବରେ ମୋ ପଢ଼ାଘର ମୋତେ ଆବିଷ୍ଟ କରି ରଖିଛି ।

ମୋ ପଢ଼ାଘରେ ମୁଁ ଖାଲି ବସି ବହି ପଢ଼ିନି, ଘଣ୍ଟା ଘଣ୍ଟା ଧରି କାନ୍ଦିଛି । ସମୁଦ୍ରକୂଳ ଗାଁରେ କଟ୍ଟାଇଥିବା ମୋ ମଧୁର ଶୈଶବର ସତିକୁ ମନକୁ ଆଣିଛି । ବାପା ମାଆ ବାରମ୍ବାର ମନେ ପଡ଼ିଛନ୍ତି । ତାସହିତ ପଲେ ଗୋରୁଗାଈ, ଛେଳିକୁକୁଡ଼ା ଓ ବାଡ଼ି ବଗିଚ଼ାର ସଂସାର । ଋତୁ ବଦଳିବାର ନାନାଦି କିସମ ଭିତରେ ଖରାବର୍ଷା, ଶୀତ କାକରରେ ଛିଡ଼ା ହୋଇଥିବା ଗାଆଁର ଆମ ଚ଼ାଳଘର; ଯେଉଁ ଘରେ ମୁଁ ଖେଳି ବୁଲି ବଢ଼ିଛି ।

ଅତୀତର ସ୍ମୃତି ସହିତ ମନେପଡ଼େ ପିଠାପଣାର ପର୍ବପର୍ବାଣୀ ଦିନସବୁ । ପୁନେଇ ଜହ୍ନ, ମଉଛବ ରାତିର ବାଜାଗୀତ ଆଉ କେତେ ମେଘ ମହଳ ରାତି ।

ଦୁଃଖକୁ ଅନୁଭବ କରିବା ଗୋଟେ ବଡ଼ ତପସ୍ୟା ସତରେ । ମଣିଷକୁ ଦୁଃଖ ବିନୀତ କରିଦିଏ । ମୋ ପଢ଼ାଘରେ ବସି ମୁଁ ନିତି ନିତି ତାହା ଅନୁଭବ କରିଛି ।

ବିନୀତ ନହେଲେ ଜଣେ ସୃଜନଶୀଳ ଆତ୍ମାର ଅଧିକାରୀ ହୋଇ ପାରିବନି ।

ଉଦାସପଣିଆ ଅତୀତର କେତେ କ୍ଷତ ଉଖାରି ଦିଏ ।

କେତେ ବ୍ୟଥା ବେପଥୁର ଅନୁଭବ ସବୁକୁ ଭିଜାଇ ଦିଏ ।

ମୁଁ କ'ଣ ହେଲି ନହେଲି, କେତେ ଟଙ୍କା ରୋଜଗାର କଲି, କେତେ ଭୋଗକଲି ସେ କଥା ଆଜି ହିସାବ କରୁନି ।

ମୋର ପ୍ରତିପତ୍ତି, ମୋର ପଦପଦବୀ, ମୋତେ ମିଳିଥିବା କିଛି ସାରସ୍ୱତ ସମ୍ମାନ, ମୋର ଯଶ ପୌରୁଷ, ମୋର ପତ୍ନୀକୁ ନେଇ ସତରେ ମୁଁ ଆଜି ସନ୍ତୁଷ୍ଟ ନୁହେଁ । ସତ କହିଲେ ମୋର ସୃଜନଶୀଳ ମନ ଓ ଆତ୍ମାକୁ ନେଇ ମୁଁ ଆଜି ସବୁଠାରୁ ବେଶୀ ସନ୍ତୁଷ୍ଟ ।

ନାନାଦି ଜଞ୍ଜାଳ ଓ କାର୍ଯ୍ୟବ୍ୟସ୍ତତା ଭିତରେବି ମୋ ପଢ଼ାଘର ମୋତେ ଘଣ୍ଟା ଘଣ୍ଟା ଧରି ଆବିଷ୍ଟ କରି ରଖେ ।

କେତେ ପୁରୁଣା ସ୍ମୃତିର ଆଲବମ ବସି ଖୋଲେ ।

ନୂଆ ପୁରୁଣା କେତେ ମଣିଷଙ୍କ ମୁହଁ ଦିଶି ହୋଇଯାଏ ।

ସେଇ ଘରେ ବସି କେତେ ମେଘ ପବନର ରାତି କଟାଇଛି ।

ମୁଁ ମୋ ଏ ପଢ଼ାଘରକୁ ପବିତ୍ର ମନ୍ଦିର ବୋଲି ଜ୍ଞାନ କରିଛି । ମୋ ସେଇ ପଢ଼ାଘର ମୋତେ ଯେମିତି ନୀତିମାନ କରିଛି, ମୋତେ ଧାର୍ମିକ କରିଛି, ମୋତେ ସୌନ୍ଦର୍ଯ୍ୟ ପିପାସୁ କରିଛି ।

ସେ ଘର କାନ୍ଥ ଦି'ପାଖରୁ ଚୂନ ଖସି ଗଲାଣି ।

ବେଶୀ ବର୍ଷା ହେଲେ କାନ୍ଥର ପାଣି ଜକେଇ ଆସୁଛି ।

ଝରକା କବାଟ ବି ଜାଗେ ଜାଗେ ଭାଙ୍ଗି ଗଲାଣି ।

କେତେ ପୁରୁଣା ଦିଶିଲାଣି ଏହା ଭିତରେ ସେ ଘର ।

ଅଥଚ୍ ସେ ଘରଟି ମୋ ବିରହ ପାଳନା, ମୋ ସ୍ମୃତି ଚୟନ, ମୋ ଲେଖା ଲେଖି ଭିତରେ କେତେ ପ୍ରିୟ ହୋଇ ଯାଇଛି । ସେ ଘରଟିର ନକ୍ସା ମୋ ମନ ଓ ହୃଦୟରେ ନିତ୍ୟକାଳ ପାଇଁ ଯେପରି ଆଙ୍କି ହୋଇ ଯାଇଛି ।

ମୋ ଏ ପଢ଼ାଘରେ ବସି ଖାଲି ଶୃଙ୍ଗାରିକ ଇଚ୍ଛାରେ ସମୟ କଟାଇନି । ପ୍ରାଣର ସୃଜନଶୀଳତା ବଢ଼ାଇବା ପାଇଁ ଘଣ୍ଟା ଘଣ୍ଟା ଧରି ଗଳ୍ପ ଉପନ୍ୟାସର ଜୀବନମୟ ପୃଷ୍ଠାସବୁକୁ କେବଳ ପଢ଼ିନାହିଁ ବରଂ ଆପଣାର ପ୍ରାଣକୁ ଉଦାସ ଆଉ ଶୋକ ଜର୍ଜରିତ କରି ରଖିବା ପାଇଁ ମୁଁ ଧ୍ୟାନ ମୁଦ୍ରାରେ ମୌନ ହୋଇ ବସିଛି ।

ମୋର ପ୍ରକୃତ ଆୟ ଉପାର୍ଜନ ତୁଳନାରେ ମୁଁ ବହିପତ୍ର କିଣିଛି ବେଶୀ । ମୋର ବଡ଼ ସମ୍ପତ୍ତି ହେଉଛି ତାହା । ବେଶପୋଷାକ, ଖାଇବା ପିଇବାରେ ମୁଁ ଜୀବନରେ କେବେ ଆଡ଼ମ୍ବର କରିନି । ଦାମୀ ଛତା ଜୋତା କିଣିବାରେ ପଇସା ଖର୍ଚ୍ଚ କରିନି ।

ଭଲଭଲ ବହି କିଣିବାରେ ମୁଁ କିନ୍ତୁ କେବେବେଳେ ବି କୃପଣ ହୋଇନି ।

କୁପାରୀ ବୋଲି ପ୍ରାଚୀନ ବୌଦ୍ଧ ବିହାର ଥିବା ଆମ ପ୍ରଦେଶର ଗୋଟେ ପାହାଡ଼ ମୂଳ ଗାଁରେ ବି ମୁଁ ଏମିତି ନିରୋଳାରେ ଲେଖାପଢ଼ା କରିବାପାଇଁ ସଞ୍ଚିତ ସମସ୍ତ ଅର୍ଥଦେଇ ଆଶ୍ରମ ଖଣ୍ଡେ କରିଛି । ଦିଗ୍‌ବଳୟ ଭର୍ତ୍ତି ଏଠି ବି ପାହାଡ଼, ସେଠିବି ପାହାଡ଼ ।

ସେ ଛୋଟ ଘର ବାଡ଼ି ଖଣ୍ଡିକ ମୋ ଲାଭଦାୟକ ସମ୍ପତ୍ତି; ମୋ ବ୍ୟବସ୍ଥାର ଅଂଶ ହୋଇନି, ବରଂ ମୋ ରୋମାଣ୍ଟିକ୍ ଇଚ୍ଛାର ନମୁନା ହୋଇ ରହିଛି ।

କୁପାରୀର ଶୁଆସାରି ପାହାଡ଼ ମୂଳର ସେ ଘର ଖଣ୍ଡିକ ମୋ ସ୍ୱପ୍ନର ଇପ୍‌ସିତ ସଦନ । ମୋର ଆଗରୁ ସବୁବେଳେ ଗୋଟେ ରୋମାଣ୍ଟିକ୍ ଇଚ୍ଛାଥିଲା ଯେ ମୁଁ ଏମିତି ଘର ଖଣ୍ଡେ କରିବି ମେଘ ଗର୍ଜିଲେ ଯେମିତି ଡମ୍ବରୁ ନାଦ ପରି ସେ ଘରେ ତା'ର ପ୍ରତିଧ୍ୱନି ହେବ । ବର୍ଷା ଓ ଶୀତରାତିର ନୀରବତା ସେଠି ଜମାଟ ବାନ୍ଧିବ । ସେ ଘର ଭିତରକୁ ପଶିଲେ ନିଜକୁ ଗୋଟେ କବି ପରି ଲାଗିବ । ଗଲା ହଜିଲା କଥା ସବୁ ଗୋଟି ଗୋଟି ହୋଇ ମନେ ପଡ଼ିବ ।

ସେଥିପ୍ରତି ମୋ ଛଡ଼ା ମୋ ପତ୍ନୀ ସମେତ ମୋ ପରିବାରର ଆଉ କାହାରି ସମର୍ଥନ ନଥିଲା । ଏଥିପାଇଁ ସେଠି ସେମିତି ଗୋଟେ ସାରସ୍ୱତ ନିଳୟ କରିବା ପାଇଁ ମୋତେ ବେଶ କିଛିକାଳ ଧରି ଏକା ହେବାକୁ ପଡ଼ିଛି ।

ଆଜି ସେଠିକି ଏକାଗଲେ ସେ ଚନ୍ଦ୍ରାଲୋକ ନାମକ ସ୍ୱପ୍ନ ସଦନଟି ମୋତେ ନିଭୃତ ନିଳୟ ପରି ଲାଗେ । ଦିନରାତି ସାରା ପରିବେଶଟି ମୋତେ ଅଦ୍ଭୁତ ଭାବରେ କାବ୍ୟିକ ଲାଗେ । କି ଜହ୍ନ କି ଅନ୍ଧାର ସବୁରାତି, ସବୁଋତୁ ମୋତେ ମୋହି ଦିଏ ।

ଜୀବନ ବଞ୍ଚିବାର ଅସରନ୍ତି ଧାରା ମୋତେ ମୁଗ୍ଧ କରିଦିଏ ।

ଗତ ଦଶବାର ବର୍ଷ ଭିତରେ ଦି'ଧାଡ଼ି ଯା ମୁଁ ଭଲ ଲେଖାଲେଖି କରିଛି ସେଇଠି ସେଇ ଆଶ୍ରମରେ ବସି । ସେଠି ବର୍ଷା ରାତି କଟାଇବାର ଗୋଟେ ପ୍ରଲୋଭନ ମୋର ସବୁବେଳେ ଥାଏ । ସେ ଶୁଆସାରୀ ପାହାଡ଼ମୂଳରେ ଏମିତି ବର୍ଷାଋତୁ ସବୁ କଟାଇବା ପାଇଁ ମୋର ପ୍ରେମାସ୍ପଦ ଅନେକଙ୍କୁ ମୁଁ ସନିର୍ବନ୍ଧ ଅନୁରୋଧ କରିଛି । ମୋର ଏହି ଅଭିଳାଷର ମାର୍ମିକତାକୁ କିଏ ବୁଝିଛି ଅବା କିଏ ବୁଝି ନାହିଁ ।

ସେଠି ସେ ଆଶ୍ରମ ପରିବେଶର ଗଛ ଛାଇରେ ବସି ଯାହା ବି ପଢ଼େ ସବୁ ମୋତେ ଚିତ୍ର ପରି ଜୀବନ୍ତ ଓ ମାର୍ମିକ ଲାଗେ ।

ଅବଶ୍ୟ ଲେଖାଲେଖି କରିବା ପାଇଁ ଯେତିକି ଧ୍ୟାନସ୍ଥ ହେବା କଥା, ଯେତିକି ଅଭିନିବିଷ୍ଟ ହେବା କଥା ତାହା ପ୍ରକୃତରେ ମୁଁ ପାରିନି । ଆଜି ପର୍ଯ୍ୟନ୍ତ ଆଶ୍ରମ ନିର୍ମାଣରେ ହିଁ ମୋର ଶକ୍ତି, ସମ୍ବଳ ଓ ସମୟକୁ ବିନିଯୋଗ କରିଛି । ବେଦୀ ନିର୍ମାଣରେ ହିଁ ଗତ ଦଶବାର ବର୍ଷ ହେଲା ମୁଁ ପରିଶ୍ରାନ୍ତ ହୋଇ ଗଲିଣି । ମନ୍ତ୍ରପାଠ ପ୍ରକୃତ ଭାବରେ ଆରମ୍ଭହିଁ ହୋଇନାହିଁ ।

ଈଶ୍ୱରଙ୍କ ଇଚ୍ଛା କ'ଣ କେଜାଣି ?

ପବିତ୍ର ପ୍ରାର୍ଥନା ମନ୍ଦିର ଭଳି ଉତ୍ତମ ପଢ଼ାଘରଟିଏ କରିବା ପାଇଁ ମୁଁ ସବୁବେଳେ ଉଦ୍ୟମ ହିଁ କରିଛି । ମୋର ସବୁ ଜ୍ୟେଷ୍ଠ ଓ କନିଷ୍ଠ ପ୍ରେମାସ୍ପଦମାନଙ୍କୁ ମୋତେ ଭଲ ବହିଟିଏ ଉପହାର ଦେବା ପାଇଁ ମୁଁ ବରଂ ସୂଚନା ଦେଇଛି ।

ମୁଁ ଭଲ ବହିଟିଏ ପାଇଲେ ହିଁ ପ୍ରକୃତରେ ବେଶୀ ଖୁସି ହୁଏଁ । ଦୁର୍ଲଭ ସମ୍ପତ୍ତି ପାଇଲା ପରି ଜ୍ଞାନ କରେ । ଉତ୍ତମ ଗ୍ରନ୍ଥଟିଏ ପାଖରେ ଥିଲେ ଯାତ୍ରା ସମୟରେ ମୋତେ କେତେବେଳେ ବି ବନ୍ଧୁହୀନ ଲାଗେ ନାହିଁ ।

ଦୁଃଖ ଭୁଲିବା ପାଇଁ ସବୁଠାରୁ ନିରାପଦ ଓ ନିର୍ଭରଯୋଗ୍ୟ ବିଷୟ ହେଲା ବନ୍ଧୁସମାନ ଉତ୍ତମ ପୁସ୍ତକ ଅଧ୍ୟୟନ କରିବା । ଜୀବନରେ ବହୁଗ୍ରନ୍ଥ ମୋତେ ଆଲୋକର ପଥ ଦେଖାଇଛି । ମୁଁ ମନପ୍ରାଣ ଦେଇ ସେପାଇଁ କିରକେଗାର୍ଡ଼ଙ୍କୁ ପଢ଼ିଛି । ଦୁଃଖ ଭୁଲାଇ ଦେଲାଭଳି ବହିସବୁ ତାଙ୍କର ।

କିରକେଗାର୍ଡ଼ଙ୍କ ବହିସବୁ ପଢ଼ି ମୁଁ ଜୀବନରେ ହାରିଯିବାକୁ ଜିତିଯିବା ବୋଲି ମନେ କରିଛି । ଅପ୍ରାପ୍ତି ଅପମାନକୁ ଜମା ଖାତିର କରିନି । ସତରେ ମୋ ଜୀବନ ମାର୍ଗ ବଦ୍ଳାଇ ଦେଇଛି କରିକେଗାର୍ଡ଼ଙ୍କ ସ୍ୱନିଷ୍ଠ ଅନୁଭବ ବ୍ୟଞ୍ଜିତ ବହିସବୁ । କିରକେଗାର୍ଡ଼ଙ୍କ ଆବେଗନିଷ୍ଠ ଲେଖାସବୁ ମୋତେ ଉଜ୍ଜୀବିତ କରିଛି; ମୋତେ ସୁବର୍ଣ୍ଣ ଦୀପ୍ତ ଦ୍ୱିପାୟନର ଅନୁଭବ ଆଣି ଦେଇଛି ।

ଗୋଟେ ଈଷତ୍ ସରୁ ମୁହିଁ ଶ୍ୟାମଳୀ ଝିଅର ଟିକିଏ ଅଧିକ ମରମୀ ଆଉ ବିଶ୍ୱାସନୀୟ ପ୍ରେମରେ ମୋ ଜୀବନ ଥାଳ ଭରି ହୋଇଗଲା । ଦଶବର୍ଷରୁ ଅଧିକ କାଳ ଧରି ସେ ଝିଅଟି ପାଇଁ ମୁଁ ଝୁରିହେଲି ।

ମୋ ଟିକିଟିକି ପୁଅଝିଅଙ୍କ ମୁହଁ ବି ମୋତେ ଆଉ ସେମିତି ବାନ୍ଧିରଖି ପାରିଲାନି । ମୁଁ ବାରମ୍ବାର ଗୋଟେ ଦୂର ସହରରେ ଥିବା ତାଙ୍କ ଘରକୁ ଦୌଡ଼ିଲି । ସେ ମୋହିନୀ କନ୍ୟା ପରି ମୋହି ଦେଇଥିବା ଝିଅଟି ସହିତ ମିଳିତ ହେବାପାଇଁ ପ୍ରାଣ ବ୍ୟାକୁଳ ହୋଇ ଉଠୁଥିଲା ।

ବହୁ ସନ୍ତାପରେ ପଡ଼ିଗଲି । ମନରେ କିଛି ଉଲ୍ଲାସ ସହିତ ଦୁଃଖ ବି ପାଇଲି ଅନେକ ।

କିରକେଗାର୍ଡ଼ଙ୍କ ଦି ଡାଇରୀ ଅଫ୍ ଦି ସିଡ୍ୟୁସର (The Diary of the Seducer) ବହିଟି ପଢ଼ି ମୁଁ ଯଥେଷ୍ଟ ସାନ୍ତ୍ୱନା ପାଇଲି । ଏହି ବହିଟି ମୂଳରୁ ଶେଷଯାଏ ମୁଁ ପଢ଼ିଲା ପରେ ମୋର ମନେହେଲା ଯେ, ବାରବାର ମିଳନରେ ପ୍ରେମ କ୍ରମଶଃ ମଳିନ ହୋଇଯାଏ ବୋଲି । ମୁଁ ତାଙ୍କର ସେ ଉପଲବ୍‌ଧିଟିକୁ ମୋ ଆତ୍ମା ଦେଇ ସମର୍ଥନ କଲି । ବିରହରେ ପ୍ରେମ ବହୁଗୁଣିତ ହୁଏ ଓ ସବୁଠି ସବୁକାଳରେ ଜଣେ ଶୁଦ୍ଧ ସୁବର୍ଣ୍ଣଦୀପ୍ତ ପ୍ରଣୟାନୁଭୂତି ଉପାର୍ଜ୍ଜନ କରେ ବିରହରେ ହିଁ କେବଳ ।

କିରକେଗାର୍ଡ଼ଙ୍କ ପରି ଖଲିଲ ଜିବ୍ରାନ, ମାରକୁଏଜ, ସୋଲଝେନିତସିନ୍, ସୋଲକୋଭ, ଜୋଲା ଆଦିଙ୍କ ଲେଖା ପଢ଼ି ମୁଁ ଏତେ ଯେ ପ୍ରବୋଧିତ ହୋଇଛି ମୋତେ କାଳିସୀ ଧରିଲା ପରି ଲାଗିଛି ।

ଭଲଭଲ ବହିର ପାଞ୍ଚଧାଡ଼ି ବି ମୋତେ କେମିତି ମନ୍ତ୍ର କଲାପରି ଲାଗେ । ଜୀବନରେ ମୋତେ ଅଭିଭୂତ କରିଦେଇଛି କିରକେଗାର୍ଡ଼ଙ୍କ ଚିତ୍ତଉଲ୍ଲାସକ ରଚନା ସବୁ । ତାଙ୍କର 'ଆଇଦର ଅର' ବହି ମୋତେ ବସ୍ତୁତଃ ଆଲୋକର ପଥ ଦେଖାଇଛି । ପରିସ୍ଥିତିର ସାମ୍ନା କରିବା ପାଇଁ ଶିଖାଇଛି ।

ମୋ ପଢ଼ାଘରେ ବସି ବିଶ୍ୱର ଯେଉଁ ସାରସ୍ୱତ ପୁରୁଷମାନଙ୍କୁ ମୁଁ ମୋ ଅନ୍ତରରେ ଅଭିଷିକ୍ତ କରିଛି ସେମାନେ ସତେ ଯେପରି ମୋତେ ଗୋଟେ ଗୋଟେ ନିରୁତା ଭାବଜଗତ ଦାନ କରିଛନ୍ତି ।

ଅକାରଣରେ ନିରନ୍ତର ଧାଁ ଧଉଡ଼ କରୁଥିବା, ଟିକିଏକୁ ବିକଳ ହୋଇ ଯାଉଥିବା ମଣିଷମାନଙ୍କ ମେଳରେ ମୁଁ ଯେତେବେଳେ ଅତିଷ୍ଠ ହୋଇପଡ଼େ ମୋ ପଢ଼ାଘର ସେତେବେଳେ ମୋ ସ୍ମରଣକୁ ବେଶୀ ଆସେ । ଏତେ ଲୋକଙ୍କ ଲୀଳାଖେଳାର ଏ ବିଶ୍ୱ ବ୍ରହ୍ମାଣ୍ଡରେ ମୋ ପଢ଼ାଘର ମୋତେ ଆଦିଭୂମି ପରି ଲାଗେ ।

ମୋ ପାପପୁଣ୍ୟକୁ ମୁଁ ମୋ ପଢ଼ାଘରେ ମୌନ ହେଲେ ଯାଇ ବୁଝି ପାରେ । ମୋର ଅସହାୟତା ମୋତେ ଆହୁରି ନିରୀହ କରିଦିଏ ସେଠି । ମୋର ସ୍ୱପ୍ନ କେତେ ସଫଳ ହୋଇଛି, କେତେ ଦୁଃଖରେ ମୁଁ ପୁଣି ଦିନ ନେଇଛି, କେତେ ଭାଙ୍ଗି ପଡ଼ିଛି ସବୁକଥା ଗୋଟି ଗୋଟି ହୋଇ ମନକୁ ଆସେ ମୋ ପଢ଼ାଘରେ ।

ଏ ଚଉବନ ବର୍ଷର ଅଭିଜ୍ଞତାରୁ ମୁଁ ବୁଝିଲିଣି ଜୀବନ ଏକ ଅନ୍ଧାରୁଆ ସନ୍ଦିଗ୍ଧ ସୁଡ଼ଙ୍ଗ ଭଳି । ଶକ୍ତି ସଞ୍ଚୟ କରି ସାହସର ସହିତ ସେ ସୁଡ଼ଙ୍ଗ ଭିତରେ ନ ଆଗେଇଲେ କେହି ସେ ଅନ୍ଧକାରାଚ୍ଛନ୍ନ ସୁଡ଼ଙ୍ଗକୁ ଅତିକ୍ରମ କରି ପାରିବନି ।

ମୋର ହେତୁ ହେଲା ଦିନଠାରୁ ବହିପଢ଼ା ଭିତରେ ମୁଁ ପ୍ରାୟ ଦିନ ନେଇଛି । ଜୀବନର ମୁଁ ଅନେକ ଛୁଟୀଦିନ କଟାଇଛି ଏମିତି ବହି ପଢ଼ାରେ । ଦିନେଦିନେ ନିମଗ୍ନିତ ହୋଇ ଶହଶହ ପୃଷ୍ଠା ପଢ଼ି ଦେଇଛି ।

ମୋତେ ଛୁଟୀଦିନମାନଙ୍କରେ ଅନ୍ୟାନ୍ୟ ଆକର୍ଷଣ ଅପେକ୍ଷା ବେଶୀ ସରସ ଓ ଛବିଳ ଲାଗିଛି ମନଲାଖି ବହିର ପୃଷ୍ଠାସବୁ । ବହିର ଘଟଣା ପ୍ରବାହ ସବୁ ଚଳଚ୍ଚିତ୍ର ପରି ମୋ ଆଗରେ ଭାସିଯାଇଛି ।

ପଢ଼ାଘରକୁ ସଜାଇବାରେ, ବହିପତ୍ରକୁ ଝାଡ଼ିଝୁଡ଼ି ରଖିବାରେ ମୋତେ ମୋର ପତ୍ନୀ ସମେତ ଆଉ କେହି ସେମିତି ସାହାଯ୍ୟ କରନ୍ତିନି । ସେମାନଙ୍କ ସାହାଯ୍ୟକୁ ମୁଁ କେବେ ଅପେକ୍ଷା ବି କରିନି ।

ପଢ଼ାଘରେ ମୋର ବଡ଼କାମ ହେଲା ମୁଁ ଯେଉଁ ସମୟକୁ ପଛରେ ଛାଡ଼ି ଆସିଛି ତା'କୁ ସ୍ମୃତିରେ, ମନଶ୍ଚକ୍ଷୁରେ ଚଳଚ୍ଚିତ୍ର ପରି ନିବିଡ଼ ଭାବରେ ଦେଖିବା । ସମୁଦ୍ରକୂଳ ଗାଁର କେତେ ମେଘପବନ ରାତିକୁ ସ୍ମୃତିରେ ଆଉଥରେ ଭେଟିବା ।

ସେଇ ମୋର ଏକାନ୍ତ ପ୍ରିୟ ପଢ଼ାଘରେ ବସି ବସି ମୋ ନିଦରବି ଅଥଚ୍ ନିର୍ମଳ ମୋ ଛୁଆଦିନକୁ ମନେ ପକାଇଛି । ନିରନ୍ତର ରହସ୍ୟମୟ ଲାଗୁଥିବା ମୋ ଛୁଆଦିନକୁ ମନେ ପକାଇଲେ ମୋତେ କାଳିସୀ ଲାଗିଲା ପରି ଲାଗେ ।

ମୋ ପଢ଼ାଘର ଭିତରକୁ ପଶିଗଲେ ମୋତେ ଜୀବନର ସବୁକିଛି ନିଦା ଓ ନିବିଡ଼ ଲାଗେ । ମୋ ନିଜସ୍ୱ ଦୁଃଖ, ପକ୍ଷୀର ଗୀତ, ମୋର ଯାବତୀୟ ସ୍ୱପ୍ନ, ମୋର ରତିଇଚ୍ଛା, ମୋର ବାଲ୍ୟସ୍ମୃତି ସବୁ ମୋତେ କେମିତି ଭାରି ଚହଲାଇ ଦିଏ । ସବୁଠାରୁ ବେଶୀ ମୋତେ ସ୍ପର୍ଶ କରେ ବର୍ଷ ବର୍ଷ ଧରି ଋତୁବଦଳିବାର ଦୃଶ୍ୟ ।

ନିହାତି ଜୀବନମୟ ଲାଗୁଥିବା ଅଥଚ୍ ଗୋଟେ ନିବିଡ଼ ରସମୟ ଭାବନାରେ ମୁଁ କେମିତି ମୋ ପଢ଼ାଘରେ କ୍ରମଶଃ ଅନ୍ତର୍ମୁଖୀ ହୋଇଯାଏଁ । ମୋର ବନ୍ଧୁ ଓ ପଡ଼ୋଶୀମାନଙ୍କର ଉପସ୍ଥିତି ସେ ରସମୟ ଜଗତରୁ ମୋତେ ଆଉ ଟାଣି ଆଣିପାରେ ନାହିଁ ।

ମୋର ଅନ୍ତର୍ମୁଖୀନତାକୁ, ମୋର ଆତ୍ମଲୀନ ହେବାର ଧ୍ୟାନସ୍ଥ ମୁଦ୍ରାକୁ, ପଢ଼ାଘରେ ମୋର ବେଶୀ ସମୟ କଟାଇବାକୁ ହୁଏତ ମୋ ପତ୍ନୀ ସମେତ ମୋ ଘର ଲୋକେ ତାରିଫ କରି ପାରନ୍ତିନି । ମୋ ପଢ଼ାଘରକୁ ମୋ ପତ୍ନୀ ସେ ପାଇଁ ବେଳେ ସପତ୍ନୀ ବୋଲି ଭାବେ ।

ଏତେବଡ଼ ସଂସାର ଭିତରେ ମୋ ପାଇଁ ଆନନ୍ଦଲାଭର ଅନ୍ୟ କୌଣସି ବିକଳ୍ପ ଉତ୍ସ ନଥିଲା । ଅନ୍ୟପକ୍ଷରେ ମୋର ଅସହାୟତା ଥିଲା ବହୁତ ।

ମୋର ପୁସ୍ତକ ପଠନଜନିତ ଅନୁରାଗକୁ ମୋ ଜ୍ଞାତି ବନ୍ଧୁ, ଶାଇପଡ଼ିଶା ଓ ଶ୍ୱଶୁରଘରର ଅଧିକାଂଶ ଗୋଟେ ବିଶେଷ ଗୁଣ ଗୌରବର ବିଷୟ ବୋଲି ବେଳେ ଭାବି ପାରନ୍ତିନି ।

ମୋର ପଢ଼ାପଢ଼ିକୁ ମୋର ଅପାରଗତାର ନିଦର୍ଶନ ବୋଲି ହୁଏତ ମୋର ସତୀର୍ଥ ବନ୍ଧୁ ଓ ମୋ ପାଖ ପଡ଼ୋଶୀମାନେ ବେଳେ ମନେ କରନ୍ତି ।

ସବୁଠାରୁ ଦୁଃଖର ବିଷୟ ମୋ ପଢ଼ାଘରକୁ ମୋ ଉଚ୍ଚଶିକ୍ଷିତ ପତ୍ନୀ ଦୁନିଆଦିର ଗୋଟେ ଦିଗ ବୋଲି ଗ୍ରହଣ କରି ପାରେନି । ମୋ ପଢ଼ାଘରଟା ବିବାକ ଗୋଟେ ସଂସାର ବିମୁଖ ଅଳସୁଆର ନିବାସ ସ୍ଥଳୀ ବୋଲି ସେ ବରଂ ବେଳେ ଭାବେ । ଗତ ତିରିଶ ବର୍ଷ ଭିତରେ ମୁଁ ମୋ ସ୍ତ୍ରୀର ଏପରି ଅଶିକ୍ଷିତ ଓ ଅନୁଦାର ମନୋଭାବକୁ ଚେଷ୍ଟା କରିବି ବଦଳେଇ ଦେଇ ପାରିନି ।

ସନ୍ୟାସ ହେଉ କି ସାରସ୍ୱତ ହେଉ ପ୍ରତିଟି ସାଧନ ମାର୍ଗ ଆଗରେ ବହୁତ ପ୍ରତିବନ୍ଧକ ଥାଏ । ସତକହିଲେ ସବୁକିଛି ବିସର୍ଜି ଦେଇ ମୁଁ ତା'ପରି ଜଣେ ଉଚ୍ଚଶିକ୍ଷିତାକୁ ବିବାହ କରିଥିଲି ମୋ ସାରସ୍ୱତ କର୍ମକୁ ହୁଏତ ସେ ପ୍ରୋତ୍ସାହିତ କରିବ ବୋଲି । ତାହା କିନ୍ତୁ ହେଲାନି । ମୁଁ ଜୀବନ ସାରା ସେପାଇଁ ଅଶାନ୍ତି ଭୋଗିଛିତ ପ୍ରାଣରେ ଚରମ ଅସହାୟତା ବି ଅନୁଭବ କରିଛି ।

ମୋର ସେତକ ଶୁଦ୍ଧ ସାରସ୍ୱତ ସଂପ୍ରୀତି ଭିନ୍ନ ସେ ଖୁସି ହେଲାଭଳି ମୋ ନିକଟରେ ଯେପରି କିଛି ସମ୍ପତ୍ତିବାଡ଼ି କିମ୍ୱା ଭୋଗ ବିଳାସର ଆକର୍ଷଣୀୟ କୌଣସି ଉତ୍ସ ହିଁ ନଥିଲା । ନାଁ ମଟରଗାଡ଼ି, ନାଁ କୌଣସି ସହରରେ କୋଠାବାଡ଼ି, ନାଁ ହାତୀ ନାଁ ଘୋଡ଼ା କିଛି ହିଁ ନଥିଲା ।

ବଡ଼ ଆନନ୍ଦର କଥା, ସ୍ୱର୍ଗତ ଶଶୁର କିନ୍ତୁ ମୋ ଉପରେ ସେଦିନ, ମୁଁ ସାହିତ୍ୟ କରୁଥିବା କାରଣରୁ ବଡ଼ ସନ୍ତୁଷ୍ଟ ଥିଲେ । ମୋର ରତିଶାସ୍ତ୍ରୀୟ ଜ୍ଞାନ ଓ ଶୃଙ୍ଗାର ଦର୍ଶନକୁ ସେ ସବୁଠାରୁ ବେଶୀ ପସନ୍ଦ କରୁଥିଲେ । ସରସ ଶୃଙ୍ଗାରୀକ ରଚନା ସବୁକୁ ତାଙ୍କ ଘରକୁଗଲେ ବଡ଼ ଆଗ୍ରହର ସହିତ ସେ ମୋତେ ଆବୃତ୍ତି କରି ଶୁଆଉଥିଲେ । ହସ୍ତିନୀ ଓ ପଦ୍ମିନୀ ଜାତୀୟା ନାୟିକାର ଗୁଣ, କାମିନୀ ନାରୀର ଲକ୍ଷଣ ବିଷୟ ମୋ ଶଶୁର ମୋତେ ବୁଝାଉଥିଲେ ।

ତନ୍ତ୍ରଶାସ୍ତ୍ରପରି କେତେକ ଶୃଙ୍ଗାର ଗ୍ରନ୍ଥକୁ ସେ ମୋତ ଉପହାର ଦେଉଥିଲେ । ସେହିପରି କେତେକ ପୁରୁଣା, ଗଦ୍ୟପଦ୍ୟରେ ଲେଖାଥିବା ସୌନ୍ଦର୍ଯ୍ୟ ତଥା ଶୃଙ୍ଗାରିକ ଗ୍ରନ୍ଥସବୁ ମୁଁ ତାଙ୍କ ଘରୁ ନେଇ ଆସିଥିଲି । ମୋର ଉଚ୍ଚଶିକ୍ଷିତା ଗୌରାଙ୍ଗୀ ଭାର୍ଯ୍ୟା କିନ୍ତୁ ଯା'ର କିଛି ଧାରଧୁରା କରେନି ।

ମୋତେ ଶୃଙ୍ଗାରିକ ଜ୍ଞାନ ଦାନ କରିଥିବାରୁ ମୁଁ ମୋର ସ୍ୱର୍ଗତ ଶଶୁରଙ୍କୁ ତେଣୁ ମୋ ରଚିତ 'ଶୃଙ୍ଗାର' ଗ୍ରନ୍ଥରେ କୃତଜ୍ଞତା ଜଣାଇଛି ।

ପ୍ରାର୍ଥନା ମନ୍ଦିର ସ୍ୱରୂପ ମୋ ପଢ଼ାଘରେ ବହୁଶୃଙ୍ଗାର ଧର୍ମୀ ତଥା ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଗ୍ରନ୍ଥ ସାଇତି ରଖିଛି; ଯା'ର ଚର୍ଚ୍ଚାସ୍ଥଳୀ ମୁଖ୍ୟତଃ ମୋର ସେହି ପଢ଼ାଘର । ମୋର ଲାବଣ୍ୟ ଲାଳସା ମୋ ଆତ୍ମାକୁ ଏତେ ସରସ ଓ ଗ୍ରହଣଶୀଳ କରି ଦେଇଥିଲା ଯେ, ଫୁଲ ଫୁଟିବାର ବେଳ, ପକ୍ଷୀର ଗୀତ ମୋତେ ଉଚ୍ଚାଟିତ କରି ଦେଉଥିଲା ।

ଯେଉଁ କେତେ ଘଣ୍ଟା ମୋ ପଢ଼ାଘରେ ମୁଁ ରହୁଥିଲି ମୋତେ ଏକାନ୍ତ ଜୀବନମୟ ଲାଗୁଥିବା ମୋର ଯାବତୀୟ ଅନୁଭବ ମୋତେ ଚାରିକଡ଼ୁ ଆବୋରି ବସୁଥିଲା । ଯେଉଁଠି ଯେତେବେଳେ ଜୀବନରେ ମୋତେ ଭାରି ଏକା ଏକା ଲାଗିଥିଲା । ସେ ସବୁ ଗୋଟି ଗୋଟି ହୋଇ ମୋ ପଢ଼ାଘରେ ଛୁଟୀଦିନରେ ଅବା ବିଳମ୍ବିତ ରାତିରେ ମନକୁ ଆସୁଥିଲା ।

ମୋ ପଢ଼ାଘରେ ନିରନ୍ତର ମୁଁ ମୋ ପରିଚିତ ଅନୁଭୂତିକୁ ଉଖାରିଛି । ପାଣିପବନ, ନୀରବିତ ଶୀତରାତି, ଋତୁ ବଦଳିବା, ବୁଢ଼ାବାପର ଦୁଃଖ ନିରିମାଖି ବିଧବା ଆଖିର ଲୁହ, ରଜମଉଜ, ଶୀତଳ ଜହ୍ନରାତି, କୁଆଁରୀ ଝିଅର ସ୍ୱପ୍ନ, ପଦ୍ମପୋଖରୀର ପାଣି, ସବୁତ ପୃଷ୍ଠା ପୃଷ୍ଠା ଧରି ମୋ କଥା ଓ କବିତାରେ ଲେଖା ଯାଇଛି ।

ଶୀତ ସକାଳର ନାଲିଖରା, ଗାଁର ମେଳନ ଯାତ୍ରା, କାଞ୍ଜି ତରକାରୀ, ମୋ ମାଆ ଖୁଡ଼ୀଙ୍କ ହାତପରଷାର ସ୍ୱାଦ ବହି ପଢ଼ି ମୁଁ ବାରିପାରେ ।

ମୋ ପଢ଼ାଘରେ ଏହି ସବୁ ବହିମାନଙ୍କ ଭିତରେ ଅର୍ଜ୍ଜୁନ ବିଶ୍ୱରୂପ ଦେଖିଲା ପରି ମୁଁ ବାରବାର ଛବିଳ ବିଶ୍ୱ ବ୍ରହ୍ମାଣ୍ଡକୁ ଦେଖିଛି । ଆକାଶ ପୃଥିବୀର ମହନୀୟ ଛବି ମୋତେ ଆବିଷ୍ଟ କରି ଦେଇଛି । ମଣିଷର ବଞ୍ଚିବା ପ୍ରତି ମୋ ପ୍ରାଣର ଅଶେଷ କୌତୂହଳ ବଢ଼ିଛି ।

ଆଷାଢ଼ର ମାଟି ପରି ମୁଁ ମୋ ଅନ୍ତରକୁ କେବଳ ପଢ଼ାପଢ଼ି ଭିତରେ ଭିଜେଇ ରଖିନି ସ୍ୱପ୍ନ କଳ୍ପନାର ମଞ୍ଜି ବୁଣିବା ପାଇଁ ମୁଁ ଏହାଦ୍ୱାରା ବରଂ ନିଃସଙ୍ଗତାର ସାଧୁତା ଆଉ ମନ ହୃଦୟର ତେଜ ବଢ଼ାଇଛି ।

ମଣିଷର ହୃଦୟ ଆଲୋକିତ ହେଉ, ତା'ର ମନ ଓ ଚେତନା ବଢୁବୋଲି ମୁଁ ପ୍ରାର୍ଥନା କରିଛି । ମୋ ପଢ଼ାଘରେ ମନ ମାରିଦେଇ ବସିବା ଭିତରେ ଅବା ମୋ ନିଜସ୍ୱ କାରୁଣ୍ୟରେ ମୁଁ ମୋ ହୃଦୟରେ ମୁଁ ମୋ ହୃଦୟର ସର୍ବୋତ୍ତମ ସୃଜନଶୀଳତାକୁ ଅନୁଭବ କରିଛି ।

ସମୁଦ୍ରକୂଳ ଗାଁରେ ଦିନକୁ ଦିନ ଜରାଗ୍ରସ୍ତ ହୋଇ ଯାଉଥିବା ମୋ ବୁଢ଼ା ବାପାଙ୍କୁ ମୁଁ ଘଣ୍ଟା ଘଣ୍ଟା ଧରି ମୋ ଏହି ପଢ଼ାଘରେ ବସି ଭାବି ହୋଇଛି । ମୋ ଜୀବନର ଦୁଃଖ ଓ ବଞ୍ଚନା ସବୁକୁ ବସି ବର୍ଷା ରାତିରେ ଏହି ଚାରିକାନ୍ଥ ଭିତରେ ଗଣିଛି । ଏକାନ୍ତ ସ୍ମୃତିସ୍ନିଗ୍ଧ ମୋ ସମୁଦ୍ରକୂଳ ଗାଁଟି ମୋ ଆଗରେ ଗୋଟେ ଅପୂର୍ବ ଲ୍ୟାଣ୍ଡସ୍କେପର ନକ୍ସା ହୋଇ ଉଭାସିତ ହୋଇ ଉଠିଛି ।

ସବୁ ଆଟୋପ, ସବୁ କୃତ୍ରିମ ପରିଚୟ ଊର୍ଦ୍ଧ୍ୱରେ ମୁଁ ନିଜେ ନିଜକୁ ଖୋଜିପାଏଁ ବାରମ୍ବାର ଏଇ ଘରେ ମୋ ପଢ଼ା ଟେବୁଲ ପାଖରେ ବସିଥିଲେ ।

ମୋ ପଢ଼ାଘରେ ମୋତେ ସଂସାରର ସବ୍‌କଥା ଭାରି ଭାବପୂର୍ଣ୍ଣ ଓ ନିବିଡ଼ ଲାଗିଛି । ଯେଉଁଦିନ ମୋ ମାଆ ମରିଯିବା କଥା ଶୁଣିଲି ପଢ଼ାଘରେ ବସି ମୁଁ ମୋର ପଛ ଜୀବନକୁ ଦେଖିଲି; ଯେଉଁଥିରେ ମାଆ ଥିଲା ସବୁଠାରୁ ଗୋଟେ ବଡ଼ ଅଂଶ । ଆଉ ତା'ପରି କେହି

ମୋତେ ମୋହି ଦେଇ ପାରିବେନି । ମୋର ଆତ୍ମା ଓ ଅନ୍ତରକୁ ଏ ସଂସାରରେ ଆଉ କେହି ନାରୀ ତାପରି ସ୍ପର୍ଶ କରି ପାରିବେନି ।

ମୋର ଲେଖାପଢ଼ା ଘରଟି ମୋର ପ୍ରାର୍ଥନା ମନ୍ଦିର, ମୋର ପୁଣ୍ୟ ଯଜ୍ଞବେଦୀ, ମୌନ ହେବାର ପବିତ୍ର ତପୋବନ ।

ପୁରୁଣା ଫଟା ବହିପତ୍ର ସବୁ ବି କେତେ ଆତ୍ମୀୟ, କେତେ ଆପଣାର ଲାଗନ୍ତି ! ମଧୁର ସ୍ମୃତି ସାମଗ୍ରୀ ପରି ଲାଗନ୍ତି ସେ ବହିପତ୍ର ସବୁ ।

ମୋ ପଢ଼ାଘର ଥିଲା ସତେ ଯେପରି ବିରହ ପାଳନାର ରାମଗିରି, ସହଜ ପ୍ରତୀକ୍ଷାର ବୃନ୍ଦାବନ । ମୋ ପଢ଼ାଘର ମୋତେ ସବୁବେଳେ ଉଚ୍ଚାଟିତ କରି ରଖିଥିଲା । କେତେବେଳେ ଗୋଟେ ସମୁଦ୍ରକୂଳକୁ ମୋ ମନ ଓ ଚେ଼ତନାରେ ବାରି ପାରୁଥିଲି ତ କେତେବେଳେ ପୁଣି ଗୋଟେ ଗିରି କନ୍ଦରାକୁ ।

ଗୋଟେ ରସନିବିଡ଼ ବୌଦ୍ଧିକ ଜୀବନ ପାଇଁ ମୋତେ ସଦାସର୍ବଦା ଉନ୍ମୁଖ କରି ରଖିଥିଲା ମୋ ପଢ଼ାଘର । ମୋ ମୌନତା, ମୋ ପ୍ରଗଳ୍‌ଭ ପଣିଆ, ମୋ ବିଭୋର ହେବାକୁ ମୁଁ ସବୁମତେ ମୋ ପଢ଼ାଘରେ ଅନୁଭବ କରିଛି ।

ମୋ ମନ ଓ କଳ୍ପନାର ବ୍ୟାୟାମଶାଳା ଥିଲା ଯେପରି ମୋ ପଢ଼ାଘର । ମୋ ଦୁଃଖ ମୋତେ ବେଢ଼ି ନେଇଥିଲା ତ ମୋ କାରୁଣ୍ୟ ମୋତେ ଆହୁରି ସିକ୍ତ କରୁଥିଲା । ମୋର ସେଇ ପରିଚିତ ପଢ଼ାଘରେ । ମୁଁ ଯେଉଁଆଡ଼େ ଗଲେ ବି ମୋ ପଢ଼ାଘର ଭିତରର ନକ୍‌ସାଟି ମୋତେ କେତେ ଆପଣାର ଲାଗୁଥିଲା ।

ଧୂପଦୀପ ଦେଇ ମୁଁ ସଞ୍ଜ ସକାଳେ ହୁଏତ ନିୟମିତ ଠାକୁର ପୂଜା କରିନି । ପବିତ୍ର ତିଥିମାନଙ୍କରେ ଶୁଦ୍ଧପୂତ ହୋଇ ମନ୍ଦିର ଯାଇନି । ଆମିଷ, ନିରାମିଷର ଭେଦ ବାରିନି । କୌଣସି କଥାରେ ମୋର କିଛି ବାଧା ନିଷେଧ ନଥିଲା । ରୋଟିନ କାମ ମୋତେ ମୋର ମନକୁ ଆଦୌ ବାନ୍ଧି ପାରି ନଥିଲା । କୌଣସି କଥାରେ ବେଶୀ ଜୀବନରେ କେବେ ମଜି ଯାଇନି ।

, ମୋ ଜୀବନର ଶ୍ରଦ୍ଧା, ମୋର ଅନୁରାଗକୁ ବେଶୀ ବାନ୍ଧି ପାରିଥିଲା । ମୋର ପଢ଼ାପଢ଼ି । ଭଲ ଗପଟିଏ ମୋତେ ଗୋଟେ ନୂଆ ପୃଥିବୀଆଡ଼କୁ ନେଇ ଯାଉଥିଲା । କବିତାଟିଏ ମୋତେ ଆକାଶ ଦେଖିଲା ପରି, ଚ଼ନ୍ଦନବନକୁ ଗଲାପରି- ଅବା କେଉଁ ବାଳିକାର ପ୍ରେମ ପାଇଲାପରି ପ୍ରବୋଧିତ କରି ଦେଉଥିଲା ।

କ୍ରମଶଃ ବୟସ୍କ ହୋଇ ଯାଉଥିବା ସତ୍ତ୍ୱେ ଅନ୍ତରର ତାରୁଣ୍ୟ ଅନୁଭବ କରୁଥିଲି ମୋ ପଢ଼ାଘରେ । ଆହୁରି ରୋମାଞ୍ଚ, ଆହୁରି ବ୍ୟଥା ବେପଥୁ, ଆହୁରି ସ୍ୱପ୍ନ, ଆହୁରି ପ୍ରୀତି, ଆହୁରି ମଜଗୁଲ ହେବାର ଅଭିଳାଷକୁ ମୁଁ ସେହିପରି କେତେକ ବହି ଭିତରୁ ଜାଣି ପାରୁଥିଲି ।

ବହିସବୁ ଥିଲା ମୋ ଜୀବନରେ ନୂଆ ନୂଆ ବିରଳ ଓ ରୋମାଞ୍ଚକର ଅନୁଭୂତି ଆଣି ଦେବାର ଏକ ଏକ ଉତ୍ସ ।

ଏମିତି ବହି ପଢ଼ିବା ଭିତରେ ମୁଁ ଜୀବନ ବଞ୍ଚିବାର ଅଦ୍ଭୁତ ପ୍ରବଣତା ସହିତ ଏକାତ୍ମ ହୋଇ ଯାଉଥିଲି ।

ବ୍ରହ୍ମାଣ୍ଡର ଛବିଳ ମାନଚିତ୍ରକୁ ମୁଁ ବହିରେ ହିଁ ନିବିଡ଼ ଭାବେ ଦେଖି ପାରୁଥିଲି । ସତ କହିଲେ କିଛିଟା ଜାଗତିକ ଦୁଃଖ ଓ ଅବସାଦ ଭିତରେବି ମୋର ମନ ଓ ହୃଦୟ ତାଦ୍ୱାରା ଭରି ଯାଉଥିଲା ।

ଜୀବନ ଚାରିକଡ଼େ ମୁଁ ନରମ ଫୁଲ ପାଖୁଡ଼ା କଥା ଖାଲି ଭାବିନି । ଲହୁଣୀ ପରି ମେଞ୍ଚା ମେଞ୍ଚା କୋମଳତାକୁ ମୁଁ ମନରେ କେବଳ ଭରିନି । ଆୱାଜ ହେଉଥିବା ମଣିଷର ବୁକୁଫଟା ଚିତ୍କାର ଦୁଃଖର ହାତୁଡ଼ି ପ୍ରହାର, ମେହନତି କରୁଥିବା ମଣିଷର ଗଧଖଟଣୀ ସବୁର ମିଶାମିଶି ଚିତ୍ରଟିଏ ମୁଁ ଆଙ୍କି ପାରୁଥିଲି ମୋ ମନରେ ଆଉ ମୋ ଲେଖାଲେଖିରେ ।

ମଣିଷର ଅପ୍ରମିତ ଦୁଃଖକୁ କଳନା କରିବାର ମୋ ପାଇଁ ଗୋଟେ ପରିବେଶ ଥିଲା ମୋର ପଢ଼ାଘର । ଶୀତ ବର୍ଷା ରାତିରେ ମୌନ ହୋଇ ବସିଲେ କେତେ ନୂଆ ଜାଗାରେ କଟାଇଥିବା ସଞ୍ଜ ସକାଳ ମନକୁ ଆସେ । ମୋ ସମୁଦ୍ରକୂଳ ଗାଁର ଅପରିବର୍ତ୍ତନୀୟତାର ଗୋଟେ ନିରୁତା ଲ୍ୟାଣ୍ଡସ୍କେପ୍ ଦିଶି ହୋଇଯାଏ ।

ମୋ ପଢ଼ାଘରଠାରୁ ମୋର ପ୍ରିୟ ପରିବେଶ ଆଉ କିଛି ନାହିଁ । ଗୋଟିଏ ସ୍ଥାନ, ଗୋଟିଏ ପ୍ରକାରର ପରିବେଶ, ଗୋଟିଏ ନାରୀର ପ୍ରେମ ଅବା ନିର୍ଦ୍ଦିଷ୍ଟ ଗୋଟେ ଧାରଣା ଚେତନା ପ୍ରତି ମୋର ପ୍ରଗାଢ଼ ଭଲ ପାଇବା ନଥିଲା । ଏପାଇଁ ମୋ ମନରେ ସବୁବେଳେ ଗୁଡ଼ାଏ ସଂଶୟ ଭର୍ତ୍ତି ହୋଇଥାଏ । ରାତିରେ ନିଦ ଭାଙ୍ଗିଗଲେ ନାନା ଅଡୁଆ ଚିନ୍ତାରେ ମୁଁ ଗୋଟାପଣେ ଛନ୍ଦି ହୋଇ ଯାଉଥିଲି । ଶ୍ରେୟଃ କିଏ, ପ୍ରେୟ କିଏ ମୁଁ କିଛି ଜାଣି ପାରୁନଥିଲି ।

ମୋ ପଢ଼ାଘରେ ସାଇତି ରଖିଥିବା ହଜାର ହଜାର ବହିର ରଙ୍ଗରୂପ ମୋ ମନରେ ଅବିକଳ ଆଙ୍କି ହୋଇ ରହିଛି । ଭାବରେ, ବ୍ୟକ୍ତିତ୍ୱରେ ମୋର ସବୁ ବହିକୁ ମୁଁ ଗୋଟେ ପ୍ରତିମା କରି ଦେଖିଛି ଯେମିତି । ସେ ପ୍ରତିମା ସବୁ ମୋ ମନ ହୃଦୟରେ ଅଭିଷିକ୍ତ ହୋଇରହିଛନ୍ତି; ତେତିଶ କୋଟି ଦେବତାଙ୍କ ପରି । ମୁଁ ମରିଗଲେ ଯାଇ ମୋ ମନରୁ ସେ ଭାବର ପ୍ରତିମାମାନେ ହଜିଯିବେ ।

ଆଜନ୍ମ ଜୀବନ ମୋତେ ମଧୁର ଲାଗିଛି । ଏହି ଜୀବନମୟତା ମୋତେ ଖାସ ଆବିଷ୍ଟ କରି ରଖିଥାଏ ମୋ ପଢ଼ାଘରେ । ପଢ଼ାଘରକୁ ପଶି ଆସିଲେ ଗୋଟେ ଅଶାନ୍ତ ପୃଥିବୀ ବାହାରେ ରହିଗଲା ପରି ମନେହୁଏ । ସେ ଦୃଷ୍ଟିରୁ ମୋ ପଢ଼ାଘର ମୋତେ ଭାରି ନିରାପଦ ଲାଗେ ।

ମୋ ପଢ଼ାଘର ଜୀବନସାରା ମୋର ଗୋଟେ ସୁରକ୍ଷିତ ଆଶ୍ରୟସ୍ଥଳ ପରି ମନେ ହୋଇଛି । ମୋ ପଢ଼ାଘରଟି ସେମିତି କିଛି ଖାସ ଅଭେଦ୍ୟ ଦୁର୍ଗ ନଥିଲା । ଚାରିକଡ଼େ

ମଜବୁତ ପରିଖା ନଥିଲା । ଅଥଚ ଦୁଗ୍ଧ ପୋଷ୍ୟ ଶିଶୁଟିଏ ତା ବିଶ୍ୱାସରେ କେବଳ ତା'ର ମାଆର କୋଳକୁ ଯେପରି ଉଷ୍ମ ନିରାପଦ ଅଞ୍ଚଳ ମନେକରେ ମୋ ପଢ଼ାଘର ମୋତେ ସବୁବେଳେ ସେମିତି ଲାଗେ ।

ଶୀତ ବର୍ଷା ବସନ୍ତ ରାତିର ବିଳମ୍ବିତ ପ୍ରହର ସବୁ କେତେ ନିବିଡ଼ ଲାଗେ ମୁଁ ମୋ ପଢ଼ାଘରେ ବସିଥିଲା ବେଳେ । ରାତିର ପେଚା ରାବୁଥାଏ । ଶୀତରାତି ପାହିଯାଏ । ସୁଖ ହେଉ ବା ଦୁଃଖ ହେଉ ପାହାନ୍ତି ପହରର ଶୋଭା କହିବାକୁ ଭାଷା ନଥାଏ ।

କେତେ ସରସ ଗପର ପ୍ଲଟ ମୁଁ ଏଇ ଘରେ ବସି କରିଛି । କେତେ ଲେଖାରୁ ମୂଳ ଖସଡ଼ା ଏଇମୋ ପଢ଼ାଘରେ ହୋଇଛି । ମୋ ନିଜକୁ, ମୋ ମନ ଓ ସଂକଳ୍ପକୁ, ମୋ ଆତ୍ମାର ଅନୁଭବକୁ ମୁଁ ଏଇଠି ମୋ ଲେଖାରେ ମିଶାଇଛି ।

ଆଜି ସେ ମୋ ପଢ଼ାଘର ରଙ୍ଗହୀନ ହୋଇଗଲାଣି ସତ ହେଲେ ସେ ମୋର ସବୁଠାରୁ ପ୍ରିୟ । ସୁଖ ଦୁଃଖର ସାକ୍ଷୀ । କେତେ ପ୍ରିୟ ବଂଧୁଙ୍କୁ କେତେ ସାହିତ୍ୟିକଙ୍କୁ ମୁଁ ଏଇଘରେ ବିସ ଚିଠି ଲେଖିଛି ।

ଅମାପ ସ୍ୱାଧୀନତା ଓ ପ୍ରାଣରେ ଅନନ୍ୟ ସୃଜନଶୀଳତାକୁ ମୁଁ ଅନୁଭବ କରୁଛି ମୋ ପଢ଼ାଘରେ । ମୋ ବାଣିଜ୍ୟରେ ମୋର ଅପାରଗତାକୁ ରୋକିବା ପାଇଁ, ମୋର ସୃଜନଶୀଳ ମନକୁ ଆଘାତ କରିବା ପାଇଁ ସେଇ ଇତରମାନେ କେହି ସେତେବେଳେ ଆଉ ପାଖରେ ନଥାନ୍ତି । ସେଇ ସବୁ ଇତର ମାନଙ୍କ ସ୍ୱାର୍ଥନ୍ୱେଷୀ ସଂପର୍କର କ୍ଳାନ୍ତିକର ଚାପ ଆଦୌ ମୋ ଉପରେ ସେତେବେଳେ ନଥାଏ ।

ଗୋଟେ ଉଚ୍ଚତର ଆଧାତ୍ମିକ ପ୍ରଶାନ୍ତି ଓ ତଦ୍ ଜନିତ ଆନନ୍ଦ ମୁଁ ପଢ଼ା ଘରେ ପାଏଁ । ଗୋଟେ ଅନନ୍ୟ ମାର୍ମିକତା ମୁକ୍ତିର ସ୍ୱାଦ ସେତେବେଳେ ମୁଁ ଅନୁଭବ କରେ ।

ତାସହିତ ମୁଁ ଆଉ ଗୋଟେ ପ୍ରକାର ଅସହାୟତା ଅନୁଭବ କରେ ଯେ, ଏ ସଂସାରରେ ଯେତେ ବହିଅଛି ଆଉ ପଢ଼ିବା ପାଇଁ ଯେତେ ବିଦ୍ୟାଅଛି ତାହା କେତେ ବିପୁଳ; ଅଥଚ ତାହା ମହାସିନ୍ଧୁ ହେଲେ ସେଥିରୁ ଦି' ବିନ୍ଦୁ ମୋ ପାଖରେ ନାହିଁ ।

ମନରେ କେତେ ଅବଶୋଷ ଭରିଯାଏ । ଜାବନ ସରିସରି ଆସୁଛି । ଜୀବନରେ ମୁଁ କେତେ କମ ପଢ଼ିଲି; କେତେ କମ ଲେଖିଲି ? ମୋ ବୌଦ୍ଧିକ ଜୀବନକୁ ବିପନ୍ନ କରିବା ପାଇଁତ କେତେ ବିଘ୍ନ ରହିଛି । ବାର ବାର କେତେ ସନ୍ତାପରେ ପଡ଼ି ଯାଇଛି ।

'ନିରବଧି ମଧୁର'ର ସତି ବିଜଡ଼ିତ ପୃଷ୍ଠା ସବୁକୁ ମୁଁ ଏଇ ମୋ ପଢ଼ାଘରେ ହିଁ ପ୍ରାୟ ଲେଖିଛି । ସମୁଦ୍ରକୂଳ ଗାଁର ଝଡ଼ରାତି, ଶୂନଶାନ ଖରାଦିନ ଦ୍ୱିପହର, ଆଖୁ ଓ ଅସୁମାରୀ ନିଳିତା ଫୁଲର ଶୋଭା, କଞ୍ଚେଇ ଫୁଲର ବାସ୍ନା, ଟିକିଟିକି ସୁଖ ଦୁଃଖ କଥା, ଯାହା ମୋତେ ମୋ ପିଲାଦିନେ ଭାରି ମହାର୍ଘ ଲାଗୁଥିଲା ସେସବୁ ମୋ ସୃତିକଥା 'ନିରବଧି ମଧୁର'ର ପୃଷ୍ଠା ମଣ୍ଡନ କରିଛି ।

'ନିରବଧି ମଧୁର'ର ନାୟକ ଆନନ୍ଦ ଓରଫ ଜୀବନ ଦାସ ମୋର ଛାୟା ପୁରୁଷ । 'ନିରବଧି ମଧୁର' ମୋର ସ୍ମୃତିକଥା, ମୋର ଆତ୍ମଜୀବନୀଟିଏ ଯେପରି । ଏମିତି ଗୋଟେ ସ୍ମୃତି କଥାର ଗ୍ରନ୍ଥଲେଖିବା ପାଇଁ ଦୀର୍ଘ ଚଉବନ ବର୍ଷର ସ୍ମୃତିଚାରଣାକରିଛି ମୋ ପଢ଼ାଘରେ ବସି ।

ମୋ ସେ ପଢ଼ାଘରେ ବସିଲେ କେତେ ସ୍ୱପ୍ନ ବି ମୋ ମନକୁ ଛାଇ ଦେଇଛି । ସେ ସ୍ୱପ୍ନ ସବୁ କିଛି କାଳ ଧରି ମୋ ମନ ଓ ହୃଦୟକୁ ବେଶ ପ୍ରବୋଧିତ କରି ରଖିଛି । ସେ ସବୁ ସ୍ୱପ୍ନରୁ ଅଧିକାଂଶ ହୁଏତ ଆଉ ସାକାର ହୋଇ ପାରିନି । କେତେବେଳେ ମୋ ପଢ଼ାଘରେ ସେ ସବୁ ବିଷୟକୁ ମନେ ପକାଇଛି ଅବା ଗଳ୍ପ ଉପନ୍ୟାସ ପଢ଼ିଲା ବେଳେ ମୁଁ ଆଉ ଥରେ ତା'କୁ ଛୁଇଁ ଛୁଇଁ ଯାଇଛି ।

ଅବିକଳ ସେମିତି କଥା, ସେଇ ଘଟଣାର ସୁଅ, ସେଇ ଏକାନ୍ତ ପରିବୋଧନୀୟ ବିରଳ ଲଗ୍ନର ଅନୁଭବ । ମୋତେ ଅବଶ୍ୟ ତାହା ଅନେକ ସମୟରେ ଆବିଷ୍ଟ କରି ରଖିଛି । ସେତକହିଁ ସର୍ବଦା ମୋତେ ଅମୃତମୟ ଲାଗିଛି । ସେମିତି ଅମୃତମୟ ଲାଗିବାଟା ମୋ ପଢ଼ାଘରେ ଯେମିତି ଲାଗେ ଆଉ କେଉଁଠି ପ୍ରାୟ ସେମିତି ମୋତେ ଲାଗେନି ।

ମୋ ପଢ଼ାଘରେ ଥିଲା ବର୍ଷ ବର୍ଷ ଧରି ମୋତେ ଆବିଷ୍ଟ କରି ରଖିବାର ଏକ ପରିଚିତ ଓ ସଦା ଉତ୍ସାହପ୍ରଦ ଏକ ବଳୟ । ଖାସ ଅବିଦ୍ୟାରେ ମାତିଥିବା ଇତର ମାନଙ୍କର କୌଣସି ରକମର ଧକକା ତାଭିତରେ ମୁଁ ପ୍ରାୟ ଅନୁଭବ କରୁନଥିଲି ।

ପବିତ୍ର ଉପାସନା ମନ୍ଦିର ପରି ମୋ ସେ ପଢ଼ାଘରର ପରିବେଶକୁ ଯଥା ସମ୍ଭବ ପବିତ୍ର କରି ରଖିବା ପାଇଁ ମୁଁ ଦୈନିକ ବେଦମନ୍ତ୍ର ଉଚ୍ଚାରଣ କରୁଥିଲି । ବାରପାହାଡ଼ ମୂଳରେ ଥିବା ସେ ପଢ଼ାଘରଟିକୁ ଯେତେବେଳେ ମୁଁ କାଲି ଛାଡ଼ିଯିବି ସେତେବେଳେ ମରଣ ପର୍ଯ୍ୟନ୍ତ ତାହା ଅବିସ୍ମରଣୀୟ ସ୍ମୃତିର ସନ୍ତକ ହୋଇ ରହିଯିବ ।



# ଅନ୍ତଃପୁରର ଈଶ୍ୱରୀ

କାଳ କାଳ ଧରି ବିଶ୍ୱର ଭାବ ପରିଧିରେ ନାରୀ ଏକ ବଡ଼ ଉପାଦାନ ହୋଇ ରହିଛି । ଏପରିକି ମହାକାଳ, ପରମ ପ୍ରକୃତି ମାଟି ଓ ଈଶ୍ୱରଙ୍କ ଠାରୁ ପୁରୁଷ ପ୍ରଧାନ କଳାଚେ଼ତନାରେ ନାରୀ ପାଇଁ ଅଧିକ ଭାବ ପ୍ରବୋଧକ ଓ ଚିତ୍ତ ଉଲ୍ଲାସକ ମେଟାଫର୍ ସୃଷ୍ଟି ହୋଇଛି । ବିଶ୍ୱର କଳା ଓ କଳ୍ପନାରେ ନାରୀ ଏକ ବିରାଟ ମେଟାଫର୍ । ପୁରୁଷର ନିବିଡ଼ ନାରୀ ସଂଯୋଗ ସତ୍ତ୍ୱେ ନାରୀ ତଥାପି ତା' ସମକ୍ଷରେ ଏକ ଅଭେଦ୍ୟ ରହସ୍ୟ । ପୁରୁଷର ଚେ଼ତନାରେ ନାରୀଠାରୁ ଅଧିକ ରହସ୍ୟମୟ ଅସ୍ତିତ୍ୱ ଆଉ କିଛି ନାହିଁ । ଅଥଚ଼ ତା'ର ରସବୋଧରେ ଭାବଦାତ୍ରୀ ନାରୀ ଏକ ଏକାନ୍ତ ଅତୁଳନୀୟ ତଥା ପରିଚି଼ତ ଆସ୍ୱାଦନ ।

ନାରୀ ଏ ପୃଥିବୀର ଈଶ୍ୱରୀ । ପ୍ରକୃତି ଅନୁରୂପା ଓ ଏକ ଅତି ବିସ୍ମୟଜନକ ସୌନ୍ଦର୍ଯ୍ୟ ବସ୍ତୁ (Beauty Object) ।

ଏ ପରିଦୃଶ୍ୟମାନ ପୃଥିବୀରେ ପୁରୁଷ ଆଗରେ ନାରୀଠାରୁ ଅଧିକ ବିଶିଷ୍ଟ ସୌନ୍ଦର୍ଯ୍ୟ ବସ୍ତୁ ଆଉ କ'ଣ ଅଛି ?

ନିରବଧି କାଳ ପରି ନାରୀ ବିଶ୍ୱର ମହାବିବର୍ତ୍ତନକୁ ଆବୋରି ବସିଛି ।

ବିବିର୍ତ୍ତନର ଧାରିଣୀ ବୋଲି ନାରୀ କେବଳ ମହାକାଳକୁ ସ୍ପର୍ଶ କରିପାରେ । ନାରୀ ସେ ପାଇଁ ଆଦି ଶକ୍ତି ।

ହଜାର ହଜାର ବର୍ଷଧରି କଳା ଜଗତରେ ପୁରୁଷ ପ୍ରସନ୍ନ ଚିତ୍ତରେ ନାରୀର ମହିମା କୀର୍ତ୍ତନ କରିଛି । ସହସ୍ର ସହସ୍ର ବର୍ଷ ପରେ ବି ସେ ମହିମା କୀର୍ତ୍ତନର ଶେଷ ହୋଇନି ।

ନାରୀ ଆଜି ଅଥଚ଼, ଆମ ସାମାଜିକ ବିବର୍ତ୍ତନ ଇତିହାସରେ ହଜାର ହଜାର ବର୍ଷ ବିତିଯାଇ ଥିଲେ ହେଁ ତା'କୁ ଅବହେଳା କରାଯାଇଛି ବୋଲି ଅଭିଯୋଗ କରୁଛି ।

ନାରୀ ପୁରୁଷ ପ୍ରଧାନ ଏସଥେଟିକ୍ସ୍‌ରେ ଅଂଶ ଗ୍ରହଣ କରିପାରି ନାହିଁ ବୋଲି ନିଜକୁ ଆଜି ବଞ୍ଚିତା ମନେ କରିଛି । ନାରୀ ସେ ପାଇଁ ଦୀର୍ଘ ବର୍ଷ ପରେ ବି ତା'ର ଅଧିକାର ସାବସ୍ତ କରୁଛି । ତା'ର ବଞ୍ଚନା ପାଇଁ ବରଂ କ୍ରୋଧ ପ୍ରକାଶ କରୁଛି ।

ପୃଥିବୀରେ ଆଜି ବାମାବାଦୀ ସ୍ୱର ଏତେ ପ୍ରବଳ ଭାବରେ ଶୁଭିଲାଣି ଯେ ହୁଏତ ନାନା ଦୁଃସ୍ଥିତି ସତ୍ତ୍ୱେ ଆଗାମୀ ପୃଥିବୀ ଲିଙ୍ଗ ଭେଦରେ ନାରୀ ପୁରୁଷ ଯୁଦ୍ଧର ଛାଉଣୀ ହୋଇଯିବ ।

ଏହାଠାରୁ ଅଧିକ ଦୁର୍ଭାଗ୍ୟ ଜନକ ସ୍ଥିତି ଆଉ କ'ଣ ହେବ ସେତେ ବେଳେ ?

ନାରୀପୁରୁଷର ସହାବସ୍ଥାନ ଏ ପୃଥିବୀକୁ ସୁନ୍ଦର ଓ ସର୍ବୋତ୍ତମ ଭାବେ ସୃଜନଶୀଳ କରି ରଖିଥିଲା । ନାରୀ ପୁରୁଷର ଏସୁନ୍ଦର ମିଳନକୁ ଈଶ୍ୱର କୁଆଡ଼େ ଚା଼ହୁଁ ନଥିଲେ ବୋଲି ଜଣେ ବଡ଼ ସାରସ୍ୱତ ପୁରୁଷ ଈଶ୍ୱରଙ୍କୁ ଯଥେଚ୍ଛାଚା଼ରୀ ସଇତାନ ବୋଲି ଚି଼ତ୍ରଣ କରିଛନ୍ତି ।

ନାରୀ ପୁରୁଷର ନିବିଡ଼ ସହାବସ୍ଥାନ ହିଁ ତେଣୁ ଏକାନ୍ତ କାମ୍ୟ ।

ନାରୀ ପୁରୁଷର ପ୍ରତିସ୍ପର୍ଦ୍ଧୀ ନହୋଇ ବରଂ କଲ୍ୟାଣମୟୀ ଦାତ୍ରୀ ଓ ପରମ ବାନ୍ଧବୀ ହେଉ । ପ୍ରୀତି ବଢ଼ିବ । ଭାବ ବଢ଼ିବ । ଜଗତର ଏହା ଦ୍ୱାରା ସବୁମତେ ମଙ୍ଗଳ ହେବ ।

ପ୍ରେମଭକ୍ତି ମାର୍ଗର ସୁଫୀ କବିମାନେ କହନ୍ତି, ନାରୀ ଏକ ଅନନ୍ୟ ପ୍ରେମାସ୍ପଦ ଦ୍ରବ୍ୟ (Loving Object); ଯାହା ଅତୁଳନୀୟ କୋମଳତା ଓ ମାଧୁର୍ଯ୍ୟଲାଭର ଉତ୍ସ ।

ସେମାନେ କହନ୍ତି, ନାରୀ ଈଶ୍ୱରଙ୍କୁ ଉପଲବ୍ଧି କରିବାର ଅପରିହାର୍ଯ୍ୟ ମାଧ୍ୟମ ।

ସୋରେନ୍ କିରକେଗାର୍ଡ଼ଙ୍କ ପରି ବିଶ୍ୱର ଜଣେ ମହାନ ସ୍ଥିତିବାଦୀ ଚିନ୍ତାନାୟକ ତ ସ୍ପଷ୍ଟ କହିଦେଲେ ଯେ, ନାରୀ ପ୍ରେମ ମୋତେ କବି ବୀର କରିଛି । ଗତ ଶତାବ୍ଦୀର ସେହିପରି ଆଉଜଣେ ବିଶିଷ୍ଟ ସାରସ୍ୱତ ପୁରୁଷ ସାର୍ତ କହିଥିଲେ, ପ୍ରାଣର ଅଶେଷ କୋମଳତା ଲାଭ ପାଇଁ ପୁରୁଷମାନଙ୍କ ଅପେକ୍ଷା  ନାରୀଙ୍କ ମେଳରେ ଅଧିକ ସମୟ ରହିବା ପାଇଁ ମୁଁ ବରଂ ସୁଖ ମଣେ ।

ପୁରୁଷ ଭାବ ଭାବନାରେ ନାରୀ ପ୍ରକୃତରେ ଦେବୀ ତୁଲ୍ୟା ।

ଯୁଗ ଯୁଗ ଧରି ପୁରୁଷ ପ୍ରାଣ ଉତ୍ତମା ସନ୍ଧାନରେ ହିଁ ରହିଛି ।

ଏ ସଂସାରରେ ଉତ୍ତମା ମାନେ ହିଁ କେବଳ ପୁରୁଷକୁ ମୋହି ଦେଇଛନ୍ତି । ନାରୀ ଜଣକୁ ଉଚ୍ଚତର ଆଧ୍ୟାତ୍ମିକ ବଳୟ ଆଡ଼କୁ ନେଇ ଯାଇପାରେ ।

ପୁରୁଷ ପ୍ରାଣରେ ନାରୀ ପ୍ରତି ଅଶେଷ ଶ୍ରଦ୍ଧା ଓ ସମ୍ମାନବୋଧ ସତ୍ତ୍ୱେ ନାରୀର ସଇତାନି ବି ସଂସାରକୁ ଅସୁନ୍ଦର କରିବା ସହିତ ପୁରୁଷକୁ କ୍ଷୁବ୍ଧ କରିଛି ।

ଜଣେ ବିଶ୍ୱପ୍ରସିଦ୍ଧ ନାରୀ ବିଦ୍ୱେଷୀ ନେତିବାଦୀ ଦାର୍ଶନିକ ନାରୀ ବିଷୟରେ ମନ୍ତବ୍ୟ ଦେଇ କହିଛନ୍ତି; 'ନାରୀମାନେ ହେଉଛନ୍ତି ଗୋଟେ ଦ୍ୱାର ଯିଏ ବନ୍ଦ ହୋଇଯାଏ । ସେମାନେ ଗୋଟିଏ ଫାଶ ଯାହା ଦୃଢ଼ ହୋଇଯାଏ । ଗୋଟିଏ କୁରାଢ଼ି ଯିଏ ନିରନ୍ତର କେବଳ ଆଘାତ୍ କରେ ଆଉ ଆଘାତ୍ କରେ ।'

ଉତ୍ତମମାନେ କେବଳ ବିଶ୍ୱମଙ୍ଗଳର ବିଧାନ କରିପାରିବେ । ସେମାନେ  କେବଳ ପୁରୁଷପ୍ରଧାନ ଏସଥେଟିକସ୍‌ର ଉତ୍ସ ନୁହନ୍ତି; ଗୋଟେ କଲ୍ୟାଣକର ସାର୍ବଜନୀନ ପ୍ରେମର ମୂଳାଧାର ବରଂ ।

ଏସଥେଟିକ୍ସ ଯଦିଓ ଜୀବନର ସବୁକିଛି ନୁହେଁ; ତଥାପି ନାରୀ ତା'ର ପରିଚର୍ଯ୍ୟା କରୁ । ଶୁଦ୍ଧ ଏସଥେଟିକସ୍ ହିଁ ତା'କୁ ନିଜକୁ ବ୍ୟକ୍ତ କରିବା ପାଇଁ ପ୍ରୋତ୍ସାହିତ କରିପାରିବ । ତା'ର ସୃଜନଶୀଳ ଆତ୍ମ ପ୍ରତ୍ୟୟ ବଢ଼ିବ ।

ନାରୀ ଏସଥେଟିକସ୍‌ରେ ସକ୍ରିୟ ହେଲେ ଯାଇ ତା ମନରୁ ଏହି ନିରର୍ଥକ ପୁରୁଷ ବିଦ୍ୱେଷୀ ସଂଶୟ ଦୂର ହୋଇ ପାରିବ ।

ପୃଥିବୀର ଶ୍ରଦ୍ଧା, ସହଯୋଗ ଓ ସୃଜନଶୀଳତା ବଢ଼ିବ । ନାରୀ ନିଜକୁ ଆଉ ନ୍ୟୁନ ମନେ କରିବ ନାହିଁ କି ସମାଜ ଓ ତା'ର ପ୍ରତିଟି ପ୍ରେକ୍ଷାପଟକୁ ଆଉ ଲିଙ୍ଗ ଭେଦରେ ଅସମାନ ମନେ କରିବ ନାହିଁ ।

ନାରୀ ମନ ଯେତେ ସୃଜନଶୀଳ ହେବ ତା ଜୀବନର କଳାପକ୍ଷ ସେତେ ଉଜ୍ଜ୍ୱଳ ହେବ । ତା'ର ସ୍ୱାଭିମାନ ଓ ସ୍ୱାଧୀନତା ବୋଧ ମଧ୍ୟ ବଢ଼ିବ । ନାରୀର ଅସହାୟତା ମଧ୍ୟ ଦୂର ହୋଇଯିବ ।

ନାରୀ ତା'ର ନାନ୍ଦନିକ ଅବବୋଧଜନିତ ଗ୍ରାହକତା ଓ ଗ୍ରହଣଶୀଳତାକୁ ସାବସ୍ତ ନକଲେ ସମାଜରୁ ଏହି ଲିଙ୍ଗ ଭେଦଗତ ଅସମାନତା ଆଦୌ ଦୂର ହୋଇପାରିବ ନାହିଁ ।

କଳ୍ପନା ଶକ୍ତି ଓ ସୌନ୍ଦର୍ଯ୍ୟ ଚେ଼ତନା ଦୃଷ୍ଟିରୁ ନାରୀ ଏକ ନ୍ୟୁନ ମାନସିକତାର ଅଧିକାରିଣୀ ନୁହେଁ । ପୁରୁଷ ସମକ୍ଷରେ ସେ କଦାପି ଅସମର୍ଥା ମଧ୍ୟ ନୁହେଁ । ତା'କୁ ସୃଜନଶୀଳତାରେ ଅଂଶ ଗ୍ରହଣ କରିବାକୁ ପଡ଼ିବ । ତା'ର ଆତ୍ମା ଓ ଅନ୍ତରକୁ ସେ ନିସର୍ତ୍ତ ଭାବରେ ପ୍ରକଟନ କରିବା ଉଚିତ ।

ପୁରୁଷ ସମାଜରେ ପ୍ରଭୁ ହେବାପାଇଁ ଜନ୍ମ ହୋଇ ନାହିଁକି ନାରୀ ମଧ୍ୟ କାଳ କାଳ ଧରି ଦାସ ହେବା ପାଇଁ ଜନ୍ମ ହୋଇ ନାହିଁ ।

ନାରୀ ଆପଣାକୁ ସାଧ୍ୟମତେ ପ୍ରକଟନ କରିପାରିଲେ ଯାଇ ତା'ର ସାମର୍ଥ୍ୟ ଓ ସ୍ୱାଧୀନତାକୁ ସ୍ୱତଃ ଜାହିର କରିପାରିବ ସିନା ଅନ୍ୟ ଭାବରେ ଅଧିକାର ସାବ୍ୟସ୍ତ କରିବା ପାଇଁ ସ୍ଲୋଗାନ୍ ଦେଇ ନୁହେଁ ।

ପ୍ରବାହିତ ଗିରି ଝରଣା ଓ ନଦୀ ଭିତରେ କବି ନାରୀର ପ୍ରେମ ବ୍ୟାକୁଳତାକୁ ଦେଖିଛି ଓ ନାରୀକୁ ନଦୀ ବୋଲି ତର୍କଣା କରିଛି । ଏହି ନଦୀ ରୂପକଟି ସତରେ ନାରୀର ଏକ ଅଦ୍ଭୁତ ମେଟାଫର୍ । ନାରୀକୁ ଚିହ୍ନିତ କରିବା ପାଇଁ ପୁରୁଷ କବି ଏହିପରି ଅଜସ୍ର ମେଟାଫର୍ ବ୍ୟବହାର କରିଛି ।

ଅନ୍ୟପକ୍ଷରେ ଅସ୍ତିତ୍ୱବାଦୀମାନେ ନାରୀ ବିଷୟରେ ଅତ୍ୟନ୍ତ ପ୍ରତିକୂଳ ମନ୍ତବ୍ୟ ମଧ୍ୟ ଦଅନ୍ତି । ନିତ୍ସେ ତ ନାରୀକୁ ସର୍ବଦା ଏକ ଅତି ଭୟଙ୍କର ପ୍ରାଣୀବୋଲି ଅଭିହିତ କରିଛନ୍ତି । କୌଣସି ସୂତ୍ରରେ ଯଦି କେହି କେବେ ନାରୀ ନିକଟକୁ ଯାଆନ୍ତି ତା ହେଲେ ଯିବାବେଳେ ନିରାପତ୍ତା ଦୃଷ୍ଟିରୁ ଗୋଟେ ଚାବୁକ ନେବାକୁ ଯେମିତି କେହି ନଭୁଲନ୍ତି ବୋଲି ନିତ୍ସେ କହିଛନ୍ତି । ସୋପେନ ହାଓ୍ୱାର ତାଙ୍କର 'The metaphysics of love' ରେ ନାରୀ ପ୍ରେମକୁ ନିହାତି ଏକ ସ୍ଥୂଳ, ମାମୁଲି ଓ ଅର୍ଥହୀନ ବିଷୟ ବୋଲି ବର୍ଣ୍ଣନା କରିଛନ୍ତି ।

ଗୋଟେ ନିର୍ଧାର୍ଯ୍ୟ ଜୀବବୈଜ୍ଞାନିକ ପ୍ରବୃତ୍ତିରୁ ଯାହାର ଆରମ୍ଭ ତା'ର ଯାବତୀୟ ଭାଗବତ ସୌଧ ତାସର ଘର ପରି ବଡ଼ ଭଙ୍ଗୁର ବୋଲି ସୋଫେନ ହାଓ୍ୱାର ବର୍ଣ୍ଣନା କରିଛନ୍ତି ।

ନାରୀଠାରୁ ସର୍ବଦା ନିରାପଦ ଦୂରତା ରକ୍ଷା କରିବା ସବୁଠାରୁ ବଡ଼ ସଂଯମ ଓ ବୁଦ୍ଧିମାନର କାମ ବୋଲି କେତେକ ଅସ୍ତିତ୍ୱବାଦୀ ବର୍ଣ୍ଣନା କରିଛନ୍ତି । ହଜାର ହଜାର ବର୍ଷର ନାରୀ ସଂପର୍କିତ ଅତିରଞ୍ଜନାକୁ ସେମାନେ ଅସାର ବୋଲି ମନେ କରିଛନ୍ତି । ଯଦିଓ ସୋରେନ କିରକେଗାର୍ଡ଼ ଜଣେ ଶୁଦ୍ଧ ଟ୍ରୋବାଡ଼ୋର କବିଙ୍କ ପରି ନାରୀକୁ ପରମ ପୁରୁଷାର୍ଥର ମୂଳ ଉତ୍ସ ବୋଲି ବର୍ଣ୍ଣନା କରିଛନ୍ତି । ନାରୀ ପ୍ରେମର ସ୍ୱନିଷ୍ଠ ଅନୁଭବକୁ ନାନା ରୂପକରେ ଅଶେଷ କାବ୍ୟିକତା ଭିତରେ ସେ ଅଭିବ୍ୟକ୍ତି ଦେଇଛନ୍ତି ।

ଶୃଙ୍ଗାରର ଶୀର୍ଷାନୁଭୂତି ପ୍ରତି ନାରୀ ଉଦାସୀନ ରହେ କି କ'ଣ କେଜାଣି ସାର୍ତ୍ର ନାରୀର ପ୍ରେମ ଅନୁଭବ ସଂପର୍କରେ ମନ୍ତବ୍ୟ ଦେଇ କହିଛନ୍ତି; ଈଶ୍ୱର, ନାରୀ ଓ ପଶୁ ପ୍ରେମକୁ ଏକାପରି ବୁଝିଥାଆନ୍ତି ।

ପୁଣି କେବଳ ପୁରୁଷର କାହିଁକି ଏ ପୃଥିବୀର ସୌନ୍ଦର୍ଯ୍ୟ ଚେ୍ତନାର କେନ୍ଦ୍ର ନାରୀ ବୋଲି କୁହାଯାଇପାରେ; ଯେଉଁଥି ପାଇଁ ନାରୀ ବିଦ୍ୱେଷୀ ନିତ୍‌ସେ ସୌନ୍ଦର୍ଯ୍ୟକୁ ଏକ ଅପରାଜେୟ ମନ୍ଦ (Beauty is victorious evil) ବୋଲି ମନେ କରିଛନ୍ତି ।

ନାରୀ, ସୌନ୍ଦର୍ଯ୍ୟ, ପ୍ରେମ ଆଦି କେତେକ ବିଷୟ ବଡ଼ ସଉଖୀନ ଓ ଲହୁଣୀ ଭଳି ଅତି ନରମ ବୋଲି ନିତ୍‌ସେଙ୍କ ଭଳି ନେତିବାଦୀମାନେ ମତ ପୋଷଣ କରିଛନ୍ତି ।

ନାରୀକୁ ସବୁଯୁଗରେ ପୁରୁଷ ଏକ ବିଳାସ ସାମଗ୍ରୀ ଅବା ରତି ସୁଖ ଦାୟିନୀଭାବେ ଜ୍ଞାନ କରେ । କାମୁକ ପୁରୁଷ ନାରୀର ଆକାଂକ୍ଷା କହିଲେ କେବଳ ରତି ଆକାଂକ୍ଷାକୁ ହିଁ ବୁଝନ୍ତି । ସେମାନଙ୍କ ଦୃଷ୍ଟିରେ ନାରୀର ଯେମିତି ଅନ୍ୟ କୌଣସି ଅଭିଳାଷ ନାହିଁ କି ଅନ୍ୟ କୌଣସି ପରିଚ୍ଚୟ ମଧ୍ୟ ନାହିଁ । ପୁରୁଷର ରତି ବିଳାସ ସମକ୍ଷରେ କାମିନୀ ନହେଲେ, ଭାବିନୀ ନହେଲେ ନାରୀର ମୁକ୍ତି ନାହିଁକି ନାରୀ ଜୀବନର ପୂର୍ଣ୍ଣତା ନାହିଁ ବୋଲି ସେମାନେ ମନେ କରନ୍ତି । ପ୍ରଜନନ ପାଇଁ ପୁରୁଷକୁ ଆକର୍ଷିତ କରିବା ହିଁ ନାରୀର ମୂଳଧର୍ମ ।

ଏ ଜଗତ ପରୁଷର ବୋଲି କୁହାଯାଉଛି । ମାତ୍ର ପୁରୁଷର ମନ ଓ ପ୍ରାଣର ପ୍ରକୃତ କର୍ତ୍ତ୍ରୀ ହେଉଛି ନାରୀ । ପୁରୁଷର ଜୀବନକୁ ଈଶ୍ୱରୀ ପରି ନାରୀ ଭରିଦିଏ ।

ନାରୀ ପୁଣି ଜାଣେ ତା'କୁ ଏ ସଂସାରରେ ପୁରୁଷ କିପରି ଗ୍ରହଣ କରେ । ପୁରୁଷର ତା ପ୍ରତି ପ୍ରତିଟି ଦୁର୍ବଳତାକୁ ସେ ଅନାୟସରେ ଜାଣିପାରେ । ପୁରୁଷର ସମସ୍ତ ମିଛ ପ୍ରଶଂସାକୁ ମଧ୍ୟ ନାରୀ ସହଜରେ ବୁଝିପାରେ ।

ପୁରୁଷ ପାଖରେ ଗେହ୍ଲେଇ ହେବା କଥା ଜଣେ ନାରୀ ଉତ୍ତରାଧିକାରିଣୀ ସୂତ୍ରରେ ତା ମାଆଠାରୁ ଶିକ୍ଷା କରେ । ନାରୀ ସେହି ବିଶ୍ୱାସଠାରୁ ନିଜକୁ ଆଦୌ ମୁକୁଳାଇ ଆଣି ପାରିନି ।

ନାରୀ ଓ ତା'ର ଚିରନ୍ତନ ପୁରୁଷ ସଂପର୍କଠାରୁ ବଡ଼କଥା ଆଉ ଏ ସଂସାରରେ କ'ଣ ଅଛି ?

ନାରୀତ୍ୱ ମାଆ ହେବାରେ ହିଁ ଚରମ ସାର୍ଥକତା ଲାଭ କରେ । ସେହି ମାତୃତ୍ୱର ପୂଜା ଆମ ସାଂସ୍କୃତିକ ତଥା ଧାର୍ମିକ ପରମ୍ପରାର ଏକ ବିଶିଷ୍ଟ ବିଷୟ । ପୃଥିବୀରେ ସର୍ବତ୍ର ଏହି ମାତୃତ୍ୱର ପୂଜା ବିବର୍ତ୍ତନ ସଙ୍କେତ ବହନ କରିଛି ।

ନାରୀ ପ୍ରଜନନ ଓ ଗର୍ଭାଧାନର ପ୍ରତ୍ୟକ୍ଷ ଦାୟିତ୍ୱ ବହନ କରେ ବୋଲି ତା'ର ପରିଶ୍ରାନ୍ତିକୁ ବେଶୀ ଖାତିର ନଥାଏ । ନିଃସଙ୍ଗତାର ଯନ୍ତ୍ରଣା ପୁରୁଷଠାରୁ ତେଣୁ ନାରୀର କମ 'Women with stand the pressures of loneliness better than men.' । ନାରୀ ନିଃସଙ୍ଗତା ଓ ତଦ୍‌ସଂଜାତ ଅବସାଦରେ ବେଶୀ ଜର୍ଜ୍ଜରିତ ହୁଏ ନାହିଁ । ନିଃସଙ୍ଗତାର ଯନ୍ତ୍ରଣା ନାରୀ ଅପେକ୍ଷା ପୁରୁଷକୁ ବରଂ ବେଶୀ କ୍ଷତାକ୍ତ କରେ ।

ସବୁକାଳରେ ସବୁଠି ନାରୀ ବେଶୀ କର୍ତ୍ତୃତ୍ୱ ଜାହିର କରେ । ନାରୀ ପ୍ରେମର ଓ ତା' ମନସ୍ତତ୍ତ୍ୱର ଏହା ଏକ ବୃହତ୍ ଅଂଶ । ଏଥିପାଇଁ ନାରୀ କ୍ରୋଧର ଆଶ୍ରୟ ନିଏତ ପୁଣି ପ୍ରେମର ଆଶ୍ରୟ ନିଏ । ସ୍ୱେଚ୍ଛାକୃତ ଭାବେ ସହଯୋଗ କରେ ତ ପୁଣି ଅସହଯୋଗ କରେ । ସ୍ୱକୀୟା ହେଉ ବା ପରକୀୟା ହେଉ ସମସ୍ତେ ପୁରୁଷ ଉପରେ କର୍ତ୍ତୃତ୍ୱ ଜାହିର କରିବା ପାଇଁ ଭଲ ପାଆନ୍ତି । କର୍ତ୍ତୃତ୍ୱ ଜାହିର କରି ପାରିଲେ ଅଶେଷ ଆନନ୍ଦ ଅନୁଭବ କରେ ନାରୀ । କର୍ତ୍ତୃତ୍ୱ ସାବସ୍ତ କରିବା ହେଉଛି ନାରୀ ଜୀବନର ପୂର୍ଣ୍ଣତା ଓ ତୃପ୍ତିର ବିଷୟ । ପୁରୁଷ ଉପରେ କାରଣ ଅକାରଣରେ କର୍ତ୍ତୃତ୍ୱ ଜାହିର କରି ନ ପାରିଲେ ନାରୀ ନିଜକୁ ଦାସୀ ମନେ କରେ ଓ ତା ଜୀବନ ସେ ପାଇଁ ତା'କୁ ଅତିଷ୍ଠ ଲାଗେ ।

କର୍ତ୍ତୃତ୍ୱରେ ତା'ର ଅଭିଷେକ ହୁଏ ।

ସେଥିପାଇଁ ସେ ଅନ୍ତଃପୁରର ଈଶ୍ୱରୀ ।

ନୀରୀ ହେଉଛି ପୁଣି ଶୁଦ୍ଧ କାରୁଣ୍ୟର ଅଧିକାରିଣୀ ।

ସ୍ୱର୍ଗୀୟ ଶୃଙ୍ଗାରର କର୍ତ୍ତ୍ରୀ ।

କର୍ତ୍ତୃତ୍ୱର ଅଗ୍ରଲେଖ ।

ନାରୀ ତା'ର ଯୌନ କାମନାରେ ଅତ୍ୟନ୍ତ ଅନ୍ତର୍ମୁଖୀ ଓ ଯୌଗିକ ।

ଗୋଟେ ଅନ୍ତରୀଣ ସ୍ରୋତର କ୍ଷିପ୍ର ଗତି ପରି ନାରୀର ପ୍ରେମ । ନାରୀ ପ୍ରଣୟର ଭାଷାକୁ ଅତ୍ୟନ୍ତ ଚୁପଚାପ ଭାବେ ଅନ୍ତର୍ମୁଖୀ କରି କହେ ।

ନାରୀ ପ୍ରେମରୁ ପୁରୁଷ ପ୍ରୀତି ଓ ବନ୍ଧୁତା କରିବାର କୋମଳ ଇଚ୍ଛା ଲାଭ କରେ । ତା ସହିତ ଗାଢ଼ ଓ ଗଭୀର ସଂପର୍କିତ ଅନୁଭୂତି ମଧ୍ୟ ଲାଭ କରେ ।

ନାରୀ ସହିତ ପୁରୁଷର ଶୃଙ୍ଗାର ଇଚ୍ଛା କବି କଳ୍ପନାର ଉତ୍ସ ହୋଇଯାଏ । ନାରୀ ପୁରୁଷକୁ ଉଚ୍ଚତର ଅନୁଭୂତି ପାଇଁ ପ୍ରୋତ୍ସାହନ ଦିଏ । ତାହା କ୍ରମଶଃ ତାକୁ ବିନୀତ କରିଦିଏ । ପ୍ରଗାଢ଼ ନାରୀ ପ୍ରେମରେ ପୁରୁଷ ନିରନ୍ତର ଭାବାବିଷ୍ଟ ହୋଇ ରହିଥାଏ ।

ଶୃଙ୍ଗାର ମଣିଷ ମନରୁ ଯାବତୀୟ ବିକାର ଦୂରକରେ ।

ମଣିଷକୁ ବିନୀତ ଓ ଉଦାର କରିବା ପାଇଁ ମୃତ୍ୟୁ ସଚେତନ କରାଏ ।

ବିବର୍ତ୍ତନର ଚିରନ୍ତନତା ସହିତ ସଂଯୋଗ ସ୍ଥାପନ କରେ ।

ଶୃଙ୍ଗାର ଈଶ୍ୱର ଓ ମନୁଷ୍ୟ ମଧ୍ୟରେ ସେତୁ ସଦୃଶ । ପ୍ରାଚୀନ ବିଶ୍ୱାସରେ ଶୃଙ୍ଗାର ମୁକ୍ତିର ମାର୍ଗ ଥିଲା । ଉଚ୍ଚତର ଶୃଙ୍ଗାରରୁ ରହସ୍ୟାନୁଭୂତି ମିଳେ; ଯାହା ସହିତ ଫ୍ରୟେଡ୍‌ଙ୍କ "Oceanic Experience" ତୁଳନୀୟ ।

ମାୟା ନାରୀର ପ୍ରତୀକ । ନାରୀ ପ୍ରେମ ପୁରୁଷକୁ କ୍ରମଶଃ ସେହି ମାୟାର ବଳୟ ଆଡ଼କୁ ନେଇଯାଏ । ନାରୀ ରହସ୍ୟମୟୀ । ସେ ରହସ୍ୟ ରଚନା କରେ । ଚରମ ରତି ଆକାଂକ୍ଷା ଭିତରେ ନାରୀ ଏତେ ଉଲ୍ଲସିତ ହୋଇପଡ଼େ ଯେ ତା'ର ସେହି ରତି ଉଲ୍ଲାସ ପୁରୁଷକୁ ରହସ୍ୟମୟ ଲାଗେ ।

ନାରୀ ପୁରୁଷକୁ ଗଭୀର ପ୍ରାଣ ପ୍ରାଚୁର୍ଯ୍ୟ ଭିତରେ ବଞ୍ଚିବାର ନିବିଡ଼ ଅନୁଭବ ଆଣିଦିଏ । ତା' ଜୀବନର ପୂର୍ଣ୍ଣତା ଆଣିଦିଏ । ନାରୀର ଅଖଣ୍ଡ କର୍ତ୍ତୃତ୍ୱକୁ ପୁରୁଷ ମୁଣ୍ଡପାତି ତେଣୁ ସହି ନିଏ । କର୍ତ୍ତୃତ୍ୱ ବିସ୍ତାରରେ ତା'ର ତୁଳନା ନାହିଁ । ଯେଡ଼େ ବଡ଼ ଚକ୍ରବର୍ତ୍ତୀ ହେଉ ନାରୀ ପୁରୁଷକୁ ବଶ କରି ରଖିବାକୁ ଚାହେଁ । ତାକୁ ମେଣ୍ଢା କରିଦେବାକୁ ଚାହେଁ ।

ସେ ସୃଷ୍ଟି ଓ ପ୍ରଳୟର ଲୀଳାମୟୀ ଶକ୍ତି ।

ସେ ଭାବ ପ୍ରବୋଧନାରେ ଜ୍ଞାନମୟୀ ସରସ୍ୱତୀ ।

ସେ ଇଚ୍ଛାମୟୀ ସୁଖଦାୟିନୀ ମହାଲକ୍ଷ୍ମୀ ।

ସେ ପୁଣି ମହାକାଳୀ ।

ନାରୀର ସୌନ୍ଦର୍ଯ୍ୟବୋଧ ତଥା ସୃଜନଶୀଳ ସାମର୍ଥ୍ୟ ନିକଟରେ କିନ୍ତୁ ପୁରୁଷ ନିଜକୁ ସର୍ବଦା ନ୍ୟୁନ ମନେ କରିଛି । ନାରୀ କାମକେଳି ପ୍ରବୀଣା । ସେ ଭାବିନୀ, କାମିନୀ, ମୋହିନୀ ଆଉ ସେ ସୁଖଦୟିତା ।

କାଳ କାଳ ଧରି ନିରବଧି ନାରୀ ଏକ ବର୍ଣ୍ଣାଢ଼୍ୟ, ଚିତ୍ରିତ କାନ୍‌ଭାସ୍ । ନାରୀ ଏକ ମାଙ୍ଗଳିକ ଶଙ୍ଖଧ୍ୱନି; ସେ ଆତ୍ମ ସମର୍ପଣର ଏକ ଦୁର୍ଲଭ ଅନନ୍ୟ ଅସ୍ତିତ୍ୱ । ନାରୀ ପୁଣି ଅନ୍ତଃଶୁଦ୍ଧିର ପ୍ରଶସ୍ତ ସତ୍ତା । ନାରୀ ପ୍ରେମ ଅନନ୍ତ କାଳର ଭାବ ଜଗତରେ ଏକ ଆତ୍ମେନ୍ଦ୍ରୀୟ ଉପଲବ୍ଧି । ଏକ ରସ ନିବିଡ଼ ତଥା ପୁଲକମୟ ଅନୁଭବ ।

ନାରୀ ସତ୍ତା ଏକ କମନୀୟ କଳାବିଳାସ; ଯାହା ପ୍ରାଣକୁ ଏକ ଗଭୀର ପୁଲକରେ ଆବିଷ୍ଟ କରିଦିଏ ।

ନାରୀର ଶରୀର ସତେ ଯେପରି ନିବିଡ଼ ବନସ୍ପତି ଭରା ସୁଶୋଭିତ ଚୈତ୍ର ଉଦ୍ୟାନ, ସତେ ଯେପରି ଏକ ବର୍ତ୍ତୁଳ ଉପତ୍ୟକା ଏକ ମଧୁବନ । ସର୍ବୋପରି ନାରୀ ଏକ ନିବିଡ଼ ପୁଲକମୟ ଉପଲବ୍ଧି । ବନସ୍ତର ବର୍ଷାକାଳପରି ଅବା ନିଃଶବ୍ଦ ଶୀତରାତି ପରି । ନାରୀ ପୁଣି ଅନନ୍ତ ଜୀବନର ଧାରିଣୀ, କଳ୍ପନାର ଚାରୁଲତା; ଏକ ଅପହଞ୍ଚ ସୋପାନ । ରହସ୍ୟର ମହାତୀର୍ଥ ଯେପରି ।

ନାରୀ ଏକ ପୂର୍ଣ୍ଣତୋୟା । ନାରୀ ପୁଣି ଏକ ବିରାଟ କଳା ମନ୍ଦିର ଓ ହିମ ଶୀତଳ ମେରୁ; ଯାହାକୁ ହୁଏତ କଳନା କରି ହେବ ନାହିଁ ।

ନାରୀ ଏକ ପ୍ରେମ ଗୋଲାପ; ଯାହା ଏକ ବର୍ଣ୍ଣୋଜ୍ଜ୍ୱଳ ପ୍ରସ୍ଫୁଟନର ସମ୍ଭାବନାକୁ ସଦାସର୍ବଦା ଧରି ରଖିଥାଏ ।

ପ୍ରେମର ଆନନ୍ଦ ଓ ଏକାନ୍ତ ପରିବୋଧନୀୟ ରତିତୃପ୍ତିକୁ ନାରୀ ସହିତ ନିରବଧି ଯୋଡ଼ି ଦିଆ ଯାଇଛି । ନାରୀ ହେଉଛି ତା'ର ସର୍ବମୟ କର୍ତ୍ତ୍ରୀ ଓ ଅନିବାର୍ଯ୍ୟ ମାଧ୍ୟମ । ପୁରୁଷର ଲାଳସାମୟ ସ୍ୱପ୍ନ ବଳୟ ଭିତରେ ନାରୀ ଏକ କାମ ରୂପୀ ମଧୁମତୀ; ପୁରୁଷ ଯାହା ପାଇଁ ସ୍ୱପ୍ନ ଦେଖି ଦେଖି ଜୀବନ ସାରିଦେଇଛି । ହରବର୍ଟ ମାରକ୍ୟୁଜ ତାଙ୍କର 'Eros and Civilisation' ଗ୍ରନ୍ଥରେ ନାରୀ ପୁରୁଷର ସମୁନ୍ନତ ପ୍ରେମାନୁଭୂତି ସଂପର୍କରେ ମନ୍ତବ୍ୟ ଦେଇ କହିଛନ୍ତି, 'ମନୁଷ୍ୟ ନିଜର ପ୍ରବୃତ୍ତିର ପରିତୃପ୍ତିରେ, ବିଶେଷ କରି ଯୌନକାମନାର ପରିତୋଷଣରେ ଉଚ୍ଚତର ମୂଲ୍ୟବୋଧ ପ୍ରତି ଆଗ୍ରହଶୀଳ ଜଣେ ଉନ୍ନତତର ପ୍ରାଣୀ ।'

କାମ ବାସନା ହିଁ ଗୌରବର ସହିତ ପ୍ରେମରେ ପରିଣତ ହୁଏ । ଏହା ଥିଲା ଯେ କୌଣସି ତ୍ରୋବାଡ଼ୋର କବିଙ୍କ ପରି କିରକେଗାର୍ଡ଼ଙ୍କ ସ୍ୱନିଷ୍ଠ ଉପଲବ୍ଧିର ବିଷୟ । ପ୍ରେମମୁକ୍ତି ମାର୍ଗରେ କିରକେଗାର୍ଡ଼ ଯେମିତି ଜଣେ ନିମଜ୍ଜିତ ସାଧକ ଥିଲେ ।

ନାରୀ ପ୍ରେମ ପୁରୁଷକୁ ଏକ ମହାନ ପରିପୂର୍ଣ୍ଣତା ଆଡ଼କୁ ନେଇଯାଏ । ଚିରକାଳ ସେ ପ୍ରେମର ତପସ୍ୟା ଭିତରେ ଥିଲେ ଶ୍ରେଷ୍ଠତାକୁ ଭେଟେ ବୋଲି କିରକେଗାର୍ଡ଼ କହିଛନ୍ତି ।

ପ୍ରେମର ଅର୍ଥ ଯୌନକାମନା ଯୁକ୍ତ ପ୍ରେମ କରିବାକୁ କେବଳ ବୁଝାଏ ନାହିଁ । ପ୍ରେମ ଯୌନାଚାର ସର୍ବସ୍ୱ ଜୀବନର ଏକ ଉତ୍ତେଜନା ମାତ୍ର ନୁହେଁ । କିରକେଗାର୍ଡ଼ ଯେ ପ୍ରେମ ପାଇଁ ବଳିଦାନ କରିଛନ୍ତି—ସେ ପ୍ରେମ ସହିତ ସୁଖବାଦକୁ ଯୋଡ଼ି ଦେଖିନାହାନ୍ତି । ପ୍ରେମ ହେଉଛି ଗୋଲାପ ସହିତ କଣ୍ଟାକୁ ତୋଳିବାର ଏକ ବାସ୍ତବତା । ନିଜକୁ ଯନ୍ତ୍ରଣା ବିଦ୍ଧକରି ଆପଣା ଅନ୍ତରକୁ ଶୋକ ଜର୍ଜ୍ଜରିତ କରିବାର ସାଧନା ।

ବହୁକାଳ ଧରି ପୃଥିବୀରେ ପ୍ରେମ ସହିତ ସୁଖବାଦ ଦର୍ଶନ ଯୋଡ଼ା ହୋଇ ରହିଛି । ଯନ୍ତ୍ରଣା ଓ ଉତ୍ସର୍ଗର ଦିଗପ୍ରତି ସେ ପ୍ରେମଧର୍ମର ପ୍ରବକ୍ତାମାନେ ବଡ଼ ଉଦାସୀନ ହୋଇ ରହିଛନ୍ତି ।

ଇଲିୟଟ୍ କହନ୍ତି, ପ୍ରେମର ଆନନ୍ଦ ଏକ ପ୍ରସନ୍ନ ସରଳତାରେ ପରିଣତ ହୋଇଛି । ପୃଥିବୀର ଶୁଚି ବିକାରଗ୍ରସ୍ତ ମାନେ ପୁଣି ଯୌନ ପ୍ରେମକୁ ନିର୍ବିଚାର ଭାବେ ପାପତତ୍ତ୍ୱରେ ପରିଣତ କରି ଦେଇଛନ୍ତି । ସେମାନେ ତା'ର ଉତ୍ତରଣର ଅଭ୍ୟର୍ଥକ ସମ୍ଭାବନାକୁ ହୁଏତ ସ୍ୱୀକାର କରି ନାହାନ୍ତି । ସେଥିପାଇଁ ସେମାନଙ୍କର ଗ୍ରାହକତା ଓ ଗ୍ରହଣଶୀଳତାର ଅଭାବ ଥିଲା ।

ତତ୍ତ୍ୱ, ନୀତିମାନ ଜୀବନ ଓ ଧାର୍ମିକତା ଉର୍ଦ୍ଧ୍ୱରେ ନାରୀ ହେଉଛି କାଳ କାଳ ଧରି ନାରୀ । ପଦ୍ମ ପୋଖରୀ ପରି ଶୋଭାବନ୍ତ । ପୁରଜନକୁ ମୋହିଦିଏ । ମୃଗତୃଷ୍ଣା ପରି ଆକର୍ଷିତ କରେ ।

ନାରୀ ପୁଣି ଏକ ମଧୁର ସମ୍ମୋହନ । ମୋହି ଦେବା ତା'ର ନିତ୍ୟକାଳର ଧର୍ମ । ସେ ପ୍ରକୃତରେ ମନମୋହିନୀ । ଭାବ ଦାୟିନୀ । ଜଣେ ସତ୍‌ପୁରୁଷ ହିଁ ଜାଣେ କେଉଁ ନାରୀକୁ ପ୍ରେମ କରାଯାଇପାରେ ଆଉ ପୁଣି କେଉଁ ନାରୀକୁ ଘୃଣା କରାଯାଇପାରେ ।

ନାରୀ ପ୍ରେମରୁ ପୁରୁଷର କଳ୍ପନା ଶକ୍ତି ଜନ୍ମେ । ଯୁଦ୍ଧ ଓ ଶାନ୍ତିର ମୂଳ ବୀଜ ହେଉଛି ନାରୀ । ପ୍ରଳୟ ଓ ସୃଷ୍ଟିରେ ଆରମ୍ଭରେ ଥାଏ ପୁଣି ନାରୀ । ନାରୀ ସବୁ କାଳରେ ଏକ ଅନନ୍ୟ କୌତୂହଳ ।

ମାତୃତ୍ୱ ପୁଣି ନାରୀର ଏକ ପବିତ୍ର ଓ ପୂର୍ଣ୍ଣତମ ରୂପ ।

ଏହି ମାତୃତ୍ୱ ଲାଭ ଓ ଗର୍ଭାଧାନର ପ୍ରତ୍ୟକ୍ଷ ଦାୟିତ୍ୱ ଯୋଗୁଁ ନାରୀ ସଙ୍ଗମରେ ଅଧିକ ସଚେତନ ହୋଇଥାଏ । ଗୋଟିଏ ମୁହୂର୍ତ୍ତର ସଙ୍ଗମ ଲାଳସା ତା ଜୀବନକୁ ବଦଳାଇ ଦିଏ । ମାଆ ହେବା ନାରୀ ଜୀବନର ଏକ ବଡ଼ ରୂପାନ୍ତର । ପ୍ରଜନନ ପରେ ନାରୀ ଗର୍ଭବତୀ ହୁଏ । ଗର୍ଭସ୍ଥ ଶିଶୁଟିର ପିତାଙ୍କ ପରିଚୟ ନାରୀକୁ ହିଁ ଦେବାକୁ ପଡ଼େ । ଶିଶୁର ମୃତ୍ୟୁ ହୋଇଗଲେ ବି ଏବଂ ମୃତ୍ୟୁପର୍ଯ୍ୟନ୍ତ ନାରୀ ପୁଣି ଗର୍ଭଧାରଣ ନକଲେ ବି ମାଆ କେବେ ପୁଣି ଆଉ କୁମାରୀ ହୋଇ ପାରେନା ।

ସଙ୍ଗମ ବା ଗର୍ଭାଧାନର ପୂର୍ବ ଏବଂ ପର ବ୍ୟବଧାନକୁ ନାରୀ ଯେପରି ମାନସିକ ଓ ଶାରୀରିକ ଭାବେ ଅନୁଭବ କରିପାରେ, ପୁରୁଷ ତାହା ହୁଏତ କରିପାରେ ନାହିଁ ।

ମୈଥୁନ ନାରୀ ଶରୀରରେ ବିପୁଳ ପରିବର୍ତ୍ତନ ଆଣି ଦେଉଥିବାରୁ ନାରୀ ସହବାସ ବେଳେ ସାଧାରଣତଃ ତା'ର ବିପୁଳ ରତି ଆକାଂକ୍ଷା ସତ୍ତ୍ୱେ ପ୍ରତିରକ୍ଷା ମୂଳକ ଭୂମିକା ନିର୍ବାହ କରେ ।

ନାରୀସତ୍ତା କେବଳ ଜୀବବୈଜ୍ଞାନିକ ପ୍ରାଣୀ ଧର୍ମ ଭିତରେ ସୀମିତ ନୁହେଁ । ନାରୀର ଶୃଙ୍ଗାର ଦିବ୍ୟାନୁଭୂତିର ଉନ୍ମେଷ କରାଏ । ଶୃଙ୍ଗାର ନାରୀକୁ ଚରମ ତ୍ୟାଗ ଓ ବଳିଦାନ ଆଡ଼କୁ ବାଟ କଢ଼ାଇ ନିଏ । ପାଶବିକ ପ୍ରବୃତ୍ତିର ସେ ଶକ୍ତି ନାହିଁ । ନାରୀସତ୍ତାକୁ କେବଳ ମାଂସଳ ଯୌନତା ଭିତରେ ସୀମିତ କରି ରଖିବା ଆଦୌ ଠିକ୍ ନୁହେଁ ।

ବାସ୍ତବରେ ନାରୀ ପୁରୁଷକୁ ଉର୍ଦ୍ଧ୍ୱଗ କରାଏ । 'Woman draws us upward' ବୋଲି ଗେଟେ କହିଛନ୍ତି । ନାରୀ ପ୍ରେମ ସାଙ୍କେତିକ ଭାବେ ମୈତ୍ରୀ, କରୁଣା ଓ ସୌନ୍ଦର୍ଯ୍ୟର ପୂଜା ଯେପରି ।

ପୁରୁଷ ପ୍ରାଣକୁ ନାରୀ ସୃଜନଶୀଳତାରେ ଭରିଦିଏ । ଶ୍ରଦ୍ଧା ଓ ସୌଜନ୍ୟ ବୋଧରେ ବି ଭିରିଦିଏ । ପ୍ରେମରେ ପଡ଼ିଲେ ପୁରୁଷ ନିକଟରେ ବୈରତା ଆଚରଣ କରିବାର ପ୍ରବୃତ୍ତି ଆଉ ରହେ ନାହିଁ । ଶ୍ରଦ୍ଧା ଓ ସଂହତିର ସେ ସେତୁ ହୋଇଯାଏ ।

ଉତ୍ତମା କେବଳ ପୁରୁଷକୁ ଆତ୍ମ ସନ୍ତୋଷର ନିବିଡ଼ ଅନୁଭବ ଆଣି ଦିଏ । ସେ ପ୍ରାଣରେ ଆତ୍ମ ତୃପ୍ତି ଅନୁଭବ କରେ ।

ପ୍ରେମହିଁ ବସ୍ତୁତଃ ଆମକୁ ଜୀବନ ପ୍ରିୟତା ଶିଖାଇଛି । ରୋଲୋମେଙ୍କ ପରି ଜଣେ ସମାଲୋଚକ ଯଥାର୍ଥରେ କହିଛନ୍ତ; 'Loveliness exercises a pull upon us; we are drawn to life by love.' ।

ଜଣେ ନାରୀକୁ ଭଲ ପାଇବାରେ ଜଣକର ସଂସ୍କୃତି ସଂପନ୍ନତା ଓ କୌଳିନ୍ୟର ପରିଚୟ ମିଳେ । ଜଣେ ଅଧିକ ଭଲ ନ ହେଲେ ପ୍ରେମର ନିଷ୍ଠା ଓ ଗଭୀରତା ବଢ଼ିବ ନାହିଁ । ନାରୀ ପ୍ରେମ ସହଜାତ ସାଧୁତା (Innate goodness)କୁ ବିକଶିତ କରେ ।

ପ୍ରେମ ପାଇଁ ଜଣେ ପୁରୁଷକୁ ଅବା ନାରୀକୁ ସର୍ବୋତ୍ତମ ଭାବେ ଭଲ ହେବାକୁ ହିଁ ହେବ । ଜଣେ ପ୍ରକୃତରେ ଭଲ ହୋଇ ନପାରିଲେ ସେ ପ୍ରେମର ଗୌରବ ପ୍ରତିଷ୍ଠା କରିପାରିବ ନାହିଁ ।

ପ୍ରେମିକା ଈଶ୍ୱରୀ ନୁହେଁ ତ ଆଉ କ'ଣ ? ଯାହାର ଆବିର୍ଭାବରେ ଜଣେ ତୁଚ୍ଛ ବୈରତା ସବୁକୁ ଭୁଲିଯାଏ । ଦାନ୍ତେ ତାଙ୍କର ପ୍ରାଣପ୍ରିୟା ପ୍ରେମିକା ବ୍ରିଏଟିସ୍‌କୁ ମହାମୁକ୍ତିର ଈଶ୍ୱରୀ ବୋଲି ଜ୍ଞାନ କରିଥିଲେ । ବ୍ରିଏଟିସ୍ ସମୀପକୁ ଆସିଲେ ସେ ଯେପରି କୁତ୍ସିତ ପାର୍ଥିବତାକୁ ବିସ୍ମରି ଯାଉଥିଲେ ।

ଶେକ୍ସପିୟର କିନ୍ତୁ ନାରୀ ସୌନ୍ଦର୍ଯ୍ୟର ବିପୁଳ ଚିତ୍ର ପ୍ରଦାନ କରିଥିଲେ ବି ନାରୀର ଅନ୍ୟ ନାମ ଈର୍ଷା ବୋଲି କହିଛନ୍ତି ।

ସେହି ଈର୍ଷା ଯୋଗୁଁ ହିଁ ନାରୀ କର୍ତ୍ତୃତ୍ୱର ଈଶ୍ୱରୀ ହୋଇଛି । ଈର୍ଷା ବରଂ ନାରୀର ନିବିଡ଼ ପ୍ରାପ୍ତି ପାଇଁ ଏକ ଗୁଣ ବା ଭୂଷଣ । ନାରୀର ଏହି ଈର୍ଷା ଯେଉଁ ନିବିଡ଼ତାର କାରଣ ତାହା ଯୋଗୁଁ ପ୍ରେମ ସ୍ୱାଦ୍ୟ ହୋଇଥାଏ ।

ନାରୀର ଏହି କ୍ଷମତା ଲୋଭ, ଈର୍ଷା ଅସୂୟା ସତ୍ତ୍ୱେ ସେ ମୋହିନୀ, ସେ ମଧୁମତୀ, ତା ଜିଭ ଅଗରେ ସ୍ୱର୍ଗର ଅମୃତ ରହିଛି ! ତା'ଙ୍କ କୋମଳ ବଚନ ହିଁ ଅନନ୍ୟ ମାଧୁର୍ଯ୍ୟ ।

କୋମଳକଣ୍ଠୀ ନାରୀର ବଚନ ବୀଣାର ଝଙ୍କାର ପରି ମଧୁର । ସେ ନିବେଦିତା । ନିବେଦନ କରି ସେ ବିଜୟ ହାସଲ କରେ । ସେ ପ୍ରିୟମ୍ବଦା । ପ୍ରିୟ ବଚନ କହିବା ତା'ର ଧର୍ମ ।

ନାରୀ ବ୍ୟକ୍ତିତ୍ୱର ଗୋଟେ ବଡ଼ ଦିଗ ହେଉଛି ତା'ର କୋମଳତା ଓ ମାଧୁର୍ଯ୍ୟ ।

ଗୋଟେ ସୁନ୍ଦରୀ ନାରୀର ମୃତ୍ୟୁ ତେଣୁ ଏ ଜଗତର ସବୁଠାରୁ ବଡ଼ କାବ୍ୟ ପ୍ରସଙ୍ଗ; କାରଣ ତାହାହିଁ ବେଶୀ କବି ଚିତ୍ତକୁ ଉଦ୍‌ବେଳିତ କରେ ।

ଗୋଟେ ସୁନ୍ଦରୀ ନାରୀ ପ୍ରତି ଏ ସଂସାରରେ ସମସ୍ତଙ୍କର ଗୋଟେ ନିଃସର୍ତ୍ତ ସହାନୁଭୂତି ତା'ର ମୃତ୍ୟୁ ଜନପଦର ସବୁଠାରୁ କାରୁଣ୍ୟ ବିଜଡ଼ିତ ଘଟଣା ହୋଇଥାଏ ।

ନାରୀ ବାରୁଣୀ ପରି ଉଠିଆସେ । ଅଭୟ ବର ଦିଏ । ମଙ୍ଗଳ ବରଷେ ।

ସେ ତ ସୁନାହରିଣୀ, ମାୟା ମିରିଗ । ଗୋଟେ ଶୁଦ୍ଧ ଅନୁଭବର ବିସ୍ତାର । ଗୋଟେ ନିବିଡ଼ ହୃଦୟସ୍ପର୍ଶୀ ସ୍ପର୍ଶ ।

ପୁରୁଷର ନାରୀ ଅନୁଭବ ଏକ ସ୍ୱନିଷ୍ଠ ଜ୍ଞାନ । ପୁରୁଷର ନାରୀବୋଧ ଏକ ତତ୍ତ୍ୱନିଷ୍ଠ ଜ୍ଞାନ ନୁହେଁ । ଶୁଦ୍ଧ କବିତା ପରି ସେ ଅନୁଭବ ମନ ଓ ଚେତନାରେ ବଡ଼ ସଂଚରଣଶୀଳ ।

ବହୁ କବି ଓ ମନିଷୀ ନାରୀଙ୍କୁ ଅନନ୍ୟା ବୋଲି ବର୍ଣ୍ଣନା କରିଥିଲେହେଁ କେତେକ ପୁଣି ନାରୀଙ୍କ ବିଷୟରେ ପ୍ରତିକୂଳ ମନ୍ତବ୍ୟ ଦେଇଛନ୍ତି ।

ନିତ୍‌ସେ ତ ନାରୀ ସୃଷ୍ଟିକୁ ଈଶ୍ୱରଙ୍କ ଦ୍ୱିତୀୟ ଭୁଲ ବୋଲି ବର୍ଣ୍ଣନା କରିଛନ୍ତି ।

ଅଥଚ ଗୋଟେ ନାରୀ ପୁରୁଷକୁ ଉପରକୁ ଉଠାଏ ବୋଲି ସ୍ପଷ୍ଟଭାବେ କହିଛନ୍ତି । ଗୋଲଡ୍‌ସ୍ମିଥ୍ କହିଛନ୍ତି : ନାରୀ ଓ ସଙ୍ଗୀତ କେବେ ପୁରୁଣା ହୁଅନ୍ତିନି ।

ଆଉ ଜଣେ ପାଶ୍ଚାତ୍ୟ କବି କିନ୍ତୁ କହିଛନ୍ତି; ନାରୀର ହଁ ନାଁ ମଧ୍ୟରେ କିଛି ତଫାତ୍ ହିଁ ନାହିଁ । ସେହିପରି ଆଉ ପୁଣି କେତେଜଣ ମନେ କରିଛନ୍ତି ଯେ, ଶେଷରେ ପୁରୁଷମାନେହିଁ ନାରୀମାନଙ୍କୁ ମାର୍ଜ୍ଜିତ କରିବେ । ସେମାନେ ଏ ଯାବତ୍ ମାର୍ଜ୍ଜିତ ହୋଇ ଯାରି ନାହାନ୍ତି ।

ନାରୀମାନେ ପୁଣି ସବୁ ବିଷୟରେ କମ୍ ଜାଣନ୍ତି; ସେପାଇଁ ବେଶୀ ଅନୁଭବ କରି ପାରନ୍ତି ବୋଲି କୁହାଯାଇଛି ।

ପୃଥିବୀରେ ବୋଧେ ନାରୀ ବିଷୟକ ଅନୁଚିନ୍ତା ଅନୁପାତ ଅନୁସାରେ ବହୁତ ଏବଂ ପୃଥିବୀର ସାହିତ୍ୟରେ ସବୁଠାରୁ ବଡ଼ ଆର୍କିଟାଇପ୍ ।

ପୁରୁଷପ୍ରଧାନ ସମାଜରେ ନାରୀ ବିଷୟକ ଭାବ ଭାବନାର ପ୍ରକୃତରେ ଶେଷ ନାହିଁ । କାଳ କାଳ ଧରି ନାରୀ ପ୍ରତି ଚରମ ଉତ୍ସୁକତା ଅପରିବର୍ତ୍ତନୀୟ ହୋଇ ରହିଛି ।

ମାର୍କସବାଦୀ ଏସଥେଟିକ୍ସ ନାରୀ ବିଷୟକ ଭାବନାରେ ଏତେ ମୁଖର ନୁହେଁ । ସ୍ଥିତି ବାଦୀମାନେ ମଧ୍ୟ ସେ ଦୃଷ୍ଟିରୁ ବଡ଼ ବାସ୍ତବବାଦୀ । ପ୍ରକୃତିବାଦୀମାନେ ନାରୀକୁ ଏକ ପ୍ରାଥମିକ ବିବର୍ତ୍ତନୀୟ ସତ୍ତା ଭାବେ ଦେଖନ୍ତି । କେବଳ ସ୍ୱୈରବାଦୀ ତଥା କଳା କୈବଲ୍ୟବାଦୀ ନାରୀକୁ ଅପେକ୍ଷାକୃତ ଅଧିକ କାଳ୍ପନିକ ପ୍ରେକ୍ଷାପଟରେ ଦେଖିଛନ୍ତି ।

ନାରୀରୂପ ଓ ନାରୀପ୍ରେମ ସବୁସମ୍ଭେ ଆମ କଳା ଓ ସାହିତ୍ୟର ଏକ ବିପୁଳ ଓ ବିଶିଷ୍ଟ ଉପାଦାନ ।

ମଣିଷ କ୍ଷୁଧାର ତାଡ଼ନା ଅପେକ୍ଷା ରୂପତୃଷ୍ଣାକୁ ପ୍ରାଣରେ ଅଧିକ ଅନୁଭବ କରିଛି ।

ସକଳ ବାସ୍ତବତା ଦୃଷ୍ଟିରୁ ନାରୀର ସ୍ଥିତି ଓ ସ୍ୱରୂପକୁ ଉପଲବ୍ଧି କରାଯାଇପାରେ । ଗତ ଶହେ ବର୍ଷର ଉପନ୍ୟାସ ସାହିତ୍ୟ ସମସ୍ତ ସୌନ୍ଦର୍ଯ୍ୟ ତଥା ରହସ୍ୟବାଦୀ ଅନୁଚିନ୍ତା ଊର୍ଦ୍ଧ୍ୱରେ ନାରୀକୁ ବାସ୍ତବ ସ୍ଥିତିରେ ଦେଖି ଆସିଛି । ତା'ର ମାତୃତ୍ୱକୁ ସର୍ବାପେକ୍ଷା ସମୁଜ୍ଜ୍ୱଳ ତଥା ପୂର୍ଣ୍ଣାଙ୍ଗ ବିଷୟ ବୋଲି ଜ୍ଞାନ କରିଛି ।

ନାରୀକୁ ଦେଖିବାରେ, ଛୁଇଁବାରେ ପୁରୁଷ ତା ପ୍ରାଣରେ ଅଶେଷ ପୁଲକ ଅନୁଭବ କରିଛି । ଗୋଟେ ନରମ ରେଶମୀ ବସ୍ତ୍ରକୁ ସ୍ପର୍ଶ କରିବାଠାରୁ ନାରୀ ଦେହକୁ ସ୍ପର୍ଶ କରିବା ଅଧିକ କୋମଳ । ଚନ୍ଦ୍ରକିରଣର ଗୁଣ ଯେପରି ଶୀତଳତା, ପାଣି ଓ ଫୁଲର ଗୁଣ ଯେପରି କୋମଳତା ନାରୀତ୍ୱର ଗୁଣ ସେହିପରି ସ୍ନିଗଧତା ବା ନମନୀୟତା ।

ନାରୀର କ୍ଷୁଦ୍ରତମ ଚୂର୍ଣ୍ଣ କୁନ୍ତଳଟିକୁ ବି ପୁରୁଷ ତା ସୌନ୍ଦର୍ଯ୍ୟ ଦୃଷ୍ଟିରେ ଧରି ରଖିଛି । ତା'ର ଆପାଦ ମସ୍ତକକୁ ସେ ମୁଗ୍ଧ ଭାବେ ଉପଲବ୍ଧି କରିଛି । ନାରୀ ପୁରୁଷକୁ ସ୍ୱପ୍ନ ପାଗଳ ଓ କଳ୍ପନା ପ୍ରବଣ କରିଛି ।

ଏକ ସୁନ୍ଦରୀ ନାରୀର ସୌନ୍ଦର୍ଯ୍ୟ ପୁରୁଷଠାରୁ ନିଶ୍ଚୟ ଅଧିକ; ଯାହାକୁ ଶିଳ୍ପୀ ନିର୍ଭୀକ ଭାବେ ଚିତ୍ରଣ କରିଛି । ଏକ ସୁନ୍ଦରୀ ନାରୀର ସୌନ୍ଦର୍ଯ୍ୟ ବହୁଭାବରେ ଯୌଗିକ ଓ ଏହା ଏକାନ୍ତ ଅନୁପମ ।

ନାରୀ ରୂପରେ ମୋହିଦିଏ ତ ପ୍ରେମରେ ମୋହିଦିଏ । ସେ ସବୁରି ପ୍ରାଣରେ ଥାଏ ତ ସବୁପୁରରେ ଥାଏ । ସେ ଅନ୍ତଃପୁରର ଈଶ୍ୱରୀ । କର୍ତ୍ତୃତ୍ୱର କାଦମ୍ବରୀ । ମାତ୍ର ସେ କେତେ ଦୂର ଓ ନିକଟ ତାହା କେବଳ ବିଚାରର ବିଷୟ । ନାରୀର ନୈକଟ୍ୟ ଲାଭ କେତେଜଣ ନାରୀ ପ୍ରେମୀ କରି ପାରନ୍ତି ତାହା ମଧ ଅନୁଶୀଳନର ବିଷୟ । କାଳଗର୍ଭରେ ହଜାର ହଜାର ଲୋକ ସହସ୍ର ବର୍ଷଧରି ନାରୀର ସମୀପବର୍ତ୍ତୀ ହେବା ପାଇଁ ଚେଷ୍ଟା କରିଛନ୍ତି । ମାତ୍ର ସମସ୍ତଙ୍କ ପକ୍ଷେ ତାହା ସମ୍ଭବ ହୋଇନାହିଁ । ନାରୀ କେବଳ ଈଶ୍ୱରୀ ନୁହେଁ, ଭାଗ୍ୟ ଦେବୀ । ସେ ପୁରୁଷକୁ ଆନନ୍ଦ କେବଳ ନୁହେଁ ଭାଗ୍ୟ ପ୍ରଦାନ କରେ । ତା ଭିତରୁ ମୌନତା ଦୂର କରେ । ତା'ର ସ୍ୱପ୍ନକୁ ସବୁଜିମାରେ ଭରିଦିଏ । ତା'ର ଦୁର୍ବହ ନିଃସଙ୍ଗତା ଦୂର କରେ । ହଜାରେ ନୈକଟ୍ୟ ଲାଭ ସତ୍ତ୍ୱେ ନାରୀ ସତ୍ତା ତଥାପି ପୁରୁଷ ସମକ୍ଷରେ ଅପହଞ୍ଚ ହୋଇ ରହିଛି । ତା'ର ଅଜସ୍ର ବ୍ୟାକୁଳତା ସତ୍ତ୍ୱେ ସେ ନାରୀକୁ ପାଇବାରେ ସମର୍ଥ ହୋଇନି । ଯେ ଯେତେ ନିକଟକୁ ଯାଇଛି ନାରୀ ତା'କୁ ସେତିକି ଦୂରତମ କୌତୁହଳ ଭଳି ଲାଗିଛି ।

ନାରୀ ଆକ୍ରମଣାତ୍ମକ ଯୌନତା ଦୃଷ୍ଟିରୁ କୌଣସି ଗୁଣରେ ପୁରୁଷଠାରୁ ନ୍ୟୁନ ନୁହେଁ ବୋଲି ମନୋବିଜ୍ଞାନୀମାନେ କହନ୍ତି । ଯୌନକ୍ରିୟାରେ ନାରୀ ପୁରୁଷଠାରୁ ଅଧିକ କ୍ରିୟାଶୀଳ ହୋଇଥାଏ ।

ବାଘ ଜାତୀୟ ପ୍ରାଣୀଙ୍କ ନିକଟରେ ଯୌନ ହିଂସ୍ରତା ପ୍ରବଳ ଭାବରେ ପରିଲକ୍ଷିତ । ବାଘୁଣୀ ବାଘଠାରୁ ଯୌନତାରେ, ହିଂସ୍ରତାରେ ଅଧିକ ଆକ୍ରମଣାତ୍ମକ । ନାରୀ ତପଶ୍ଚରଣରେ ଯେମିତି ପାର୍ବତୀ, ବୀଣା ବାଦନରତା ସରସ୍ୱତୀ ପରି ଯେପରି ମନୋହାରିଣୀ, ଶକ୍ତି ପ୍ରଦର୍ଶନରେ ସେହିପରି ଦୁର୍ଗା ଓ ସଂହାର ଲୀଳାରେ ସେହିପରି ମହାକାଳୀ ।

ନାରୀ ତା'ର ବିଚିତ୍ର ମନସ୍ତତ୍ତ୍ୱ ଦୃଷ୍ଟିରେ ଯେପରି ସ୍ନେହଶୀଳା ସେହିପରି ରୁଦ୍ରାଣୀ ଓ କର୍କଶଭାଷିଣୀ । ନାରୀ ସବୁକାଳରେ ନାରୀ । ତା'ର ଆପାତଃ ଭାବଭଙ୍ଗୀ ପରିବେଶ ପରିସ୍ଥିତି ଓ ସାମାଜିକ ବ୍ୟବସ୍ଥାରେ ବଦଳି ଥାଏ । ପୃଥିବୀର ସର୍ବତ୍ର ତେଣୁ ନାରୀ ଏକାପରି ସାମାଜିକ ଜୀବନ ବଞ୍ଚେ ନାହିଁ ।

ଗୋଟିଏ ଗୋଟିଏ ସମାଜରେ ନାରୀର ଯୌନ ସ୍ୱାଧୀନତା ଅମାପ । ରତିତୃପ୍ତି ତା ପାଇଁ ଅତି ସହଜ ହୋଇପଡ଼େ । ମାତ୍ର ଅନ୍ୟ ସାମାଜରେ ହୁଏତ ନାରୀ ତା'ର ସ୍ୱାଧୀନତା ହରାଇ ପୁରୁଷର ଇଚ୍ଛା ଅନୁଯାୟୀ ଚଳେ ।

ନାରୀ ତା'ର ରତି ଇଚ୍ଛାରେ, ତ'ର ମନ ଓ କଳ୍ପନାରେ ତ ନିଶ୍ଚୟ ପୁରୁଷଠାରୁ କେତେକାଂଶରେ ଅଲଗା । ପୃଥକ ହେଉଛି ପ୍ରକୃତରେ ପ୍ରଥମତଃ ତା'ର ଅଙ୍ଗରେ । ନାରୀର ସ୍ତନ ସତରେଏକ ମହିମାନ୍ୱିତ ଅଙ୍ଗ । ପୁରୁଷର ଏସଥେଟିକସ୍ ଭାବନାରେ ନାରୀର ବର୍ତ୍ତୁଳ ସ୍ତନଠାରୁ ଆଉ ଅଧିକ ଆକର୍ଷଣୀୟ କ'ଣ ଅଛି ? ଭର୍ତ୍ତୃହରି ତେଣୁ କୌଣସି ସଂଶୟ ନରଖି ସ୍ପଷ୍ଟ ଭାବରେ କହିଥିଲେ, ଯୁବତୀ ନାରୀର ସ୍ତନଶୋଭା ଓ ନିବିଡ଼ ବନସ୍ପତିର ସୌନ୍ଦର୍ଯ୍ୟ ଦେଖିବାଠାରୁ ଆଉ ବଡ଼ ପୁରୁଷାର୍ଥ ଏ ସଂସାରରେ କ'ଣ ଅଛି ?

ମହାନ ଶିଳ୍ପୀ ସେକସ୍‌ପିୟରଙ୍କ ଅସାଧାରଣ ସୌନ୍ଦର୍ଯ୍ୟାନୁଭୂତି ଓ କବି କଳ୍ପନା କ୍ଲିଓପାଟ୍ରାର ସ୍ତନଶୋଭା ବର୍ଣ୍ଣନାରେ ହିଁ ପୂର୍ଣ୍ଣତା ଲାଭ କରିଛି ।

ଯୌବନର ଦୀପ୍ତି ଓ ତା'ର ପ୍ରତିଟି ପୁଷ୍ଟ ସ୍ତନର ସାମାନ୍ୟ ଅନାବୃତି ପର ପୁରୁଷ ମନକୁ ଗଭୀର ଭାବରେ ଆକୃଷ୍ଟ କରେ ।

ଗୌରାଙ୍ଗୀ ବାଳିକାର ଶଙ୍ଖ ଧବଳ ସ୍ତନର ସାମାନ୍ୟ ସ୍ପର୍ଶ ବା ଦର୍ଶନ ପୁରୁଷ ପ୍ରାଣକୁ ବିଗଳିତ କରିଦିଏ । ଯୁବତୀ ନାରୀର ସୁନ୍ଦର ସ୍ତନ ହେଉଛି ସତରେ ସୁରବାସ ବା ଦେବତାର ନିବାସ ସ୍ଥଳୀ ।

ଯୁବତୀ ନାରୀ ସ୍ତନର ଆକାର ପ୍ରକାର, ତା'ର ସ୍ନିଗ୍ଧ ଔଜ୍ଜ୍ୱଲ୍ୟ, ତା'ର ସ୍ତନାଗ୍ର, ସ୍ତନାଗ୍ର ଚତୁଃପାର୍ଶ୍ୱର ପାଂଶୁଳ ବଳୟ ସବୁକିଛି ପୁରୁଷକୁ ବିମୋହିତ କରିଦିଏ ।

ନାରୀତ ସେ ପାଇଁ କେବଳ ମଧୁମତୀ ନୁହେଁ, ରୂପମତୀ ବି । କଳା ବା କବିତାରେ ନାରୀ ଅଙ୍ଗକୁ ଯେତେବାର ଅନାବରଣ କରାଯାଇଛି ତା'ର ବିପୁଳ ଅଂଶ ହେଉଛି ନାରୀର ବିବସ୍ତ୍ର ସ୍ତନ । ବିଶ୍ୱର ଶତ ସହସ୍ର କବି ନବଯୁବତୀର ସୁନ୍ଦର ସ୍ତନକୁ ପ୍ରସ୍ଫୁଟିତ ପଦ୍ମ, ପୂର୍ଣ୍ଣଚନ୍ଦ୍ର, ସୁବର୍ଣ୍ଣ ପାତ୍ର ସହିତ ତୁଳନା କରି ପାଠକର ମନକୁ ସତତଃ ଆମୋଦିତ କରିଛନ୍ତି ।

ନାରୀର ସ୍ତନ ତା'ର ସ୍ୱର୍ଗୀୟ ମାତୃତ୍ୱ ସହିତ ଅଭିନ୍ନ ଭାବେ ସମ୍ବନ୍ଧିତ । ସ୍ତନ ତେଣୁ ଏତେ ଆକର୍ଷଣୀୟ ଲାଗେ । ନାରୀ ଅଙ୍ଗର ସୌନ୍ଦର୍ଯ୍ୟ ପୁରୁଷକୁ ଏତେ ପ୍ରଲୁବ୍ଧ କରେ ଯେ, ପୁରୁଷ ନାରୀର ସୌନ୍ଦର୍ଯ୍ୟ ଭିତରେ କେବଳ ଆତ୍ମଲୀନ ହୋଇ ରହେ । ନାରୀକୁ ସୃଷ୍ଟିର ମଣି 'the Crowning Jewel of Creation' ବୋଲି କୁହାଯାଇଛି । କବିସ୍ପେନସର ଲେଖିଛନ୍ତି ।

'Beauty is the bait which with deligIt
Doth man ensnare for to enlarge his kind.'

ସେହିପରି ରୋଚ୍ଷ୍ଟେରର ନାରୀ ଅଙ୍ଗର ସୌଷ୍ଠବକୁ ଅନନ୍ୟ ବୋଲି ବର୍ଣ୍ଣନା କରି ଲେଖିଛନ୍ତି:

Oh, She is the pride and glory of the world;
Without her, all the rest is worthless dross;
life a base slavery; Empire but a mock;
And love-the soul of All- a bitter curse,

ଜଗତର କଳାକାର ନାରୀର ନଗ୍ନ ଅଙ୍ଗ ପ୍ରକଟନରେ କଳାର ପୂର୍ଣ୍ଣତାକୁ ସ୍ୱୀକାର କରିଛନ୍ତି । 'Artists see in the representations of the naked woman the end and fullness of art. The highest type of beauty is that of naked woman.

କାବ୍ୟ କବିତାର ନାୟିକାମାନେ ହିଁ ରୂପସୀ ।

ସୁନ୍ଦରୀ ନାରୀର ଅଙ୍ଗ ସୌନ୍ଦର୍ଯ୍ୟ ହିଁ କଳା କବିତାରେ ବିପୁଳ ଅଭିବ୍ୟକ୍ତି ଲାଭ କରିଛି । ନାରୀକୁ ବାଇରନ (Byron) 'The right, the majesty of loveliness ବୋଲି ବର୍ଣ୍ଣନା କରିଛନ୍ତି ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ପରମ୍ପରାରେ ମାତୃତ୍ୱକୁ ସମୁଜ୍ଜ୍ୱଳ ବିଷୟ ରୂପେ ଗ୍ରହଣ କରାଯାଇଛି । ଭେନସ୍ ପ୍ରତିମା ସେହି ପବିତ୍ର ମାତୃତ୍ୱର ପ୍ରତୀକ । ନାରୀ ଅଙ୍ଗର ସଂପୂର୍ଣ୍ଣ ଅଥଚ ଉଜ୍ଜ୍ୱଳ ଅନାବୃତିକୁ ଜଣେ ଭେନସ୍ ପ୍ରତିମା ନିକଟରେ ଦେଖେ । ନାରୀତ୍ୱର ଶାଶ୍ୱତ ପ୍ରମାଣ ହେଉଛି ନାରୀର ଉଦ୍ଭିନ୍ନ ଯୌବନ । ସ୍ତନ ହେଉଛି ପବିତ୍ର ମାତୃଅଙ୍ଗ । ଭେନସ ପ୍ରତିମାକୁ ସମ୍ମାନିତ କରିବାକୁ ଯାଇ ନରନାରୀଙ୍କ ବହୁ ମିଥୁନ ଚିତ୍ର ଚତୁଃପାର୍ଶ୍ୱରେ ସଂସ୍ଥାପିତ କରାଯାଇଛି ।

ଲିଙ୍ଗପୂଜା, ଯୋନିପୂଜା ମହାବିବବର୍ତ୍ତନର ସେହି ପବିତ୍ର ପ୍ରଜନନକୁ ହିଁ ସୂଚିତ କରେ । କେତେକ ଗ୍ରୀକ୍ ଚିତ୍ରରେ ଭେନସକୁ ଶାମୁକା ଚିତ୍ର ଭିତରେ ରଖାଯାଇଛି । ଭେନସ୍ ହେଉଛି ଦୈହିକ ପ୍ରେମର ପ୍ରତୀକ ଓ ଶାମୁକାଟି ହେଉଛି ସେହି ପବିତ୍ର ଯୋନିର ପ୍ରତୀକ ।

ନାନା ଭାବରେ ମାତୃତ୍ୱର ଉପାସନା (Worship of motherhood) ନାରୀକୁ ମର୍ତ୍ତ୍ୟରେ ଈଶ୍ୱରୀ କରି ଉପସ୍ଥାପନ ହିଁ କରିଛି । ଯୋନି ହେଉଛି ଜୀବନର ଦ୍ୱାର, ଆଦିଭୂମି ।

ପୃଥିବୀରେ ମାତୃ ଉପାସନାର ସ୍ମାରକୀ ଭାବେ ଯୋନିପୂଜାର ପ୍ରଚଳନ ହୋଇଛି । ଘରର ଗୋଟେ ଝରକା ସବୁମତେ ଯୋନିର ପ୍ରତୀକ । ଏପରିକି ମଧ୍ୟଯୁଗରେ ଚର୍ଚ୍ଚର ସମ୍ମୁଖ ଦ୍ୱାର ନିକଟରେ ଯୋନିର ଚିତ୍ର ଅଙ୍କିତ ହେଉଥିଲା । ଯେତେବେଳେ ଏକ ମାଈ ଓଟ ମରିଯାଉଥିଲା ସେତେବେଳେ ଘରକୁ ଆପଦ ବିପଦରୁ ରକ୍ଷା କରିବା ପାଇଁ କେତେକ ସେଇ ମାଈ ଓଟର ଯୋନିକୁ କାଟିଆଣି ଘର ଆଗରେ ଟାଙ୍ଗି ଦେଉଥିଲେ ।

ନିତ୍ୟକାଳର ନାରୀ ହେଉଛି ବସ୍ତୁତଃ ଅବିଚ୍ଛିନ୍ନ ବିବର୍ତ୍ତନ ଧାରିଣୀ; ଯେଉଁଥିପାଇଁ ନାରୀ ମହାକାଳକୁ ସ୍ପର୍ଶ କରିପାରେ ।

ନାରୀ ତେଣୁ ଜଗତ ସମକ୍ଷରେ ଏକ ବିରାଟ ରହସ୍ୟ । ଗୋଟିଏ ଅଦୃଶ୍ୟ କ୍ଷୁଦ୍ରତମ ଶୁକ୍ରକୀଟ ନାରୀ ଭିତରେ ବିକଶିତ ହୋଇ ଦିବ୍ୟଶିଶୁରେ ପରିଣତ ହୁଏ । ନାରୀର ଜରାୟୁ ତେଣୁ ରହସ୍ୟମୟ ସ୍ୱର୍ଣ୍ଣଭୂମି ପରି; ଯାହା ଅନୁପମ ଜୀବନ ସଂଗଳିତ କରେ ।

ସବୁକିଛି ଉର୍ଦ୍ଧ୍ୱରେ ସନ୍ତାନ ଦ୍ୱାରା ହିଁ ମିଳନର ବାସନା ପୂର୍ଣ୍ଣତା ଲାଭ କରେ ।

ପ୍ରତ୍ୟକ୍ଷ ଗର୍ଭାଧାନର ଦାୟିତ୍ୱ ବହନ କରୁଥିବାରୁ ପୁଣି ଜନ୍ମିତ ଶିଶୁକୁ ଏକ ନିରାପଦ ଓ ନିର୍ଭରଯୋଗ୍ୟ ପିତୃତ୍ୱ ପ୍ରଦାନ କରିବାର ଦାୟିତ୍ୱ ବହନ କରୁଥିବାରୁ ନାରୀ ପ୍ରଣୟରେ ଅଧିକ ନିଷ୍ଠା ପ୍ରଦର୍ଶନ କରିଥାଏ ।

ଦୁଇ ଜଣଙ୍କର ରାଜଯୋଟକ ଏ ସଂସାରରେ ଆଦୌ ସମ୍ଭବ ନୁହେଁ । ନାରୀ ପ୍ରତି ପୁରୁଷର ଓ ପୁରୁଷ ପ୍ରତି ନାରୀର ଦୁର୍ବାର ଯୌନ ଆକର୍ଷଣ ବ୍ୟକ୍ତିଗତ ମନେହେଲେ ହେଁ ପ୍ରବୃତ୍ତି ଓ ପ୍ରକୃତି ଦୃଷ୍ଟିରୁ କାଳକାଳ ଧରି ଏହା ସାର୍ବଜନୀନ ।

ଉତ୍ତମ ଯୋଡ଼ି ପାଇଁ ପ୍ରଥମେ ବୟସ ଓ ତା'ପରେ ସ୍ୱାସ୍ଥ୍ୟ ଓ ପ୍ରେମର ନିଷ୍ଠା ଆବଶ୍ୟକ । ଏହି ସବୁ ଯୋଡ଼ିର ମୂଳ ଉଦ୍ଦେଶ୍ୟ ହେଲା ସନ୍ତାନ ପାଇଁ ସଫଳ ଓ ନିବିଡ଼ ପ୍ରଜନନ ।

ସୁନ୍ଦର ମୁଖମଣ୍ଡଳକୁ ପ୍ରେମର ଭାରି ପସନ୍ଦ । ଉତ୍ତମ ପ୍ରଜନନ ଓ ଗର୍ଭାଧାନ ପାଇଁ ଯାହା ସାଧାରଣତଃ ଲୋଡ଼ା ନାରୀ ତାହା ପୁରୁଷ ନିକଟରେ ଓ ପୁରୁଷ ନାରୀ ନିକଟରେ ଦେଖିବାକୁ ଚାହେଁ ।

ବେଳେ ସମାଜରେ ପୁରୁଷ ବେଶୀ ନାରୀ ନିକଟରୁ ଲୋଡ଼େ ବୋଲି ବିଶ୍ୱାସ କରାଯାଉଛି । ମନର ଉଦାରତା, ପୁରୁଷ ମନର ଦୃଢ଼ ସଂକଳ୍ପ ଓ ସ୍ଥିରଚିତ୍ତ ପୁରୁଷ ପ୍ରତି ନାରୀକୁ ବେଶୀ ଆକୃଷ୍ଟ କରେ । କାରଣ ନାରୀ ତା ନିକଟରେ ସାଧାରଣତଃ ଏହି ବିଷୟକ ଅଭାବବୋଧକୁ ଲକ୍ଷ୍ୟ କରେ ।

ପୁରୁଷର ମଧୁର ବ୍ୟବହାର ନାରୀକୁ ସବୁବେଳେ ସନ୍ତୁଷ୍ଟ କରିପାରେ ନାହିଁ । ବୁଦ୍ଧିହୀନ ଓ ଭଦ୍ରତା ପରିଶୂନ୍ୟ ଦୁର୍ଦ୍ଦଷ ପୁରୁଷ ପ୍ରତି କେତେକ ସୁନ୍ଦରୀ ନାରୀ ବରଂ ଅଧିକ ଆକୃଷ୍ଟ ହୋଇଥାଆନ୍ତି । ନାରୀ ପୁରୁଷ ନିକଟରେ ଚରମ ଭାବେ ପୁରୁଷତ୍ୱର ଗୁଣ ଦେଖିବାକୁ ଚାହିଁଥାଏ । ଗୋଟେ ଭଦ୍ର, କୋମଳ ପୁରୁଷକୁ ନାରୀ ସୋଲକାଠ ବୋଲି ମନେକରେ ।

ନାରୀ ପୁରୁଷର ବିବାହ ବା ମିଳନ ପଛଆଡ଼େ ସହଜାତ ସଂସ୍କାର ଥାଏ । ଯେଉଁ ଗୁଣ ନିଜ ନିକଟରେ ନଥାଏ ନାରୀ କିମ୍ବା ପୁରୁଷ ସେଇଥି ପାଇଁ ପ୍ରତ୍ୟାଶୀ ହୋଇ ଥାଆନ୍ତି ।

ଗୋଟେ ଅଖଣ୍ଡ ଗୋଷ୍ଠୀ ଜୀବନର ଅବିଚ୍ଛିନ୍ନ ପ୍ରବାହ ତଥା ଅମରତ୍ୱ କାମନା ହେଉଛି ନାରୀପୁରୁଷ ପ୍ରେମର ମୂଳ ପ୍ରବଣତା । ମିଳନରେ ବ୍ୟକ୍ତିଗତ କିଛି ଅନୁଭବ ନଥାଏ ବୋଲି ସୋପେନ ହାୱାର କହନ୍ତି ।

ଯୌନମେଳନ ନଥିଲେ ନାରୀ ପୁରୁଷର ମିଳନ ଶୀଘ୍ର ଶିଥିଳ ହୋଇଯାଏ । ନିଜ ନିଜର ଯୌନତା ପ୍ରକାର ନିଜ ପରିଚୟ ଓ ପ୍ରଭାବର ବଡ଼ ଅଂଶ ।

ନାରୀ ପୁରୁଷର କେବଳ ପ୍ରସାଧନ ସାମଗ୍ରୀ ନୁହେଁ; ବରଂ ନାରୀ ପୁରୁଷର ଶ୍ରବଣ ଓ ପ୍ରାଣ ବୋଲି ସୁରଦାସ କହିଛନ୍ତି । ନାରୀ ଯୁଗେ ଯୁଗେ ପୁରୁଷ ପ୍ରାଣର ପରିଚର୍ଯ୍ୟା କରେ ।

ପୁରୁଷପ୍ରଧାନ ସମାଜରେ ନାରୀ ଏକ ବଡ଼ ସମ୍ପତ୍ତି । ସୁନ୍ଦରୀ ଯୁବତୀ ଭାର୍ଯା ପାଇଲେ ଭୋଗବାଦୀ ସମାଜରେ ଜଣେ ପ୍ରକୃତରେ ଭାଗ୍ୟ ଉଦୟ ହେଲା ବୋଲି ଭାବେ । ନାରୀ

ପରି ଏକ ସୁନ୍ଦର ଦ୍ରବ୍ୟକୁ ପୁରୁଷ ପ୍ରାଣଭରି ଭୋଗ କରେ । ନାରୀର କୌଣସି ସ୍ୱାଧୀନତା ବୋଧ, ସ୍ୱତନ୍ତ୍ର ରୁଚି ଓ ବିଚାର କିମ୍ବା ପ୍ରତିରୋଧ ଶକ୍ତି ନାହିଁ ବା କସ୍ମିନ କାଳେ ମଧ୍ୟ ନଥିଲା ।

ନାରୀ ପୁରୁଷ ମଧ୍ୟରେ ଭେଦ ଦର୍ଶାଇବାକୁ ଯାଇ ମହାକବି ମିଲଟନ କହିଛନ୍ତି— 'He for God only. She for God in him.' ।

ନାରୀ ଆଶ୍ଳେଷ ବିନା ହୃଦୟ ଓ ଆତ୍ମାର ବନ୍ଧନ ନିବିଡ଼ ହୋଇପାରେନା । ଏ ଜଗତରେ ନାରୀ ପ୍ରେମ ହିଁ ନୈକଟ୍ୟ ଓ ନିବିଡ଼ତା ଆଣିଦିଏ; ଯାହା ବ୍ୟତୀତ ପ୍ରେମର କୌଣସି ସାତ୍ତ୍ୱିକ ଗାଢ଼ ଅନୁଭବ ନାହିଁ ।

ଭାର୍ଯା ହେଉଛି ମଣିଷର ଅର୍ଦ୍ଧାଙ୍ଗ ଓ ଶ୍ରେଷ୍ଠତମ ସଖା । ଭାର୍ଯା ଶବ୍ଦର ଅର୍ଥ ହେଉଛି ଧାରଣ, ପୂରଣ ଓ ଗ୍ରହଣ ।

'ଅର୍ଥଂ ଭାର୍ଯ୍ୟା ମନୁଷସ୍ୟ, ଭାର୍ଯ୍ୟା ଶ୍ରେଷ୍ଠତମ ସଖା,

ଭାର୍ଯ୍ୟାମୂଳଂ ତ୍ରିବର୍ଗସ୍ୟ, ଭାର୍ଯ୍ୟା ମୂଳଂ କରିଷ୍ୟତି ।'

ନାରୀ ପୁଣି ଦେବତାଙ୍କ ତେଜରୁ ଜନ୍ମ ବୋଲି କୁହାଯାଇଛି । ନାରୀ ତେଜମୟୀ, ହିରଣ୍ମୟୀ । ଚଣ୍ଡୀରେ ତେଣୁ କୁହାଯାଇଛି— 'ଅତୁଲମ୍ ତତ୍ରତେଜଃ/ସର୍ବଦେବ ଶରୀରକମ୍/ ଏକସ୍ଥମ୍ ତଦ୍‌ଭୂନାରୀ/ବ୍ୟାପ୍ତଲୋକ ତ୍ରୟମ୍ ତ୍ୱିଷ ।'

ନାରୀ ବିଷୟରେ କିନ୍ତୁ ତଥାପି ପୁରୁଷପ୍ରଧାନ ସମାଜ ଭାରି କଟୁ କଥା କହିଛି । ଅଜ୍ଞତା ତଥା ଜ୍ଞାନ ଦାରିଦ୍ର୍ୟ ଦୃଷ୍ଟିରୁ ନାରୀକୁ ଘୋଡ଼ୀ ଓ ଘୁଷୁରୀ ସହିତ ତୁଳନା କରାଯାଇଛି । ସେହିପରି ଜର୍ମାନରେ ପ୍ରଚଳିତ ଅଛି ଯେ, ନାରୀଠାରେ ପରୀର ରୂପ, ସର୍ପର ହୃଦୟ ଓ ଗଧର ବୁଦ୍ଧି ବିଦ୍ୟମାନ ।

ଅମରାବତୀ ହେଉ ବା ନାରୀ ହେଉ ସବୁଠି ଅବଶ୍ୟ କିଛି କୁଟିଳତା ଭରି ରହିଛି । ନାରୀ ସମ୍ପର୍କରେ ପୁରୁଷର ବହୁ ତିକ୍ତ ଅଭିଜ୍ଞତା ବି ରହିଛି ।

ଯେଉଁଠି ନାରୀ ପୂଜାପାଏ ସେଇଠି ଦେବତାମାନେ ବାସ କରନ୍ତି ବୋଲି ଶାସ୍ତ୍ରକାର ମନୁ ଅବଶ୍ୟ କହିଛନ୍ତି ।

'ଯତ୍ର ନାର୍ଯ୍ୟସ୍ତୁ ପୂଜନ୍ତେ, ତତ୍ର ରମନ୍ତେ ସର୍ବ ଦେବତାଃ ।'

ଥରେ ସାର୍ତ୍ତ କହିଥିଲେ ମୁଁ ପୁରୁଷଙ୍କ ଅପେକ୍ଷା ନାରୀଙ୍କ ମେଳରେ ରହିବାପାଇଁ ଅଧିକ ସୁଖ ମଣେ । କାରଣ ନାରୀଙ୍କ କୋମଳତା ମୋତେ ନରମ କାବ୍ୟିକତା ଭିତରେ ବୁଡ଼ାଇ ରଖିଲା ବେଳେ ପୁରୁଷମାନେ ସେହି ଦୃଷ୍ଟିରୁ ମୋତେ ଭାରି କର୍କଶ ଲାଗନ୍ତି ଓ ସେମାନଙ୍କ ଗହଣରେ ମୁଁ ବେଶୀ ସମୟ ରହିବାକୁ ମନେକରେ ।

ରମଣୀ ହେଉଛି ସତରେ ପୁଷ୍ପ କୋମଳ ରମଣୀୟତା । ତା'ର ଟିକିଏ ସ୍ମିତ ହାସ୍ୟ, ଟିକିଏ ବକ୍ର ଚାହାଣୀ ପୁରୁଷ ପ୍ରାଣରେ ଆଷାଢ଼ ଆସିଲା ପରି ଲାଗେ ।

ପୁରୁଷ ଯେଉଁଠି ଯେତେବେଳେ ନାରୀଠାରେ ସେହି କରୁଣା, ସେହି କୋମଳତାର ଅଭାବ ଦେଖେ ସେଇଠି ସେ ଗଭୀର ହତାଶା ଭିତରେ ପଡ଼ିଯାଏ ଓ ତା'ର ମୋହଭଙ୍ଗ ହୁଏ ।

ରବୀନ୍ଦ୍ରନାଥ ନାରୀକୁ ପୁରୁଷ ସମକ୍ଷରେ ଅର୍ଦ୍ଧେକ ବାସ୍ତବତା ଆଉ ଅର୍ଦ୍ଧେକ କଳ୍ପନାର ମିଶ୍ରଣରେ ଏକ ସମନ୍ୱିତ ସତ୍ତା ବୋଲି ଅଭିହିତ କରିଛନ୍ତି :

'ଶୁଧୁ ବିଧାତାର ସୃଷ୍ଟି ନହ ତୁମି ନାରୀ
ପୁରୁଷ ଗଢ଼େଛେ ତୋରେ ସୌନ୍ଦର୍ଯ୍ୟ ସଞ୍ଚାରି
ଆପନ ଅନ୍ତର ହତେ ବସି କବିଗଣ
ସୋନାର ଉପମା ସୂତ୍ରେ ବୁନେଛି ବସନ
ସଁ ପ୍ରିୟା ତୋମାର ପରେ ନୂତନ ମହିମା
ପଡ଼େଛି ତୋମାର ପରେ ପ୍ରଦୀପ୍ତ ବାସନା
ଅର୍ଦ୍ଧେକ ମାନବୀ ତୁମି ଅର୍ଦ୍ଧେକ କଳ୍ପନା । (ରବୀନ୍ଦ୍ରନାଥ)

ନାରୀକୁ ଏତେ ଅପସରୀ କରି ସତରେ ପୁରୁଷ ହିଁ ଗଢ଼ିଛି । ପୁରୁଷ ଦୃଷ୍ଟିରେ ନାରୀ ସତରେ ଏତେ ସୁନ୍ଦରୀ ଓ ସୁନାଗରୀ । ଯୁଗଯୁଗ ଧରି ପୁରୁଷ ସମକ୍ଷରେ ନାରୀ ବିସ୍ମୟଜନକ ଭାବେ ଈଶ୍ୱରୀ ବନି ଯାଇଛି ।

ସୌନ୍ଦର୍ଯ୍ୟ ଶାସ୍ତ୍ରୀ କ୍ରୋଚେ ଥରେ କହିଥିଲେ, ସୁନ୍ଦରତା ପ୍ରକୃତରେ ସୌନ୍ଦର୍ଯ୍ୟ ବସ୍ତୁରେ ନଥାଏ; ଥାଏ ସୌନ୍ଦର୍ଯ୍ୟ ଦେଖୁଥିବା ଲୋକର ଆଖିରେ । ସେହିପରି କଳ୍ପନା କରି ନପାରିଲେ କୌଣସି ପୁରୁଷ ଆଖିକୁ ଯେତେ ସୁନ୍ଦରୀ ନାରୀ ହେଉପଛେ ତୃପ୍ତ କରିପାରିବନି ।

ନାରୀକୁ ଚରମ ଭାବରେ ଅନୁଭବ କରିପାରିବା ପାଇଁ ପୁରୁଷର ମାନସିକତା ସେହିପରି ଅଙ୍ଗୀକାର ବଦ୍ଧ ହେବା ଆବଶ୍ୟକ ।

ପୁରୁଷ ଚରମ ଭାବରେ ଯେଉଁ ସୌନ୍ଦର୍ଯ୍ୟର କଳ୍ପନା କରେ ନାରୀ ତା'ଠାରୁ ବେଶୀ ସୁନ୍ଦର । ଏ ସଂସାରରେ ସବୁଠାରୁ କଲ୍ୟାଣକର ସୌନ୍ଦର୍ଯ୍ୟମୟ ବସ୍ତୁ ହେଉଛି ସୁନ୍ଦରୀ ନାରୀର ସ୍ତନ, ଯେଉଁଥିପାଇଁ ହୁଏତ ଶେକ୍‌ସପିୟରଙ୍କ ସମସ୍ତ ନାଟକର ନାରୀ ବା ନାୟିକା ହେଉଛି ଅତିଶୟ ସୁନ୍ଦରୀ । ସେମାନେ ପ୍ରେମର ସାଧନା ହିଁ କରିଛନ୍ତି ।

ନାରୀ ଏତେ ପବିତ୍ର ଯେ ଏ ସଂସାରରେ ତା'ପରି ସାର ଓ ଶାଶ୍ୱତ ଆଉ କିଛି ନାହିଁ । ଏପରିକି ତା'ର ନଗ୍ନ ଶରୀର ବି ସମସ୍ତଙ୍କ ପାଇଁ ମଙ୍ଗଳକାରକ ଓ ତା ଅନୁରୂପ ଆଉ କିଛି ନାହିଁ । ଏତେ ମଙ୍ଗଳକାରକ ନୁହେଁ ନାରୀର ବସ୍ତ୍ରାଚ୍ଛାଦିତ ଶରୀର ବରଂ ନାରୀର ଉଦ୍‌ଭିନ୍ନ ଯୌବନ ଶ୍ରୀର ଅନାବୃତି ସନ୍ଦର୍ଶନରେ ଜଣେ ପ୍ରକୃତରେ ଜୀବନ୍ତ ସୌନ୍ଦର୍ଯ୍ୟର ସ୍ପର୍ଶପାଏ ଓ ପୁଣ୍ୟ ଉପାର୍ଜ୍ଜନ କରେ ।

ପୁଣି ସମଗ୍ର ଜଗତରେ ନାରୀ ପରି ସୁନ୍ଦର ବସ୍ତୁ ଆଉ କିଛି ନାହିଁ । ଯେଉଁଠି ନାରୀ ସେଇଠି ପୁଣି ଆନନ୍ଦ । ନାରୀର ସ୍ନେହ ସୋହାଗ ସ୍ୱର୍ଗର ଅମୃତ ତୁଲ୍ୟ । ସେ ସୌନ୍ଦର୍ଯ୍ୟ ଜଗତର ଗର୍ବ ଓ ଗୌରବ ।

ଜଣେ ପ୍ରେମିକ ହେଉ କି ପତି ହେଉ ତା'ର ଚରମ ଆକାଂକ୍ଷା ହେଉଛି ତା'ର ପ୍ରେମାସ୍ପଦାକୁ ସମ୍ପୂର୍ଣ୍ଣ ଅନାବୃତି ଭିତରେ ଦେଖିବା । ଚକ୍ଷୁରତିର ପରମ ତୃପ୍ତି ଏଇଠି । ନାରୀର ନଗ୍ନତା ପ୍ରକୃତରେ ଉଚ୍ଚତର ସୌନ୍ଦର୍ଯ୍ୟାନୁଭୂତି ପାଇଁ ହିଁ ଉଦ୍ଦିଷ୍ଟ ।

ପୃଥିବୀର କେତେବେଳେ ବି ଏମିତି ପୁରୁଷ ନାହାନ୍ତି ଯାହାଙ୍କର ମନ ଓ ଚୈତନ୍ୟକୁ ଜୀବନର କେହି ନାରୀ ପ୍ରଭାବିତ କରିନଥିବେ । ନାରୀ ପୁରୁଷକୁ ବେଶୀ ପ୍ରଭାବିତ କରେ ତା'ର ଯୌବନପୁଷ୍ଟ ଶରୀରର ସୌନ୍ଦର୍ଯ୍ୟ ଦ୍ୱାରା ।

କେଉଁ ପୁରୁଷ ତା'ପ୍ରତି ଦୁର୍ବଳ ସେ କଥା ନାରୀ ସହଜରେ ଶୁଙ୍ଘି ଦେଇ ପାରେ । ଯେତେ ଅଧିକ ପୁରୁଷ ତା'ପ୍ରତି ଆକୃଷ୍ଟ ହୁଅନ୍ତି ନାରୀକୁ ସେତେ ଗଡ଼ ଜିତିଲା ପରି ଲାଗେ । ଅଥଚ ଉପରକୁ ନାରୀ ତା' ପ୍ରତି ପୁରୁଷମାନଙ୍କ ଆସକ୍ତ ହେବାକୁ ନେଇ ଭାରି ବିରକ୍ତି ପ୍ରକାଶ କରୁଥାଏ ।

ନାରୀ ସ୍ୱର୍ଗଦ୍ୱାର ତ ପୁଣି ନର୍କଦ୍ୱାର । କାହାପାଇଁ ପୁଷମାସ ତ ପୁଣି କାହାପାଇଁ ସର୍ବନାଶ ଆଣେ । ନାରୀ ପୁରୁଷ ପାଇଁ ଯେପରି ଲକ୍ଷ୍ମୀ ସେହିପରି ଅଲକ୍ଷ୍ମୀ ବି ।

ସଂସାରର ସର୍ବୋତ୍ତମ ସୁନ୍ଦର ତଥା କୋମଳ ବସ୍ତୁର ବିମ୍ବରୂପେ କବିମାନେ ଯେପରି ନାରୀକୁ ନେଇଛନ୍ତି ସେହିପରି ଯାବତୀୟ ମନ୍ଦ ଓ ନର୍କର ପାପପଙ୍କକୁ ବର୍ଣ୍ଣନା କରିବାକୁ ଯାଇ ନାରୀକୁ ତା'ର କର୍ତ୍ତ୍ରୀ ବୋଲି ବର୍ଣ୍ଣନା କରିଛନ୍ତି । ପୁରୁଷ ଅପେକ୍ଷା ନାରୀ ଭିଲିୟାନ ଅଧିକ ମନ୍ଦ । ନାରୀ ସଇତାନି କଲେ ଚରମକୁ ଚାଲିଯାଏ ।

ନାରୀ ପ୍ରେମରେ ପଡ଼ିବା ଅର୍ଥ ପତଙ୍ଗ ନିଆଁରେ ଝାସ ଦେଲାପରି ଅବା ଶ୍ମଶାନକୁ ଯିବାପରି । ପୁରୁଷ ଏକଥା ଜାଣିବା ସତ୍ତ୍ୱେ ସେ ନାରୀ ପ୍ରେମରେ ପଡ଼େ । ନାରୀ ପ୍ରେମରେ ବିଗଳିତ ହୋଇ ସେ ନାରୀକୁ ଈଶ୍ୱରୀ ଜ୍ଞାନ କରେ ।

ନାରୀକୁ ଈଶ୍ୱରୀ ଜ୍ଞାନ କରିବା ତା ପ୍ରେମର ବିଷୟକି ଭ୍ରମର ବିଷୟ ପୁରୁଷ ନିଜେ କିଛି ବୁଝିପାରେ ନାହିଁ । ନାରୀ ପ୍ରେମରେ ପଡ଼ି ସେ ମାୟା କବଳିତ ହୁଏ । କାମିନୀ ମୋହରେ ସେ ଅନ୍ଧ ହୋଇଯାଏ ।

ନାରୀ ପ୍ରେମରେ ପଡ଼ି ପୁରୁଷ ଅନ୍ଧ ହୋଇଯିବା ତା'ର ଅନିବାର୍ଯ୍ୟ ଭାଗ୍ୟ ଯେପରି ।

ନାରୀ ପ୍ରେମର ଭଲମନ୍ଦ ଏ ପର୍ଯ୍ୟନ୍ତ ଆଲୋଚନାର ସାମଗ୍ରୀ ହୋଇ ରହିଛି । ସମସ୍ତଙ୍କ ଆଗରେ ଏ ପୁଣି ଏକ ଅମିମାଂସିତ ବିଷୟ; ନାରୀ ବିଷୟରେ ତଥାପି ଅଭ୍ରାନ୍ତ ଅନ୍ତିମ କଥାଟି ଏଯାବତ୍ କୁହାଯାଇ ପାରିନାହିଁ ।

ସାହିତ୍ୟର କବି କଳ୍ପନାର ବିପୁଳ ଅଂଶ ହେଉଛି ପ୍ରକୃତରେ ନାରୀ ।ନାରୀ ବା ନାୟିକା ପ୍ରଧାନତା ସାରା ବିଶ୍ୱସାହିତ୍ୟରେ ଏକ ବଡ଼ ଲକ୍ଷଣ । ନାୟକ ଅପେକ୍ଷା ନାୟିକାର ପ୍ରାଧାନ୍ୟ ସବୁମତେ ବେଶୀ ।

ନାରୀ ବିଦ୍ୱେଷୀ ଜଣେ କେହି ପୋଖତ ସୌନ୍ଦର୍ଯ୍ୟଶାସ୍ତ୍ରୀ ହେବା ଭାରି କଠିନ । ନାରୀ ପ୍ରେମୀ ହିଁ କେବଳ ସୃଜନଶୀଳତାକୁ ତା' ଅନ୍ତରରେ ସର୍ବୋତ୍ତମ ଭାବେ ଅନୁଭବ କରେ ।

ପୁରୁଷ ଯେହେତୁ ସାଧାରଣତଃ ପ୍ରେମ ନିବେଦନ କରେ ନାରୀର ମନରକ୍ଷା ପାଇଁ ପୁରୁଷ ତା'ର ମିଛିମିଛିକିଆ ଦାସ ହୁଏ । ନାରୀର ସ୍ୱପ୍ନ, ନାରୀର ଅଭିଳାଷ ପୂରଣ କରିବା ପାଇଁ ପୁରୁଷ ବରାବର ତତ୍ପର ହୁଏ ।

ନାରୀର ଜୀବନ ପିତା, ପତି ଓ ପୁତ୍ରଙ୍କ ନିକଟରେ କଟେ । ଚାଣକ୍ୟ ମନୁଙ୍କ ପରି ଉତ୍ତମ ସ୍ତ୍ରୀର ଗୁଣ ଓ ଲକ୍ଷଣ ନିର୍ଦ୍ଧାରଣ କରି ଲେଖିଛନ୍ତି :

'କ୍ରୋଧେ ଦାସୀ, ରତେ ବେଶ୍ୟା
ଭୋଜନେ ଜନନୀ ସମା
ବିପଦେ ମନ୍ତ୍ରୀଣାଂ ବୁଦ୍ଧିଃ
ସା ନାରୀ ପ୍ରାଣ ବଲ୍ଲଭୀ'

ନାରୀ ସେବିକା ହେବ ତ ପୁଣି ଦାସୀ ହେବ । ବେଶ୍ୟାପରି ରତିତୃପ୍ତି ଦେବ ଓ ମାଆପରି ସ୍ନେହ ଓ କରୁଣା ଦେବ । ସବୁ କଥାରେ ଫଳପ୍ରଦ ମନ୍ତ୍ରଣା ଦେବ । ସ୍ୱାମୀର ପୁରୁଷାର୍ଥକୁ ପରିବ୍ୟାପ୍ତ କରିବ । ତା'ର ସୁଖ ଓ ସନ୍ତୋଷ ବିଧାନ କରିବ ।

ନାରୀ ବେଶୀ ତତ୍ତ୍ୱ ବୁଝେ ନାହିଁ । ଜ୍ଞାନର ପରିଚର୍ଯ୍ୟା କରେ ନାହିଁ । ପାର୍ଥିବ ସୁଖ ଓ ସାଂସାରିକ ଚଳଣି ପ୍ରତି ତା'ର ସରାଗ ବେଶୀ । ତା'ର ବେଶୀ ପରମାର୍ଥ ପ୍ରତି ଉନ୍ମୁଖତା ନଥାଏ । ସାର ଅସାର ସେ ଏତେ ବୁଝେ ନାହିଁ । ମହତ୍ତର ଉପଲବ୍ଧି ପାଇଁ ସେ ଜୀବନକୁ ବାଜି ଲଗାଏନି । ଭାଗବତକାର ଜଗନ୍ନାଥ ଦାସ ନାରୀର ବୌଦ୍ଧିକ ଜୀବନ ନଥିବାରୁ ସେ ଧର୍ମ ଅଧର୍ମ ଜାଣେନାହିଁ ବୋଲି କହିଛନ୍ତି : 'ସ୍ୱଭାବେ ନାରୀ ଜନ୍ମ ହୋଇ । ଧର୍ମ ଅଧର୍ମ ନ ଜାଣଇ ।'

ଜଣେ ଯୌନ ବାସ୍ତବତାକୁ ଲେଖିଥିବା ବିଶ୍ୱବିଖ୍ୟାତ ଔପନ୍ୟାସିକ ଲେଖିଛନ୍ତି ଜଣେ ନାରୀ ସହିତ ଅତ୍ୟନ୍ତ ନିବିଡ଼ ହୋଇଥିବା ଲୋକ କେବଳ ଜୀବନର ଭିତିରି କଥାକୁ ଲେଖିପାରେ ।

ଏତେ କାଳପରେ, ଏତେ ଚର୍ଚ୍ଚାପରେ ତଥାପି ନାରୀର ଗୋଟେ ମନ ଅଛି କି ନାହିଁ କିମ୍ବା ସେ ମନର ଅନ୍ତରଙ୍ଗତାର ଗୋଟେ ଅତି ସ୍ପର୍ଶକାତର ଅନୁଭବ ଅଛି କି ନାହିଁ, ଯେ କୌଣସି ପୁରୁଷ ତାହା ସନ୍ଦେହ କରେ ।

ପ୍ରଗାଢ଼ ଅନୁଭବ ପାଇଁ ନାରୀର ଗୋଟେ ମନ ନଥିବାରୁ ହୁଏତ ନାରୀ ଅନ୍ତରଙ୍ଗ ପ୍ରେମ ସମ୍ବନ୍ଧ ସ୍ଥାପନ କରିବା ପାଇଁ ଅସମର୍ଥ ବୋଲି ସାର୍ତ କହିଛନ୍ତି । ପ୍ରେମରେ ପଡ଼ି ନାରୀ ଏସ୍‌ଥେଟିକ୍‌ସର ଶୀର୍ଷ ଅନୁଭବ ଆଡ଼େ ଯାଇପାରେନି । ନାରୀ ନିକଟରେ ପ୍ରଚଣ୍ଡ ପ୍ରେମାନୁଭୂତି ନଥାଏ; ବରଂ ତୀବ୍ର ସଙ୍ଗମ ଲାଳସା ଥାଏ ବୋଲି ଅଧିକାଂଶ ସ୍ଥିତିବାଦୀ ଲେଖକମାନେ କହିଛନ୍ତି ।

ଗାଢ଼ ପ୍ରେମର ସ୍ପର୍ଶ ପାଇଲେ ନାରୀ ପ୍ରେମ ଦେଉଥିବା ପୁରୁଷମାନଙ୍କୁ କବି ବୋଲି ଭାବିଥାଏ । ମାତ୍ର ସେମାନେ କୁକୁର ପରି ଦେହ ଖୋଜନ୍ତି । ବିଶ୍ୱସ୍ତ ନାରୀର ପ୍ରେମ କେବଳ ସ୍ୱାଦ୍ୟ ଓ ପବିତ୍ର । ସେଠି ସୁନ୍ଦର ଅସୁନ୍ଦରର ପ୍ରଶ୍ନ ଉଠେନି । ବିଶ୍ୱସ୍ତା ନାରୀକେବଳ ଶୁଦ୍ଧ ଅନ୍ତରର ଅଧିକାରିଣୀ । ସେମାନଙ୍କ ସଂଖ୍ୟା କିନ୍ତୁ ସଂସାରରେ ବିରଳ ।

ନାରୀ ପ୍ରକୃତରେ ଗୋଟେ ସୂକ୍ଷ୍ମ ବୀଣା । ବୀଣାର ଶ୍ରୁତି ମଧୁର ଝଙ୍କାର ତୋଳିବାକୁ ହେଲେ ସେପରି ସମର୍ଥ ବାଦକ ଲୋଡ଼ା । ତାହେଲେ ଯାଇ ବୀଣାରୁ ଅପୂର୍ବ ଝଙ୍କାର ସୃଷ୍ଟି ହୋଇପାରିବ ।

ନାରୀ ସହିତ ସହବାସ କରିବା ଅର୍ଥ ଏକ ସୁଶୀତଳ ପାଣିର ପ୍ରବାହ ଥିବା ନଦୀକୂଳକୁ ଆସିବା । ଘ୍ରବାହ ବେଳେ ସମସ୍ତଙ୍କ ପାଇଁ ନିରାପଦ ହୋଇପାରେ ନାହିଁ । ନାରୀ ସହିତ ସହବାସ ଏକ ବୌଦ୍ଧିକ ଯୋଗାଯୋଗର ବିଷୟ । ଏଥିରୁ ପୁଲକମୟ ଗୋପନ ଆବେଗ ମିଳିଥାଏ ।

କାଳ ପ୍ରବାହକୁ ନାରୀ ଧାରଣ କରିଥାଏ । ସେଥିପାଇଁ ସେ କାଳୀ । ସମୟର ପ୍ରବାହକୁ ନାରୀ ବେଶ ସୂଚେଇ ଦେଇଥାଏ । ସ୍ଥାନ ନୁହେଁ କାଳର ପ୍ରବାହକୁ ଜଣେ ନାରୀ ପ୍ରେମରେ ଉପଲବ୍ଧି କରିଥାଏ ।

ହଜାର ହଜାର ବର୍ଷ ଧରି ପ୍ରେମ ବିଷୟରେ ଲେଖାଚାଲିଛି । ଅନ୍ତିମ ଲେଖାଟି କିନ୍ତୁ ନାରୀ ବିଷୟରେ ଏ ପର୍ଯ୍ୟନ୍ତ ଲେଖାଯାଇପାରିନି । କେଜାଣି ଲେଖାଯାଇ ପାରିବକି ନାହିଁ ? କାରଣ ତାହା ସବୁଠାରୁ କଷ୍ଟକର ବିଷୟ ।

ନାରୀ ଭିତରେ ଗୋପନ ହୋଇ ବିଶ୍ୱବ୍ରହ୍ମାଣ୍ଡ ରହିଛି । ସେପାଇଁ ନାରୀ ବିଚିତ୍ର ଓ ରହସ୍ୟମୟ ।

ସବୁଠାରୁ ବିଚିତ୍ର ନାରୀର ମନ ଓ ପ୍ରେମ । ତାହା ଅବୋଧ ଓ ଅଭେଦ୍ୟ ହୋଇ ରହିଯାଇଛି ।

ନାରୀ ଚିକ୍‌ଚିକ୍ କରୁଥିବା ବର୍ଣ୍ଣାଢ଼୍ୟ ବାସନ ପରି । ପୁରୁଷ ଦ୍ୱାରା ଉପଭୋଗ୍ୟା ହୋଇ ନାରୀ ଭଙ୍ଗା ବାସନରେ ପରିଣତ ହୋଇଯାଏ । ତା'ର ସତୀତ୍ୱ ଚାଲିଯାଏ । ସେ ଆଉ ପୂଜାଫୁଲ ହୋଇ ରହେ ନାହିଁ ।

ନାରୀକୁ ଦାସୀ କରି ରଖିବା ପାଇଁ ପୁରୁଷ କେତେ ପ୍ରକାର ଶବ୍ଦ ବ୍ୟବହାର କରିଛି— ଯଥା ଅସୂର୍ଯ୍ୟଂ ପଶ୍ୟା, ଅନାଘ୍ରାତା ।

ନାରୀ ଏକ ପୂଜାଫୁଲ; ଯାହାର ପାଖୁଡ଼ା କେହି ଛିଡ଼ାଇ ନଥିବେ । ତା'କୁ କେହି ଘ୍ରାଣ କରିନଥିବେ । ସେମିତି ନାରୀ ସତୀ । ପୁରୁଷର ସତୀତ୍ୱ ବୋଲି କଛି ନାହିଁ ।

ନାରୀ କାଳକାଳ ଧରି ପୁରୁଷର ସର୍ବୋତ୍ତମ ଭୋଗ୍ୟବସ୍ତୁ । ନାରୀ ଯେପରି ଏ ସଂସାରକୁ ଆସିଛି ପୁରୁଷର ଉପଭୋଗ ପାଇଁ । ପୁରୁଷ କବି ତେଣୁ ସହସ୍ର ସହସ୍ର ଶବ୍ଦ ସୃଷ୍ଟି କରିଛି ଏହି ଭାବରେ । ନାରୀ ଯେତେ ରତିକାଂକ୍ଷିଣୀ ହେବ ପୁରୁଷ ଦୃଷ୍ଟିରେ ତା ଜୀବନର ସାର୍ଥକତା ସେତେ ବେଶୀ ।

ହଜାର ହଜାର ବର୍ଷର ବିବର୍ତ୍ତନ ସତ୍ତ୍ୱେ ନାରୀ ତଥାପି ବି ଆଜି ପୁରୁଷର ଭୋଗ୍ୟବସ୍ତୁ ହୋଇ ରହିଛି ।

ନାରୀର ସୁରତି ପାଇବା ହିଁ ପୁରୁଷ ଜୀବନର ବଡ଼ ପ୍ରାପ୍ତି । ପୁରୁଷର କାମିନୀ ଲୋଭ ହେଉଛି ତେଣୁ ପ୍ରବଳ । ଯେ ସଂସାରରେ ଏକାକୀ ସଂଗ୍ରାମ କରିପାରେ ସେ ହେଉଛି ପ୍ରକୃତରେ ଶକ୍ତିଶାଳୀ । ଇବ୍‌ସନ୍ କହିଛନ୍ତି : 'The strongest man in the world is the man, who stands most alone.' । ନାରୀ ବହୁ କାରଣରୁ ଯୁଗଯୁଗ ଧରି ପୁରୁଷ ବିନା ବଞ୍ଚିବାର ଅଭିଳାଷ ପୋଷଣ କରିପାରି ନାହିଁ । ଏହି କାରଣ ଯୋଗୁଁ ନାରୀ ଅନନ୍ତକାଳ ଧରି ଅନଗ୍ରସର ହୋଇ ରହିଛି ।

ଶାଗୁଣା, ନେଉଳ, ଚୁଚୁନ୍ଦ୍ରା, କୁକୁର, ଶୁଦ୍ର ଓ ନାରୀ ମଧରେ ଶାସ୍ତ୍ର କୌଣସି ବ୍ୟବଧାନ ଦେଖିନି । ନାରୀକୁ ହିନ୍ଦୁଧର୍ମ ଗ୍ରନ୍ଥ ଅଶୁଭ ଓ ଦୁର୍ଭାଗ୍ୟ ସ୍ୱରୂପିଣୀ ବୋଲି ବର୍ଣ୍ଣନା କରିବାକୁ ମଧ କୁଣ୍ଠିତ ହୋଇନି । ନାରୀ ଭଲ କି ମନ୍ଦ, ପାପ କି ପୁଣ୍ୟ ସେ ବିଚାର ଉର୍ଦ୍ଧ୍ୱରେ ନାରୀ ଏ ବସୁନ୍ଧରାରେ କେତିକି ଭାବପ୍ରବୋଧକ, କେତିକି ମନୋମୋହିନୀ ତାହା କଳ୍ପନା କରିବା ବାଞ୍ଛନୀୟ । ଯେଉଁ ନାରୀ ମହାବିବର୍ତ୍ତନର ଧାରିଣୀ ଓ ଯେ କୋଟିକୋଟି ପୁରୁଷକୁ କାଳ କାଳ ଧରି ବଶ କରିଦେଇଛି ସେ ପୁରୁଷର ଉପଲବ୍‌ଧିର ବାହାରେ । ସେହି ସତ୍ତା ଓ ସ୍ୱରୂପ ତଥାପି ଅବୋଧ ଓ ଅଭେଦ ହୋଇ ରହିଯାଇଛି । ସେହି ରହସ୍ୟମୟୀ ନାରୀକୁ ଅଧିକରୁ ଅଧିକ ଉପଲବ୍‌ଧି କରିବା ପାଇଁ ତଥାପି ଆମ ଭାବ, ରସ ଓ ସୌନ୍ଦର୍ଯ୍ୟ ଜଗତର ଉତ୍ସୁକତା ଊଣା ହୋଇଯାଇନାହିଁ ।





## ପ୍ରଫେସର ଆଦିକନ୍ଦ ସାହୁ

ଅସ୍ତିତ୍ୱବାଦୀ ଚିନ୍ତା ଓ ଚେତନା ଦ୍ୱାରା ବିଶେଷ ଭାବେ ପ୍ରଭାବିତ ପ୍ରଫେସର ଆଦିକନ୍ଦ ସାହୁ ଏକାଧାରରେ ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ ଓ ସାହିତ୍ୟ ସମାଲୋଚକ ।

ଜଣେ ସଫଳ ସାହିତ୍ୟିକର ସମସ୍ତ ଗୁଣଧର୍ମ ନେଇ ସେ ପ୍ରତିଷ୍ଠିତ । ମଣିଷର ପ୍ରେମ ଓ ଆବେଗକୁ ବିଶେଷ ଗୁରୁତ୍ୱ ଦେଉଥିବା ଏହି ଲେଖକଙ୍କର ସମସ୍ତ ସାହିତ୍ୟକୃତି ଏକାନ୍ତଭାବେ ଜୀବନନିଷ୍ଠ ।

ପ୍ରକୃତରେ ଜଣେ କବି ଯେଉଁ ଆବେଗ ଓ ଅନୁଭବ ନେଇ କବିତା ଲେଖେ କବିତାର ସମାଲୋଚକ ଭାବେ ଡକ୍ଟର ସାହୁ ମଧ୍ୟ ଆନନ୍ଦର ସେହି ସେହି ପର୍ଯ୍ୟାୟ ଗୁଡ଼ିକୁ ଆଉଥରେ ଅନୁଭବ କରନ୍ତି ।

କବିତାର କେବଳ ଶୁଷ୍କ ଓ ବୌଦ୍ଧିକ ମୂଲ୍ୟାୟନ ନୁହେଁ ବରଂ କବିତା ସହିତ ନିଜକୁ ସଂପୂର୍ଣ୍ଣ ମିଶାଇ ଦେଇ ସେ ନିଜର ଅନୁଭବକୁ ହିଁ ପ୍ରକାଶ କରନ୍ତି ଯେପରି ।

ସେଥିପାଇଁ ତାଙ୍କ ସମାଲୋଚନା ମୂଳକ ଲେଖା ଗୁଡ଼ିକ କବିତା ପରି ସୁନ୍ଦର ଓ ଭାବୋଦ୍ଦୀପକ । ଜଣେ ସଚ୍ଚା କବିର ସୌନ୍ଦର୍ଯ୍ୟ ଦୃଷ୍ଟି ଓ ବିଭୋରପଣ ନେଇ ବଞ୍ଚିଥିବା ଏହି ସାହିତ୍ୟିକଙ୍କର ପରିବ୍ୟାପ୍ତ ଜୀବନଦୃଷ୍ଟି ତାଙ୍କ ଗଦ୍ୟ ଶୈଳୀକୁ ଯେତିକି ସରସ ଓ ପ୍ରାଣପୂର୍ଣ୍ଣ କରିଛି ସେତିକି ଦୀପ୍ତ ଓ ପ୍ରଭାବଶାଳୀ କରିଛି ।

।। ଶର୍ମିଷ୍ଠା ସାହୁ ।।

**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**